# ଉତ୍କଳଶ୍ରୀ



୧୦୧ ତମ ଉତ୍କଳ ସମ୍ମିଳନୀ -୨୦୦୫
ଚନ୍ଦନେଶ୍ୱର - ବାଲେଶ୍ୱର



# ଉତ୍କଳଶ୍ରୀ

(୧୦୧ତମ ଉତ୍କଳ ସମ୍ମିଳନୀର ସ୍ମାରକ ଗ୍ରନ୍ଥ)

ପ୍ରଯୋଜନା :

**ଶ୍ରୀ ବ୍ରଜନାଥ ରଥ**

(ସଭାପତି, ଉତ୍କଳ ସମ୍ମିଳନୀ, ବାଲେଶ୍ୱର ଜିଲ୍ଲା)

ସଂପାଦନା ମଣ୍ଡଳୀ :

**ଶ୍ରୀ ଚନ୍ଦ୍ର କୁମାର ମହାନ୍ତି**

**ଡଃ ରମାକାନ୍ତ ବେହେରା**

**ଡଃ ଅରବିନ୍ଦ ଗିରି**

**ଡଃ ଲକ୍ଷ୍ମୀକାନ୍ତ ତ୍ରିପାଠୀ**

**ଡଃ ମନ୍ମଥ କୁମାର ପ୍ରଧାନ**

ସଂପାଦନା ସହଯୋଗୀ :

**ଶ୍ରୀ କାଳୀପଦ ପଣ୍ଡା**

**ଉତ୍କଳଶ୍ରୀ-୨୦୦୫**
ଉତ୍କଳ ସମ୍ମିଳନୀ, ବାଲେଶ୍ୱର ଜିଲ୍ଲା

ପ୍ରକାଶକ :
**ଉତ୍କଳ ସମ୍ମିଳନୀ, ବାଲେଶ୍ୱର ଜିଲ୍ଲା**

ସଂପର୍କ :
**ଶ୍ରୀ ବ୍ରଜନାଥ ରଥ**
ବିଶ୍ୱଶ୍ରୀ ପ୍ରେସ
ଫକୀରମୋହନ ସେନାପତି ରୋଡ଼,
ବାଲେଶ୍ୱର

ଲିପିକାର :
**ବିଶ୍ୱଶ୍ରୀ ପ୍ରେସ୍**
ଫକୀରମୋହନ ସେନାପତି ରୋଡ଼,
ବାଲେଶ୍ୱର-୩

ପ୍ରକାଶ କାଳ :
**୬.୨.୨୦୦୫**

ମୂଲ୍ୟ :
**୬୦.୦୦ ଟଙ୍କା**

**UTKALSREE-2005**
Utkal Sammilani, Balasore

Publisher :
**Utkal Sammilani, Balasore**

Contact :
**Sri Brajanath Rath**
Biswasri Press
Fakirmohan Senapati Road
Balasore-3

Printer :
**Biswasri Press**
Fakirmohan Senapati Road,
Balasore-3

Publication :
**6.2.2005**

Rate :
**Rs. 60.00**

# ଆମ ତରଫରୁ.......

୧୯୦୬ ଓ ୧୬୧୬ ମସିହାରେ ବାଲେଶ୍ୱରରେ ଉତ୍କଳ ସମ୍ମିଳନୀ ଅନୁଷ୍ଠିତ ହୋଇ ସାରିବା ପରେ ଦୀର୍ଘ ବର୍ଷ ବ୍ୟବଧାନରେ ପୁଣି ୨୦୦୫ ମସିହାରେ ଏହାର ୧୦୧ତମ ବାର୍ଷିକ ଅଧିବେଶନ ବାଲେଶ୍ୱର ଜିଲ୍ଲାର ଉତ୍ତର ସୀମାନ୍ତ ଚନ୍ଦନେଶ୍ୱର (ସାହାବାଜିପୁର) ଠାରେ ଫେବୃଆରୀ ୬ ଓ ୭ ତାରିଖ ଦୁଇଦିନ ଧରି ଅନୁଷ୍ଠିତ ହେବା ବାଲେଶ୍ୱରବାସୀଙ୍କ ପାଇଁ ଆନନ୍ଦ, ଉତ୍ସାହ ଓ ଗୌରବର କଥା । ଓଡ଼ିଆ ସମୂହ ସ୍ୱାର୍ଥର ମହା ମିଳନମଞ୍ଚ ଏହି ସମ୍ମିଳନୀକୁ ସ୍ମରଣୀୟ ଓ ଗତିଶୀଳ କରିବା ଉଦ୍ଦେଶ୍ୟରେ ଆମର ଏହି ସ୍ମାରକଗ୍ରନ୍ଥ 'ଉତ୍କଳଶ୍ରୀ' । ଓଡ଼ିଆ ଭାଷା, ସାହିତ୍ୟ, ସଂସ୍କୃତି, ରାଜନୀତି, ସମାଜ ସେବା ଆଦି ବିଭିନ୍ନ କ୍ଷେତ୍ରରେ ପ୍ରତିଷ୍ଠିତ ଶତାଧିକ ପ୍ରତିଭାଧର ବ୍ୟକ୍ତିଙ୍କ ଚିନ୍ତାର ଚିତ୍ରଲିପିକୁ ଏହି ଗ୍ରନ୍ଥରେ ସ୍ଥାନିତ କରିବା ପାଇଁ ଅନୁରୋଧ-ପତ୍ର ମଧ୍ୟ ପଠାଇଥିଲୁ । ନାନାଦିଗରୁ ଆଲୋଚିତ ବହୁ ଉପାଦେୟ ଲେଖାରେ ଏହି ଗ୍ରନ୍ଥ ସମୃଦ୍ଧ ବୋଲି ଆପଣମାନେ ଅନୁଭବ କରିବେ, ଏହା ଆମର ବିଶ୍ୱାସ । ସମୟ ଅଭାବରୁ ପାଇଥିବା ଆହୁରି ଅନେକ ଉପାଦେୟ ଲେଖା ଏହି ସ୍ମାରକ ଗ୍ରନ୍ଥରେ ସ୍ଥାନିତ ନକରିପାରି ଆମେ ଦୁଃଖିତ ।

ସାହିତ୍ୟ ସବୁବେଳେ ସମୟର ସତ୍ୟଶୀଳ ସ୍ୱାକ୍ଷର । ଏହି ଗ୍ରନ୍ଥ ମଧ୍ୟ ପଛରେ ଛାଡ଼ି ଆସିଥିବା ଶହେବର୍ଷ ଇତିହାସର ସଠିକ୍ ବିବରଣୀ ଦେବାପାଇଁ ପୁନର୍ନିର୍ମାଣର ଏକ ଅଧ୍ୟାୟ ଏବଂ ଚିନ୍ତା, ଚେତନା, କର୍ତ୍ତବ୍ୟ ଓ ପ୍ରେରଣାର ଗଙ୍ଗୋତ୍ରୀ । ସାମଗ୍ରିକ ଭାବରେ ଏହାହିଁ ଆମ ଆଭିମୁଖ୍ୟର ବିସ୍ତୃତି । ଏହି ଉଦ୍ୟମକୁ ସଫଳ କରିବା ଦିଗରେ ଯେଉଁ ଲେଖକମାନେ ସହଯୋଗର ହାତ ବଢ଼ାଇଛନ୍ତି, ସେମାନଙ୍କୁ ଆନ୍ତରିକ ଧନ୍ୟବାଦ ।

'ବନ୍ଦେ ଉତ୍କଳ ଜନନୀ'

ସଂପାଦନା ମଣ୍ଡଳୀ

# ଉତ୍କଳ ସମ୍ମିଳନୀ

## ଉପଦେଷ୍ଟା ମଣ୍ଡଳୀ

୧. ଡଃ ପ୍ରଫୁଲ୍ଲ କୁମାର ପତି, ମୋତି ଝରଣ, ସମ୍ବଲପୁର
୨. ଶ୍ରୀ ସାତକଡ଼ି ହୋତା, ନଂ-୯, ଷ୍ଟେସନ ସ୍କୋୟାର୍, ଭୁବନେଶ୍ୱର
୩. ଶ୍ରୀ ବିପିନବିହାରୀ ରଥ, କନିକା ରୋଡ଼, କଟକ-୧
୪. ଶ୍ରୀମତୀ ମନୋରମା ମହାପାତ୍ର, ଗୋପବନ୍ଧୁ ଭବନ, ବକ୍ସିବଜାର, କଟକ-୧
୫. ଶ୍ରୀ ପଦ୍ମଚରଣ ନାୟକ, ଏଫ୍-୧୭/୧, ବିଜେବି ନଗର, ଭୁବନେଶ୍ୱର
୬. ଶ୍ରୀ ବୀରଭଦ୍ର ସିଂହ, ଗ୍ରା.ବାସିପିଠା, ପୋ-ବାରିପଦା, ଜି-ମୟୂରଭଞ୍ଜ
୭. ଶ୍ରୀ କୃଷ୍ଣପ୍ରସାଦ ମହାପାତ୍ର, ଫରେଷ୍ଟ ପାର୍କ, ଭୁବନେଶ୍ୱର-୩
୮. ଶ୍ରୀ ହରିହର ବାହିନୀପତି, କଚେରୀ ରୋଡ଼, ପୁରୀ

## କେନ୍ଦ୍ରୀୟ କର୍ମକର୍ତ୍ତା ଓ ଅନ୍ୟାନ୍ୟ ପଦାଧିକାରୀ

| | |
|---|---|
| ସଭାପତି | ଶ୍ରୀ ବସନ୍ତ କୁମାର ପାଣିଗ୍ରାହୀ |
| ଉପସଭାପତି | ଶ୍ରୀ ପତିତପାବନ ପ୍ରଧାନ<br>ଶ୍ରୀ ରଘୁନାଥ ପଟ୍ଟନାୟକ<br>ଶ୍ରୀମତୀ ଅନ୍ନପୂର୍ଣ୍ଣା ମିଶ୍ର<br>ଶ୍ରୀ ଗୁରୁ ପ୍ରସାଦ ମହାନ୍ତି<br>ଶ୍ରୀ କୃଷ୍ଣଚନ୍ଦ୍ର ଜେନା<br>ଶ୍ରୀ ଭାବଗ୍ରାହୀ ମହାପାତ୍ର |
| ସାଧାରଣ ସମ୍ପାଦକ | ଶ୍ରୀ ଅମରେନ୍ଦ୍ର କୁମାର ଦାସ |
| କୋଷାଧ୍ୟକ୍ଷ | ଶ୍ରୀ ଭଗବାନ ମହାପାତ୍ର |
| ସମ୍ପାଦକ | ଶ୍ରୀ ବିଚିତ୍ରାନନ୍ଦ ସାହୁ<br>ଡାଃ. ରାଧାନାଥ ପ୍ରହରାଜ<br>ଶ୍ରୀ ଅମରେଶ ପ୍ରସାଦ ମିଶ୍ର<br>ଶ୍ରୀ ଅନନ୍ତରାମ ମହାପାତ୍ର<br>ଶ୍ରୀ ପୂର୍ଣ୍ଣଚନ୍ଦ୍ର ମହାପାତ୍ର<br>ଶ୍ରୀ ବିନୋଦ ମହାପାତ୍ର<br>ଶ୍ରୀ ମନ୍ମଥ ପାଢ଼ୀ |
| ସଭ୍ୟ | ଶ୍ରୀମତୀ ଇନ୍ଦୁବାଳା ପାଢ଼ୀ, ଶ୍ରୀ କିଶୋର ଚନ୍ଦ୍ର ମିଶ୍ର<br>ଶ୍ରୀ ଅନାଦି ଚରଣ ଜେନା, ଶ୍ରୀ ବସନ୍ତ କୁମାର ତ୍ରିପାଠୀ<br>ଶ୍ରୀ କୌଶିକ ସାହୁ, ଶ୍ରୀ ଗୌରାଙ୍ଗ ଚରଣ ବେହେରା<br>ଶ୍ରୀ ଶ୍ରୀଚରଣ ସ୍ୱାଇଁ, ଶ୍ରୀ ଶ୍ରୀନିବାସ ପାଠୀ<br>ଶ୍ରୀ ଅଜୟ କୁମାର ଜେନା, ଶ୍ରୀ ଅଭୟ ସାମନ୍ତରା<br>ଶ୍ରୀ ଅଶୋକ ସାହୁ, ଶ୍ରୀ ବିଚିତ୍ର କୁମାର ବଡ଼ଜେନା<br>ଶ୍ରୀ ମନୋରଞ୍ଜନ ତ୍ରିପାଠୀ, ଶ୍ରୀ ରତ୍ନାକର ବାରିକ |

# ଶାଖା ସଭାପତି

କଟକ
ଡଃ ଶ୍ୟାମସୁନ୍ଦର ମିଶ୍ର
ମିଶ୍ରଗଳି, ଝାଞ୍ଜିରୀମଙ୍ଗଳା, କଟକ-୯

ଖୋର୍ଦ୍ଧା
ଶ୍ରୀ ରାଜକିଶୋର ରାମ
କୁଳଣା ସାହି, ଖୋର୍ଦ୍ଧା

ପୁରୀ
ଡଃ ବିଷ୍ଣୁ ମୋହନ ଦାସ
ଦୟିତାପତି ସାହି, ପୁରୀ

ଗଞ୍ଜାମ
ଶ୍ରୀ ଅର୍ଜୁନ ସାହୁ
ବାଲାଜୀ ପେଣ୍ଠ ସାହି, ବ୍ରହ୍ମପୁର, ଗଞ୍ଜାମ

ରାୟଗଡ଼ା
ଶ୍ରୀ କୃଷ୍ଣଚନ୍ଦ୍ର ବକ୍ସିପାତ୍ର
ବ୍ରହ୍ମଣ ସାହି, ରାୟଗଡ଼ା

ମାଲକାନଗିରି
ଶ୍ରୀ ପ୍ରଫୁଲ୍ଲ କୁମାର ମହାପାତ୍ର
ମାଲ୍‌କାନଗିରି, ଜି-ମାଲ୍‌କାନଗିରି

କନ୍ଧମାଳ
ଶ୍ରୀ କୌଶିକ ସାହୁ
ପୋ-ବାଲିଗୁଡ଼ା, ଜି-କନ୍ଧମାଳ

ତାଳଚେର
ଶ୍ରୀ ଅରୁଣ ଶଙ୍କର ମିଶ୍ର
ଲେମୁଆ,ପୋ.ତାଳଚେର, ଜି-ଅନୁଗୁଳ

ଝାରସୁଗୁଡ଼ା
ଶ୍ରୀ କିଶୋର କୁମାର ମହାନ୍ତି
ମହାନ୍ତି ପଡ଼ା, ପୋ. ଝାରସୁଗୁଡ଼ା, ଜି-ଝାରସୁଗୁଡ଼ା

ବାଲେଶ୍ୱର
ଶ୍ରୀ ବ୍ରଜନାଥ ରଥ
ସୁନହଟ, ବାଲେଶ୍ୱର, ଜି.-ବାଲେଶ୍ୱର

ନୟାଗଡ଼
ଶ୍ରୀ ମହମ୍ମଦ ଏସ୍.ଏ. ସୋଲେମାନ୍
ପୋ-ସିନ୍ଦୂରିଆ, ନୟାଗଡ଼

ଗଜପତି
ଶ୍ରୀମତୀ ଇନ୍ଦୁବାଳା ପାଢ଼ୀ
ବକ୍ସିସାହି, ପାରଳାଖେମୁଣ୍ଡି, ଜି-ଗଜପତି

କୋରାପୁଟ
ଶ୍ରୀ ପଦ୍ମଚରଣ ବେହେରା
ରାଜୁସାହି, ଜୟପୁର, କୋରାପୁଟ

କଳାହାଣ୍ଡି
ଶ୍ରୀ ରାହାସ ବିହାରୀ ବେହେରା
ସା/ପୋ-ଭବାନୀପାଟଣା, କଳାହାଣ୍ଡି

କେନ୍ଦୁଝର
ଶ୍ରୀ ଭାଗୀରଥି ମହାନ୍ତ
ପୋ-କେନ୍ଦୁଝର ଗଡ଼, ଜି-କେନ୍ଦୁଝର

ଢେଙ୍କାନାଳ
ଶ୍ରୀ ବସନ୍ତ କୁମାର ତ୍ରିପାଠୀ
ମୀନା ବଜାର, ଢେଙ୍କାନାଳ

ମୟୂରଭଞ୍ଜ
ଶ୍ରୀ ଦୀପକ ଷଡ଼ଙ୍ଗୀ
କଳ୍ପନା ଭବନ, ବାରିପଦା-୨,ମୟୂରଭଞ୍ଜ

ଭଦ୍ରକ
ଶ୍ରୀ ସଦାଶିବ ନାୟକ
ନରିପୁର, ଭଦ୍ରକ

ଯାଜପୁର
ଶ୍ରୀ ପ୍ରଫୁଲ୍ଲ କୁମାର ମାହାଲା
ଚଣ୍ଡୀଖୋଲ ଛକ, ସୁଙ୍ଗୁଡ଼ା, ଯାଜପୁର

ଜଗତ୍‌ସିଂହପୁର
ଡଂ ଗୌରାଙ୍ଗ ଚରଣ ବେହେରା
ଠାକୁର ପାଟଣା, ଜଗତ୍‌ସିଂହପୁର

ସୁନ୍ଦରଗଡ଼
ଶ୍ରୀ କିଶୋର ଚନ୍ଦ୍ର ମିଶ୍ର
ରାଜଗାଙ୍ଗପୁର, ସୁନ୍ଦରଗଡ଼

ଭୁବନେଶ୍ୱର
ଶ୍ରୀ ଗଙ୍ଗାଧର ମିଶ୍ର
ବିନ୍ଦୁସାଗର ଛକ, ଭୁବନେଶ୍ୱର

ରାଉରକେଲା
ଶ୍ରୀ ପୀତବାସ ମିଶ୍ର
ଏ/୮, କମର୍ସିଆଲ୍ ଇଷ୍ଟେଟ୍, ରାଉରକେଲା

ହୀରାକୁଦ
ଶ୍ରୀ ଅଶୋକ କୁମାର ମହାପାତ୍ର
ଏଫ୍-୩/୧୧, ହୀରାକୁଦ, ସମ୍ବଲପୁର

କେନ୍ଦ୍ରାପଡ଼ା
ଡାଃ ବାସୁଦେବ ଦାସ
ଖଡ଼ିଅଙ୍ଗ, କେନ୍ଦ୍ରାପଡ଼ା

ଅନୁଗୁଳ
ଶ୍ରୀ ମୀନକେତନ ପୁରୋହିତ
ଟି.ବି.-୧୦, ନାଲ୍‌କୋ ନଗର, ପୋ-ଡେମଣା, ଜି.:ଅନୁଗୁଳ

ନବରଙ୍ଗପୁର
ଶ୍ରୀ ମନୋରଞ୍ଜନ ତ୍ରିପାଠୀ
ମେନ୍‌ରୋଡ଼, ନବରଙ୍ଗପୁର, ଜି-ନବରଙ୍ଗପୁର

ସୋର
ଶ୍ରୀ ସୁରେନ୍ଦ୍ର ପ୍ରସାଦ ଦଳାଇ
ଗ୍ରା-ଡଗରପଡ଼ାସ, ଭାୟା-ତୁଡ଼ିଗଡ଼ିଆ,ଜି.:ବାଲେଶ୍ୱର

ପାରାଦ୍ୱୀପ
ଶ୍ରୀ ଭଗବାନ ମହାପାତ୍ର
ଏଫ୍-୭, ଭି.ପଏଣ୍ଡ, ପାରାଦ୍ୱୀପ ପୋର୍ଟ, ଜଗତସିଂହପୁର

ଗୁଣପୁର
ଶ୍ରୀ ବୈଦ୍ୟନାଥ ରଥ
ବଳରାମ୍‌ନଗର, ପୋ-ଗୁଣୁପୁର, ଜି.: ରାୟଗଡ଼ା

# ଉତ୍କଳ ସମ୍ମିଳନୀ, ବାଲେଶ୍ୱର ଜିଲ୍ଲା ଶାଖା

| | |
|---|---|
| ସଭାପତି | ଶ୍ରୀ ବ୍ରଜନାଥ ରଥ |
| ସଂପାଦକ | ଶ୍ରୀ ଅନନ୍ତ କୁମାର ଦାସ |
| ସହକାରୀ ସଂପାଦକ | ଶ୍ରୀ ପଞ୍ଚାନନ ଦାଶ |
| କୋଷାଧ୍ୟକ୍ଷ | ଶ୍ରୀ ଶରତ ଚନ୍ଦ୍ର ଦାଶ |
| ସଭ୍ୟ | ଶ୍ରୀ ମହେଶ୍ୱର ବାଗ |
| | ଶ୍ରୀ ଭୂପାଳ ଚନ୍ଦ୍ର ମହାପାତ୍ର |
| | ଶ୍ରୀ ହିମାଂଶୁ ଶେଖର ନନ୍ଦୀ |
| | ଡଃ ପ୍ରହ୍ଲାଦ ଚରଣ ମହାନ୍ତି |
| | ଡଃ ଶ୍ରୀକାନ୍ତ ଚରଣ ପାତ୍ର |
| | ଶ୍ରୀ ମହେନ୍ଦ୍ର ପ୍ରସାଦ ଧଳ |
| | ଶ୍ରୀ ସତ୍ୟନାରାୟଣ ମିଶ୍ର |
| | ଶ୍ରୀମତୀ ଅନସୂୟା ନାୟକ |
| | ଶ୍ରୀମତୀ ଯୁବେଦା ଖାତୁନ |
| ଆଜୀବନ ସଦସ୍ୟ (ବାଲେଶ୍ୱର ଶାଖା) | ବୈକୁଣ୍ଠ ନାଥ ମହାପାତ୍ର, ଚିନ୍ତାମଣି ଜେନା, ଡଃ ଶ୍ରୀକାନ୍ତ ଚରଣ ପାତ୍ର, ଡଃ ପ୍ରହ୍ଲାଦ ଚରଣ ମହାନ୍ତି, ଭୂପାଳ ଚନ୍ଦ୍ର ମହାପାତ୍ର, ଅନନ୍ତ କୁମାର ଦାସ, ଅଲେଖ ଦାସ, ରିୟାଜ ଅଲ୍ଲୀଖାଁ, ଯଶୋଧାରା ଦାସ, ଅନସୂୟା ନାୟକ, ଯୁବେଦା ଖାତୁନ, ନନ୍ଦଲାଲ ସାହା, ମହେଶ୍ୱର ବାଗ, ସତ୍ୟନାରାୟଣ ମିଶ୍ର, ଏମ୍.ଏ.ଓ୍ୱାହିଦ୍, ଶିବଚନ୍ଦ୍ର ସିଂହ, ସୁଦର୍ଶନ ନାୟକ, ଦାମୋଦର ମହାପାତ୍ର, ନିରଂଜନ ପଣ୍ଡା, ଶରତ ଚନ୍ଦ୍ର ଦାଶ, ଅଭୟ ଦାସ, ଶରତ ଚନ୍ଦ୍ର କର, ପୁରୁଷୋତ୍ତମ ବିଶ୍ୱାଳ, ନୟନା କୁମାରୀ ପଟ୍ଟନାୟକ, ଅକ୍ଷୟ କୁମାର ପଣ୍ଡା, ମହେନ୍ଦ୍ର ପ୍ରସାଦ ଧଳ, ଶରତ କୁମାର ମହାପାତ୍ର, ହିମାଂଶୁ ଶେଖର ନନ୍ଦୀ, କାଳୀପଦ ପଣ୍ଡା, ସିଂଧୁ ସେନ, ଚନ୍ଦ୍ର କୁମାର ମହାନ୍ତି । |
| ଆଜୀବନ ସଭ୍ୟ (ଜଳେଶ୍ୱର ଶାଖା) | ମୁକୁନ୍ଦ ମୁରାରି ପାତ୍ର, ବୀରେନ୍ଦ୍ର କୁମାର ପାତ୍ର, ରବୀନ୍ଦ୍ର ନାଥ ପରିଡ଼ା କମଳେଶ କର, ପର୍ଶୁରାମ ଗିରି, ଗୌରୀଶଙ୍କର ଜେନା, ଖେଦୁ ପ୍ରସାଦ ଚୌରାସିଆ, ଡଃ ପ୍ରଭାତ କୁମାର ବେହେରା, ଡଃ ଅନନ୍ତ କୁମାର ପରିଡ଼ା, ସୁରେନ୍ଦ୍ର ନାଥ ଚନ୍ଦ, ସୁନୀଲ କୁମାର ପରିଡ଼ା, ସୁଧାଂଶୁ ପ୍ରଧାନ, ତାରା ଶଙ୍କର ମହାନ୍ତି, ସତ୍ୟସୁନ୍ଦର ଦାସ, ସ୍ୱର୍ଣ୍ଣଲତା ଦାସ, ନକୁଳ ଚନ୍ଦ୍ର ଓଝା, ଚିନ୍ମୟ କୁମାର ଦାସ, ବିଷ୍ଣୁପଦ ମହାନ୍ତି, ମାନସ ରଂଜନ ପାଣିଗ୍ରାହୀ, ଦିଲ୍ଲୀପ କୁମାର ଗିରି, ସୃଷ୍ଟିଧର ସାହୁ । |

## ୧୦୧ତମ ଉତ୍କଳ ସମ୍ମିଳନୀ, ବାଲେଶ୍ୱର ଅଧିବେଶନର

## ପୃଷ୍ଠପୋଷକବୃନ୍ଦ :

**ପ୍ରଫେସର ଡଃ ଶୁକଦେବ ନନ୍ଦ**
କୁଳପତି, ଫକୀରମୋହନ ବିଶ୍ୱବିଦ୍ୟାଳୟ, ବାଲେଶ୍ୱର

**ଶ୍ରୀଯୁକ୍ତ ଅର୍ଜୁନ ଚରଣ ସେଠୀ**
ପ୍ରାକ୍ତନ କେନ୍ଦ୍ରମନ୍ତ୍ରୀ ଓ ସାଂସଦ, ଭଦ୍ରକ

**ଶ୍ରୀଯୁକ୍ତ ମହାମେଘବାହନ ଐର ଖାରବେଳ ସ୍ୱାଇଁ**
ସାଂସଦ, ବାଲେଶ୍ୱର

**ଶ୍ରୀଯୁକ୍ତ ଅରୁଣ ଦେ**
ବିଧାୟକ, ବାଲେଶ୍ୱର

**ଶ୍ରୀଯୁକ୍ତ ରଘୁନାଥ ମହାନ୍ତି**
ବିଧାୟକ, ବସ୍ତା

**ଶ୍ରୀଯୁକ୍ତ କାର୍ତ୍ତିକ ମହାପାତ୍ର**
ବିଧାୟକ, ସୋର

**ଶ୍ରୀଯୁକ୍ତ ପଦ୍ମଲୋଚନ ପଣ୍ଡା**
ବିଧାୟକ, ସିମୁଳିଆ

**ଶ୍ରୀଯୁକ୍ତ ଅଶ୍ୱିନୀ କୁମାର ପାତ୍ର**
ବିଧାୟକ, ଜଳେଶ୍ୱର

**ଶ୍ରୀଯୁକ୍ତ ପ୍ରତାପ ଷଡ଼ଙ୍ଗୀ**
ବିଧାୟକ, ନୀଳଗିରି

**ଶ୍ରୀଯୁକ୍ତ କୁଳମଣି ରାଉତ**
ଜିଲ୍ଲାପାଳ, ବାଲେଶ୍ୱର

**ଶ୍ରୀଯୁକ୍ତ ରବୀନ୍ଦ୍ର ନାଥ ପାଢ଼ୀ**
ଆରକ୍ଷୀ ଉପମହାନିର୍ଦ୍ଦେଶକ, ପୂର୍ବାଞ୍ଚଳ, ବାଲେଶ୍ୱର

**ଶ୍ରୀଯୁକ୍ତ ସଂଜୀବ ପଣ୍ଡା**
ଅରକ୍ଷୀ ଅଧୀକ୍ଷକ, ବାଲେଶ୍ୱର

**ଆମେ କୃତଜ୍ଞ**

ବାଲେଶ୍ୱର ଜିଲ୍ଲା ପ୍ରଶାସନ, ବିରଳା ଟାୟାର୍ସ, ଇମାମି ପେପର ମିଲସ୍ ଲିଃ., ଓଡ଼ିଶା ପ୍ଲାଷ୍ଟିକସ୍, ବାଲେଶ୍ୱର ଏଲଏଜ୍, ପୋଲାର ଫର୍ମା ଇଣ୍ଡିଆ ଲିଃ. ଏବଂ ଅନ୍ୟମାନେ

# ୧୦୧ତମ ଉତ୍କଳ ସମ୍ମିଳନୀ -୨୦୦୫

## ଅଭ୍ୟର୍ଥନା ସମିତି

### ଉପଦେଷ୍ଟା ମଣ୍ଡଳୀ

୧. **ଶ୍ରୀଯୁକ୍ତ ରବୀନ୍ଦ୍ରମୋହନ ଦାସ**, ସ୍ୱାଧୀନତା ସଂଗ୍ରାମୀ ଓ ପୂର୍ବତନ ବିଧାୟକ, ବାଲେଶ୍ୱର

୨. **ଶ୍ରୀଯୁକ୍ତ ଦୁର୍ଗାଶଙ୍କର ଦାସ**, ସ୍ୱାଧୀନତା ସଂଗ୍ରାମୀ ଓ ପୂର୍ବତନ ବିଧାୟକ, ଭୋଗରାଇ

୩. **ଶ୍ରୀଯୁକ୍ତ ମହେଶ୍ୱର ବାଗ୍**, ପୂର୍ବତନ ମନ୍ତ୍ରୀ, ସ୍ୱାସ୍ଥ୍ୟ, ପରିବାର କଲ୍ୟାଣ ଓ ପୂର୍ତ୍ତ ବିଭାଗ

**ଅଧକ୍ଷ : ଅଭ୍ୟର୍ଥନା ସମିତି**

**ଶ୍ରୀ ଅନନ୍ତ କୁମାର ଦାସ**, ବିଧାୟକ, ଭୋଗରାଇ

**ସଂପାଦକ : ଅଭ୍ୟର୍ଥନା ସମିତି**

**ଶ୍ରୀ ସୁଶାନ୍ତ କୁମାର ଚାନ୍ଦ**, ପୂର୍ବତନ ବିଧାୟକ, ଭୋଗରାଇ

### ଉପ-ସମିତି

#### ୧. ଅର୍ଥ ଉପସମିତି

୧. ଡ. କାର୍ତ୍ତିକେଶ୍ୱର ପାତ୍ର (ଆବାହକ), (ପ୍ରାକ୍ତନ ସାଂସଦ)
୨. ଶ୍ରୀ କୁଞ୍ଜବିହାରୀ ଦାସମହାପାତ୍ର
୩. ଶ୍ରୀ ଗିରିଜା ଶଙ୍କର ମହାନ୍ତି
୪. ଶ୍ରୀ କେଶବ କିଂକର ଦାସ
୫. ଶ୍ରୀ ସତୀଶ ଚନ୍ଦ୍ର ଦାସଅଧିକାରୀ
୬. ଶ୍ରୀମତୀ ବିନ୍ଦୁବାଳା ନନ୍ଦୀ, (ଅଧକ୍ଷା, ଜଳେଶ୍ୱର ପଞ୍ଚାୟତ ସମିତି)
୭. ଡା. ବ୍ରଜମୋହନ ପାତ୍ର
୮. ଡା. ଶୀର୍ଷଚନ୍ଦ୍ର ଦାସ
୯. ଶ୍ରୀ ଶୁଭେନ୍ଦୁ ଆଚାର୍ଯ୍ୟ
୧୦. ଶ୍ରୀ ପୂର୍ଣ୍ଣଚନ୍ଦ୍ର ବେହେରା
୧୧. ଶ୍ରୀ ବାଦଲ ସେନାପତି
୧୨. ଅଧକ୍ଷ ଗ୍ରାମ୍ୟ ଉଚ୍ଚଶିକ୍ଷା ପ୍ରତିଷ୍ଠାନ, ଭୋଗରାଇ
୧୩. ଅଧକ୍ଷ କମର୍ଦ୍ଧା ମହାବିଦ୍ୟାଳୟ, କମର୍ଦ୍ଧା
୧୪. ଅଧକ୍ଷ, ଦୀନକୃଷ୍ଣ ମହାବିଦ୍ୟାଳୟ, ଜଳେଶ୍ୱର
୧୫. ଅଧକ୍ଷ, ଭୋଗରାଇ ଶ୍ୟାମସୁନ୍ଦର ସଂସ୍କୃତ ମହାବିଦ୍ୟାଳୟ
୧୬. ଭୋଗରାଇ ନିର୍ବାଚନ ମଣ୍ଡଳୀର ସମସ୍ତ ମାଧମିକ ସ୍କୁଲର ପ୍ରଧାନ ଶିକ୍ଷକବୃନ୍ଦ

#### ୨. 'ଫକୀରମୋହନ ନଗର' ନିର୍ମାଣ ଉପସମିତି

୧. ଶ୍ରୀ ନଗେନ୍ଦ୍ର ନାଥ ପାତ୍ର (ଆବାହକ)
୨. ଶ୍ରୀ ଶୈଳେଶ କୁମାର ପ୍ରଧାନ
୩. ଶ୍ରୀ ଦେବବ୍ରତ ପାତ୍ର
୪. ଶ୍ରୀ ସୁଶାନ୍ତ କୁମାର ବେହେରା
୫. ଶ୍ରୀ ନରେନ୍ଦ୍ର ପଟ୍ଟାୟତ
୬. ଶ୍ରୀ ଗୋବିନ୍ଦ ପ୍ରସାଦ ଦାସ
୭. ଶ୍ରୀ ଭଗବାନ ଚନ୍ଦ୍ର କୁଣ୍ଡୁ
୮. ଶ୍ରୀ ହୀରାଚାନ୍ଦ ଦାସ
୯. ଶ୍ରୀ ଗୁଣାକର ମାଝୀ
୧୦. ଶ୍ରୀ ଖଗେନ୍ଦ୍ର ନାଥ ଚନ୍ଦ
୧୧. ପ୍ରଧାନ ଶିକ୍ଷକ, ଭୋଳାନାଥ ବିଦ୍ୟାପୀଠ
୧୨. ପ୍ରଧାନ ଶିକ୍ଷକ, ସୀମାନ୍ତ ବିଦ୍ୟାନିକେତନ
୧୩. ଅଧକ୍ଷ, ଚନ୍ଦନେଶ୍ୱର ମହାବିଦ୍ୟାଳୟ

#### ୩. ଜଳେଶ୍ୱରଠାରୁ 'ଫକୀରମୋହନ ନଗର' ପର୍ଯ୍ୟନ୍ତ ସାଜସଜ୍ଜା ଉପସମିତି

୧. ଶ୍ରୀ ଗୌରଗୋପାଳ ଦାସ (ଆବାହକ)
୨. ଶ୍ରୀ ବାଣୀଦାସ ମହାପାତ୍ର
୩. ଶ୍ରୀ ଭୁବନାନନ୍ଦ ଦାସ
୪. ଶ୍ରୀ ଆଶିଷ କୁମାର ମହାନ୍ତି
୫. ଶ୍ରୀ ସୁଶ୍ରୀପଦ ପଣ୍ଡା
୬. ଶ୍ରୀମତୀ ଲକ୍ଷ୍ମୀପ୍ରିୟା ପରିଡ଼ା
୭. ଶ୍ରୀ ପ୍ରଦୀପ କୁମାର ବେହେରା

## ୪. ଅତିଥି ଅଭ୍ୟର୍ଥନା ଉପସମିତି

୧. ଶ୍ରୀ ପ୍ରଦୀପ କୁମାର ବେହେରା (ଆବାହକ)
୨. ଶ୍ରୀ କାଳୀକୁମାର ମଣ୍ଡଳ
୩. ଶ୍ରୀ ଧୀରେନ୍ଦ୍ର ପଟ୍ଟାୟତ
୪. ଶ୍ରୀ ଲକ୍ଷ୍ମୀକାନ୍ତ ମହାନ୍ତି
୫. ଶ୍ରୀ ନିତ୍ୟାନନ୍ଦ ବେହେରା
୬. ଶ୍ରୀ ସୁନୀଲ କୁମାର କର
୭. ଶ୍ରୀ ଅରୁଣ କୁମାର ମହାନ୍ତି
୮. ଅଧ୍ୟାପକ ମଧୁସୂଦନ ଦାସ
୯. ଶ୍ରୀ ରାଜକୁମାର ଦାସ
୧୦. ଶ୍ରୀ ଉମାକାନ୍ତ କର
୧୧. ଶ୍ରୀ ଲକ୍ଷ୍ମୀଧର ଦେ
୧୨. ଶ୍ରୀ ଦିବାକର ସେଣ
୧୩. ଶ୍ରୀ ଗୋପବନ୍ଧୁ ମହାପାତ୍ର
୧୪. ଶ୍ରୀ ଆଶିଷ କୁମାର ଦାସ
୧୫. ଶ୍ରୀ ଗିରୀଶ ଚନ୍ଦ୍ର ଦତ୍ତ
୧୬. ଶ୍ରୀ ହରେକୃଷ୍ଣ ଦେ
୧୭. ଶ୍ରୀ ଦୀପକ କୁମାର ଜେନା
୧୮. ଶ୍ରୀ ନିରଞ୍ଜନ ମହାନ୍ତି
୧୯. ଶ୍ରୀ ଅଶୋକ କୁମାର ମହାପାତ୍ର
୨୦. ଶ୍ରୀ ବିକ୍ରମ କେଶରୀ ଚାନ୍ଦ
୨୧. ଶ୍ରୀ ବିକ୍ରମ ବେହେରା
(ସଭାପତି, ଛାତ୍ର ସଂସଦ, ଗ୍ରାମ୍ୟ ଉଚ୍ଚ ପ୍ରତିଷ୍ଠାନ, ଭୋଗରାଇ)
୨୨. ଶ୍ରୀ ସୁଶାନ୍ତ ପାଳ
(ସଭାପତି, ଛାତ୍ର ସଂସଦ, କମର୍ଦ୍ଧା ମହାବିଦ୍ୟାଳୟ)

## ୫. ମହିଳା ପ୍ରତିନିଧି ଅଭ୍ୟର୍ଥନା ଉପସମିତି

୧. ମମତା ଦାସ, (ଆବାହିକା)
(ଉପାଧ୍ୟକ୍ଷା, ଭୋଗରାଇ ପଞ୍ଚାୟତ ସମିତି)
୨. ଛବିରାଣୀ ଗିରି
୩. କାମିନୀବାଳା ପାତ୍ର
୪. ମଣିମାଳା ଘଡ଼ାଇ
୫. ଦମୟନ୍ତୀ ସାହୁ
୬. ବୀଣାପାଣି ଦେ
୭. ଶ୍ରୀମତୀ ପଟ୍ଟାୟତ
୮. ଶ୍ରୀମା ଦଳାଇ
୯. ସୁକାନ୍ତି ଦାସ
୧୦. ପଦ୍ମଜା ଆଚାର୍ଯ୍ୟ
୧୧. ବନଲତା ପଣ୍ଡା
୧୨. ରେବତୀ ପ୍ରଧାନ
୧୩. ଭାରତୀ ନାୟକ
୧୪. ବିଳାସିନୀ ଜେନା
୧୫. ଇନ୍ଦିରା ଚାନ୍ଦ
୧୬. ମଞ୍ଜୁଲତା ପାତ୍ର

## ୬. ଖାଦ୍ୟ ଉପସମିତି

୧. ଶ୍ରୀ ଗଣପତି ଗିରି (ଆବାହକ)
୨. ଅଧ୍ୟାପକ ଶୈଳେଶ ଚନ୍ଦ୍ର ପ୍ରଧାନ
୩. ଶ୍ରୀ ତପନ କୁମାର ପଣ୍ଡା
୪. ଶ୍ରୀ ସନ୍ତୋଷ କୁମାର ଦାସ
୫. ଶ୍ରୀ ବ୍ରଜେନ୍ଦ୍ର ନାଥ ମହାନ୍ତି
୬. ଶ୍ରୀ ରମେଶ ଚନ୍ଦ୍ର କର
୭. ଶ୍ରୀ ମୁରଲୀ ମୋହନ ପଟ୍ଟନାୟକ
୮. ଶ୍ରୀ ଗୋପାଳ ପାତ୍ର
୯. ଶ୍ରୀ ପ୍ରତାପ କୁମାର ସାଁ
୧୦. ଶ୍ରୀ ସୁଖେନ୍ଦୁ ବାରିକ
୧୧. ଶ୍ରୀ ରବୀନ୍ଦ୍ର ମାଝୀ
୧୨. ଶ୍ରୀ ରମେଶ ଚନ୍ଦ୍ର ଦାସ
୧୩. ଶ୍ରୀ କାଳୀଚରଣ ପ୍ରମାଣିକ
୧୪. ଶ୍ରୀ ନିହାର ରଂଜନ ପାତ୍ର
୧୫. ଶ୍ରୀ ଅରୁଣ କୁମାର ମହାନ୍ତି
୧୬. ଶ୍ରୀ ଧରଣୀଧର ସେନାପତି
୧୭. ଶ୍ରୀ ହେମନ୍ତ କୁମାର ପ୍ରଧାନ
୧୮. ଶ୍ରୀ ଲକ୍ଷ୍ମୀକାନ୍ତ ଘଡ଼ାଇ

## ୭. ପ୍ରଚାର ଉପସମିତି

୧. ଶ୍ରୀ ପଙ୍କଜାକ୍ଷ ପଣ୍ଡା (ଆବାହକ)
୨. ଶ୍ରୀ ଅନନ୍ତ କୁମାର ଭଂଜ
୩. ଶ୍ରୀ ଅବନୀ କୁମାର ଚାନ୍ଦ
୪. ଶ୍ରୀ ସତ୍ୟବ୍ରତ ପ୍ରଧାନ
୫. ଶ୍ରୀ ପ୍ରଦୀପ ନାୟକ
୬. ଶ୍ରୀ ପ୍ରଦୀପ ଦାସ
୭. ଶ୍ରୀ ସୁବାସ ଦାସ
୮. ଶ୍ରୀ ଗଣେଷ ବେହେରା
୯. ଶ୍ରୀ ଅଶୋକ କୁମାର ଦାସ
୧୦. ଶ୍ରୀ ସନ୍ତୋଷ କୁମାର ଦାସ

## ୮. ସାଂସ୍କୃତିକ ଉପସମିତି

୧. ଶ୍ରୀ ସୁଶ୍ରୀପଦ ପଣ୍ଡା (ଆବାହକ)
୨. ଶ୍ରୀ ରମାକାନ୍ତ କରଣ
୩. ଶ୍ରୀ ହରିଚରଣ ଜେନା
୪. ଶ୍ରୀ ବିଜୟ କୁମାର ଦତ୍ତ
୫. ଶ୍ରୀ ବଂଶୀଧର ସାହୁ
୬. ଶ୍ରୀ ବିଜୟକୃଷ୍ଣ ଦାସ
୭. ଶ୍ରୀ ମହେଶ୍ୱର ମିଶ୍ର
୮. ଶ୍ରୀ କମଳ କୁମାର ପଟ୍ଟନାୟକ
୯. ଶ୍ରୀ ପ୍ରବୀର କୁମାର ଗିରି
୧୦. ସେକ୍ ମଜିଦ

## ୯. ଅଭ୍ୟର୍ଥନା ଉପସମିତି, ବାଲେଶ୍ୱର

୧. ଶ୍ରୀ ଶରତ ଚନ୍ଦ୍ର ଦାଶ (ଆବାହକ)
୨. ଡଃ ପ୍ରହ୍ଲାଦ ଚରଣ ମହାନ୍ତି
୩. ଶ୍ରୀ କାମିନୀକାନ୍ତ ମହାନ୍ତି
୪. ଶ୍ରୀ ପଞ୍ଚାନନ ଦାଶ
୫. ଶ୍ରୀ ମହେନ୍ଦ୍ର ପ୍ରସାଦ ଧଳ
୬. ଶ୍ରୀ ବ୍ରହ୍ମନାଥ ରଥ
୬. ଶ୍ରୀ ହେମେନ୍ଦ୍ର ମହାପାତ୍ର
୭. ଶ୍ରୀ ଗୌରୀ ରାଉତ
୮. ଶ୍ରୀ କାଳୀପଦ ପଣ୍ଡା
୯. ଶ୍ରୀ ଅନିଲ ମହାପାତ୍ର
୧୦. ଶ୍ରୀ ଯଯାତି ଦାସ
୧୧. ଶ୍ରୀ ବିଶ୍ୱଜିତ୍ ଦାସ
୧୨. ଶ୍ରୀ ମୃତ୍ୟୁଞ୍ଜୟ ପ୍ରଧାନ
୧୩. ଶ୍ରୀମତୀ ସିନ୍ଧୁ ସେନ

## ୧୦. ଅଭ୍ୟର୍ଥନା ଉପସମିତି, ଜଳେଶ୍ୱର

୧. ଡ. ଶ୍ରୀକାନ୍ତ ଚରଣ ପାତ୍ର
୨. ଶ୍ରୀ ହିମାଂଶୁ ନନ୍ଦୀ
୩. ଶ୍ରୀ ଚିନ୍ମୟ କୁମାର ଦାସ
୪. ଶ୍ରୀ ଗୌରଗୋପାଳ ଦାସ
୫. ଶ୍ରୀ ବାଣୀଦାସ ମହାପାତ୍ର
୬. ଶ୍ରୀ ବଳରାମ ସାହୁ

**RAMESHWAR THAKUR**
Governor of Orissa




Raj Bhavan
Bhubaneswar-751 008
January 24,2005



# MESSAGE

I am happy to know that the 101st Annual Session of Utkal Sammilani is being organized in Chandaneswar, Balasore on February 6 and 7, 2005.

This Sammilani is hundred years old and during its illustrious life span, has been associated with a number of issues which in a way determined the fate of the State and its people in pre-independence period. Now the need of the hour for such a historic organisation is to take up burning issues which will improve the standard of living of the poor and downtrodden.

I wish the endeavour every success.

Rameshwar Thakur

(Rameshwar Thakur)

**ଶ୍ରୀ ମହେଶ୍ୱର ମହାନ୍ତି**
ବାଚସ୍ପତି,
ଓଡ଼ିଶା ବିଧାନ ସଭା




ଦୂରଭାଷ
କାର୍ଯ୍ୟାଳୟ:(୦୬୭୪) ୨୫୩୬୬୫୫
୨୫୩୬୯୦୪
ଫ୍ୟାକ୍ସ : ୨୫୩୬୮୨୬
ଆବାସ : ୨୪୧୪୨୩୨
(୦୬୭୫୨) ୨୨୩୦୬୯, ୨୨୬୭୬୯

ନଂ..................

ତାରିଖ : ..................



# ଉତ୍କଳ ସମ୍ମିଳନୀର ଆଭିମୁଖ୍ୟ ସଫଳ ହେଉ

ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନପାଇଁ ଏକାକୀ ସଂଗ୍ରାମ କରି ସଫଳ ହୋଇଥିବା, ସ୍ୱାଧୀନତା ସଂଗ୍ରାମ ପାଇଁ ବହୁ ମୂଲ୍ୟ ଅବଦାନ ଦେଇଥିବା ତଥା ସ୍ୱାଧୀନତା ପରବର୍ତ୍ତୀ ସମୟରେ ଭାଷା-ସାହିତ୍ୟର ସୁରକ୍ଷା ସହିତ ବୃହତ୍ତର ଓଡ଼ିଶାର ଗଠନର ସ୍ୱପ୍ନ ଦେଖୁଥିବା ଉତ୍କଳ ସମ୍ମିଳନୀର ୧୦୧ତମ ବାର୍ଷିକ ସମ୍ମିଳନୀ ବାଲେଶ୍ୱର ଜିଲ୍ଲାର ଭୋଗରାଇଠାରେ ଅନୁଷ୍ଠିତ ହେବା ଏକ ଖୁସିର ବିଷୟ ।

ଓଡ଼ିଆ ସାହିତ୍ୟକୁ ବିପର୍ଯ୍ୟୟରୁ ରକ୍ଷା କରିଥିବା ବ୍ୟାସକବି ଫକୀରମୋହନ ସେନାପତିଙ୍କ ଆବାହକତ୍ୱରେ ୧୯୧୪ ମସିହାରେ ଉତ୍କଳ ସମ୍ମିଳନୀ ବାଲେଶ୍ୱର ଜିଲ୍ଲାରେ ଅନୁଷ୍ଠିତ ହୋଇଥିଲା । ୮୯ ବର୍ଷ ପରେ ସେହି ସମ୍ମିଳନୀ ତୃତୀୟଥର ପାଇଁ ଏହି ଜିଲ୍ଲାରେ ଅନୁଷ୍ଠିତ ହେଉଛି । ଏହା ବାଲେଶ୍ୱରବାସୀଙ୍କ ପାଇଁ ସ୍ୱତନ୍ତ୍ରଭାବେ ଏକ ଗର୍ବର ବିଷୟ । ବିଗତ ଦିନର ସେହି ଅଧିବେଶନରେ ବ୍ୟାସକବିଙ୍କ ବ୍ୟତୀତ କୁଳବୃଦ୍ଧ ମଧୁସୂଦନ ଏବଂ ଉତ୍କଳମଣି ଗୋପବନ୍ଧୁ ଦାସ ମଧ୍ୟ ଥିଲେ । ସବୁଠାରୁ ଗୁରୁତ୍ୱପୂର୍ଣ୍ଣ କଥା ଯେ, ସେହି ସମ୍ମିଳନୀର ଆବାହନୀ ସଂଗୀତ ଲେଖିଥିଲେ କାଂତକବି ଲକ୍ଷ୍ମୀକାନ୍ତ ମହାପାତ୍ର । ସେହି ଗୀତଟି ହେଉଛି 'ବନ୍ଦେ ଉତ୍କଳ ଜନନୀ'... ଯାହାକି ବେସରକାରୀ ଭାବେ ଓଡ଼ିଆ ଜାତୀୟ ସଂଗୀତ ବୋଲି ପରିଗଣିତ ହୋଇ ଆସୁଛି । ଏହାଛଡ଼ା ସେହି ଅଧିବେଶନରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ପାଇଁ ଓଡ଼ିଶାର ସ୍ୱତନ୍ତ୍ରତା, ଚାଲିଚଳଣ, ଐତିହ୍ୟ, ଭାଷା ସାହିତ୍ୟ ସମ୍ଭାରକୁ ଆଧାର କରି ଯେଉଁ ଭିତ୍ତିଭୂମି ପ୍ରତିଷ୍ଠା କରାଯାଇଥିଲା, ପରବର୍ତ୍ତୀ ସମୟରେ ଭାଷାଭିତ୍ତିକ ରାଜ୍ୟ ଗଠନ ପାଇଁ ତାହା ବେଶ୍ ସହାୟକ ହୋଇଥିଲା ।

ବହୁ ଉତ୍‌ଥାନ-ପତନକୁ ସାମ୍ନା କରିଥିବା ଉତ୍କଳ ସମ୍ମିଳନୀର କାର୍ଯ୍ୟ ବନ୍ଦ ହୋଇଯାଇନାହିଁ । ଆଗମୀ ଦିନରେ ଏହାକୁ ବହୁତ କାର୍ଯ୍ୟ କରିବାକୁ ପଡ଼ିବ । ସେଗୁଡ଼ିକ ମଧ୍ୟରେ ବିଚ୍ଛିନ୍ନାଞ୍ଚଳର ମିଶ୍ରଣ ଏବଂ ଓଡ଼ିଆ ଭାଷା-ସାହିତ୍ୟର ସମୃଦ୍ଧିକରଣ ଅନ୍ତର୍ଭୁକ୍ତ । ଯେତେଦିନ ପର୍ଯ୍ୟନ୍ତ ଓଡ଼ିଆ ଭାଷା ରହିଥିବ, ସେତେଦିନ ପର୍ଯ୍ୟନ୍ତ ଓଡ଼ିଶା ରାଜ୍ୟ ରହିଥିବ । ସମସ୍ତ ଓଡ଼ିଆ ଏହାକୁ ହୃଦୟଙ୍ଗମ କରି ହାତ ସହିତ ହାତ ମିଳାଇଲେ ଉତ୍କଳ ସମ୍ମିଳନୀର ଆଭିମୁଖ୍ୟ ସଫଳ ହେବ । ଦେଶର ଅନ୍ୟ ପ୍ରାନ୍ତରେ ତଥା ବିଦେଶରେ ରହୁଥିବା ଓଡ଼ିଆମାନେ ଏଥିପାଇଁ ଗର୍ବ ଅନୁଭବ କରିବେ ।

ଓଡ଼ିଶାର ସ୍ୱାଭିମାନର ପ୍ରତୀକ ଏହି ସଂଗଠନ 'ଉତ୍କଳ ସମ୍ମିଳନୀ' ସୁଦୃଢ଼, ସୁସଂଗଠିତ ଏବଂ ଦୀର୍ଘସ୍ଥାୟୀ ହେଉ-ଏହାହିଁ ମୋର ଶୁଭେଚ୍ଛା ଓ ଶୁଭ କାମନା ।

(ମହେଶ୍ୱର ମହାନ୍ତି)

**ନବୀନ ପଟ୍ଟନାୟକ**
ମୁଖ୍ୟମନ୍ତ୍ରୀ, ଓଡ଼ିଶା


ଓଡ଼ିଶା ସରକାର

ନଂ............
ଭୁବନେଶ୍ୱର
ତା ୨୫.୧.୦୫



# ବାର୍ତ୍ତା

ବାଲେଶ୍ୱର ଜିଲ୍ଲାର ଚନ୍ଦନେଶ୍ୱରଠାରେ ଫେବୃଆରୀ ୬ ଓ ୭ ତାରିଖ ଦୁଇ ଦିନ ଧରି ଉତ୍କଳ ସମ୍ମିଳନୀର ୧୦୧ତମ ବାର୍ଷିକ ଅଧିବେଶନ ଅନୁଷ୍ଠିତ ହେଉଥିବା ଏବଂ ଏହି ଅବସରରେ ଏକ ସ୍ମରଣିକା ପ୍ରକାଶିତ ହେଉଥିବା ଜାଣି ମୁଁ ଆନନ୍ଦିତ ।

ଉତ୍କଳ ସମ୍ମିଳନୀ ଓ ଏହାର ପ୍ରାତଃ ସ୍ମରଣୀୟ ନେତୃବୃନ୍ଦଙ୍କ ନିରନ୍ତର ଉଦ୍ୟମ ଫଳରେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠିତ ହୋଇପାରିଛି । ଓଡ଼ିଶା ବାହାରେ ଓଡ଼ିଆ ଭାଷା ଓ ସଂସ୍କୃତିର ସୁରକ୍ଷା ଓ ପ୍ରସାର ଦିଗରେ ଉତ୍କଳ ସମ୍ମିଳନୀର ଉଦ୍ୟମ ଅନସ୍ୱୀକାର୍ଯ୍ୟ । ଓଡ଼ିଆ ଭାଷା ଓ ସାହିତ୍ୟର ବିକାଶରେ ବାଲେଶ୍ୱର ଜିଲ୍ଲାର ଅବଦାନ ଅବିସ୍ମରଣୀୟ । ବ୍ୟାସକବି ଫକୀରମୋହନ ସେନାପତିଙ୍କ ବଳିଷ୍ଠ ଲେଖନୀ ଓଡ଼ିଆ ଭାଷାର ସ୍ୱାତନ୍ତ୍ର୍ୟ ରକ୍ଷାରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲା । ଏହି ପରିପ୍ରେକ୍ଷୀରେ ବାଲେଶ୍ୱର ଜିଲ୍ଲାର ଉପାନ୍ତ ଅଞ୍ଚଳରେ ଉତ୍କଳ ସମ୍ମିଳନୀର ୧୦୧ତମ ଅଧିବେଶନ ଅନୁଷ୍ଠିତ ହେବା ବେଶ୍ ତାତ୍ପର୍ଯ୍ୟପୂର୍ଣ୍ଣ ।

ମୋର ବିଶ୍ୱାସ ଏହି ସମ୍ମିଳନୀ ଉପାନ୍ତ ଅଞ୍ଚଳରେ ଓ ବିଛିନ୍ନାଞ୍ଚଳରେ ଓଡ଼ିଆ ଭାଷା ଓ ସଂସ୍କୃତିର ସୁରକ୍ଷା ପାଇଁ ନିର୍ଦ୍ଦିଷ୍ଟ କାର୍ଯ୍ୟକ୍ରମ ଗ୍ରହଣରେ ସହାୟକ ହେବ ।

ଉତ୍କଳ ସମ୍ମିଳନୀର ୧୦୧ତମ ଅଧିବେଶନ ଅବସରରେ ସମ୍ମିଳନୀର ସଦସ୍ୟମାନଙ୍କୁ ଆନ୍ତରିକ ଶୁଭେଚ୍ଛା ଜଣାଇବା ସହିତ ସମ୍ମିଳନୀର ସଫଳତା କାମନା କରୁଛି ।

ନବୀନ ପଟ୍ଟନାୟକ
(ନବୀନ ପଟ୍ଟନାୟକ)

ଶ୍ରୀ ମନମୋହନ ସାମଲ
ମନ୍ତ୍ରୀ
ରାଜସ୍ୱ, ଖାଦ୍ୟ ଯୋଗାଣ ଓ ଖାଉଟି କଲ୍ୟାଣ,
ଓଡ଼ିଶା



ଦୂରଭାଷ
କାର୍ଯ୍ୟାଳୟ : ୨୫୩୬୯୧୬
୨୩୨୨୧୮୭
ଆବାସ : ୨୪୦୫୦୦୯
୨୪୦୩୫୫୪

ସଂଖ୍ୟା....../ମରାଖାଯୋଓଖାକ
ଭୁବନେଶ୍ୱର
ତାରିଖ : ୨୦.୦୧.୨୦୦୫



## ବାର୍ତ୍ତା

ଉତ୍କଳ ସମ୍ମିଳନୀର ୧୦୧ତମ ବାର୍ଷିକ ଅଧିବେଶନ ବାଲେଶ୍ୱର ଜିଲ୍ଲାର ସୀମାନ୍ତ ଅଂଚଳ ଚନ୍ଦନେଶ୍ୱର (ସାହାବାଜିପୁର) ଠାରେ ଚଳିତ ବର୍ଷ ଫେବୃଆରୀ ୬ ଓ ୭ ତାରିଖରେ ଅନୁଷ୍ଠିତ ହେଉଥିବା ଜାଣି ଖୁସି ହେଲି । ଏହି ଅବସରରେ ଏକ ଶୋଭନୀୟ ସ୍ମରଣିକା ପ୍ରକାଶ ପାଉଥିବା ଆହୁରି ଆନଂଦର କଥା ।

ଉତ୍କଳ ସମ୍ମିଳନୀ ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତିର ସୁରକ୍ଷା ପାଇଁ ଦୀର୍ଘ ଏକ ଶତାବ୍ଦୀ ଧରି କାର୍ଯ୍ୟ କରି ଆସୁଛି । ୧୯୦୩ ମସିହା ଡିସେମ୍ବର ମାସରେ କଟକର ଇଦ୍‌ଗା ପଡ଼ିଆରେ ଉତ୍କଳ ସମ୍ମିଳନୀର ପ୍ରଥମ ଅଧିବେଶନ ମୟୂରଭଂଜର ମହାରାଜା ଶ୍ରୀରାମଚନ୍ଦ୍ର ଭଂଜଦେଓଙ୍କ ପୌରୋହିତ୍ୟରେ ଅନୁଷ୍ଠିତ ହୋଇଥିଲା । ଏହି ସମ୍ମିଳନୀ ମଞ୍ଚରୁ କୁଳବୃଦ୍ଧ ମଧୁସୂଦନ ଦାସ ଆବେଗଭରା କଣ୍ଠରେ ଗାଇ ଉଠିଥିଲେ-

''ଏହି ସମ୍ମିଳନୀ ଜାତି-ପ୍ରାଣସିଂଧୁ କୋଟି ପ୍ରାଣବିଂଦୁ ଧରେ,
ତୋର ପ୍ରାଣବିଂଦୁ ମିଶାଇ ଦେ ଭାଇ ଡେଇଁପଡ଼ି ସିଂଧୁ ନୀରେ ।''

ଓଡ଼ିଶା ଇତିହାସରେ ଏହା ଥିଲା ଏକ ଅଭୂତପୂର୍ବ ଘଟଣା । ଉତ୍କଳ ସମ୍ମିଳନୀର ଐକାନ୍ତିକ ପ୍ରଚେଷ୍ଟା ଫଳରେ ୧୯୩୬ ମସିହା ଏପ୍ରିଲ ମାସ ପହିଲାରେ ଓଡ଼ିଶା ଏକ ସ୍ୱତନ୍ତ୍ର ପ୍ରଦେଶ ଭାବରେ ଉଭାହେଲା । ଓଡ଼ିଶା ଭାରତବର୍ଷରେ ସର୍ବପ୍ରଥମ ଭାଷାଭିତ୍ତିକ ପ୍ରଦେଶର ମଧ୍ୟ ମର୍ଯ୍ୟାଦା ଲାଭକଲା । ଉତ୍କଳ ସମ୍ମିଳନୀ ସହ ସଂପୃକ୍ତ ଓଡ଼ିଶାର ବରପୁତ୍ରଗଣ-ଉତ୍କଳଗୌରବ ମଧୁସୂଦନ ଦାସ, ଉତ୍କଳମଣି ଗୋପବଂଧୁ ଦାସ, ବ୍ୟାସକବି ଫକୀରମୋହନ ସେନାପତି, ମୟୂରଭଂଜର ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେଓ, ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ, ଜୟପୁର ରାଜା ବିକ୍ରମଦେବ ବର୍ମା, ବାଲେଶ୍ୱରର ରାଜା ବୈକୁଣ୍ଠନାଥ ଦେ, ବାମଣ୍ଡାର ରାଜା ସାର୍ ବାସୁଦେବ ସୁଢଳଦେବ ପ୍ରମୁଖଙ୍କ ସ୍ମୃତି ପ୍ରତି ଗଭୀର ଶ୍ରଦ୍ଧାଞ୍ଜଳି ଜ୍ଞାପନ କରୁଛି ।

ଉତ୍କଳ ସମ୍ମିଳନୀର ୧୦୧ତମ ବାର୍ଷିକ ଅଧିବେଶନର ସଫଳତା ତଥା ଅନୁଷ୍ଠାନର ସର୍ବବିଧ କୁଶଳ କାମନା କରୁଛି ।

ମନମୋହନ ସାମଲ
(ମନମୋହନ ସାମଲ)

ବାଲେଶ୍ୱର
୩୦.୧.୦୫

# ବାର୍ତ୍ତା

ଉତ୍କଳ ସମ୍ମିଳନୀର ୧୦୧ତମ ବାର୍ଷିକ ଅଧିବେଶନ ଆଗାମୀ ଫେବୃଆରୀ ୬ ଓ ୭ ତାରିଖରେ ବାଲେଶ୍ୱର ଜିଲ୍ଲାର ଉତ୍ତର ସୀମାନ୍ତବର୍ତ୍ତୀ ଅଞ୍ଚଳ ଚନ୍ଦନେଶ୍ୱରଠାରେ ଅନୁଷ୍ଠିତ ହେଉଥିବା ଉତ୍ସାହପ୍ରଦ ଓ ଆନନ୍ଦର ବିଷୟ ।

ଓଡ଼ିଶା ରାଜ୍ୟର ଉତ୍ତର, ପୂର୍ବ ଓ ଦକ୍ଷିଣରେ ଥିବା ଅନ୍ୟ ରାଜ୍ୟଭୁକ୍ତ ଓଡ଼ିଆ ଅଞ୍ଚଳରେ ଓଡ଼ିଆ ଭାଷା ଓ ସଂସ୍କୃତିର ସୁରକ୍ଷାପାଇଁ ଉତ୍କଳ ସମ୍ମିଳନୀର ସକ୍ରିୟ ପଦକ୍ଷେପ ଓଡ଼ିଆମାନଙ୍କ ମନରେ ନୂତନ ଉନ୍ମାଦନା ଓ ଆଶାର ସଞ୍ଚାର କରିଛି ।

ଏହି ଅବସରରେ ଓଡ଼ିଆ ଅଧ୍ୟୁଷିତ ପୂର୍ବତନ କରଦରାଜ୍ୟ ଷଢ଼େଇକଳା ଓ ଖରସୁଆଁକୁ ଘୋର ଅନ୍ୟାୟ ଓ ପକ୍ଷପାତ ନିଷ୍ପତ୍ତି ଦ୍ୱାରା ୧୯୫୫ ମସିହାରେ ବିହାର ରାଜ୍ୟ ସଙ୍ଗେ ମିଶ୍ରଣ କରି ତତ୍କାଳୀନ କେନ୍ଦ୍ର ସରକାର ଓଡ଼ିଶା ଉପରେ ଯେଉଁ ଛୁରିକାଘାତ କରିଥିଲେ, ତାହା ବିରୁଦ୍ଧରେ ଓଡ଼ିଆମାନଙ୍କ ସ୍ୱତଃସ୍ଫୁର୍ତ୍ତ ଓ ଅଭୂତପୂର୍ବ ଜନଆନ୍ଦୋଳନ ତେଜୀୟାନ ହୋଇଥିଲା । ୧୯୫୬ ମସିହା ଜାନୁଆରୀ ମାସରେ କଟକ 'ସହିଦ୍ ଭବନ'ରେ ଉତ୍କଳ ସମ୍ମିଳନୀର ଏକ ଐତିହାସିକ ଗୁରୁତ୍ୱପୂର୍ଣ୍ଣ ବିଶେଷ ଅଧିବେଶନ ତତ୍କାଳୀନ ସଭାପତି ବଲାଙ୍ଗୀର ପାଟଣାର ପୂର୍ବତନ ମହାରାଜା ଓ ସାଂସଦ ସ୍ୱର୍ଗତ ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ହୋଇ ଏକ ଗୁରୁତ୍ୱପୂର୍ଣ୍ଣ ପ୍ରସ୍ତାବ ଗୃହୀତ ହୋଇଥିଲା ଯେ ସେହି ୨ଟି ପୂର୍ବତନ କରଦ ରାଜ୍ୟରେ ଗଣଭୋଟ ଦ୍ୱାରା ଓଡ଼ିଶା କିମ୍ବା ବିହାର ସଙ୍ଗେ ସେମାନଙ୍କର ମିଶ୍ରଣ ହେବ ତାହା ନିଷ୍ପତ୍ତି ହେଉ । ଏହି ପ୍ରସ୍ତାବ କଟକରେ ଅନୁଷ୍ଠିତ ବିଶାଳ ଜନସଭାରେ ଅନୁମୋଦିତ ହୋଇ କେନ୍ଦ୍ର ସରକାରଙ୍କୁ ପ୍ରଦତ୍ତ ହୋଇଥିଲା ।

ପୁଣି ସ୍ୱତନ୍ତ୍ର ଜନକଂଗ୍ରେସ ମିଳିତ ମନ୍ତ୍ରୀମଣ୍ଡଳ ସମୟରେ ଓଡ଼ିଶା ବିଧାନସଭାରେ ଗୃହୀତ ସର୍ବସମ୍ମତ ପ୍ରସ୍ତାବ ଅନୁସାରେ ସେହି ପୂର୍ବତନ କରଦରାଜ୍ୟ ଓ ଓଡ଼ିଶାର ଦକ୍ଷିଣରେ ଥିବା କୁଟିଆ ଗ୍ରାମପୁଞ୍ଜ ଉପରେ ଆନ୍ଧ୍ରର ବେଆଇନ ଦାବି ବିରୁଦ୍ଧରେ ଓଡ଼ିଶା ସରକାର ସୁପ୍ରିମ କୋର୍ଟରେ ସାଂବିଧାନିକ ମାମଲା ଆଗତ କରିଥିଲେ । କିନ୍ତୁ ପରବର୍ତ୍ତୀ କଂଗ୍ରେସ ସରକାର ପ୍ରଥମୋକ୍ତ ଦାବିକୁ ପ୍ରତ୍ୟାହାର କରିନେଇଥିଲେ । ୨ୟ ଦାବି ଏବେ ମଧ୍ୟ ବିଚାରାଧୀନ ଅଛି । ଓଡ଼ିଶା ସରକାର ପ୍ରଥମ ଦାବିକୁ ପୁନରାୟ ସୁପ୍ରିମ କୋର୍ଟରେ ଆଗତ କରିବା ଦିଗରେ କୌଣସି ଅନ୍ତରାୟ ନାହିଁ । ଏଥିପାଇଁ ଉତ୍କଳ ସମ୍ମିଳନୀ ଉପଯୁକ୍ତ ପଦକ୍ଷେପ ନେବା ଉଚିତ ।

ଏହି ବାର୍ଷିକ ଅଧିବେଶନର ସାଫଲ୍ୟ କାମନା କରିବା ସଙ୍ଗେ ସଙ୍ଗେ ଆୟୋଜକ ଏବଂ କର୍ମକର୍ତ୍ତାମାନଙ୍କୁ ଆନ୍ତରିକ ଅଭିନନ୍ଦନ ଜଣାଉଛି ।

**ଶ୍ରୀ ହରପ୍ରସାଦ ମହାପାତ୍ର,** ତର୍କାଳଂକାର
ବରିଷ୍ଠ ଆଇନଜୀବୀ ଏବଂ ଓଡ଼ିଶାର ପୂର୍ବତନ ଆଇନ,
ସ୍ୱାସ୍ଥ୍ୟ, ଜଙ୍ଗଲ, ଗୋଷ୍ଠୀ ଉନ୍ନୟନ ଓ ପଞ୍ଚାୟତରାଜ ମନ୍ତ୍ରୀ

# ସୂଚୀ



ବ୍ୟାସକବି ଫକୀରମୋହନଙ୍କ ସମାଧି ସ୍ଥଳ - ବାଲେଶ୍ୱର ଶାନ୍ତିଘାଟ



ଓଡ଼ିଶାର ପ୍ରସିଦ୍ଧ ଶୈବପୀଠ ଚନ୍ଦନେଶ୍ୱର ମହାଦେବଙ୍କ ମନ୍ଦିର

ଫଟୋ : ସତ୍ୟପ୍ରିୟ ମହାନ୍ତି

# ଜାତୀୟ ଜୀବନ

୰ ମଧୁସୂଦନ ଦାସ, ସି.ଆଇ.ଇ., ଏମ୍.ବି.ଏଲ୍.

ଆମ୍ଭମାନଙ୍କର ଜାତୀୟ ଜୀବନ ଅଛି କି ? ଏକ ଜାତିର ଅନ୍ୟ ଜାତି ସଙ୍ଗେ ସମ୍ପର୍କ ନିମନ୍ତେ ଜାତୀୟ ଜୀବନ ଆବଶ୍ୟକ । ଆମ୍ଭମାନଙ୍କ ମଧ୍ୟରେ ଯଉଁ ଜୀବନ ପରିଲକ୍ଷିତ ହୁଏ, ତାହା ବ୍ୟକ୍ତିଗତ ଜୀବନ । ବ୍ୟକ୍ତଗତ ଜୀବନ କ୍ଷଣସ୍ଥାୟୀ,ତାହା ଦିନେ ଶ୍ମଶାନରେ ଶେଷ ହେବ । ଶରୀର ଅଭ୍ୟନ୍ତରରେ ଯେଉଁ ଆତ୍ମା ବିଦ୍ୟମାନ, ତାହା ଈଶ୍ୱରଙ୍କ ନିକଟରେ ପହଞ୍ଚିବ । ତଳେ ପାର୍ଥିବ ଜୀବନର ଆକର୍ଷଣୀ ଶକ୍ତି, ଅର୍ଥାତ୍ ମୋର ସ୍ତ୍ରୀ, ମୋର ଅପତ୍ୟ, ମୋର ସମ୍ପତ୍ତି, ଏହି ପାର୍ଥିବ ଭାଗଗୁଡ଼ିକ ମୋତେ ପ୍ରତିମୁହୂର୍ତ୍ତରେ ତଳକୁ ଓଟାରୁ ଅଛି । ଉପରେ ସ୍ୱର୍ଗୀୟ ଜୀବନର ଆକର୍ଷଣୀ ଶକ୍ତି, ଅର୍ଥାତ୍ ମୋର ପରିତ୍ରାଣ, ମୋର ଅନନ୍ତ ବିଶ୍ରାମ ସ୍ଥାନ, ମୋତେ ସର୍ବଦା ଉପରକୁ ଟାଣୁଅଛି । ଚତୁଃପାର୍ଶ୍ୱରେ ଅନ୍ୟାନ୍ୟ ଜାତି ଓ ସମାଜ ବିଦ୍ୟମାନ । ସେହି ଜାତି ଓ ସମାଜମାନଙ୍କ ସଂଗେ ଜୀବନ ମିଳାଇ ଆଳାପ କରିବା ଆମ୍ଭମାନଙ୍କର ଗୋଟିଏ ପ୍ରାଧାନ କର୍ମ । ଜାତୀୟ ଜୀବନ ପ୍ରତିଷ୍ଠିତ ହେଲେ ଜାତି ଜାତି ମଧ୍ୟରେ ସଦ୍ଭାବ ହେବ । ଜାତି ଜାତି ମଧ୍ୟରେ ଯେଉଁ ସଦ୍ଭାବ ତହିଁର ବିଚ୍ଛେଦ ହେବନାହିଁ । କିନ୍ତୁ ବ୍ୟକ୍ତିଗତ ସଦ୍ଭାବ ଚିରସ୍ଥାୟୀ ନୁହେଁ । ତାହା କ୍ଷଣଭଙ୍ଗୁର । କେହି କେହି ଏପରି ବିଚାର କରନ୍ତି ଯେ  ଜାତୀୟ ସଦ୍ଭାବ ହେଲେ ବ୍ୟକ୍ତିଗତ ଅସଦ୍ଭାବ ରହିବ ନାହିଁ । ଏପରି ବିଚାର ଭ୍ରାନ୍ତିମୂଳକ । ଜାତୀୟ ଜୀବନ ପ୍ରତିଷ୍ଠିତ ହେଲେ ସୁଦ୍ଧା, ଜାତି ମଧ୍ୟରେ ବ୍ୟକ୍ତିଗତ ବିବାଦ ସମୂଳେ ଲୋପ ପାଇବା ଅସମ୍ଭବ । ଏପରି କେହି ମନେ କରିବେ ନାହିଁ ଯେ ଉତ୍କଳରେ ଜାତୀୟ ଜୀବନ ପ୍ରତିଷ୍ଠିତ ହୋଇ ତହିଁର ମୂଳଦୁଆ ଦୃଢ଼ ହେଲେ ଆମ ଦେଶରେ ବ୍ୟକ୍ତିଗତ ବିବାଦ ଆଦୌ ରହିବ ନାହିଁ ଓ ଅଦାଲତ ଗୁଡ଼ିକ ଉଠିଯିବ । ବ୍ୟକ୍ତିଗତ ଜୀବନରେ ଅସଦ୍ଭାବ ଥିଲେ ସୁଦ୍ଧା ଜାତୀୟ ସଦ୍ଭାବରେ କିଛି ଅଭାବ ଘଟିବ ନାହିଁ । ମୁଁ କୌଣସି ଶିକ୍ଷିତ ଓ ପଦସ୍ଥ ଉତ୍କଳୀୟଙ୍କଠାରୁ ତଳଲିଖିତ ମର୍ମରେ ଚିଠି ପାଇଅଛି -

"ମୋ ସଙ୍ଗେ ଆପଣଙ୍କ ମନ ମିଳିଲା ନାହିଁ, ଅତଏବ ମୁଁ ସମ୍ମିଳନୀରେ କାର୍ଯ୍ୟ କରିପାରିବି ନାହିଁ ।" ଏଥିର କାରଣ ଆମ୍ଭମାନଙ୍କର ଜାତୀୟ ଜୀବନର ଅଭାବ । ଜାତୀୟ ଜୀବନ ଗଠିତ ହେଲେ ବ୍ୟକ୍ତିଗତ ଭାବରେ ଅସଦ୍ଭାବ ଥିଲେ ସୁଦ୍ଧା ଜାତୀୟ ଅନୁଷ୍ଠାନରେ ସମସ୍ତେ ମିଳିମିଶି କାର୍ଯ୍ୟ କରିପାରିବା, ଏଥିରେ ସନ୍ଦେହ ନାହିଁ । ଏଠାରେ ଆପଣମାନଙ୍କୁ ଗୋଟିଏ ଉଦାହରଣ ଦେବାକୁ ମୋର ଇଚ୍ଛା ହେଉଅଛି :-

ପ୍ରଥମେ ଆକଶରୁ କ୍ଷୁଦ୍ର ଜଳବିନ୍ଦୁ ପୃଥିବୀ ଉପରେ ପଡ଼େ । ତତ୍ପରେ ଜଳବିନ୍ଦୁ ଗୁଡ଼ିକ ଏକତ୍ର ହୋଇ ଗୋଟିଏ ଜଳଧାରା ହୋଇ ତଳକୁ ବହିଯାଏ । ଏହିପରି କେତେଗୁଡ଼ିଏ ଜଳଧାରା ମିଶି ଗୋଟିଏ ନାଳରେ ପରିଣତ ହୁଏ । ଏହିପରି କେତେଗୁଡ଼ିଏ ନାଳ ନଦୀରେ ପରିଣତ ହୋଇ ତଳକୁ ବହିଯାଏ ଓ ଶେଷର ସମୁଦ୍ରରେ ଯାଇ ପଡ଼େ । ଆପଣମାନେ ଦେଖନ୍ତୁ, ସବୁ ସ୍ଥଳରେ ସବୁ ଅବସ୍ଥାରେ ଜଳ ନିଜର ଜାତୀୟ ଗୁଣକୁ ଧାରଣକରି ନିଜର ଜାତୀୟ ଜୀବନର ଟେକ ରଖିଅଛି । ଜଳ ଜାତୀୟ ଜୀବନର ଟେକ ରଖିଅଛି । ଜଳର  ଜାତୀୟ ଗୁଣ ନିମ୍ନଗତ । ବିନ୍ଦୁଏ ଜଳରେ ସେହି ଗୁଣ ବିଦ୍ୟମାନ ଓ ମହାସମୁଦ୍ରରେ ମଧ୍ୟ ଜଳ ନିଜର ଜାତୀୟ ଗୁଣକୁ ହରାଇ ପାରିନାହିଁ । ଆମ୍ଭ ସମସ୍ତଙ୍କର ସର୍ବଦା ମନେ ରଖିବା ଉଚିତ

ଯେ, ଆମ୍ଭମାନଙ୍କର ଜାତୀୟ ଜୀବନ ଅଛି । ସବୁ ଅବସ୍ଥାରେ, ସବୁ କାଳରେ, ସବୁ ସ୍ଥାନରେ ଆମ୍ଭେମାନେ ପ୍ରତ୍ୟେକ ଜାତୀୟ ଜୀବନର ଟେକ ରଖି କାର୍ଯ୍ୟ କରିବା ଏକାନ୍ତ ଆବଶ୍ୟକ । ଆମ୍ଭମାନଙ୍କ ମଧ୍ୟରୁ ଯେବେ କେହି ଭ୍ରମରେ ପଡ଼ିଥାନ୍ତି, ସେ ଭ୍ରମ ଅତିଶୀଘ୍ର ସଂଶୋଧନ କରିବା ନିତାନ୍ତ ଦରକାର ।

ଯେବେ କେହି ଜଣେ ଓଡ଼ିଆ ଜାତିକୁ ଗାଳିଦିଏ, ତାହାହେଲେ ତୁମ୍ଭମନରେ ରାଗ ହୁଏ କାହିଁକି ? ଏଥିର କାରଣ ନିରୂପଣ କରିବାକୁ କଲେ ସ୍ପଷ୍ଟ ଜଣାଯିବ ଯେ, ଏହା ଜାତୀୟ ଜୀବନର ଚିହ୍ନ । ଯେବେ ଜାତୀୟ ଜୀବନର ଚିହ୍ନ ଆମ୍ଭମାନଙ୍କ ମଧ୍ୟରେ ଅଛି, ତେବେ ଆମ୍ଭେମାନେ ପ୍ରତ୍ୟେକ, ଯେକୌଣସି କାର୍ଯ୍ୟକରୁ, ସେତେବେଳେ ନିଜ ନିଜକୁ ସର୍ବପ୍ରଥମେ ଏହି ପ୍ରଶ୍ନଟି ପଚାରିବା ଆବଶ୍ୟକ, "ମୋ କାର୍ଯ୍ୟଦ୍ୱାରା ମୋ ଜାତିର ନିନ୍ଦା ହେବ କି ନାହିଁ ? ମୁଁ ମିଥ୍ୟାବାଦୀ ହେଲେ କିମ୍ବା ଖୋସାମଦ୍ କଲେ ଏହି ନିନ୍ଦାରେ ମୋ ଜାତି ଭାଗୀ ହେବ" ଏହା ପ୍ରତ୍ୟେକ ବ୍ୟକ୍ତିର ବ୍ୟକ୍ତିର ବୁଝିବା ଆବଶ୍ୟକ । ମୋତେ ଯେବେ ଜଣେ କୁବାକ୍ୟ କହେ ତେବେ ମୁଁ ତହିଁର ପ୍ରତି ଉତ୍ତର ଦେଲେ ତଦ୍ୱାରା ମୋ ଜାତିର ଗୌରବ ବୃଦ୍ଧି ହେବ କି ନାହିଁ ? ଜାତିର ମୂଲ୍ୟ ବଢ଼ିଲେ ଜାତୀୟ ଲୋକେ ତହିଁର ସୁଫଳ ଭୋଗ କରିବେ, ଏଥିରେ ସନ୍ଦେହ ନାହିଁ । ଜାପାନୀଜାତିଙ୍କ ବିଷୟ ଆମ୍ଭମାନଙ୍କର ସଭାପତି ମହାଶୟ ତାହାଙ୍କର ବକ୍ତୃତାରେ କହିଛନ୍ତି । ଜାପାନୀ ଜାତିର ଉନ୍ନତିର ମୂଳମନ୍ତ୍ର କଅଣ ? "ମୋ ପ୍ରାଣ ଯାଉ, ଲକ୍ଷେ ଜାପାନୀଙ୍କର ପ୍ରାଣ ଯାଉ, କିନ୍ତୁ ଜାପାନୀ ଜାତିର ମାନ ବୃଦ୍ଧି ହେଉ," ଏହି ଭାବ ପ୍ରତ୍ୟେକ ଜାପାନୀଙ୍କ ହୃଦୟରେ ନୃତ୍ୟ କରୁଅଛି । ଏହି ଭାବ ଯୋଗୁଁ ଆଜି ଜାପାନୀ ଜାତି ପୃଥିବୀରେ ସର୍ବତ୍ର ପୂଜିତ ହେଉଅଛି "ମୁଁ ଦିନେ ମରିବି, ମୁଁ ଆଜି ମଲେ ମୋ ଜାତିର ମାନ ବୃଦ୍ଧି ହେବ, ମୋ ପୂର୍ବ ପୁରୁଷଙ୍କର ମାନବୃଦ୍ଧି ହେବ ଓ ମୋର ସନ୍ତାନସନ୍ତତିମାନଙ୍କର ମାନ ବଢ଼ିବ," ଏହି ଭାବାପନ୍ନ ଲୋକଙ୍କୁ ନେଇ ଜାପାନୀ ଜାତି ଗଠିତ । ଜାତିର ମାନବୃଦ୍ଧି ସଙ୍ଗେ ଜଗତର ଚକ୍ଷୁରେ ସେ ଜାତିର ମୂଲ୍ୟ ବଢୁଅଛି, ଏଥିରେ ସନ୍ଦେହ ନାହିଁ । ଉଦାହରଣ ସ୍ୱରୂପ ଦେଖନ୍ତୁ ଯେ ଜାପାନୀ ଜାତି ଟଙ୍କା କରଜ ନେବାକୁ ବିଜ୍ଞାପନ ଦେଲାମାତ୍ରେ ସମସ୍ତ ସଭ୍ୟଜାତି ତାଙ୍କୁ ଟଙ୍କା ଋଣ ଦେବାପାଇଁ ପ୍ରସ୍ତୁତ । ଏଥିର କାରଣ, ଜଗତ ଚକ୍ଷୁରେ ଜାପାନ ଜାତିର ମୂଲ୍ୟ ବଢ଼ିଅଛି । ଯେତେବେଳ ପର୍ଯ୍ୟନ୍ତ ବ୍ୟକ୍ତିଗତ ଜୀବନକୁ ଜାତି ନିମନ୍ତେ ବଳିଦେବାକୁ ଲୋକେ ଶିଖିନାହାନ୍ତି, ସେତେବେଳ ପର୍ଯ୍ୟନ୍ତ ଜାତୀୟ ଜୀବନ ଗଠିତ ହୋଇନାହିଁ ବୋଲି ଜାଣିବାକୁ ହେବ ଏବଂ ତେତେବେଳ ଯାଏ ଜାତୀୟ ଜୀବନର ମୂଲ୍ୟଲୋକମାନେ ଜାଣି ନାହାନ୍ତି ବୋଲି କହିବାକୁ ହେବ । ଗୋଟିଏ ଦେଶୀ କୁକୁରକୁ ଆଦର ସହିତ ହୃଷ୍ଟପୁଷ୍ଟ କରି ରଖନ୍ତୁ ଓ ତାକୁ ନେଇ ଗୋଟିଏ ବିଲୁଆ ଦେଖାଇ ଦିଅନ୍ତୁ, ଦେଖିବେ ଯେ ବିଲୁଆଟି ଖିଙ୍କାରି ହେଲା ମାତ୍ରକେ ଦେଶୀ କୁକୁରଟି ଲାଙ୍ଗୁଡ଼ ଗୁଞ୍ଜି ଆପଣଙ୍କ ନିକଟକୁ ପଳାଇ ଆସିବ । କିନ୍ତୁ ଗୋଟିଏ ବିଲାତୀ ଡାହାଳ କୁକୁରଛୁଆ ଆଣନ୍ତୁ, ତାକୁ ଗୋଟାଏ ବାଘ ଦେକାଇ ଦିଅନ୍ତୁ, ଦେଖିବେ ଯେ ଡାହାଳ ଛୁଆଟି ନିର୍ଭୟ ଭାବରେ ବାଘ ଆଡ଼କୁ ଝପଟି ଯିବ । ଯେବେ ସେ ଡାହାଳ କୁକୁରଛୁଆଟି କଥା କହିପାରୁ ଥାଆନ୍ତା, ତାହାର ଅସୀମ ସାହସିକ କାର୍ଯ୍ୟର କାରଣ ଆପଣ ତାକୁ ପଚାରିଲେ ସେ ଏହିପରି ଜବାବ ଦିଅନ୍ତା -

"ମୁଁ ଜାଣେ ଯେ ମହାବଳ ବାଘକୁ ଆକ୍ରମଣ କରିବାକୁ ଯାଇ ମୁଁ ସେହି ବାଘ ହାତରେ ମରିବି । କିନ୍ତୁ ମୋର ଜାତିର ଗୁଣ ସାହସିକତା, ମୁଁ ମୋର ଜୀବନପ୍ରତି ମାୟା ରଖି ବାଘ ନିକଟକୁ ନ ଗଲେ ମୋ ଜାତିର ମାନ ଓ ମୂଲ୍ୟ କିମିଯିବ । ମୁଁ ମରେ ପଛକେ, କିନ୍ତୁ ଡାହାଳ କୁକୁରର ଦାମ ମୋର ସାହସିକତା ଦ୍ୱାରା ବଢ଼ିବ, ଏଥିରେ ସନ୍ଦେହ ନାହିଁ । ଏହି ଉଦାହରଣର ଅର୍ଥ ଏହିକି ଆମ୍ଭେମାନେ ସମସ୍ତେ କାର୍ଯ୍ୟ

କଲାବେଳେ ଥରେ ଆମ୍ଭମାନଙ୍କର ଭାବିବା ଉଚିତ ଯେ ମୋ କାର୍ଯ୍ୟଦ୍ୱାରା ମୋ ଜାତିର ମାନ ବଢୁଛି କି ନାହିଁ ? ଯେବେମୋତେ ଜଣେ କୁବାକ୍ୟ କହେ ଓ ମୁଁ ଯେବେ ଜାଣିପାରେ ଯେ ମୁଁ ସେ କୁବାକ୍ୟର ପ୍ରତ୍ୟୁତ୍ତର ନ ଦେଇ ଚୁପ୍ ରହିଲେ ମୋ ଜାତିର ମାନ ଓ ଗମ୍ଭୀରତା ବଢ଼ିବ, ତାହାହେଲେ ଏପରି ସ୍ଥଳରେ ମୋର ଜୀବନ ରହିବା ଏକାନ୍ତ କର୍ତ୍ତବ୍ୟ ।

ଦୋଷଗୁଣ ଦେଖିବା ସମ୍ବନ୍ଧରେ ମୋର ବକ୍ତବ୍ୟ ଏହି ଯେ ଯୋଡ଼ିଏ ଆଖିରୁ ଗୋଟିଏ ଆଖି ବନ୍ଦକର ଓ ଗୋଟିଏ ଆଖି ଖୋଲା ରଖ । ବନ୍ଦ ଆଖିରେ ଅନ୍ୟ ଜାତିଙ୍କର ଦୋଷଗୁଡ଼ିକ ଦେଖ ଓ ଖୋଲା ଆଖିରେ ସେମାନଙ୍କର ଗୁଣଗୁଡ଼ିକ ନିରୀକ୍ଷଣ କର ଓ ସେହି ଗୁଣଗୁଡ଼ିକ ଶିକ୍ଷାକର । ସବୁ ବ୍ୟକ୍ତି ଓ ସବୁ ଜାତିଙ୍କଠାରେ ଅନୁକରଣ କରିବା ଯୋଗ୍ୟ ଅନେକଗୁଡ଼ିଏ ଗୁଣ ଅଛି ।

ସୂର୍ଯ୍ୟ ନିର୍ବିକାର ଭାବରେ ସବୁଠାରେ କିରଣ ବିତରଣ କରୁଅଛି । ସମୁଦ୍ରର ଲୁଣିପାଣିରେ, ମିଶ୍ରି ସରବତ୍‌ରେ, ନର୍ଦ୍ଦମାରେ, ସବୁ ସ୍ଥାନରେ ତା କିରଣ ପଡୁଛି । କିନ୍ତୁ ସୂର୍ଯ୍ୟକିରଣ ବିଶୁଦ୍ଧ ଜଳତକ ଟାଣିନିଏ ଓ ମଇଳା, ଦୁର୍ଗନ୍ଧ, ପଙ୍କଗୁଡ଼ିକ ଛାଡ଼ିଯାଏ । ବିଶୁଦ୍ଧ ଜଳଗୁଡ଼ିକ ବାଷ୍ପ ରୂପରେ ଟାଣିନିଏ ଓ ସେହିଗୁଡ଼ିକ ପୁନର୍ବାର ପୃଥିବୀରେ ସେଚନ କରେ । ଏଥିରୁ ଆମ୍ଭେମାନେ ଏହି ମହାଶିକ୍ଷା ପାଉଅଛୁ ଯେ ସବୁଠାରୁ ଦୋଷତକ ତ୍ୟାଗ କରି ଗୁଣଗୁଡ଼ିକ ଗ୍ରହଣ କରିବା ଉଚିତ ।

ପରିଶେଷରେ ଏ ସମ୍ବନ୍ଧରେ ମୋ ବକ୍ତବ୍ୟ ଏହି ଯେ ଉତ୍କଳଜନନୀ ଭାରତଜନନୀଙ୍କର ସପତ୍ନୀ କିମ୍ବା ଶତ୍ରୁ ନୁହନ୍ତି । ଭାରତ ଜନନୀଙ୍କର ପାଞ୍ଚ ଛଅ ଗୋଟି ପୁତ୍ର । ଭିନ୍ନ ଭିନ୍ନ ଶିଶୁଙ୍କପାଇଁ ବିଭିନ୍ନ ପ୍ରକାର ପରିଚର୍ଯ୍ୟା ଆବଶ୍ୟକ । ଜନନୀ କେଉଁ ଶିଶୁକୁ କ୍ରୋଡ଼ରେ ପୂରାଇ ମଧୁମୟ ସ୍ନେହ ଚକ୍ଷୁରେ ସ୍ତନ୍ୟ ପାନ କରାଉଛନ୍ତି, କେଉଁ ଶିଶୁର ଦୁଷ୍ଟ ଚରିତ୍ରକୁ ଦମନ କରିବାପାଇଁ ବେତ୍ରାଘାତ କରୁଅଛନ୍ତି, କେଉଁ ଶିଶୁକୁ ନିକଟରେ ବସାଇ ତାଠାରୁ ପରାମର୍ଶ ଗ୍ରହଣ କରୁଅଛନ୍ତି; ଅର୍ଥାତ୍ ଶିଶୁର ବିଭିନ୍ନ ଅବସ୍ଥାରେ ଜନନୀ ବିଭିନ୍ନ ରୂପ ଧାରଣ କରି ଦଣ୍ଡାୟମାନ ହେଉଅଛନ୍ତି । ଯେଉଁ ମଧୁମୟୀ ମୂର୍ତ୍ତିରେ ଜନନୀ ଶିଶୁକୁ ସ୍ତନ୍ୟପାନ କରାନ୍ତି, ଉତ୍କଳଜନନୀ ଆଜି ସେହି ସ୍ନେହମୟୀ ମୂର୍ତ୍ତିରେ ଆମ୍ଭମାନଙ୍କ ସମ୍ମୁଖରେ ଉପସ୍ଥିତ ହୋଇ ଅଛନ୍ତି । ଏହି ମୂର୍ତ୍ତି ଭାରତମାତାଙ୍କର ଗୋଟିଏ ମୂର୍ତ୍ତି ବିଶେଷ । ଏହି ରୂପଟି ଭାରତମାତାଙ୍କର ଗୋଟିଏ ଅବତାର ।

*"ମିଷ୍ଟର ଦାସେ ଆମ୍ଭମାନଙ୍କୁ କାତର ଭାବରେ କେତେଥର କହିଛନ୍ତି-ଦିନମାନ ୨୪ଘଣ୍ଟା ମଧ୍ୟରେ ଅନ୍ତତଃ ପାଞ୍ଚ ମିନିଟ୍ ସକାଶେ ହେଲେ ମଧ୍ୟ ସ୍ୱଦେଶ ବିଷୟ ଚିନ୍ତାକର । କେବଳ ଚିନ୍ତା ନୁହେଁ, ସ୍ୱଦେଶ, ସ୍ୱଜାତି ଓ ମାତୃଭାଷା ସକାଶେ କାର୍ଯ୍ୟ କରିବାକୁ ହେବ, ତ୍ୟାଗ ସ୍ୱୀକାର କରିବାକୁ ହେବ ।"*

- ବ୍ୟାସକବି ଫକୀରମୋହନ

# ସ୍ୱାଗତଂ ଉତ୍କଳ ସମ୍ମିଳନୀ : ଚନ୍ଦନେଶ୍ୱର ଅଧିବେଶନ

ପ୍ରଫେସର ମନ୍ମଥ ନାଥ ଦାସ

ମୋର ଜନ୍ମସ୍ଥାନ ସମ୍ପର୍କରେ କେହି ପ୍ରଶ୍ନ କଲେ, ମୁଁ ଗର୍ବ ସହକାରେ ଉତ୍ତର ଦେଇଥାଏଁ ''ମୋର ଜନ୍ମସ୍ଥାନ ହେଉଛି ଓଡ଼ିଶାର ଅନ୍ୟତମ ପ୍ରଖ୍ୟାତ ଶୈବପୀଠ ଚନ୍ଦନେଶ୍ୱର ।'' ଓଡ଼ିଶାର ସେହି ସୀମାନ୍ତ ଅଞ୍ଚଳ ଚନ୍ଦନେଶ୍ୱର ଠାରେ ଉତ୍କଳ ସମ୍ମିଳନୀର ୧୦୧ତମ ବାର୍ଷିକ ଅଧିବେଶନ ଅନୁଷ୍ଠିତ ହେଉଥିବା ଯୋଗୁଁ ସେହି ଅଞ୍ଚଳର ଜଣେ ଅଧିବାସୀ ଭାବରେ ମୁଁ ଉତ୍କଳ ସମ୍ମିଳନୀର ବରେଣ୍ୟ କର୍ମକର୍ତ୍ତା, ସହଯୋଗୀ ଏବଂ ସମର୍ଥକମାନଙ୍କୁ ମୋ ଅଂଚଳର ଅଧିବାସୀମାନଙ୍କ ପକ୍ଷରୁ ସ୍ୱାଗତ କରିବା ସହ ଆନ୍ତରିକ କୃତଜ୍ଞତା ଏବଂ ଅଭିନନ୍ଦନ ଜ୍ଞାପନ କରୁଛି ।

ଚନ୍ଦନେଶ୍ୱରର ଅନତିଦୂରରେ ରହିଛି ଆଧୁନିକ ଓଡ଼ିଶା ରାଜ୍ୟର ପୂର୍ବ ସୀମାନ୍ତ । ସେହିଠାରୁ ଆରମ୍ଭ ହେଉଛି ପଶ୍ଚିମବଙ୍ଗ । ମୋ ବାଲ୍ୟକାଳରେ ଯେତେବେଳେ ମେଦିନୀପୁର ଜିଲ୍ଲାର କାନ୍ଥି ସବ୍‌ଡିଭିଜନରେ ଅବସ୍ଥିତ ମୀର୍‌ଗୋଦା ନାମକ ଗ୍ରାମରେ ମୋ ବଡ଼ଭଉଣୀଙ୍କ ଘରକୁ ଯାଉଥିଲି, ସେତେବେଳେ ସେହି ଅଂଚଳର ସମସ୍ତ ଅଧିବାସୀ ଓଡ଼ିଆ ଭାଷାରେ କଥାବାର୍ତ୍ତା କରୁଥିଲେ । ସେହି ମେଦିନୀପୁର ଜିଲାର ଅନ୍ୟ ଦୁଇଟି ଗ୍ରାମରେ ମୋର ଦୁଇଜଣ ପିଉସୀଙ୍କ ଗ୍ରାମାଞ୍ଚଳରେ ମଧ୍ୟ ପ୍ରଚଳିତ ଭାଷା ଥିଲା ଓଡ଼ିଆ । ଆଧୁନିକ ଚବିଶ ପ୍ରରଗଣା ଜିଲ୍ଲାର ଦୁର୍ଗମ ଅରଣ୍ୟାନି ଏକଦା 'ସୁନ୍ଦରବନ' ନାମରେ ପରିଚିତ ଥାଏ । ସେହି ଅଂଚଳରେ, ଅର୍ଥାତ୍, ଗଙ୍ଗାନଦୀର ମୁହାଣରେ ଅବସ୍ଥିତ ଗୋଟିଏ ଦ୍ୱୀପର ନାମଥାଏ 'ସାଗର ଦ୍ୱୀପ' । ଘନ ଅରଣ୍ୟ ପରିପୂର୍ଣ୍ଣ ସେହି ଦ୍ୱୀପରେ ରହିଥାନ୍ତି ଅସଂଖ୍ୟ ମହାବଳ ବ୍ୟାଘ୍ର (ଇଂରେଜମାନଙ୍କ କଥାରେ ରୟାଲ୍ ବେଙ୍ଗଲ ଟାଇଗର) । ଗଙ୍ଗାର ପଟୁମାଟିରେ ଗଠିତ ସେ ଦ୍ୱୀପରେ ଜନବସତି ଓ ଗ୍ରାମାଞ୍ଚଳ ନଥାଏ । କିନ୍ତୁ ସେହି ଦ୍ୱୀପ ଓ ପାଶ୍ୱବର୍ତ୍ତୀ ଅଂଚଳର ବଣଜଂଗଲ ପରିଷ୍କାର ପୂର୍ବକ ଚାଷଜମି ପ୍ରସ୍ତୁତ କରିବାକୁ ବ୍ରିଟିଶ ସରକାର ଓ ଜମିଦାରମାନଙ୍କ ଘୋଷଣାକ୍ରମେ ଅନୁମତି ପାଇଥିଲେ ବାଲେଶ୍ୱର ଜିଲ୍ଲାର କୃଷକମାନେ । ମୋ ନିଜ ପ୍ରପିତାମହ ଫକୀର ଦାସ ଓ ପିତାମହ ମଦନ ମହୋନ ଦାସ ଭୋଗରାଇ ଥାନାର ଶତଶତ ଲୋକଙ୍କୁ ବୋଇତରେ ନେଇ ସାଗର ଦ୍ୱୀପ ଏବଂ ଘୋଡ଼ାମାରା ଇତ୍ୟାଦି ସ୍ଥାନରେ ଭୂମି ଆବାଦ କରି ପାରିଥିଲେ । ୧୯୩୦ ମସିହାରେ ମୋର ପାଞ୍ଚ ବର୍ଷ ବୟସ ସମୟରେ ମୋ ପିତା ନୌକାଯୋଗେ ସାଗର ଦ୍ୱୀପରେ ଥିବା ଆମର ୪ଶହ ଏକର ଜମି ଓ ତଦ୍ ମଧ୍ୟରେ ଥିବା ସୁପ୍ରଶସ୍ତ ବାସଗୃହ ଦେଖାଇବାକୁ ନେଇ ଯାଇଥିଲେ । ସେତେବେଳେ ଦେଖିଥିଲି ସେହି ସବୁ ଅଂଚଳରେ ନୂତନ ରୂପେ ଗଢ଼ି ଉଠିଥିବା ଜନବସିତ ଗୁଡ଼ିକରେ ଗୋଟିଏ ପ୍ରକାର ସ୍ଥାନୀୟ ଓଡ଼ିଆ ଉପଭାଷା ପ୍ରଚଳିତ ଥାଏ । ମାତ୍ର ୭୫ ବର୍ଷ ପୂର୍ବର କଥା ।

ଅପ୍ରାସଙ୍ଗିକ ହେଲେ ମଧ୍ୟ ଏହି ବିଷୟ ଉଲ୍ଲେଖ କରିବାର ଉଦ୍ଦେଶ୍ୟ ହେଉଛି ଦିନେ ଯେଉଁ ସମସ୍ତ ସ୍ଥାନ ଓଡ଼ିଆ ଭାଷାଭାଷୀ ଥିଲା ଆଜି ସେହି ସ୍ଥାନ ସମୂହ ପଶ୍ଚିମ ବଙ୍ଗର ଅଂଶବିଶେଷ ଏବଂ ସେଠାକାର ଭାଷା ପ୍ରାୟତଃ ବଂଗଳା ।

ବର୍ତ୍ତମାନ ଏଠାରେ ଗୋଟିଏ ଗୁରୁତ୍ୱପୂର୍ଣ୍ଣ ମୌଳିକ ପ୍ରସଙ୍ଗ ଉପସ୍ଥାପନ କରୁଛି । କିଛି ବର୍ଷ ପୂର୍ବେ, କଲିକତା ମହାନଗରୀରେ ଅନୁଷ୍ଠିତ ହୋଇଥିବା 'ପୁସ୍ତକ ମେଳା'ର ଉଦ୍‌ଘାଟନ ଉତ୍ସବ ଉପଲକ୍ଷେ, ମୁଖ୍ୟବକ୍ତା ଭାବରେ ଯୋଗଦାନ ନିମନ୍ତେ ନିମନ୍ତ୍ରଣ ପାଇଥିଲି । ସେହି ସଭାରେ କଲିକତା ତଥା ପଶ୍ଚିମ

ବଙ୍ଗର ସହସ୍ର ସହସ୍ର ବୁଦ୍ଧିଜୀବୀ ଉପସ୍ଥିତ ଥିଲେ । ଉଦ୍‌ଘାଟନୀ ଉତ୍ସବ ବାସ୍ତବିକ ଥିଲା ଅତ୍ୟନ୍ତ ଆକର୍ଷଣୀୟ । କଲିକତାର ପ୍ରଖ୍ୟାତ ଚଳଚିତ୍ର ନିର୍ମାତା ଏବଂ ସୃଜନଶୀଳ ଜ୍ଞାନଦୀପ୍ତ ବ୍ୟକ୍ତି ଶ୍ରୀଯୁକ୍ତ ମୃଣାଳ ସେନ ମହୋଦୟ ସଭାପତି ତଥା ଉଦ୍‌ଘାଟକ ରୂପେ ମଞ୍ଚାସୀନ ଥିଲେ । ପ୍ରଦୀପ ପ୍ରଜ୍ଜ୍ୱଳନ ପରେ ନିଜର ବକ୍ତବ୍ୟ ପ୍ରଦାନ ପରିବର୍ତ୍ତେ ସେ ମୋତେ ମୋର ଭାଷଣ ଆରମ୍ଭ କରିବାକୁ ନିର୍ଦ୍ଦେଶ ଦେଲେ ।

ମୁଁ ପ୍ରଥମେ ଗୋଟିଏ ପ୍ରଶ୍ନ ଉତ୍‌ଥାପନ ପୂର୍ବକ ବିଜ୍ଞ ଶ୍ରୋତାମାନଙ୍କ ନିକଟରୁ ଉତ୍ତର ପାଇବି ବୋଲି ଅନୁରୋଧ ଜଣାଇଲି । ପ୍ରଶ୍ନଟି ଥିଲା : ୧୯୪୭ ମସିହାରେ ଭାରତ -ବିଭାଜନ ସମୟରେ ମୁସଲମାନ ବହୁଳ ଅଂଚଳ ରୂପେ ପୂର୍ବବଂଗ କାହିଁକି ପାକିସ୍ତାନର ଅଂଶ ହେଲା ଏବଂ ହିନ୍ଦୁ ବହୁଳ ଅଂଚଳ ଭାବରେ ପଶ୍ଚିମ ବଂଗ କାହିଁକି ଭାରତର ଅଂଶ ଆକାରରେ ରହିପାରିଲା । ସମବେତ ସୁଧୀବୃନ୍ଦ ସ୍ତବ୍ଧ ଓ ନୀରବ ରହିବା ଦେଖି ସଭାପତି ମହୋଦୟ ମୋତେ ସେହି ଜଟିଳ ପ୍ରଶ୍ନର ଉତ୍ତର ଦେବାକୁ ଅନୁରୋଧ କଲେ । ଐତିହାସିକ ତଥ୍ୟାବଳି ସହ ମୁଁ ଯେଉଁ ପ୍ରକାର ସୁଦୀର୍ଘ ଉତ୍ତର ଦେଇଥିଲି ତାହାର ସଂକ୍ଷିପ୍ତ ସାରାଂଶ ଏଠାରେ  ଉଲ୍ଲେଖ କରୁଛି ।

ଦ୍ୱାଦଶ ଶତାବ୍ଦୀରଗ ଶେଷ ଦଶକରେ ମହମ୍ମଦ ଘୋରୀ ଦ୍ୱିତୀୟ ତିରୋରୀ ଯୁଦ୍ଧରେ ରାଜା ପୃଥ୍ୱୀରାଜ ଚୌହାନ୍‌ଙ୍କୁ ପରାସ୍ତ କରି ଦିଲ୍ଲୀ ଅଧିକାର କଲେ ଏବଂ ଭାରତରେ ମୁସଲମାନ ସାମ୍ରାଜର ମୂଳଭିତ୍ତି ସ୍ଥାପନ କଲେ । ସେଥି ସଙ୍ଗେ ତାଙ୍କର ସୁଯୋଗ୍ୟ ସେନାପତିମାନେ ଉତ୍ତର ଭାରତର ଅଂଚଳ ପରେ ଅଂଚଳ ଅଧିକାର କରିବାକୁ ସମର୍ଥ ହେଲେ । ଘୋରୀଙ୍କର ଜନୈକ ସେନାପତି ବଖ୍‌ତିୟାର  ଖିଲଜୀ ବିହାର ଅଧିକାର ପରେ ବଙ୍ଗ ଅଧିକାର ନିମନ୍ତେ ସୈନ୍ୟ ଚାଳନା କଲେ । ବିହାର ପରେ ବଙ୍ଗ ଭୂମିରେ ସେ ପ୍ରଥମେ ପାର୍ଶ୍ୱବର୍ତ୍ତୀ ପଶ୍ଚିମ ବଂଗ ହିଁ ଜୟ କରିଥାନ୍ତେ ଏବଂ ତାହାପରେ ବଙ୍ଗର ପୂର୍ବାଞ୍ଚଳ । କିନ୍ତୁ ମୁସଲମାନ ଆକ୍ରମଣର ପ୍ରବଳ ସ୍ରୋତକୁ ପଶ୍ଚିମରୁ ପୂର୍ବଦିଗକୁ ପରିବର୍ତ୍ତନ କରିଦେଇଥିଲେ ଉତ୍କଳ ସମ୍ରାଜ୍ୟର ଗଙ୍ଗ ବଂଶୀୟ ନରପତିମାନେ ଯେଉଁମାନେ ଗଙ୍ଗାନଦୀ ଓ ତାହାର ପୂର୍ବାଞ୍ଚଳରେ ଅନେକ ଦୂର ପର୍ଯ୍ୟନ୍ତ ନିଜ ସମ୍ରାଜ୍ୟ ବିସ୍ତାର କରିଥିଲେ ।

ଯଦି ଆଜି ପଶ୍ଚିମ ବଙ୍ଗ ଭାରତ ସହିତ ରହି ପାରିଛି ତାହାର କାରଣ ହେଉଛି ଦୀର୍ଘ ତିନିଶହ ବର୍ଷ ସମୟ ମଧ୍ୟରେ ଓଡ଼ିଶାର ସୈନ୍ୟମାନେ ଅଜସ୍ର ରକ୍ତ ବିସର୍ଜନ ପୂର୍ବକ ପଶ୍ଚିମ ବଙ୍ଗକୁ ଉତ୍କଳ ସମ୍ରାଜ୍ୟର ଅଂଶ ରୂପେ ସୁରକ୍ଷା ପ୍ରଦାନ କରିପାରିଥିଲେ । ଆଗଙ୍ଗା-ଗୋଦାବରୀ ଗଙ୍ଗ ସାମ୍ରାଜ୍ୟ ନିର୍ମାଣ କରିଥିଲେ ଅନନ୍ତ ବର୍ମା ଚୋଳଗଙ୍ଗ ଦେବ । ସେତେବେଳେ ବଙ୍ଗ ଭୂମିର ଏକ ବିସ୍ତୀର୍ଣ୍ଣ ଅଂଚଳର ନାମ ଥିଲା 'ଗୌଡ଼ ଦେଶ' । ଚୋଳଗଙ୍ଗ ସେହି ଗୌଡ଼ ଦେଶର ଅଧିକାଂଶ ସ୍ଥାନ ଜୟ କରିଥିଲେ ଏବଂ 'ଆରମ୍ୟ ନଗର' ନାମକ ସୁଦୃଢ଼ ଦୁର୍ଗ ଅଧିକାର ପୂର୍ବକ ନିଜ ସମ୍ରାଜ୍ୟର ସୀମା ବିସ୍ତାର କରିଥିଲେ । ସେ ସମୟରେ  'ଆରମ୍ୟ ନଗର' ହେଉଛି ଆଧୁନିକ ପଶ୍ଚିମ ବଙ୍ଗ ଅନ୍ତର୍ଗତ ହୁଗୁଳି ଜିଲ୍ଲାର 'ଆରାମ୍‌ବାଗ୍' ।

କୋଣାର୍କର ସୂର୍ଯ୍ୟ ମନ୍ଦିର ନିର୍ମାଣ ଗଙ୍ଗବଂଶୀୟ ସମ୍ରାଟ ନରସିଂହ ଦେବ ମୁସଲମାନ ଅଧିକୃତ ବଙ୍ଗର ସୁଲତାନ ତୁଘାନ ଖାଁକୁ ବାରମ୍ବାର ଯୁଦ୍ଧରେ ପରାସ୍ତ କରି ଲଖ୍‌ନୋର ଓ ଲଖ୍‌ନୌତ ପ୍ରଭୃତି ସ୍ଥାନ ଅଧିକାର କରି ନେଇଥିଲେ । କଟାସିନ୍ ବା କାଟସିନ୍ ନାମକ ଯୁଦ୍ଧକ୍ଷେତ୍ରରେ ନରସିଂହ ଦେବ ଅସଂଖ୍ୟ ମୁସଲମାନ ସୈନ୍ୟଙ୍କୁ ନିପାତ କରି ନିଜ ସାମରିକ ଶକ୍ତିର ପରିଚୟ ଦେଇଥିଲେ ।  ଏହି ସମସ୍ତ ଯୁଦ୍ଧ ବୃତାନ୍ତ ଦିଲ୍ଲୀସ୍ଥିତ ସମସାମୟିକ ମୁସଲମାନ ଐତିହାସିକ ମିନ୍‌ହାଜ୍-ଉସ୍-ସିରାଜଙ୍କ 'ତବକାତ୍-ଇ-ନାସିଶ୍ରୀ' ନାମକ ଏକ ପୁସ୍ତକରୁ ଜଣାଯାଏ । ନରସିଂହ ଦେବଙ୍କ ଅକ୍ଷୟ କୀର୍ତ୍ତି ଥିଲା ବିଶ୍ୱବିଦିତ କୋଣାର୍କ ମନ୍ଦିର । ସୂର୍ଯ୍ୟଙ୍କ ଆରାଧନା ଉଦ୍ଦେଶ୍ୟରେ ସେହି ମନ୍ଦିର ନିର୍ମିତ ହୋଇଥିଲା । କିନ୍ତୁ ମନ୍ଦିର ଗାତ୍ରରେ ଖୋଦିତ

ଭାସ୍କର୍ଯ୍ୟମାନ ଅନୁଧ୍ୟାନ ପୂର୍ବକ ପାଶ୍ଚାତ୍ୟ ଗବେଷକ ଟମାସ୍ ଡୋନାଲଡ୍‌ସନ୍ ମତ ଦେଇଛନ୍ତି ଯେ ସୂର୍ଯ୍ୟମନ୍ଦିର ଥିଲା ଏକ 'ବିଜୟ ସ୍ତମ୍ଭ' ।

ଉତ୍କଳ ସାମ୍ରାଜ୍ୟ ଏବଂ ପଶ୍ଚିମ ବଙ୍ଗର ସମ୍ପର୍କ ବିଷୟରେ ଅନେକ ତଥ୍ୟ ଉପସ୍ଥାପନ ପରେ, ପରିଶେଷରେ ମୁଁ କହିଥିଲି -

ଓଡ଼ିଶା ଓ ପଶ୍ଚିମ ବଙ୍ଗ ଚିରସ୍ଥାୟୀ ଭାବରେ ଭାରତର ଦୁଇ ପଡ଼ୋଶୀ ରାଜ୍ୟ ରୂପେ ଅବସ୍ଥାନ କରିବେ । ଆଧୁନିକ ପଶ୍ଚିମ ବଙ୍ଗର ଅଧିବାସୀମାନଙ୍କ ପକ୍ଷରେ ଉତ୍କଳର ଅତୀତ ଅବଦାନ ବିଷୟ ଭୁଲିଯିବା ଉଚିତ ନୁହେଁ । ମନେ ରଖିବା ଉଚିତ ଯେ ଶ୍ରୀ ଚୈତନ୍ୟ ଦେବଙ୍କ ପୂର୍ବପୁରୁଷମାନେ ଓଡ଼ିଶାରୁ ଆସି ସଂସ୍କୃତ ଶିକ୍ଷାକେନ୍ଦ୍ର ନବଦ୍ୱୀପଠାରେ ଅବସ୍ଥାନ କରିଥିଲେ ଏବଂ ସନ୍ନ୍ୟାସ ଗ୍ରହଣ ପରେ ଶ୍ରୀ ଚୈତନ୍ୟ ପୁରୀ ଜଗନ୍ନାଥ ଧାମଠାରେ ଦୀର୍ଘ ୧୮ ବର୍ଷ ସମୟ ଅତି ବାହିତ କରିଥିଲେ । ଭୁଲିଯିବା ଉଚିତ ନୁହେଁ ଯେ ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କ ପିତା ଜାନକୀ ନାଥ ବୋଷ କଟକ ସହରରେ ଆଇନ ବ୍ୟବସାୟ କରୁଥିଲେ ଏବଂ ନେତାଦୀ ସେହି କଟକଠାରେ ଜନ୍ମଲାଭ କରିଥିଲେ । ସେହିଠାରେ ହିଁ ତାଙ୍କର ଆଦି ଶିକ୍ଷା, ଆଦି ଦୀକ୍ଷା ଏବଂ ଜାତୀୟତାବୋଧର ଆଦି ସଂକଳ୍ପ । ପରବର୍ତ୍ତୀ ସମୟରେ ତାହାଙ୍କ ଗଠିତ ଆଜାଦ ହିନ୍ଦ୍ ଫୌଜରେ ଯୋଗ ଦେଇଥିଲେ ଅନେକ ଓଡ଼ିଶାବାସୀ ।

ଭୁଲିଯିବା ଉଚିତ ନୁହେଁ ଯେ, ଭାଷା ଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନର ମୁଖ୍ୟ ପୁରୋଧା ଉତ୍କଳ ଗୌରବ ମଧୁସୂଦନ ଦାସ ଥିଲେ ବାରିଷ୍ଟର ଦେଶବନ୍ଧୁ ଚିତ୍ତରଞ୍ଜନ ଦାସଙ୍କ ଆଇନ ଉପଦେଷ୍ଟା ଏବଂ ସାର୍ ଆଶୁତୋଷ ମୁଖାର୍ଜୀଙ୍କ ଶିକ୍ଷକ ।

ଅଧୁନା କଲିକତା ପରିଣତ ହୋଇଛି ଏକ ମହାନଗରୀରେ ଏବଂ ପଶ୍ଚିମ ବଂଗ ଭାରତର ଅନ୍ୟତମ ସମୃଦ୍ଧ ରାଜ୍ୟ ରୂପେ ପରିଗଣିତ । କିନ୍ତୁ ସ୍ମରଣ କରିବା ଉଚିତ ଯେ ଇଷ୍ଟ ଇଣ୍ଡିଆ କୋମ୍ପାନୀ ଦ୍ୱାର ପ୍ରତିଷ୍ଠିତ ଇଂରେଜ ସାମ୍ରାଜ୍ୟର ଆଦି କାଳରେ ଓଡ଼ିଶାର ବଣିକ ଓ ବ୍ୟବସାୟୀମାନେ ସମୁଦ୍ର ପଥରେ ବୋଇତ ଯୋଗେ ନବଗଠିତ କଲିକତାକୁ ଯୋଗାଇ ଦେଉଥାନ୍ତି ବିଭିନ୍ନ ପ୍ରକାରର ଆବଶ୍ୟକୀୟ ପଣ୍ୟଦ୍ରବ୍ୟ, ଯଥା ବଭିନ୍ନ କିସମର ତନ୍ତବସ୍ତ୍ର, ବିପୁଳ ପରିମାଣରେ ଲବଣ, ଧାନ, ଚାଉଳ, ତୈଳବିଜ ପ୍ରଭୃତି ସାମଗ୍ରୀ । ସେହି ବ୍ରିଟିଶ ସାମ୍ରାଜ୍ୟର ଅନ୍ତିମ କାଳରେ ଦ୍ୱିତୀୟ ମହାଯୁଦ୍ଧରେ ସରକାର ଲିପ୍ତ ରହିଥିବା ବେଳେ ସନ୍ ୧୯୪୪ ମସିହାରେ ପ୍ରଳୟଙ୍କାରୀ ଦୁର୍ଭିକ୍ଷ ସମୟରେ ଓଡ଼ିଶା ବଙ୍ଗଦେଶକୁ ଯୋଗାଇ ଦେଇଥିଲା ସାତଲକ୍ଷ ମହଣ ଧାନ । ସେହି ଦୁର୍ଭିକ୍ଷରେ ୩ ନିୟୁତ ନରନାରୀ ମୃତ୍ୟୁ ବରଣ କରିଥିଲେ । ଓଡ଼ିଶାର ସାହାଯ୍ୟ ବଳରେ ଅନେକ ବ୍ୟକ୍ତି ଜୀବନରକ୍ଷା କରି ପାରିଥିଲେ ।

ସ୍ୱାଧୀନତାର ପରବର୍ତ୍ତୀ ଯୁଗରେ କଲିକତା ମହାନଗରୀର ସମୃଦ୍ଧି ଓ ଅଭିବୃଦ୍ଧି ପଶ୍ଚାତରେ ରହିଛି ପାର୍ଶ୍ୱବର୍ତ୍ତୀ ପଡ଼ୋଶୀ ରାଜ୍ୟମାନଙ୍କର ଅନେକ ଅବଦାନ । ଆଜି ଯଦି ଏହି ମହାନଗରୀରୁ ଓଡ଼ିଶାର ଅଧିବାସୀମାନେ ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ କରିବେ, ତେବେ କଲିକତାର ବାଣିଜ୍ୟ ବ୍ୟବସାୟ, କଳ କାରଖାନା, ପ୍ରଶାସନିକ ଏବଂ ନଗର ପରିଚାଳନା ବ୍ୟବସ୍ଥା ପ୍ରାୟତଃ ସମ୍ପୂର୍ଣ୍ଣଭାବେ ବିପର୍ଯ୍ୟସ୍ତ ହୋଇ ପଡ଼ିବାର ସମ୍ଭାବନା ରହିଛି ।

ସୁତରାଂ, ଉଭୟ ପଡ଼ୋଶୀ ରାଜ୍ୟ ମଧ୍ୟରେ ପ୍ରୀତିପୂର୍ଣ୍ଣ ସୁସମ୍ପର୍କ ସର୍ବଦା ବାଞ୍ଛନୀୟ, ଯଦିଚ ମଧ୍ୟଯୁଗୀୟ ଓଡ଼ିଶାର ଅନେକ ଓଡ଼ିଆ ଭାଷୀ ଅଂଚଳ ଆଧୁନିକ ପଶ୍ଚିମବଙ୍ଗର ଅନ୍ତର୍ଭୁକ୍ତ । ଅବଶ୍ୟ, ଓଡ଼ିଆଭାଷୀ ଅଧିବାସୀମାନେ ସେମାନଙ୍କର ଚିରାଚରିତ ଖାଦ୍ୟପେୟ, ପର୍ବପର୍ବାଣୀ ଓ ସାଂସ୍କୃତିକ ପରମ୍ପରା ଭୁଲି ପାରିନାହାନ୍ତି ।

x x x x x x

ଉତ୍କଳ ସମ୍ମିଳନୀରର ଏହି ଚନ୍ଦନେଶ୍ୱର ଅଧିବେଶନରେ ଆମ ସମସ୍ତଙ୍କର ପ୍ରଧାନ କର୍ତ୍ତବ୍ୟ ହେଉଛି ଉତ୍କଳ ଗୌରବ ମଧୁସୂଦନ ଦାସଙ୍କ ଉଦ୍ଦେଶ୍ୟରେ ଭକ୍ତିପୂର୍ଣ୍ଣ ପ୍ରଣିପାତ୍ ଅର୍ପଣ କରିବା । ଏହି ବାଲେଶ୍ୱର ଜିଲ୍ଲାର ପ୍ରଖ୍ୟାତ ବରପୁତ୍ର ବ୍ୟାସକବି ଫକୀରମୋହନ ସେନାପତି ଓଡ଼ିଆ ଭାଷାର ସୁରକ୍ଷା ସହିତ ସେହି ଭାଷାର ସାହିତ୍ୟକୁ ଦେଇ ଯାଇଥିଲେ ନୂତନ ରୂପ ଓ ଜୀବନ । ଏହି ବାଲେଶ୍ୱର ଜିଲ୍ଲାର ଅନ୍ୟତମ ମନୀଷି କବିବର ରାଧାନାଥ ରାୟ ଜାତୀୟ ଜୀବନରେ ସଂଜୀବନୀ ସୁଧା ସଂଚାର କରିବା ଉଦ୍ଦେଶ୍ୟରେ ରଚନା କରିଥିଲେ ମହାମନ୍ତ୍ର 'ସର୍ବେଷାଂନୋ ଜନନୀ ଭାରତ-' ଏବଂ ଖଣ୍ଡଛିନ୍ନ ଉତ୍କଳ ଜନନୀର ଅଧଃପତିତ ଅଧିବାସୀମାନଙ୍କୁ ଚେତାଇ ଦେଇଥିଲେ 'କି ଥିଲା ଏ ରାଜ୍ୟ, କି ହୋଇଛି ଆଜ ।'' ଏବଂ ଏହି ଜିଲ୍ଲାର କାନ୍ତ କବି ଲକ୍ଷ୍ମୀକାନ୍ତ ଦେଇ ଯାଇଥିଲେ ଓଡ଼ିଶାର ରାଷ୍ଟ୍ରୀୟ ସଂଗୀତ 'ବନ୍ଦେ ଉତ୍କଳ ଜନନୀ ।''

ବିଗତ ବିଂଶ ଶତାବ୍ଦୀର ଆରମ୍ଭ କାଳରୁ ଓଡ଼ିଆ ଜାତିକୁ ଉନ୍ମାଦନା ଆଣି ଦେଇଥିଲା ଉତ୍କଳ ଗୌରବଙ୍କ ମର୍ମସ୍ପର୍ଶୀ ବାଣୀ -''ମା, ମା ବୋଲି ଯେତେ ମୁଁ ଖୋଜିଲି, ମା'କୁ ପାଇଲି ନାହିଁ, ଭାଇ ଭାଇ ବୋଲି ଯେତେ ମୁଁ ଡାକିଲି, କେହିତ ଶୁଣିଲେ ନାହିଁ ।'' ଉତ୍କଳ ଜନନୀଙ୍କୁ ଛିନ୍ନମସ୍ତା ଓ ଛିନ୍ନହସ୍ତା ଆକାରରେ ଦେଖି ଭାଷାଭିତ୍ତିକ ଓଡ଼ିଶା ପ୍ରଦେଶ ଗଠନ ନିମନ୍ତେ ତାଙ୍କର ଆହ୍ୱାନରେ ଓଡ଼ିଶାର ବିଭିନ୍ନ ପ୍ରାନ୍ତରରୁ ଅସିଯାଇଥିବା ଓଡ଼ିଆଭାଷୀ ଭାଇମାନେ ଏବଂ ସମସ୍ତଙ୍କ ଆପ୍ରାଣ ଉଦ୍ୟମ ବଳରେ ଶେଷରେ ୧୯୩୫ ମସିହାର ଭାରତ ଶାସନ ଆଇନ ଅନୁଯାୟୀ ସନ ୧୯୩୬ ମସିହା ଏପ୍ରିଲ ମାସ ୧ ତାରିଖ ଦିନ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ହେଲା । ଗଭୀର ପରିତାପର ବିଷୟ ଯେ ଯେଉଁ କୁଳବୃଦ୍ଧ ଉତ୍କଳ ଗୌରବ ସ୍ୱତନ୍ତ୍ର ଓଡ଼ିଶା ଗଠନ ଲାଗି ନିଜର ଜୀବନ ଉତ୍ସର୍ଗ କରିଥିଲେ, ସେ ସେତେବେଳକୁ ଇହଧାମରୁ ବିଦାୟ ନେଇ ସାରିଥିଲେ ।

ଆଧୁନିକ ଓଡ଼ିଶା ଇତିହାସରେ ମଧୁବାବୁ ଥିଲେ ସର୍ବାଧିକ ସାହସୀ ବ୍ୟକ୍ତି । ନିଜର ଲକ୍ଷ୍ୟ ସାଧନ ଦିଗରେ ସେ ଥିଲେ ଜଣେ ନିର୍ଭୀକ ପଥିକ । ଉଦାହରଣ ସ୍ୱରୂପ, ମହାତ୍ମା ଗାନ୍ଧୀଙ୍କ ଆହ୍ୱାନରେ ସେ ଅସହଯୋଗ ଆନ୍ଦୋଳନରେ ଯୋଗ ନ ଦେଇ ବିହାର ଓଡ଼ିଶାର ମନ୍ତ୍ରୀମଣ୍ଡଳରେ ଯୋଗଦାନ କରି ପାରିଥିଲେ । ଅଥଚ, ବ୍ରିଟିଶ ସରକାରଙ୍କ ନିକଟରୁ ମନ୍ତ୍ରୀପଦ ଲାଗି ବେତନ ଗ୍ରହଣ କରି ପାରିବେ ନାହିଁ ବୋଲି ଘୋଷଣା କରି ସେହି ପଦରୁ ଇସ୍ତଫା ପ୍ରଦାନ କରିଥିଲେ । ସେତେବେଳେ ସ୍ୱୟଂ ମହାତ୍ମା ଗାନ୍ଧୀ ତାହାଙ୍କ ପରି ଜଣେ ସ୍ୱାଧୀନଚେତା ତଥା ନିଃସ୍ୱାର୍ଥପର ବ୍ୟକ୍ତିଙ୍କର ବହୁ ପ୍ରଶଂସା କରିଥିଲେ ।

ଦରିଦ୍ର ଓଡ଼ିଶାର ଆର୍ଥିକ ଉନ୍ନତି ପାଇଁ ନିଜର ସର୍ବସ୍ୱ ହରାଇ ସେ ନିଃସ୍ୱ ହୋଇ ଯାଇଥିଲେ । ତାହାଙ୍କ ପରି ମହାନ ଆଦର୍ଶବାଦୀ ଜନନାୟକ ହିଁ କହି ପାରିଥିଲେ ଯେ, ନିଜ ହାତରୁ ସୁନା ମୁଣ୍ଡା ଦୂରକୁ ଫୋପାଡ଼ି ଦେଇ ସେ ହାତରୁ ମଇଳା ଓ ଧୂଳି ପୋଛି ଦେବାର ଆନନ୍ଦ ଲାଭ କରିଥାନ୍ତି ।

ଉତ୍କଳ ଗୌରବଙ୍କ କୃତିତ୍ୱ, ବ୍ୟକ୍ତିତ୍ୱ ଏବଂ ମହତ୍ତ୍ୱ ଉତ୍କଳଜନନୀର ଉତ୍ତର ଦାୟାଦମାନଙ୍କୁ ଅନୁପ୍ରାଣିତ କରୁ ।

ଉତ୍କଳ ସମ୍ମିଳନୀ ଦୀର୍ଘଜୀବୀ ହେଉ ।

# ପୂର୍ବତନ କୁଳପତି, ଉତ୍କଳ ବିଶ୍ୱବିଦ୍ୟାଳୟ,
ପୂର୍ବତନ ରାଜ୍ୟସଭା ସଦସ୍ୟ
୧୭, ସତ୍ୟନଗର, ଭୁବନେଶ୍ୱର

# ସଂସ୍କୃତି : ଏକ ବିହଙ୍ଗାବଲୋକନ

### ଶ୍ରୀ ମନୋଜ ଦାସ

**ଉ**ପକୂଳବର୍ତ୍ତୀ ପଲ୍ଲୀର ଶେଷ ତଥା ଅଗ୍ରଭାଗରେ ଅବସ୍ଥିତ ଆମ ଘର ଏବଂ ସମୁଦ୍ର ମଝିରେ ସେତେବେଳେ ଥିଲା ଏକ ସବୁଜ ପ୍ରାନ୍ତର । ଦିନକର ପ୍ରଶାନ୍ତ ନିର୍ଜନ ଗୋଧୂଳିରେ ଦିଗରୁ ଦିଗନ୍ତ ବ୍ୟାପୀ, ଆକାଶ ବକ୍ଷରେ ଆବିର୍ଭୂତ ହୋଇଥିଲା ଏକ ସୁଦୀର୍ଘ ଇନ୍ଦ୍ରଧନୁ । ଅଦୂରର ଧାଡ଼ିଏ ବୃକ୍ଷଲତା ଗହଳରେ ଯେମିତି ଲୁଚିଯାଇଥିଲା ତାର ଏକ ପ୍ରାନ୍ତ ।

ଏ ଲେଖକ, ସେତେବେଳେ ଚାରିବର୍ଷର ଶିଶୁ, ସେ ମନୋରମ ବସ୍ତୁରୁ ପୁଳାଏ ଆତ୍ମସାତ୍ କରିନପାରିଲେ ବି ଅନ୍ତତଃ ତାହାକୁ ଛୁଇଁ ଦେବାର ଶିହରଣ ଅନୁଭବ କରିପାରିବ, ଏହି ମାନସରେ ଦୌଡ଼ିଥିଲା ଦିଗନ୍ତ ଆଡ଼େ । କିନ୍ତୁ ଯେତେ ଆଗକୁ ଗଲେ ବି ଇନ୍ଦ୍ରଧନୁ ଘୁଞ୍ଚି ଯାଉଥାଏ ଦୂରକୁ ଦୂରକୁ। ଚାହୁଁ ଚାହୁଁ ରହସ୍ୟଜନକ ଭାବରେ ସେ ଅଦୃଶ୍ୟ ହୋଇଗଲା ।

ସଂସ୍କୃତି ଉପରେ ଛୋଟ ନିବନ୍ଧଟିଏ ଲେଖିବାର ବରାଦ ତୁଲାଇବାକୁ ଉଦ୍ୟତ ହେବା ବେଳକୁ ଆଜି କାହିଁକି ଦୂର ଅତୀତର ସେ ସ୍ମୃତି ଉଜ୍ଜୀବିତ ହୋଇଉଠିଲା ମନ ଭିତରେ, ସେ ପ୍ରଶ୍ନଟିର ଉତ୍ତର ଖୋଜି ପାଇବାରେ ବିଳମ୍ବ ହେଲାନାହିଁ । ସଂସ୍କୃତିର ଆଦିଯୁଗର ସନ୍ଧାନ ଇନ୍ଦ୍ରଧନୁର ସୀମା ସ୍ପର୍ଶ କରିବାର ଉଦ୍ୟମ ଭଳି ବ୍ୟାପାର । ଅସମ୍ଭବ ପ୍ରସ୍ତାବ । ଯେତେ ଅତୀତକୁ ଗଲେ ବି ଲକ୍ଷ୍ୟ ଘୁଞ୍ଚି ଘୁଞ୍ଚି ଯାଉଥିବ - ଆହୁରି ଆହୁରି ଅତୀତକୁ ।

ସରକାରୀ ଶାସନ ବ୍ୟବସ୍ଥାର ଅନ୍ତର୍ଭୁକ୍ତ ଏକ ଏକ ସଂସ୍କୃତି ବିଭାଗ । ସେ ପରିପ୍ରେକ୍ଷୀରେ ସଂସ୍କୃତି ବୋଇଲେ ସାହିତ୍ୟ, ସଂଗୀତ, କଳା, ନୃତ୍ୟ ଏବଂ ଆନୁଷଙ୍ଗିକ ଆଉ କେତେକ ବିଷୟ । ଏଇଠୁ ଆରମ୍ଭ କରି ଜଣେ ଫରାସୀ ଚିନ୍ତାବିଦ୍ ସାଇମନ୍ ଉଇଲ୍ ତାଙ୍କର The Need of Roots ପ୍ରବନ୍ଧରେ ଯେଉଁ ମଜାଳିଆ ବ୍ୟାଖ୍ୟା ଦେଇଛନ୍ତି, ସଂସ୍କୃତିର ସଂଜ୍ଞା ସେ ଯାଏ ବିସ୍ତୃତ । ସେ କହନ୍ତି, ସଂସ୍କୃତି ଏଭଳି ଏକ ଯନ୍ତ୍ର ଯାହା ବ୍ୟବହାର କରି ଅଧ୍ୟାପକମାନେ ଆହୁରୀ ଅଧିକ ଅଧ୍ୟାପକ ଉତ୍ପାଦନ କରନ୍ତି ଏବଂ ଉତ୍ପାଦିତ ଅଧ୍ୟାପକମାନେ ଆହୁରି ଅଧିକ ଅଧ୍ୟାପକ ଉତ୍ପାଦନ କରନ୍ତି । ("Culture is an insturment wielded by professors , who when their turn comes will manufacture professors.")

ତେବେ ମୌଳିକ ଅର୍ଥରେ ମୁଖ୍ୟତଃ ସଂସ୍କୃତିର ଦୁଇ ରୂପ ବୋଲି କୁହାଯାଇପାରେ : ବ୍ୟକ୍ତିଗତ ସଂସ୍କୃତି ଏବଂ ସାମାଜିକ ବା ସାମୂହିକ ସଂସ୍କୃତି । ଜଣକର ରୁଚିବୋଧ, ଆଦର୍ଶ, ଆଚରଣ, ସମ୍ଭ୍ରମବୋଧ ଇତ୍ୟାଦି ଯେପରି ଜଣକର ବ୍ୟକ୍ତିଗତ ସଂସ୍କୃତିର ସୂଚନା ଦିଏ, ସେହିପରି ଯେଉଁସବୁ ଗୁଣ, ଆଦର୍ଶ, ସଂସ୍କାର, ଆନୁଷ୍ଠାନିକତା ଇତ୍ୟାଦି ବିଶେଷତ୍ୱଦ୍ୱାରା ଗୋଟାଏ ଗୋଷ୍ଠୀ, ସମାଜ ବା ଦେଶ ଚିହ୍ନିତ ହୁଅନ୍ତି, ସେସବୁ ସମାହାର ସାମୂହିକ ସଂସ୍କୃତି । କହିବା ବାହୁଲ୍ୟ, ସାମୂହିକ ଦୁର୍ଗୁଣ ସଂସ୍କୃତିର ଅନ୍ତର୍ଭୁକ୍ତ ନୁହେଁ । ଯାହା ମଣିଷକୁ ଅନ୍ତତଃ ଯତ୍‌ସାମାନ୍ୟ ମହତ୍ତର ଚିନ୍ତା ବା ଚେତନାର ଅନୁଭବ ଆଣିଦିଏ, ସାମୂହିକ ଜୀବନର ଯେଉଁ ବିଧିବିଧାନ ବ୍ୟକ୍ତିଗତ ଉଚ୍ଛୃଙ୍ଖଳତାକୁ ଶୃଙ୍ଖଳିତ କରେ, ମାର୍ଜିତ କରେ, ପୁଣି ବ୍ୟକ୍ତିଗତ ପ୍ରତିଭାର ବିକାଶରେ ସହାୟକ ହୁଏ, ସେହି ସବୁକୁ ନେଇ ସାମାଜିକ ସଂସ୍କୃତି ।

ସଂସ୍କୃତିର ଏହି ଦୁଇ ରୂପକୁ ଆଖିରେ ରଖି ଚିନ୍ତାକଲେ ଆମେ ପୁଣି ଦେଖିବା, ସଂସ୍କୃତିର ଦୁଇ ଧାରା । ପ୍ରଥମ ଧାରା ବ୍ୟକ୍ତି-ନିର୍ଭର । ଜଣେ ବ୍ୟକ୍ତିର କୌଣସି ଏକ ବିଶେଷ ମହତ୍ତ୍ୱ, ତ୍ୟାଗ ବା ଉତ୍କର୍ଷ ସମାଜ ପାଇଁ ଏକ ଧ୍ରୁବତାରା ଭଳି ଆଦର୍ଶର ପେରଣା ହୋଇ ରହିପାରେ । ରାଜା ହରିଶ୍ଚନ୍ଦ୍ରଙ୍କ ଦୃଷ୍ଟାନ୍ତ ଧରାଯାଉ । ଜଣେ ଋଷି ଯାହା ମାଗିବେ, ସେ ତାହା ଦେବାକୁ ସତ୍ୟ କରିଥିଲେ । ହା ହତୋଽସ୍ମି ମନ୍ଦଭାଗ୍ୟଃ । ଆଜି ବି ସେ ଆଖ୍ୟାନ ଶୁଣିଲେ ଆମେ ଆତଙ୍କରେ ଶିହରି ଉଠୁଁ । ମାଗି ମାଗି ରାଜାଙ୍କୁ ସର୍ବସ୍ୱାନ୍ତ କରି ବି ଋଷିଙ୍କର ଶାନ୍ତି ନାହିଁ । ରାଜା , ରାଣୀ ଓ ରାଜକୁମାରଙ୍କୁ ସେ କ୍ରୀତାଦାସ ପର୍ଯ୍ୟାୟକୁ ଅବନମିତ କଲେ । କିନ୍ତୁ ଜୀବନର ସେ ହାହାକାର ଭିତରେ ବି ସତ୍ୟ ପ୍ରତି ସେମାନଙ୍କର ଏକନିଷ୍ଠ ଆନୁଗତ୍ୟ ଜନମାନସରେ ପୁରୁଷ ପୁରୁଷ ଧରି ଅସହାୟତାର ଅକୂଳ ସମୁଦ୍ରରେ ଆଶା ଓ ବିଶ୍ୱାସର ନାଆ ରୂପେ କାମ ଦେଇଆସିଛି । ଦ୍ୱିତୀୟ ହରଶ୍ଚନ୍ଦ୍ରଟିଏ ସମ୍ଭବ ହୋଇନପାରିଥାନ୍ତି (କିଏ କହିବ, ସମ୍ଭବିଥିବେ ଆମ ଅଜ୍ଞାତସାରରେ), କିନ୍ତୁ ମଣିଷ ଚେତନାରେ କେତେ ଧୈର୍ଯ୍ୟ, କେତେ ନମ୍ରତା, କେତେ ସହିଷ୍ଣୁତାର ସମ୍ଭାବନା ଲୁଚିରହିଛି, ଆଜି ହରିଶ୍ଚନ୍ଦ୍ରଙ୍କର ଦୃଷ୍ଟାନ୍ତହିଁ ତା'ର ଏକ ଅସରା ଇଂଗିତ ।

କିମ୍ୱା ଧରନ୍ତୁ ଅନ୍ୟ ଏକ ସଭ୍ୟତାର ଏକକ ଦୃଷ୍ଟାନ୍ତ । ସାର ଫିଲିପ୍ ସିଡନି (୧୫୫୪-୧୫୮୬) - କବି, ସମ୍ଭ୍ରାନ୍ତ ସମାଜରେ ଅଗ୍ରଗଣ୍ୟ ଯୁବକ ଏବଂ ଯୋଦ୍ଧା । ଯୁଦ୍ଧଭୂମିରେ ଆହତ ହୋଇ ପଡ଼ିଛନ୍ତି । ଆଘାତ ଅପେକ୍ଷା ତାଙ୍କୁ ଯାହା ବହୁ ଅଧିକ କଷ୍ଟ ଦେଉଛି, ତାହା ହେଲା ତୃଷା । ପରିଚାରକଟିଏ ଗିନାଏ ପାଣି ସଂଗ୍ରହ କରି ଆଣିପାରିଛି । ସେତକ ପିଇଲେ ସେ ସମ୍ଭବତଃ ବଞ୍ଚିଯିବେ । ପିଇବାକୁ ଉଦ୍ୟତ, ସେତିକିବେଳେ ତାଙ୍କ ଆଖି ପଡ଼ିଗଲା ଆଉ ଜଣକ ଉପରେ । ଆହତ ସୈନିକଟିଏ । ବଡ଼ ଆତୁର ଭାବରେ ସେ ଅନାଇଛି ପରିଚାରକ ହାତରେ ଥିବା ପାଣିପାତ୍ର ଆଡ଼େ । ତତ୍କ୍ଷଣାତ୍ ସାର ଫିଲିପ୍ ନିର୍ଦ୍ଦେଶ ଦେଲେ ତାଙ୍କ ପରିଚାରକକୁ - ପାଣିତକ ସେ ତୃଷାର୍ତ୍ତ ସୈନିକ ମୁହଁରେ ଢ଼ାଳିଦିଅ । ପରିଚାରକ ଇତସ୍ତତଃ ହେଲା ; ଏପରିକି ସେ ସୈନିକ ନିଜେ ତା' ସାଧ୍ୟାନୁସାରେ ଆପତ୍ତି ଜଣାଇଲା । କିନ୍ତୁ ସାର୍ ଫିଲପ୍‌ଙ୍କ ବକ୍ତବ୍ୟ: " ତମ ଆବଶ୍ୟକ ମୋଠୁଁ ଅଧିକ ।" ("Thy Necessity is greater than mine.")

ତାହାହିଁ ଥିଲା ତାଙ୍କର ଶେଷ ଉଚ୍ଚାରଣୀ ।

ଏ ବୃତ୍ତାନ୍ତ ପଢ଼ି ବା ଶୁଣି ଅନୁପ୍ରାଣିତ ହେବେନାହିଁ, ଏଭଳି ବ୍ୟକ୍ତି ନଥିବେ (ନା ଥବେ ?); ଅଗଣନ ପ୍ରାଣରେ ଏ ଦୃଷ୍ଟାନ୍ତ ଅନ୍ତତଃ କିଞ୍ଚିତ୍ ମାତ୍ରାରେ ମହତ୍ତ୍ୱର ସଞ୍ଚାର କରିଥିବ ।

ସଂସ୍କୃତିର ଦ୍ୱିତୀୟ ଧାରା- ସାମୂହିକ ମହତ୍ତ୍ୱବୋଧ ଓ ସମ୍ବେଦନ ଏମିତି ବ୍ୟକ୍ତିଗତ ସଂସ୍କୃତିର ଯାଦୁକାଠି ଦ୍ୱାରା ବିକଶିତ ହୁଏ , ଏକଥା ସାବ୍ୟସ୍ତ କରିବା ନିମନ୍ତେ ରହିଛି ଏଭଳି ବହୁ ଦୃଷ୍ଟାନ୍ତ । କିନ୍ତୁ ଦୃଷ୍ଟାନ୍ତ ବନିବା ଭଳି ସଂସ୍କୃତି ବ୍ୟକ୍ତିଟିର ଚେତନାରେ ବିକଶିତ ହେଲା କିପରି ? ଚେତନା ଯେପରି ରହସ୍ୟମୟ, ତାହାବି ସେମିତି ରହସ୍ୟମୟ । ଦୃଷ୍ଟାନ୍ତ ସ୍ଥାପନକାରୀ କାହିଁକି ବା ସମସ୍ତଙ୍କ ଭଳି ଆତ୍ମକୈନ୍ଦ୍ରିକ ନହେଲେ ? ନିଜ ଅସ୍ଥିଦ୍ୱାରା ନିର୍ମିତ ଅସ୍ତ୍ର ସାହାଯ୍ୟରେ ସଂସ୍କୃତି-ବିରୋଧୀ ଦୁଷ୍ଟ ଶକ୍ତିର ନିଧନ ହେବ ବୋଲି ଜଣେ ଦଧୀଚି କାହିଁକି ଅକାତରେ ଜୀବନ ବିସର୍ଜନ ଦେବ ? ଏ ପ୍ରଶ୍ନର ଉତ୍ତର ଏ ନିବନ୍ଧର ଅଧିକାର ବହିର୍ଭୂତ ପ୍ରସଙ୍ଗ । ଯାହା ଆପାତତଃ ପ୍ରାସଙ୍ଗିକ, ତାହାହେଲା ସଭ୍ୟତା ଓ ସଂସ୍କୃତି ଭିତରେ ପାର୍ଥକ୍ୟ ନିରୂପଣ । ଶ୍ରୀ ଅରବିନ୍ଦଙ୍କ "Aesthetic and Ethical Culture" ରୁ ଏକ ଉଦ୍ଧୃତି :- "ଗୋଟାଏ ଜାତି କିମ୍ୱା ଗୋଟାଏ ଯୁଗ ଯଦି ଜ୍ଞାନ ବିଜ୍ଞାନ ଓ କଳାରେ ଯଥେଷ୍ଟ ବିକାଶ ଲାଭ କରିବା ସତ୍ତ୍ୱେ ସାଧାରଣ ଦୃଷ୍ଟିଭଙ୍ଗୀ, ଜୀବନଧାରା ଓ ଚିନ୍ତାରେ ଜ୍ଞାନ,ସତ୍ୟ, ସୌନ୍ଦର୍ଯ୍ୟବୋଧ ଏବଂ

ଜୀବନର ମହତ୍ତର ଆଦର୍ଶଦ୍ୱାରା ପରିଚାଳିତ ନହୋଇ ସ୍ଥୁଳ ପ୍ରାଣିକ ଆବେଗ, ଆର୍ଥନୀତିକ ବଣିକ ସୁଲଭ ଦୃଷ୍ଟିଭଙ୍ଗୀ ବିକଶିତ ହେଉଥିବ, ତେବେ ସେ ଜାତି ବା ସେ ଯୁଗ ଗୋଟାଏ ଅର୍ଥରେ ସଭ୍ୟ ହୋଇପାରେ, କିନ୍ତୁ ତାର ସମସ୍ତ ପ୍ରାଚୁର୍ଯ୍ୟ ଓ ସଭ୍ୟତାର ହାତହତିଆର ସତ୍ୱେ ସେ ଜାତି ବା ଯୁଗ ସଂସ୍କୃତି ଉପଲବ୍ଧି କରିନାହିଁ କି ଏକ ସଂସ୍କୃତିସଂପନ୍ନ ମାନବଗୋଷ୍ଠୀରେ ପରିଣତ ହେବାର ପ୍ରତିଶ୍ରୁତି ବହନ କରୁନାହିଁ । ତେଣୁକରି ଏପରିକି ଉନବିଂଶ ଶତାବ୍ଦୀର ୟୁରୋପୀୟ ସଭ୍ୟତା ତା'ର ବିପୁଳ ଉତ୍ପାଦନ ଶକ୍ତି ଏବଂ ବିଜ୍ଞାନ ଓ ବୁଦ୍ଧିର ବିକାଶ ସତ୍ୱେ ଗୋଟାଏ ଦୃଷ୍ଟିରୁ ନିନ୍ଦନୀୟ । କାରଣ ଯାବତୀୟ ପ୍ରଗତିକୁ ସେ ବେପାର ବଣିଜ ଓ ପ୍ରାଣପ୍ରଧାନ (ଭୋଗମୁଖୀ) ସାଫଲ୍ୟକୁ ଅବନମିତ କରିଛି । ସେ ଧରଣର ପ୍ରଗତି ପଛରେ ଧାବମାନ ହେବା ବାନବଜାତିର ଆସ୍ପୃହା ହୋଇନପରେ । ସେଭଳି ବିକାଶ ବିବର୍ତ୍ତନଧାରାରେ ଉଚ୍ଚକୁ ନଯାଇ ତାହାଠୁଁ ଦୂରେଇଯାଉଛି । ତାହା ଉପରେ ଆମର ନିଶ୍ଚିତ ରାୟ ହେଲା, ତାହା ପ୍ରାଚୀନ ଏଥେନ୍ସ୍, ରେନେସାଁ ଯୁଗର ଇଟାଲୀ ଏବଂ ପ୍ରାଚୀନ ଭାତରର ସଂସ୍କୃତିକ ତୁଳନାରେ ଅଧମ ।" (ମୁକ୍ତ ଅନୁବାଦ)

ସଭ୍ୟତାର ପ୍ରଗତି ସହ ସାଂସ୍କୃତିକ ଜୀବନର ସାମଞ୍ଜସ୍ୟ ସାଧିତ ହୋଇପାରେ, ଯଦି ସ୍ଥୁଳ ଜୀବନ - ଶୈଳୀ, ଜୀବନଯାତ୍ରା, ଚାକଚକ୍ୟ, ଏପରିକି ଜୀବନପଥ ସୁଗମ ହେଲାଭଳି ବିଧି ବ୍ୟବସ୍ଥା, ଗୋଟାଏ କଥାରେ ସମାଜର ରୂପ ଉପରେ-ସମସ୍ତ ଗୁରୁତ୍ୱ ଢ଼ାଳି ନଦେଇ ମଣିଷ ନିଜ ଚେତନାର ସତ୍ୟ ଏବଂ ନିଜ ଅନ୍ତରାତ୍ମାର ଦାବି ପ୍ରତି ଯଥାର୍ଥ ସମ୍ମାନ ଦେବାକୁ ଶିଖିଥିବ ।

ନୃତ୍ୟକଳା କଥା ଧରାଯାଉ । ଭାରତୀୟ ସାଂସ୍କୃତିକ ପରମ୍ପରାର ଆଦିଯୁଗରୁ ଏହି ବିଶ୍ୱାସ ବଳବତ୍ତର ରହିଛି ଯେ ସଂଗୀତ ଓ ନୃତ୍ୟ ଉଭୟର ଉତ୍ସ ଶିବ । (ଅର୍ଥାତ୍ ଏସବୁର ପ୍ରେରଣା ଏକ ଦିବ୍ୟଶକ୍ତିରୁ ସ୍ଫୁରିତ ।) "ଶିବଙ୍କର ମୁଖ୍ୟ ନାମମାଳାରେ ଅନ୍ୟତମ ନାମ ହେଲା ନଟରାଜ - ନର୍ତ୍ତକମାନଙ୍କ ଦେବ, ଅଭିନେତାମାନଙ୍କର ଦେବ । ଏ ମହାଜଗତ ତାଙ୍କ ରଂଗମଞ୍ଚ.... ।" (ଆନନ୍ଦ କୁମାର ସ୍ୱାମୀ, The Dance of Shiva । ଭାରତର ସମସ୍ତ ଶସ୍ତ୍ରୀୟ ନୃତ୍ୟର ଜନ୍ମ ମନ୍ଦିର ଭିତରେ, ହୁଏତ ଭକ୍ତର ଉଦ୍ଦାମ ଆତ୍ମନିବେଦନର କଳାତ୍ମକ ମାଧମ ରୂପରେ, କିମ୍ବା କୌଣସି ଧର୍ମାନୁଷ୍ଠାନ ଭାବରେ, ଯଜ୍ଞ ରୂପରେ । ଶାସ୍ତ୍ରୀୟ ନୃତ୍ୟ ପରିବେଷଣରତ ଆଜିର ରଂଗମଞ୍ଚର ଦୂରତା ମନ୍ଦିରର ଗର୍ଭଗୃହଠୁଁ ବହୁତ, କିନ୍ତୁ ବ୍ୟବସାୟିକ ହେଉ ବା ନହେଉ, ଆଜିର ରଂଗମଞ୍ଚ ବହୁତ ଅଧିକ ମନୋରମ, ଫିଟ୍ ଫାଟ ଏବଂ କୌଶଳ ଯୁକ୍ତ । ଆଜିର ନୃତ୍ୟ ମଧ ବହୁ ଅଧିକ ବିକଶି, ଚର୍ଚ୍ଚିତ, ନିତ୍ୟ-ନୂତନ ଶୈଳୀ, ଉପଶୈଳୀ ସମୃଦ୍ଧ । ନୃତ୍ୟଶିକ୍ଷାମାନଙ୍କ ସଂଖ୍ୟାବୃଦ୍ଧିରୁ ଏ କଳାପ୍ରତି ଜନସାଧାରଣଙ୍କର ଆଗ୍ରହ ଯେ ବହୁ ମାତ୍ରାରେ ବୃଦ୍ଧି ଲାଭ କରିଛି, ତାହା ସୁସ୍ପଷ୍ଟ ।

ଏହା ଶୁଭଙ୍କର ଏବଂ ଆନନ୍ଦର କଥା ନିଶ୍ଚୟ ; କିନ୍ତୁ ଯଦି ନୃତ୍ୟର ମୂଳ ପ୍ରେରଣାର ସତ୍ୟଟିକକ, ତା'ର ଉତ୍ସ ନିହିତ ଆଧ୍ୟାତ୍ମିକ ସ୍ପନ୍ଦନ ଯଦି ଆମେ ବିସ୍ମୃତ ହୋଇଯାଇଥିବା, ତେବେ ନୃତ୍ୟ ଏକ ଆମୋଦ ପ୍ରମୋଦ ମାତ୍ର । ଆମୋଦ ପ୍ରମୋଦର ବହୁ ସ୍ତର । ଏକ ସ୍ତରରେ ଆମର ସୂକ୍ଷ୍ମ ରସବୋଧକୁ ତାହା ଆପ୍ୟାୟିତ କରେ ; ଅନ୍ୟ ଅପେକ୍ଷାକୃତ ନିମ୍ନସ୍ତରମାନଙ୍କରେ ତାହା ଦର୍ଶକକୁ ପ୍ରଲୁବ୍ଧ କରେ, ସାଧାରଣ ଅର୍ଥରେ ଖୁସି କରେ, ତା' ବହିର୍ଚ୍ଚେତନାକୁ ମଜା ଯୋଗାଇଦିଏ । "ଜୀବନରେ ଯାହାସବୁ ମଧୁର, ସେସବୁ ଭିତରୁ ଯେଉଁଗୁଡ଼ିକ ସବୁଠାରୁ ସାଧାରଣ, ତାହାହିଁ ରୁଚି ନିର୍ବିଶେଷରେ ସମସ୍ତେ ଉପଭୋଗ କରନ୍ତି । ଅନ୍ୟଗୁଡ଼ିକୁ ଉପଭୋଗ କରିବା ନିମନ୍ତେ ଲୋଡ଼ା ଯଥାର୍ଥ ତାଲିମ ।" - ଲେଖୁଛନ୍ତି ଆଲଡାସ୍ ହାକ୍ସ୍‌ଲେ (Ends and Means ବହିର" Beliefs' ନିବନ୍ଧ ଦ୍ରଷ୍ଟବ୍ୟ) । 'ଯଥାର୍ଥ ତାଲିମ୍' ସ୍ଥାନରେ ଆମେ କହିପାରୁଁ ସାଂସ୍କୃତିକ ଅନ୍ତର୍ବୋଧ ।

ଅର୍ଥାତ୍, ଯଥେଷ୍ଟ ଜାକଜମକ, ପ୍ରଚାର, ପ୍ରସାର, ଜନସମର୍ଥନ, ସରକାରୀ ଓ ସାମାଜିକ ପୃଷ୍ଠପୋଷକତା ସତ୍ତ୍ୱେ କୌଣସି ଏକ ସାଂସ୍କୃତିକ ପରିବେଷଣରେ ସଂସ୍କୃତି ନଥାଇପାରେ । ସେଥିରେ ବି ବିଶେଷ କ୍ଷତି ହୁଏତ ନାହିଁ । କିନ୍ତୁ ଯାହା ଆମକୁ ଭାବିତ କରିବା ଉଚିତ, ତାହା ହେଲା, ଗୋଟାଏ ଆତ୍ମାହୀନ ସାଂସ୍କୃତିକ ବ୍ୟାପାର ଅଚିରେ ଅପସଂସ୍କୃତିରେ ପରିଣତ ହୋଇଯାଇପାରେ କିମ୍ବା ଅପସଂସ୍କୃତିର ପ୍ରସାର ନିମନ୍ତେ ପରୋକ୍ଷ ଭାବରେ ଦାୟୀ ହୋଇପାରେ ।

ସଂସ୍କୃତି-ଚ୍ୟୁତ ସାଂସ୍କୃତିକ ପରିଚର୍ଯ୍ୟାର ବ୍ୟାପକତା ସାଂସ୍କୃତିକ ଜାଗରଣର ଭ୍ରମ ସୃଷ୍ଟି କରିପାରେ, କିନ୍ତୁ ତାହା ହିତକର ନୁହେଁ । ଅନ୍ୟାନ୍ୟ କ୍ଷୟିଷ୍ଣୁ ସାମାଜିକ ରୀତିନୀତି ସହ ମିଶି ତାହା ସୃଜିପାରେ ଗୋଟାଏ ପ୍ରକାର ସାଂସ୍କୃତିକ ନୈରାଜ୍ୟ; ସଂସ୍କୃତି ନାମରେ ଜବରଦସ୍ତ ବ୍ୟଭିଚାର । ଦର୍ଶକ ବା ଶ୍ରୋତାର ଚେତନାରେ ନା ତାହା ଆଣିଦିଏ ଆବେଗମୁକ୍ତି (Catharsis), ନା ଆଣିଦିଏ ଭାବଗତ ଉତ୍ତରଣ !

ସଂସ୍କୃତିର ଏକ ବିଶେଷ ଅବଦାନ ସ୍ଥୁଳକୁ ସୂକ୍ଷ୍ମ ପ୍ରତି ସଂବେଦନଶୀଳ କରିବା । ନୃତ୍ୟରୁ ବର୍ତ୍ତମାନ ସଂଗୀତକୁ ଆସିବା । ଏକ ଅପୂର୍ବ ନିମ୍ବଦନ୍ତୀ ସ୍ମରଣ କରନ୍ତୁ । ଏକଦା ଦେବର୍ଷି ନାରଦ ହିମାଳୟର ସଂଗୁପ୍ତ ପଥ ଦେଇ ଗୋଲୋକ ପ୍ରତ୍ୟାବର୍ତ୍ତନ କଲାବେଳେ ଏକ ଜ୍ୟୋସ୍ନାପ୍ଲାବିତ କୁନି ଉପତ୍ୟକାରେ ଦଳେ ଅତିଭୌତିକ ସତ୍ତାଙ୍କୁ ଭେଟିଲେ । ସେମାନଙ୍କ ଭିତରେ ଥିଲେ ସ୍ତ୍ରୀ ଏବଂ ପୁରୁଷ - ସଭିଏଁ ଅତ୍ୟନ୍ତ ସୁନ୍ଦର ।

କୌତୂହଳୀ ନାରଦ ସେମାନଙ୍କ ପରିଚୟ ଜିଜ୍ଞାସା କରି ଜାଣିଲେ - ସେମାନେ ଏକ ନିର୍ଦ୍ଦିଷ୍ଟ ଗୋଷ୍ଠୀର ଗନ୍ଧର୍ବ ଗାନ୍ଧର୍ବୀ- ଯେଉଁମାନେ କି ସଂଗୀତର ପ୍ରାଣଶକ୍ତି । ପ୍ରତ୍ୟେକ ଗୋଟିଏ ଗୋଟିଏ ରାଗ ବା ରାଗିଣୀର ସତ୍ତା ।

କଥାବର୍ତ୍ତା ଭିତରେ ଦେବର୍ଷି ଲକ୍ଷ୍ୟ କଲେ, ସେହି ଅନିନ୍ଦ୍ୟସୁନ୍ଦର ସତ୍ତାମାନଙ୍କର ପ୍ରତ୍ୟେକଙ୍କ କୌଣସି ନା କୌଣସି ଅଙ୍ଗହାନି ଘଟିଛି । କାହାର ଆଖିଟିଏ ନାହିଁ ତ କାହାର କାନଟାଏ ନାହି ; କାହା କଳେବରରେ ବା ଆଘାତର ଚିହ୍ନ ।

ନାରଦଙ୍କର କୌତୂହଳ ହେଲା ଆହୁରି ତୀବ୍ର । ସେମାନେ ସେମିତି ଦୁର୍ଭୋଗରେ ପଡ଼ିବାର କାରଣ ସେ ପୁଚ୍ଛା କରନ୍ତେ ପଶ୍ନର ଉତ୍ତର ଦେବାକୁ ସେମାନେ ବଡ଼ ନାମଙ୍ଗ ଥିଲେ । ଯାହାହେଉ, ନାରଦଙ୍କ ଆଗ୍ରହାତିଶଯ୍ୟକୁ ସେମାନେ ଏଡ଼ାଇ ନପାରି ଯେଉଁ କୈଫିୟତ୍ ଦେଲେ, ତା'ର ମର୍ମ ହେଲା, ଯେତେଥର ସଂଗୀତଜ୍ଞମାନେ ଅହଙ୍କାର ବା ଗର୍ବର ବଶୀଭୂତ ହୋଇ ଗୀତ ବୋଲନ୍ତି ବା ଯନ୍ତ୍ର ବାଦନ କରନ୍ତି, ଯେତେଥର ସେମାନେ ଏକ ଏକ ରାଗ ବା ରାଗିଣୀର ପବିତ୍ରତା ପାସୋରି ଦେଇ ତାକୁ ବିକୃତ କରିପକାନ୍ତି, ସେତେଥର ଏହି ସବୁ ସତ୍ତା ବିଚରାମାନଙ୍କ କଳେବରରେ ଆସି ଗୋଟାଏ ଗୋଟାଏ, ମାଡ଼ ବସେ । ବହୁ ମାଡ଼ର ପରିଣତି ହେଲା ସେମାନଙ୍କର ସେପରି ବିକଳାଙ୍ଗତା ।

ସେମାନେ କାହିଁକି ନିଜ ଦୁର୍ଭୋଗର କୈଫିୟତ୍ ଦେବାକୁ କୁଣ୍ଠିତ ଥିଲେ, ନାରଦ ବର୍ତ୍ତମାନ ସେ କଥା ବୁଝିଗଲେ । ନାରଦ ସ୍ୱୟଂ ଜଣେ ସଂଗୀତଜ୍ଞ !

ଅପ୍ରସ୍ତୁତ ନାରଦ ସେମାନେ କିପରି ନିଜ ନିଜ ବିକଳାଙ୍ଗ ଅବସ୍ଥାରୁ ଉତ୍ତୀର୍ଣ୍ଣ ହୋଇ ପୁନର୍ବାର ସୁସ୍ଥ ଓ ପୂର୍ଣ୍ଣାବୟବ ହୋଇପାରିବେ, ସେ ଉପାୟ ଜାଣିବାକୁ ଚାହିଁଲେ । ସେ ଗନ୍ଧର୍ବ ଗୋଷ୍ଠୀର ମୁଖପାତ୍ର ଜଣାଇଲେ-ସେମାନେ ଯଦି ମାତ୍ର ଥରୁଟିଏ ଜଣେ ପୂର୍ଣ୍ଣ ସିଦ୍ଧ, ତ୍ରୁଟିବିରହିତ ଗାୟକ ଗୀତ ବୋଲିବାର ଶୁଣିବେ, ତେବେ ବଳେ ବଳେ ସେମାନେ ପୂର୍ଣ୍ଣାଙ୍ଗ ହୋଇଯିବେ ।

ସେଭଳି ଗାୟକ କିଏ ?ମାତ୍ର ଜଣେ - ସେ ଶିବ ।

ନାରଦ ଯାଇ ଶିବଙ୍କୁ ଗନ୍ଧର୍ବରୂପୀ ରାଗରାଗିଣୀଙ୍କ ସତ୍ତାମାନଙ୍କ ଦୁର୍ଦ୍ଦଶା ଅବଗତ କରାଇ ଥରୁଟିଏ ସେମାନଙ୍କ ହିତାର୍ଥେ ଗୀତ ବୋଲିବାକୁ ଅନୁରୋଧକଲେ । ଶିବ ସମ୍ମତ ହେଲେ- କିନ୍ତୁ ଗୋଟାଏ ସର୍ତ୍ତରେ । ତାଙ୍କ ଶ୍ରୋତୃମଣ୍ଡଳୀରେ ଅନ୍ତତଃ ଜଣେ ପୂର୍ଣ୍ଣସିଦ୍ଧ, ତ୍ରୁଟି - ବିରହିତ ଶ୍ରୋତା ଉପସ୍ଥିତ ରହିବା ଚାହି । ନହେଲେ ସେ ଗୀତ ବୋଲିବାର ପ୍ରେରଣା ପାଇବେ ନାହିଁ ।

ତେମନ୍ତ ଶ୍ରୋତା କିଏ ? ମାତ୍ର ଦୁଇଜଣ - ବିଷ୍ଣୁ ଏବଂ ବ୍ରହ୍ମା ।

ନାରଦଙ୍କ ଅନୁରୋଧ ଶ୍ରବଣ ମାତ୍ରେ ସେ ଦୁହେଁ ସାନନ୍ଦ ସମ୍ମତି ହେଲେ । ଶିବଙ୍କ ଗୀତ ଶୁଣିବା କମ୍ ଭାଗ୍ୟର କଥା ନୁହେଁ । ଗନ୍ଧର୍ବକୁଳ ସହ ଦେବଦେବୀମାନେ ମଧ୍ୟ ସମବେତ ହେଲେ ।

ଅନୁଷ୍ଠାନ ଆରମ୍ଭ ହେଲା । ଶିବଙ୍କ କଣ୍ଠ - ସଂଗୀତର ମୂର୍ଚ୍ଛନା ବାତାବରଣରେ ନାନାଦି ଅଲୌକିକ ସୌନ୍ଦର୍ଯ୍ୟ ସମ୍ଭବ କଲା ଗନ୍ଧର୍ବ ଗାନ୍ଧର୍ବୀମାନେ ସେମାନଙ୍କ ହୃତ ଅଙ୍ଗମାନ ଫେରିପାଇଲେ ।

କିନ୍ତୁ ଘଟିଗଲା ଆଉ ଗୋଟିଏ ଅପ୍ରତ୍ୟାଶିତ ଘଟଣା । ସଂଗୀତର ସେ ଅଦ୍ଭୁତ ଧାରା ସହିତ ବିଷ୍ଣୁ ଏମିତି ଏକାତ୍ମ ହୋଇଗଲେ ଯେ ତାଙ୍କ କଳେବରର ଜ୍ୟୋତିର୍ମୟ ବହିଃସ୍ତର ବିଗଳିତ ହୋଇ ବହିଯିବାକୁ ଲାଗିଲା । ତାହାକୁ ତତ୍କ୍ଷଣାତ୍ ନିଜ କମଣ୍ଡଳୁରେ ଧରିନେଲେ ବ୍ରହ୍ମା । (ପରେ କମଣ୍ଡଳୁରୁ ନିର୍ଗତ ହୋଇ ତାହା ସ୍ୱର୍ଗରେ ନଦୀ ରୂପେ ପ୍ରବାହିତ ହେଲା । ବହୁ ପରବର୍ତ୍ତୀ କାଳରେ ରାଜପୁତ୍ର ଭଗୀରଥ ନିଜ ତପସ୍ୟା ବଳରେ ବ୍ରହ୍ମାଙ୍କୁ ପ୍ରୀତ କରି ସେ ଧାରାକୁ ପୃଥିବୀକୁ ଅବତରଣ କରାଇଲେ । ବିଷ୍ଣୁଙ୍କ ତନୁର ଏକ ବିଗଳିତ ସ୍ତରରୁ ଉତ୍ପନ୍ନ ବୋଲି ଗଙ୍ଗା ଏଡ଼େ ପବିତ୍ର ।)

କିମ୍ବଦନ୍ତିଟିର ଯେଉଁ ବୃହତ୍ତର ଅଂଶ ଏ ପ୍ରସଙ୍ଗରେ ତାତ୍ପର୍ଯ୍ୟପୂର୍ଣ୍ଣ, ତାହା ସୂଚାଉଛି ଦୁଇଟି ସତ୍ୟ: ପ୍ରଥମ, ସଂଗୀତ ଏ ବିଶ୍ୱବ୍ରହ୍ମାଣ୍ଡର ଅନ୍ତର୍ନିହିତ ସଂହତି ଓ ଛନ୍ଦର ଏକ ଅଭିବ୍ୟକ୍ତି । ଗନ୍ଧର୍ବ ଗାନ୍ଧର୍ବୀଙ୍କ କଳେବରର ଅସଂହତି ଦୂରକରି ସେ ଆଣି ଦେଲା ସଂହତି । ଦ୍ୱିତୀୟ, ସ୍ଥୂଳ ସହ ସୂକ୍ଷ୍ମକୁ ଏକୀଭୂତ କରିଦେଇପାରେ ତାର ଯାଦୁ । ବିଷ୍ଣୁଙ୍କ କଳେବରର ଏକ ସ୍ତର ସଂଗୀତର ମୂର୍ଚ୍ଛନା ସହ ଏକାତ୍ମ ହୋଇ ଧାରାବତ୍ ହେବା ସେହି ସତ୍ୟର ପ୍ରତୀକାତ୍ମକ ଉପସ୍ଥାପନ ।

ନୃତ୍ୟ ଓ ସଂଗୀତ ସଂପର୍କରେ ଯାହା କହିଲି, ତାହା ସଂସ୍କୃତିର ଅନ୍ୟ ସମସ୍ତ ଅଭିବ୍ୟକ୍ତି ପ୍ରତି ପ୍ରଯୁଜ୍ୟ- ସାହିତ୍ୟ, ନାଟକ, ଇତ୍ୟାଦି ଇତ୍ୟାଦି। ଯେକୌଣସି ସାଂସ୍କୃତିକ ଅଙ୍ଗ (ନୃତ୍ୟ ହେଉ, ସଂଗୀତ ହେଉ, ସାହିତ୍ୟ ହେଉ)ରେ, ତା'ର ସମସ୍ତ ଉପସ୍ଥାପନଗତ ଉତ୍କର୍ଷ ସତ୍ତ୍ୱେ, ଯଦି ତା'ର ଆଭ୍ୟନ୍ତରୀଣ ଐଶ୍ୱର୍ଯ୍ୟ ଅନୁପସ୍ଥିତ ଥିବ, ତେବେ ତାହା ସଂସ୍କୃତିର ମୁଖା ମାତ୍ର । ଗୋଟାଏ ଅଙ୍ଗର ଏଭଳି ଅଧୋଗତି ଅନ୍ୟ ସବୁ ଅଙ୍ଗକୁ ସଂକ୍ରମିତ ହେବା ସ୍ୱାଭାବିକ, କାରଣ ସଂସ୍କୃତିର ସମସ୍ତ ଅଭିବ୍ୟକ୍ତ ଧାରା ପରସ୍ପର ସଂପର୍କିତ । ସେମାନଙ୍କ ଭିତରେ ରହିଛି ଏକ ମହତ୍ ସଂହତି । ଏକ ଅଧଃପତିତ ସମାଜରେ ସେ ସଂହତି ଗୋଟାଏ ନେତିବାଚକ ସଂହତିରେ ବି ପରିଣତ ହୋଇପାରେ ଅବଶ୍ୟ - ଅର୍ଥାତ୍ ସଂସ୍କୃତିର ସବୁ ଅଙ୍ଗ ପରସ୍ପର ସହ ସଂହତି ରକ୍ଷା କରି ରସାତଳଗାମୀ ହୋଇପାରନ୍ତି ।

ଟି.ଏସ୍.ଏଲିଅଟଙ୍କ ଏକ ଉକ୍ତି : " ସଂସ୍କୃତି ଏମନ୍ତ ଏକ ଲକ୍ଷ୍ୟ, ଯେଉଁଠି ଇଚ୍ଛାକରି କେହି ପହଞ୍ଚିପାରେ ନାହିଁ । ଢ଼ଣା ଅଧିକ ଅନେକ ସଂହତ କାର୍ଯ୍ୟକଳାପର ପରିଣତି ହେଲା ସଂସ୍କୃତି- ଯଦିଓ ପ୍ରତିଟି କାର୍ଯ୍ୟକଳାପ ତା'ନିଜସ୍ୱ ପଥର ପଥିକ ।"

ଅନ୍ୟ ଏକ ଦୃଷ୍ଟିକୋଣରୁ କୁହାଯାଇପାରେ (ଏ ଦୃଷ୍ଟିକୋଣ ଏଲିଅଟଙ୍କ ବକ୍ତବ୍ୟକୁ ବିରୋଧ କରୁନାହିଁ), ସାମୂହିକ ଜୀବନରେ ଉପଲବ୍ଧ ହୋଇଥିବା ସଂହତିର ହିଁ ପରିପ୍ରକାଶ ସାଂସ୍କୃତିକ କାର୍ଯ୍ୟକଳାପ ।

ସଂସ୍କୃତିର ମୂଲ୍ୟ ନିରୂପଣ ଦିଗରେ କୌଣସି ମାନଦଣ୍ଡ ଥାଇପାରେ କି ? ଏକ ନିର୍ଦ୍ଦିଷ୍ଟ ସମୟରେ ସଂସ୍କୃତି ତା'ସ୍ୱଧର୍ମରେ ରହିଛି ନା ସେଥିରୁ ଚ୍ୟୁତ ହୋଇଛି, ଏହା ଜାଣିବା ସମ୍ଭବ କି ? 'ସଂସ୍କୃତି' ଶବ୍ଦର ଅର୍ଥ ହିଁ ହେଲା ଯାହା ଜ୍ଞାନଗତ ଓ ରୁଚିଗତ ଉତ୍କର୍ଷ ପ୍ରତିପାଦନ କରେ । ଯାହା ଦୃଶ୍ୟମାନ, ଯାହା ସ୍ଥୁଳ, ତାକୁହିଁ ଜାଣିବା ଏବଂ ସେଥିରେ ସନ୍ତୁଷ୍ଟ ରହିବା ଜ୍ଞାନ ନୁହେଁ । ଯାହା ବହିରେନ୍ଦ୍ରିୟ ସକାଶେ ସୁଖପ୍ରଦ, ତାକୁହିଁ ଉପଭୋଗ କରିଚାଲିବା ରୁଚି ନୁହେଁ । ସ୍ଥୁଳରୁ ସୂକ୍ଷ୍ମ ଜ୍ଞାନ, ବହିରେନ୍ଦ୍ରିୟର ସୁଖ ଅତିକ୍ରମ କରି ମହତ୍ତର ରସ ଓ ସନ୍ତୋଷ ସଂପର୍କରେ ଧାରଣା ଏବଂ ତା'ର ପରିଚର୍ଯ୍ୟା- ଏହାହିଁ ଜ୍ଞାନ ଓ ରୁଚିର ଉତ୍କର୍ଷ ।

ସବୁ ବିଷୟ ଅର୍ଥ ବା ବ୍ୟାଖ୍ୟା ଧରାବନ୍ଧା ସଂଜ୍ଞା ଦ୍ୱାରା ସମ୍ଭବ ନୁହେଁ । ଆମ ଚେତନାରେ ରହିଛି ଶ୍ରେୟ ଓ ବର୍ଜନୀୟ ଭିତରେ ତଫାତ୍ ବାରିବାର ସ୍ୱୟଂକ୍ରିୟ ଶକ୍ତି, ଆମ ଚେତନାକୁ କ'ଣ ଉନ୍ନତ କରେ ଏବଂ କ'ଣ ଅବନତ କରେ ତାହା ହୃଦୟଙ୍ଗମ କରିବା ଭଳି ଅନୁଭବ । ସଚ୍ଚା ସଂସ୍କୃତିଲବ୍ଧ ଆନନ୍ଦ ଏବଂ ଚେତନାକୁ ଆବର୍ଜନା ଦ୍ୱାରା ସଂକ୍ରମିତ କରାଇ ସେଥିରୁ ମିଳୁଥିବା କ୍ଷଣିକ ଆମୋଦ ଭିତରର ତାରତମ୍ୟ ଜଣେ ସ୍ୱାଭାବିକ ମଣିଷ ସ୍ୱତଃସ୍ଫୂର୍ତ୍ତ ଭାବରେ ବୁଝିଯିବ । ଆବର୍ଜନା-ପ୍ରସୂତ ଆମୋଦ ଜଣକ ଭିତରେ (ଯଦି ସେ "ସାକ୍ଷାତ୍ ପଶୁ, ପୁଚ୍ଛ ବିଷାଣହୀନ" ମଣିଷଟିଏ ହୋଇନଥିବ ।) ଗ୍ଲାନିବୋଧ ଉପୁଜାଇବା ଅନିବାର୍ଯ୍ୟ । ଯଦି ସେ ଏଇ ବୋଧଶକ୍ତି ଟିକକ ମଧ୍ୟ ହରାଇଥିବ କିମ୍ବା ସେତକର ବିକାଶ ତା'ଭିତରେ ହୋଇନଥିବ, ତେବେ ତା' ଚେତନା କ୍ରମେ ହୋଇଯିବ ସ୍ଥାଣୁ । ସେ ସ୍ଥାଣୁତା ଉପରେ ରାଜୁତି କରିବେ ବିଷାଦ, ହତାଶା କିମ୍ବା କଞ୍ଚା ଇନ୍ଦ୍ରିୟାବେଗର ଉଚ୍ଛୃଙ୍ଖଳତା ।

ଅପରପକ୍ଷରେ, ସଚ୍ଚା ସଂସ୍କୃତି ହୁଏ ସଦ୍‌ବୁଦ୍ଧିର ବିକାଶରେ ସହାୟକ, ଆଣିଦିଏ ଶାନ୍ତି ଓ ଭାରସାମ୍ୟ । ଏହିସବୁ ଗୁଣ ହୁଅନ୍ତି ଚେତନାର ପ୍ରଗତିର ଭିତ୍ତି ।

ଚେତନାର କ୍ରମାଗତ ପ୍ରଗତିହିଁ ଆମ ଜୀବନର ଆଭିମୁଖ୍ୟ । ଶ୍ରୀଅରବିନ୍ଦଙ୍କ ଲେଖାରୁ ଆଉ ଏକ ଉଦ୍ଧୃତି ଦେଇ ବକ୍ତବ୍ୟ ଶେଷକରୁଛି :-

"ମହତ୍ ସଂସ୍କୃତିର ଏକମାତ୍ର ଲକ୍ଷ୍ୟ ହେଲା ମଣିଷକୁ ଉପରକୁ ଉଠାଇବା, ଅକାତ ଅଜ୍ଞାନରୁ ଯାତ୍ରାରମ୍ଭ କରୁଥିବା ମଣିଷକୁ ଜ୍ଞାନ ଭିତରକୁ ଉନ୍ନୀତ କରିବା, ଅଯୌକ୍ତିକ ପର୍ଯ୍ୟାୟରୁ ତାକୁ ଯୁକ୍ତିଯୁକ୍ତ ଭାବରେ ଜୀବନ ଧାରଣ କରିବାକୁ ଅନୁପ୍ରାଣିତ କରିବା, ମଣିଷ ଅନ୍ଧଶକ୍ତି ଓ ଅସଂହତିର ଆୟତ୍ତରେ ଥିବା ସ୍ଥଳେ ତାକୁ ସୁମଙ୍ଗଳ ଓ ଏକତାର ଶିକ୍ଷାଦେବା, ତା'ର ଗତାନୁଗତିକ ଜୀବନ ଭୟାବହ ବିକଟତା ଓ ବନ୍ୟ ପ୍ରବୃତ୍ତି ଅଧ୍ୟୁଷିତ ହୋଇଥିବା ସ୍ଥଳେ ତାକୁ ସୌନ୍ଦର୍ଯ୍ୟ ଓ ସଂହତିର ଜ୍ଞାନ ଦେବା, ସେ ଅହଂ-ସର୍ବସ୍ୱ, ବସ୍ତୁ-ସର୍ବସ୍ୱ, ଅଣ-ଆଧ୍ୟାତ୍ମିକ ଏବଂ ସ୍ଥୁଳ କାମନା ବାସନାର ଦାସ ହୋଇଥିବା ସ୍ଥଳେ ତାକୁ ଆତ୍ମାର ମହତ୍ତର ବିଧାନ ସଂପର୍କରେ ସଚେତ କରିବା । କୌଣସି ଏକ ସଭ୍ୟତାରେ ଯଦି ଏଭଳି ଲକ୍ଷ୍ୟ ନଥିବ, ତେବେ ତାର ସଂସ୍କୃତି ଅଛି ବୋଲି କୁହାଯାଇପାରିବ ନାହିଁ, ଅନ୍ତତଃ ତା'ର ମହତ୍ ସଂସ୍କୃତି ନାହିଁ ।" (Religion and Spirituality).

# ଶ୍ରୀ ଅରବିନ୍ଦ ଆନ୍ତର୍ଜାତିକ ଶିକ୍ଷାକେନ୍ଦ୍ର,
ପଣ୍ଡିଚେରୀ

# ବାଲେଶ୍ୱରରେ ଉତ୍କଳ ସମ୍ମିଳନୀ

## ଶ୍ରୀ ବ୍ରଜନାଥ ରଥ

ଆଜକୁ ୮୯ ବର୍ଷ ତଳେ ୨୯-୧୧-୧୯୧୬ ମସିହାରେ ଉତ୍କଳ ସମ୍ମିଳନୀର ଦ୍ୱାଦଶ ଅଧିବେଶନ 'ମଞ୍ଜୁଷା'ର ରାଜା ଶ୍ରୀନିବାସ ରାଜମଣିଙ୍କ ସଭାପତିତ୍ୱରେ ବାଲେଶ୍ୱର ପରମିଟ ପଡ଼ିଆ (ଆଜିର ଷ୍ଟେଡ଼ିଅମ୍)ର ପୂର୍ବ ଦିଗସ୍ଥ କୋଠି ଓ ତତ୍ ସଂଲଗ୍ନ ପଦାରେ ଅନୁଷ୍ଠିତ ହୋଇଥିଲା । ଏହା ପୂର୍ବରୁ ସମ୍ମିଳନୀର ତୃତୀୟ ଅଧିବେଶନ ୧୩-୪-୧୯୦୬ ମସିହାରେ ଏଠାରେ ରାଜା କିଶୋରଚନ୍ଦ୍ର ସିଂହଦେଓଙ୍କ ପୌରୋହିତ୍ୟରେ ମଧ୍ୟ ଅନୁଷ୍ଠିତ ହୋଇଥିଲା । ଏଥିରେ ଉତ୍କଳ ସମ୍ମିଳନୀର ପ୍ରାଣପ୍ରତିଷ୍ଠାତା ଜାତୀୟଗୌରବ ମଧୁସୂଦନ ଦାସ, ଉତ୍କଳମଣି ଗୋପବନ୍ଧୁ, 'ଉତ୍କଳସାହିତ୍ୟ'ର ସଂପାଦକ ବାଗ୍ମୀ ବିଶ୍ୱନାଥ କର, ଭାଷାକୋଷ ପ୍ରଣେତା ଗୋପାଳଚନ୍ଦ୍ର ପ୍ରହରାଜ, 'ମୁକୁର'ର ସଂପାଦକ ବ୍ରଜସୁନ୍ଦର ଦାସଙ୍କ ସମେତ ବିଭିନ୍ନ ଅଞ୍ଚଳରୁ ବହୁ ରାଜା-ମହାରାଜା, ଜମିଦାର, ଗଣ୍ୟମାନ୍ୟ ବ୍ୟକ୍ତି ଯୋଗ ଦେଇଥିଲେ । ୧୯୧୬ ମସିହାବେଳକୁ ରାଜା ବୈକୁଣ୍ଠ ନାଥ ଦେ ଜୀବିତ ନଥିଲେ । ଏହାର ତିନି ବର୍ଷ ପୂର୍ବରୁ କଲିକତା ଯାତ୍ରା ସମୟରେ ହଇଜାରେ ଆକ୍ରାନ୍ତ ହୋଇ ଅକାଳରେ ମୃତ୍ୟୁମୁଖରେ ପଡ଼ିଥିଲେ । କିନ୍ତୁ ୧୯୦୬ ର ତୃତୀୟ ଅଧିବେଶନ ସମୟରେ ସେ ଓ ବ୍ୟାସକବି ଫକୀରମୋହନ ସେନାପତି ଏଠାରେ ଏହି ସମ୍ମିଳନୀର ଆୟୋଜନରେ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ । ୧୯୧୬ର ଦ୍ୱାଦଶ ଅଧିବେଶନ ବେଳକୁ ଫକୀରମୋହନ ଅତିଶୟ ବୃଦ୍ଧ ହୋଇଯାଇଥିଲେ ମଧ୍ୟ ଏହାକୁ ସବୁପ୍ରକାରେ ସଫଳ କରିବା ପାଇଁ ଉଦ୍ୟମ କରିଥିଲେ ।

୧୯୧୬ ବାଲେଶ୍ୱର ଅଧିବେଶନ ଶେଷ ହେବା ପରେ ଗୋପବନ୍ଧୁ ଦାସ ତାଙ୍କ ସଂପାଦିତ 'ସତ୍ୟବାଦୀ' ପତ୍ରିକାରେ 'ଆଲୋଚନା' ସ୍ତମ୍ଭରେ ଲେଖିଥିଲେ– "ଏଥର ବଡ଼ଦିନରେ ଉତ୍କଳ ସମ୍ମିଳନୀ ବାଲେଶ୍ୱର ଠାରେ ହୋଇଥିଲା । ବାଲେଶ୍ୱର ଉତ୍କଳ କବିବର ରାଧାନାଥଙ୍କ ଜନ୍ମଭୂମି । ତାଙ୍କ ବିରଚିତ ସଂସ୍କୃତ ଜାତୀୟ ଗୀତ ଅଦ୍ୟାପି ସମ୍ମିଳନୀ ମଣ୍ଡପରେ ଗୀତ ହେଉଅଛି । ସେ ସ୍ୱର୍ଗରାଜ୍ୟରେ ଥିଲେ ସୁଦ୍ଧା ଦେଶବାସୀ ତାଙ୍କର ସେହି ମଧୁମୟ ଗୀତ ପ୍ରତିବର୍ଷ ମାତୃପୂଜା-ବେଦୀ ଉପରେ ଶୁଣି ପୁଲକିତ ହେଉଅଛନ୍ତି । ବାଲେଶ୍ୱରର ଅନ୍ୟତମ ସୁଯୋଗ୍ୟ ସନ୍ତାନ ମହାରାଜା ବୈକୁଣ୍ଠନାଥ ଦେ ବାହାଦୁର ଥରେ ସମ୍ମିଳନୀର ସଭାପତି ହୋଇ ଓଡ଼ିଆମାନଙ୍କ କଲ୍ୟାଣ କାମନାରେ ଶକ୍ତି ନିୟୋଜିତ କରିବେ ବୋଲି ସଙ୍କଳ୍ପ କରିଥିଲେ । ସମଗ୍ର ଓଡ଼ିଆଭାଷା ପ୍ରଦେଶକୁ ଏକ ଶାସନାଧୀନ କରିବା ଲାଗି ତାଙ୍କର ଏକାନ୍ତ ଯତ୍ନ ଥିଲା ଏବଂ ସେ ସେଥି ନିମନ୍ତେ ସରକାରଙ୍କ ଛାମୁରେ ବାରମ୍ବାର ଆବେଦନ କରିଥିଲେ । ରାଧାନାଥ ଓ ବୈକୁଣ୍ଠନାଥ ସାମାଜିକ ଭାବରେ ବଙ୍ଗୀୟ କାୟସ୍ଥ ହେଲେ ହେଁ ଜାତୀୟତାରେ ଓଡ଼ିଆ ଥିଲେ ଏବଂ ଆପଣାକୁ ସେହିପରି ପରିଚୟ ଦେବାକୁ କଦାପି କୁଣ୍ଠିତ ହେଉନଥିଲେ । ମାତ୍ର ଶୁଣି ଆଶ୍ଚର୍ଯ୍ୟ ଲାଗେ ବୈକୁଣ୍ଠନାଥଙ୍କ ଉତ୍ତରାଧିକାରୀ ବଙ୍ଗାଳୀମାନେ ଏଥର ବାଲେଶ୍ୱର ସମ୍ମିଳନୀ ପ୍ରତି କେବଳ ଉଦାସୀନ ନଥିଲେ, ବାଧା ଘଟାଇବାର ଉଦ୍ୟମରେ ମଧ୍ୟ ଥିଲେ । ଏହା ଅତ୍ୟନ୍ତ ପରିତାପର ବିଷୟ । ମଙ୍ଗଳମୟଙ୍କ ଇଚ୍ଛାରେ ବାଲେଶ୍ୱର ଅଧିବେଶନ ନିର୍ବିଘ୍ନରେ କୃତିତ୍ୱର ସହିତ ସମାହିତ ହୋଇଅଛି ।"

ଗୋପବନ୍ଧୁଙ୍କ ଏହି ସଂପାଦକୀୟ ମନ୍ତବ୍ୟରୁ ରାଜା ବୈକୁଣ୍ଠନାଥ ଦେଙ୍କ ପ୍ରତି ତାଙ୍କର ଶ୍ରଦ୍ଧା ଏବଂ ବୈକୁଣ୍ଠଙ୍କ ଉତ୍ତରାଧିକାରୀ ବଙ୍ଗୀୟ ମାନଙ୍କ ପ୍ରତି ତାଙ୍କ କ୍ଷୋଭର ସୂଚନା ମିଳେ ।

ଏହି ସମ୍ମିଳନୀରେ ପୂର୍ବ ସମ୍ମିଳନୀମାନଙ୍କ ଭଳି କବିବର ରାଧାନାଥଙ୍କ ରଚିତ 'ଭାରତ ଗୀତିକା' ସଂସ୍କୃତ ସଂଗୀତ ଗାନ କରାଯାଇଥିଲା । କିନ୍ତୁ ଏଥିରେ ଥିବା "ଭାରତମେକା ଗତିରସ୍ମାକଂ / ଭାରତମେବ

ନମାମଃ" ସ୍ଥାନରେ "ଉତ୍କଳମେକା ଗତିରସ୍ମାକଂ / ଉତ୍କଳମେବ ନମାମଃ" ଛପାଯାଇଥିବା ଏକ ପୁସ୍ତିକା ସଭାରେ ବିତରଣ କରାଯାଇଥିଲା । କବିବର ରାଧାନାଥ ସେତେବେଳକୁ ପରଲୋକଗତ । ଆଠବର୍ଷ ପୂର୍ବରୁ ୧୯୦୮ରେ ତାଙ୍କର ଦେହାନ୍ତ ହୋଇ ସାରିଥିଲା । ପରଲୋକଗତ ଏହି ମହାନ୍ କବିଙ୍କ ଅବର୍ତ୍ତମାନରେ ତାଙ୍କ ରଚନାକୁ ପରିବର୍ତ୍ତନ କରିବା ଦ୍ୱାରା ତାଙ୍କ ପ୍ରତି ଅସମ୍ମାନ କରାଯାଇଛି ବୋଲି ସମାଲୋଚନା କରି ସେତେବେଳର୍ କେତେକ ପତ୍ରିକା ଲେଖା ପ୍ରକାଶ କରିଥିଲେ । ବ୍ୟାସକବି ଫକୀରମୋହନ ଏହି ସମ୍ମିଳନୀର ମୁଖ୍ୟ ଉଦ୍ୟୋକ୍ତା ଥିବାରୁ 'ଉତ୍କଳ ସାହିତ୍ୟ'ର ସଂପାଦକ ବାଗ୍ମୀ ବିଶ୍ୱନାଥ କର ଲେଖିଥିଲେ – "ଫକୀରମୋହନଙ୍କ ପରି ଲୋକ ଥାଉଁ ଥାଉଁ ଏହି ସଂକୀର୍ଣ୍ଣତା କିପରି ପଶିଲା ।" ଏହା ପଢ଼ି ଫକୀରମୋହନ ପରବର୍ତ୍ତୀ ସଂଖ୍ୟାରେ ଉତ୍ତର ଛଳରେ ଲେଖିଥିଲେ ଯେ ତାଙ୍କ ଅଜ୍ଞାତରେ ଏହା ହୋଇଛି । ପରଲୋକଗତ କବିଙ୍କ ଲେଖା ଉପରେ ଲେଖନୀ ଚଳାଇ ତାହାକୁ ପରିବର୍ତ୍ତନ କରିବା ଏକାନ୍ତ, ଅସୌଜନ୍ୟ ଓ ଅଶୋଭନୀୟ ବିଷୟ । 'ଭାରତ ଗୀତିକା'ର ସ୍ୱଦେଶ ଭକ୍ତିର ଭାବମୂର୍ତ୍ତିରେ ଆଞ୍ଚ ଅଣାଯାଇଥିବାରୁ ସେ ଅତ୍ୟନ୍ତ ଦୁଃଖିତ ଏବଂ ଏହିଭଳି ସଂକୀର୍ଣ୍ଣ ଦୃଷ୍ଟିକୋଣର ସେ ସଂପୂର୍ଣ୍ଣ ବିରୋଧୀ । ଏହି ଘଟଣା ସେତେବେଳେ (୧୯୧୬-୧୭) ଖୁବ ଆଲୋଡ଼ନ ସୃଷ୍ଟି କରିଥିଲା ।

୧୯୧୬ର ଉତ୍କଳ ସମ୍ମିଳନୀର ବାଲେଶ୍ୱର ଅଧିବେଶନରେ ପୂର୍ବରୁ ଗାନ କରାହୋଇ ଆସୁଥିବା କବିବର ରାଧାନାଥଙ୍କ 'ଭାରତ ଗୀତିକା'ରେ ପୂର୍ବୋକ୍ତ ପରିବର୍ତ୍ତନ କାହିଁକି କରାଯାଇଥିଲା ସେ ସଂପର୍କରେ ଅନୁସନ୍ଧାନ କଲେ କେତେକ ତଥ୍ୟ ଦୃଷ୍ଟିରେ ପଡ଼େ । ସେତେବେଳେ କାନ୍ତକବି ଲକ୍ଷ୍ମୀକାନ୍ତଙ୍କ ପିତା ଚୌଧୁରୀ ଭାଗବତ ପ୍ରସାଦ ମହାନ୍ତି ବାଲେଶ୍ୱରରେ ଓକିଲାତି କରୁଥିଲେ ଏବଂ ଉତ୍କଳ ସମ୍ମିଳନୀର ଏହି ଅଧିବେଶନର ସେ ମଧ୍ୟ ଥିଲେ ଅନ୍ୟତମ ମୁଖ୍ୟ ଉଦ୍ୟୋକ୍ତା । ସେ ଚାହୁଁଥିଲେ ଏହି ସମ୍ମିଳନୀରେ ସଂସ୍କୃତ ବଦଳରେ ଏକ ଓଡ଼ିଆ ସଂଗୀତ ପ୍ରାରମ୍ଭିକ ଉଦ୍‌ବୋଧନୀ ସଂଗୀତ ଭାବରେ ଗାନ କରାଯାଉ । ଏହି ଉଦ୍ଦେଶ୍ୟରେ ସଂଗୀତଟିଏ ରଚନା କରିବା ପାଇଁ ସେ କବିଶେଖର ଚିନ୍ତାମଣି ମହାନ୍ତିଙ୍କ ପାଖକୁ ତା୩୦/୧୦/୧୯୧୬ ରେ ଏକ ପତ୍ର ଲେଖିଥିଲେ । ସେହି ପତ୍ରଟି ନିମ୍ନରେ ଉଦ୍ଧାର କରାଗଲା–

ବାଲେଶ୍ୱର

ପ୍ରିୟତମ ଚିନ୍ତାମଣି ବାବୁ, ୩୦-୧୦-୧୯୧୬

ଅନେକ ଦିନରୁ ଆପଣଙ୍କ ସହିତ ସାକ୍ଷାତ ହୋଇନାହିଁ । ଭାଗ୍ୟଚକ୍ରରେ ପଡ଼ି ମୁଁ ଆସି ଏପରି ସ୍ଥାନରେ ଅଛି ଯେ, ଆପଣ ଘରକୁ ଆସିଲେ ମଧ ଆପଣଙ୍କ ସହିତ ସାକ୍ଷାତ ହେବା କଠିଣ । ଯାହାହେଉ ଆପଣଙ୍କଠାରୁ କିଛି କାମ ନେବା ଉଦ୍ଦେଶ୍ୟରେ ବର୍ତ୍ତମାନ ଏହି ପତ୍ର ଲେଖୁଅଛି ।

ଆପଣ ନିଶ୍ଚୟ ଜାଣନ୍ତି ଯେ ଚଳିତବର୍ଷର ଉତ୍କଳ-ସମ୍ମିଳନୀର ଅଧିବେଶନ ବାଲେଶ୍ୱରରେ ହେବ । ଆପଣ ଅନ୍ୟ ଯେ ସାହାଯ୍ୟ କରନ୍ତୁ ସେ ଆପଣଙ୍କ ଇଚ୍ଛା । ସମୟୋପଯୋଗୀ କେତେକ ଗୋଟି ଗୀତ ଆପଣ ପଠାଇବେ । ଶୁଣିଲି ଗତବର୍ଷ ଆପଣ ସମ୍ବଲପୁରକୁ ଗୀତ ପଠାଇଥିଲେ; ମାତ୍ର ସେଠାକାର ଲୋକେ ତହିଁର ରାଗ ନ ପାଇ ଛାଡ଼ିଦେଲେ । ଯାହାହେଉ ବର୍ତ୍ତମାନ ଅନେକ ସମୟ ଅଛି । ଆପଣ ଗୀତ ଦେଲେ ତାକୁ ଆମ୍ଭେମାନେ ଏଠାରେ ଗାଇବାର ଚେଷ୍ଟା କରିବୁଁ । ଯଦି ରାଗ ପାଇ ଗାଇଲେ ତ ଭଲ, ନଚେତ୍ ସେଇ ଭାବ ନେଇ ଅନ୍ୟ ଗୀତ ରଚନା କରି ଗାଇବାରେ ଚେଷ୍ଟାକରିବୁ ମଧ । ଆପଣଙ୍କଠାରୁ ସାକ୍ଷାତ ସାହାଯ୍ୟ ନେବାରେ ମଧ ସମୟ ଥିବ ।

ଆପଣ ଜାଣିଥିବେ ରାଧାନାଥ ବାବୁଙ୍କ ରଚିତ ଗୋଟିଏ ଗୀତ ଅଛି "ସର୍ବେଷାଂ ନୋ ଜନନୀ ଭାରତ, ଧରଣୀ କଳ୍ପଲତେୟଂ" ଇତ୍ୟାଦି । ଏହି ଗୀତଟି ପ୍ରାୟ୍ ଆମ ଦେଶରେ ଜାତୀୟ ସଂଗୀତ ସ୍ୱରୂପ ଗୀତ ହେଉଅଛି; କିନ୍ତୁ ତାହା ସମ୍ବନ୍ଧରେ ମୋହର କେତେକ କଥା କହିବାର ଅଛି ।

ଅମ ଦେଶ ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟିଆନ ପ୍ରଭୃତି ଅନେକ ଜାତୀୟ ଲୋକଙ୍କ ବାସସ୍ଥାନ । ସମସ୍ତଙ୍କର ମୂଳଭାଷା ସଂସ୍କୃତ ନୁହେଁ । ଅତଏବ ଗୋଟିଏ ଜାତୀୟ ମହାସମିତିରେ ଉପଯୋଗୀ ଜାତୀୟ ସଙ୍ଗୀତ ସଂସ୍କୃତରେ ହେବା ଅପେକ୍ଷା ଓଡ଼ିଆରେ ହେବା ଭଲ ବୋଲି ମୁଁ ମନେ କରେ । ଏପରି ଗୀତଟିର ରାଗ ଭୈରବୀ । ଆମର ସମ୍ମିଳନୀର ଅଧିବେଶନର ସମୟ ଦିବା ଦୁଇପ୍ରହର ସମୟରେ । ସେତେବେଳେ ଭୈରବୀ ରାଗର ଗୀତ କର୍ଣ୍ଣକଟୁ ହେଉଥିଲେ ମଧ୍ୟ ମୃତ କବିଙ୍କର ଅସମ୍ମାନ ହେବବୋଲି କେହି ଆପତ୍ତି କରନ୍ତିନାହିଁ । ସମ୍ଭବତଃ ସମୟୋପଯୋଗୀ ଅନ୍ୟ ଗୀତର ଅଭାବ ତହିଁର ଅନ୍ୟତମ କାରଣ ହୋଇପାରେ । ବିଶେଷତଃ ଗୀତଟିର ଶେଷାଂଶ ପୁରୀନଗର ପ୍ରତି ପ୍ରଯୁଜ୍ୟ । ଅତଏବ ଉତ୍କଳ ସମ୍ମିଳନୀ ପାଇଁ ସମୟୋପଯୋଗୀ ଅନ୍ୟ ରାଗର ଗୋଟିଏ ଜାତୀୟ ସଙ୍ଗୀତ ଉତ୍କଳ ଭାଷାରେ ରଚିତ ହେବା ମୋହର ଇଚ୍ଛା ଏବଂ ତାହା ସର୍ବୋତ୍କୃଷ୍ଟ ରୂପେ ଆପଣଙ୍କ ଦ୍ୱାରା ସମ୍ପନ୍ନ ହେବ ବୋଲି ଲକ୍ଷ୍ମୀକାନ୍ତର ମତ । ବିଶେଷତଃ ଆପଣ ଥାଉ ଅପର ଜିଲ୍ଲାର କୌଣସି ଭାଇଙ୍କୁ ଏ କାର୍ଯ୍ୟର ଭାର ଦେବା ବିହିତ ମନେ କଲିନାହିଁ । ଆପଣ ଏ ବିଷୟ ବିଚାର କରି ଏବଂ ଇଚ୍ଛାକଲେ ଶ୍ରୀ ସୁରଙ୍ଗୀ ଅଧୀଶ୍ୱରଙ୍କର ଉପଦେଶ ନେଇ ଅତି ଶୀଘ୍ର ମୋହର ଉପରୋକ୍ତ ପ୍ରାର୍ଥନା ମାନ ପୂରଣ କରି ପଠାଇବେ ।

ଆପଣ ବୋଧହୁଏ ଜାଣନ୍ତି ଯେ ଲକ୍ଷ୍ମୀକାନ୍ତର ଚିକିତ୍ସା ବର୍ତ୍ତମାନ କଲିକତାରେ ହେଉଅଛି । ପୂଜାଛୁଟିରେ ଭଦ୍ରକ ଆସିଥିଲା । କଲିକତା ଯାଉଅଛି ।

ଅନ୍ୟାନ୍ୟ ସମସ୍ତ ମଙ୍ଗଳ । ଆପଣଙ୍କ ମଙ୍ଗଳାଦି ଲେଖି ଚରିତାର୍ଥ କରିବେ । ଇତି ।

ଆପଣଙ୍କର

ଶ୍ରୀ ଭାଗବତ ପ୍ରସାଦ ମହାପାତ୍ର

ଉକ୍ତ ପତ୍ରରୁ କେତୋଟି ଗୁରୁତ୍ୱପୂର୍ଣ୍ଣ କଥା ସ୍ପଷ୍ଟ ସୂଚୀତ ହୁଏ ।

ପ୍ରଥମତଃ-ଭାଗବତବାବୁ 'ଉତ୍କଳ ସମ୍ମିଳନୀ'ର ପ୍ରାରମ୍ଭିକ ଉଦ୍‌ବୋଧନୀ ସଂଗୀତ ଓଡ଼ିଆରେ ରଚିତ ହେବା ଏକାନ୍ତ ଆବଶ୍ୟକ ବୋଲି ବିଚାର କରୁଥିଲେ । ସେଥିପାଇଁ ସେ ଲେଖିଥିଲେ– 'ଜାତୀୟ ସଂଗୀତ ସଂସ୍କୃତରେ ହେବା ଅପେକ୍ଷା ଓଡିଆରେ ହେବା ଭଲ ବୋଲି ମୁଁ ବିଚାରକରେ । କାରଣ 'ଆମ ଦେଶ ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟିଆନ, ପ୍ରଭୃତି ଅନେକ ଜାତୀୟ ଲୋକଙ୍କ ବାସସ୍ଥାନ ।' (ଏ ଧାରଣା ତାଙ୍କର ହୋଇଥିଲା, ଯେହେତୁ 'ସଂସ୍କୃତ' କେବଳ ହିନ୍ଦୁମାନଙ୍କର ଏବଂ 'ଉର୍ଦ୍ଦୁ' କେବଳ ମୁସଲମାନମାନଙ୍କର ଭାଷା ବୋଲି ଏକ ବଦ୍ଧମୂଳ ଭ୍ରାନ୍ତ ବିଶ୍ୱାସ ତାଙ୍କ ପୂର୍ବରୁ ଆଜିପର୍ଯ୍ୟନ୍ତ ଅନେକଙ୍କ ମନରେ ଜାଗରୁକ ରହିଛି)

ଦ୍ୱିତୀୟତଃ – ରାଧାନାଥଙ୍କ ରଚିତ ସଂଗୀତର ରାଗ ଭୈରବୀ । ସମ୍ମିଳନୀର ଅଧିବେଶନ ଦିବା ଦ୍ୱିପ୍ରହରରେ ହେଉଥିବାରୁ ଏ ରାଗ 'କର୍ଣ୍ଣକଟୁ' ଓ ସମୟୋପଯୋଗୀ ନୁହେଁ ବୋଲି ସେ ପ୍ରକାଶ କରିଛନ୍ତି ।

ତୃତୀୟତଃ- ଗୀତଟିର ଶେଷାଂଶ ପୁରୀନଗର ପ୍ରତି ପ୍ରଯୁଜ୍ୟ । (ଅବଶ୍ୟ ୧୯୦୮ର ୫ମ ପୁରୀ ଅଧିବେଶନ ଉପଲକ୍ଷେ ରାଧାନାଥ ୩ଟି ଅଧିକ ପଦ ଏଥିରେ ସଂଯୁକ୍ତ କରିଥିଲେ, ଯାହା ପୁରୀର ବିଶେଷତ୍ୱକୁ ସୂଚାଉଥିଲା । କିନ୍ତୁ ୧ମରୁ ୭ମ ଅଧିବେଶନ ପର୍ଯ୍ୟନ୍ତ ଗାନ କରାଯାଉଥିବା 'ଭାରତ ଗୀତିକାରେ' ଏହା ନଥିଲା । ଏବେ ମଧ୍ୟ ଏହି ଶେଷ ୩ ପଦକୁ ଗାନ କରାଯାଉନାହିଁ । କେବଳ 'ରାଧାନାଥ ଗ୍ରନ୍ଥାବଳୀ'ରେ ତାରକା (*) ଚିହ୍ନିତ ହୋଇ 'ଭାରତ ଗୀତିକା'ର ଶେଷାଂଶରେ ସଂଯୁକ୍ତ ହୋଇଛି ।)

୪ର୍ଥରେ - ଭାଗବତବାବୁ ଚାହୁଁଥିଲେ ଭୈରବୀ ରାଗ ପରିବର୍ତ୍ତେ ସମୟୋପଯୋଗୀ ଏକ ରାଗରେ ଉତ୍କଳର ଜାତୀୟ ସଂଗୀତ ଉତ୍କଳ ଭାଷାରେ ରଚିତ ହେଉ । ତାହା କବିଶେଖର ଚିନ୍ତାମଣି ମହାନ୍ତିଙ୍କ ଦ୍ୱାରାହିଁ ସଂପନ୍ନ ହେଉ ଏବଂ ଏହା ତାଙ୍କ କବିପୁତ୍ର ଲକ୍ଷ୍ମୀକାନ୍ତର ମତ ବୋଲି ସୂଚନା ଦେଇଥିଲେ ।

୫ମରେ - ବାଲେଶ୍ୱରରେ ଯେହେତୁ ସମ୍ମିଳନୀ ହେଉଛି, ତେଣୁ 'ଅପର ଜିଲ୍ଲାର କୌଣସି ଭାଇଙ୍କୁ ଏ କାର୍ଯ୍ୟର ଭାରଦେବା ବିହିତ' ନୁହେଁ । (ସେତେବେଳେ କବିବର ଚିନ୍ତାମଣିଙ୍କ ଜନ୍ମସ୍ଥାନ ଭଦ୍ରକ, ବାଲେଶ୍ୱର ଜିଲ୍ଲାର ଅନ୍ତର୍ଭୁକ୍ତ ଥିଲା ।)

ଆଉଗୋଟିଏ ବିଷୟ ମଧ୍ୟ ଏହି ପତ୍ରରୁ ଜଣାପଡ଼େ ଯେ ଭାଗବତ ବାବୁଙ୍କ ଜ୍ୟେଷ୍ଠପୁତ୍ର ଲକ୍ଷ୍ମୀକାନ୍ତ ମହାପାତ୍ର (କାନ୍ତକବି) ସେତେବେଳକୁ କୁଷ୍ଠରୋଗାକ୍ରାନ୍ତ ହୋଇ କଲିକତାରେ ଚିକିତ୍ସିତ ହେଉଥାନ୍ତି ଏବଂ ପୂଜାଛୁଟିରେ ଘରକୁ ଆସି ପୁଣି ଚିକିତ୍ସାପାଇଁ କଲିକତା ଫେରି ଯାଉଥାଆନ୍ତି ।

ଯାହା ମନେହୁଏ ଭାଗବତବାବୁଙ୍କ ପରାମର୍ଶ କ୍ରମେ ଉଦ୍ୟୋକ୍ତାମାନେ ଫକୀରମୋହନଙ୍କ ଅଗୋଚରରେ 'ଭାରତଗୀତିକା'ର 'ଭାରତ ମେକା ଗତିରସ୍ମାକଂ / ଭାରତ ମେବ ନମାମଃ' ପଦରୁ 'ଭାରତ' ଶବ୍ଦ ଉଠାଇ 'ଉତ୍କଳ' ଶବ୍ଦ ଯୋଡ଼ିଥିଲେ । 'ଭାରତ ଗୀତିକା'ରେ ଉତ୍କଳୀୟ ପୁଟ ଦେବା ପାଇଁ ହୁଏତ ଏହା କରାଯାଇଥିଲା ।

୧୯୧୩ ରେ ପୁରୀରେ ୨ୟ ଥର ପାଇଁ ସମ୍ମିଳନୀର ଯେଉଁ ନବମ ଅଧିବେଶନ ଅନୁଷ୍ଠିତ ହୋଇଥିଲା, ସେଠାରେ ଲକ୍ଷ୍ମୀକାନ୍ତ ମହାପାତ୍ରଙ୍କ ବନ୍ଦେ ଉତ୍କଳ ଜନନୀ' ଗାନ କରାଯାଇଥିଲା । ପରେ ଏଥିରୁ କେତେକ ଶବ୍ଦ ସେ ପରିବର୍ତ୍ତନ କରିଥିଲେ । 'ବନ୍ଦେ ଉତ୍କଳ ଜନନୀ' ରଚନା କାଳରେ କବିଙ୍କ ମାନସପଟରେ ପୂର୍ବରୁ ରଚିତ ବଙ୍କିମ ଚନ୍ଦ୍ରଙ୍କ 'ବନ୍ଦେ ମାତରମ୍'ର ସ୍ୱରଝଂକାର କିଛି ପରିମାଣରେ ସ୍ପନ୍ଦନ ତୋଳିଥାଇପାରେ ବୋଲି ମନେହୁଏ । କିନ୍ତୁ 'ବନ୍ଦେ ଉତ୍କଳ ଜନନୀ' ଓ 'ବନ୍ଦେମାତରମ୍' ଉଭୟେ ପ୍ରାଣୋଚ୍ଛଳ, ଭାବବ୍ୟଞ୍ଜକ ଓ ଉଦ୍‌ବୋଧନୀ ଗୁଣରେ ମହିମାନ୍ୱିତ । ଗୋଟିଏ 'ଭାରତ ଜନନୀ' ଙ୍କ ବନ୍ଦନାରେ ମୁଖରିତ ତ ଅନ୍ୟଟି 'ଉତ୍କଳ ଜନନୀଙ୍କ ବନ୍ଦନାରେ ଶତମୁଖ ।

୧୯୧୬ର ବାଲେଶ୍ୱର ସମ୍ମିଳନୀ ପୂର୍ବରୁ ୧୯୧୩ରେ ଅନୁଷ୍ଠିତ ପୁରୀ ସମ୍ମିଳନୀରେ କାନ୍ତକବି ଲକ୍ଷ୍ମୀକାନ୍ତଙ୍କ ରଚିତ 'ବନ୍ଦେ ଉତ୍କଳ ଜନନୀ' ଭଳି ଏକ ଅନବଦ୍ୟ ସଂଗୀତ ଗାନ କରାଯାଇଥିଲେ ମଧ୍ୟ, ଭାଗବତବାବୁ କାହିଁକି କବିଶେଖର ଚିନ୍ତାମଣି ମହାନ୍ତିଙ୍କୁ ଉତ୍କଳ ଭାଷାରେ ଆଉଏକ ସଂଗୀତ ରଚନା ପାଇଁ ଅନୁରୋଧ କରିଥିଲେ ବୁଝାପଡ଼େନା ।

ଏହି ଉତ୍କଳ ସମ୍ମିଳନୀ ଅବକାଶରେ ଗତ ଚାରିବର୍ଷ ଧରି ହୋଇ ଆସୁଥିବା ଛାତ୍ର ସମ୍ମିଳନୀ ମଧ୍ୟ ବାଲେଶ୍ୱର ଠାରେ ଅନୁଷ୍ଠିତ ହୋଇଥିଲା । ଏଥିରେ ରେଭେନ୍ସା କଲେଜର ଅଧ୍ୟାପକ ତଥା ପଠାଣି ସାମନ୍ତଙ୍କୁ ବିଶ୍ୱଦରବାରରେ ପରିଚିତ କରାଇଥିବା ମହାନ ବ୍ୟକ୍ତି ରାୟବାହାଦୁର ଯୋଗେଶ ଚନ୍ଦ୍ର ରାୟ ବିଦ୍ୟାନିଧି ସଭାପତିତ୍ୱ କରିଥିଲେ ।

ଯାହାହେଉ, ୮୯ ବର୍ଷପରେ ପୁଣିଥରେ ଆମ ଜିଲ୍ଲାରେ ଉତ୍କଳ ସମ୍ମିଳନୀର ୧୦୧ ତମ ବାର୍ଷିକ ମହାଅଧିବେଶନ ଉତ୍ତର ସୀମାନ୍ତ ବିଖ୍ୟାତ ଶୈବପୀଠ ଚନ୍ଦନେଶ୍ୱରଠାରେ ଅନୁଷ୍ଠିତ ହେଉଛି । ଏହି ସମ୍ମିଳନୀ ଓଡ଼ିଆ ଭାଷା, ସାହିତ୍ୟ, ସଂସ୍କୃତି ଓ ଜାତୀୟତାକୁ ଉଦ୍‌ବୋଧିତ ଓ ଅନୁପ୍ରାଣିତ କରିବାରେ ସହାୟକ ହେବ ବୋଲି ଆଶା କରାଯାଏ ।

*ସହାୟକ ଗ୍ରନ୍ଥ ସୂଚୀ :-*

ସେନାପତି ଫକୀର ମୋହନ - ଗୋଲକ ଚନ୍ଦ୍ର ମହାପାତ୍ର

ସାରସ୍ୱତ ସାଧକ କବିଶେଖର ଚିନ୍ତାମଣି - ଅପୂର୍ବରଂଜନ ରାୟ

ସତ୍ୟବାଦୀ (କନ୍ୟ-୧୩୨୪)- ସଂ ଗୋପବନ୍ଧୁ ଦାସ

ଶତାବ୍ଦୀ ସଂକଳନ - ସଂ. ଶ୍ୟାମାପ୍ରସନ୍ନ ମିଶ୍ର

# ସଭାପତି, ଉତ୍କଳ ସମ୍ମିଳନୀ, ବାଲେଶ୍ୱର ଶାଖା, ସୁନହଟ, ବାଲେଶ୍ୱର

# ଉତ୍କଳ-ବଂଗ ମୈତ୍ରୀ ସଂଘ

## ଶ୍ରୀ ଅନନ୍ତ କୁମାର ଦାସ

ଗତ ଦୁଇ ବର୍ଷ ହେଲା କାନ୍ଥି ଅଞ୍ଚଳର କେତେକ ପ୍ରଗତିଶୀଳ ସମାଜସେବୀ ଏବଂ ବାଲେଶ୍ୱର, ଜଳେଶ୍ୱର ତଥା ଭୋଗରାଇ ଅଞ୍ଚଳର ସମଧର୍ମାବଲମ୍ବୀ ଭଦ୍ରବ୍ୟକ୍ତିମାନେ ପରସ୍ପର ସହିତ ସଂଯୋଗ ରକ୍ଷାକରି ଆଞ୍ଚଳିକ ଭାଷା, ସଂସ୍କୃତି ଓ ଶିକ୍ଷା, ବିଶେଷକରି ଉଭୟ ପଡ଼ୋଶୀ ରାଜ୍ୟର ଜନସାଧାରଣଙ୍କ ମଧ୍ୟରେ ସ୍ନେହ ସୌହାର୍ଦ୍ଦ୍ୟ ପ୍ରତିଷ୍ଠାର ପ୍ରୟାସପୂର୍ବକ 'ଉତ୍କଳ-ବଂଗ ମୈତ୍ରୀ ସଂଘ' ଗଠନ କରିବା ସ୍ୱାଗତଯୋଗ୍ୟ ପଦକ୍ଷେପ । ବିଗତ ଦୁଇ ବର୍ଷ ଧରି ବାଲେଶ୍ୱର, ଜଳେଶ୍ୱର ଓ ଭୋଗରାଇ ଅଞ୍ଚଳର ଭଦ୍ରବ୍ୟକ୍ତି ଓ ସାଂସ୍କୃତିକ ଅନୁଷ୍ଠାନ ମାନେ କବି ଶ୍ରୀ ବ୍ରଜନାଥ ରଥଙ୍କ ନେତୃତ୍ୱରେ ଦାନ୍ତନ ଗ୍ରାମୀଣ ମେଳାରେ ଯୋଗଦେବା ଏବଂ ସେ ଅଞ୍ଚଳରୁ ସମାଜସେବୀ ଶ୍ରୀ ଅଲୋକ ନନ୍ଦୀଙ୍କ ନେତୃତ୍ୱରେ ଶତାଧିକ ଭଦ୍ରବ୍ୟକ୍ତି ଓ ଭଦ୍ର ମହିଳା ବାଲେଶ୍ୱରର ବିଭିନ୍ନ ସାଂସ୍କୃତିକ ଅନୁଷ୍ଠାନରେ ଯୋଗଦାନ କରିବା ଅତି ତାତ୍ପର୍ଯ୍ୟପୂର୍ଣ୍ଣ ଅଟେ ।

ପଶ୍ଚିମବଂଗର ଦକ୍ଷିଣ ମେଦିନୀପୁର ଅଞ୍ଚଳର ଅଧିବାସୀମାନେ - ନିରୋଳା ଓଡ଼ିଆ । ତାଙ୍କର କଥିତ ଭାଷା ଚାଲିଚଳନ, ଉତ୍ସବ ଓ ପର୍ବ - ପର୍ବାଣୀ ପାଳନ ଏବଂ ବିଭିନ୍ନ ଅନୁଷ୍ଠାନ ଆଦି ଓଡ଼ିଆମାନଙ୍କ ସହ ସଂପୂର୍ଣ୍ଣ ସମାନ । ପରିବର୍ତ୍ତିତ ରାଜନୈତିକ ପରିସ୍ଥିତିର ସମ୍ମୁଖୀନ ହୋଇନପାରି, ଉକ୍ତ ଅଞ୍ଚଳର ଓଡ଼ିଆମାନେ ଶତାଧିକ ବର୍ଷଧରି ନିଜର ଭାଷା ଓ ସଂସ୍କୃତିର ରକ୍ଷା କରିବାର ପ୍ରୟାସ କରିଚାଲିଥିଲେ ମଧ୍ୟ ନିଜର ସ୍ଥିତି ରକ୍ଷା ପାଇଁ କଲିକତା ବଂଗାଳୀଙ୍କ ଚାପର ଶିକାର ହୋଇ ସେମାନେ କ୍ରମେ କ୍ରମେ ପୂର୍ବପୁରୁଷଙ୍କର ଭାଷା ଓ ସଂସ୍କୃତିଠୁ ଦୂରେଇ ଯାଉଥିବା ବେଳେ - ଏହାକୁ ଉଦ୍‌ଜୀବିତ କରିବା ପାଇଁ ଏପରି ଏକ ସଂଗଠନର ଆବଶ୍ୟକତା ଅଧିକ, ଏଥିରେ ଦ୍ୱିମତ ହେବାର ନାହିଁ ।

ଉତ୍କଳ ସାମ୍ରାଜ୍ୟ ଗଂଗାଠାରୁ ଗୋଦାବରୀ ଯାଏ ବିସ୍ତାର ଲାଭ କରିଥିଲା । କେବଳ ଏତିକି ନୁହେଁ ଗଙ୍ଗା ପର୍ଯ୍ୟନ୍ତ ଓଡ଼ିଆ ଭାଷାଭାଷୀ ଲୋକମାନେ ଶହ ଶହ ବର୍ଷ ପୂର୍ବରୁ ବାସକରି ଆସୁଥିଲେ । ଏପରିକି, ବ୍ରିଟିଶ ରାଜତ୍ୱରେ ମେଦିନୀପୁର ଜିଲ୍ଲା କଲେକ୍ଟରଙ୍କ କାର୍ଯ୍ୟାଳୟରେ ଓଡ଼ିଆ ଭାଷା ପ୍ରଚଳିତ ଥିବା ବିଷୟ ବ୍ୟାସକବି ଫକୀରମୋହନ ତାଙ୍କ ଆତ୍ମ ଚରିତରେ ଉଲ୍ଲେଖ କରିଛନ୍ତି । ମାତ୍ର ତତ୍‌କାଳୀନ ବଂଗାଳୀଙ୍କର ଚକ୍ରାନ୍ତର ଶିକାର ହୋଇଥିଲା - ଓଡ଼ିଆ ଭାଷା ଓ ଓଡ଼ିଆ ସଂସ୍କୃତି ।

ମେଦିନୀପୁର ଅଞ୍ଚଳରୁ ଓଡ଼ିଆ ଶିକ୍ଷାକୁ କିପରି ଲୋପ କରାଗଲା ତାର ରୋମାଞ୍ଚକର ଘଟଣା ବ୍ୟାସକବି ତାଙ୍କ 'ଆତ୍ମଚରିତ' ରେ ଉଲ୍ଲେଖ କରିଛନ୍ତି । ସେ ଲେଖିଛନ୍ତି ଯେ - "କଟକ ଜିଲ୍ଲାର ଝଙ୍କଡ଼ ପ୍ରଗଣାରୁ ଅବଧାନମାନେ ଆସି ବାଲେଶ୍ୱର ଓ ମେଦିନୀପୁର ଅଞ୍ଚଳରେ ଚାଟଶାଳୀ ବସାଇ ପିଲାମାନଙ୍କୁ ଓଡ଼ିଆ ଶିକ୍ଷା ଦେଉଥିଲେ" । ଏହି ଅବଧାନମାନଙ୍କୁ କିପରି ମିଥ୍ୟା ପରୱାନା ଜାରିକରି ମେଦିନୀପୁର ଅଞ୍ଚଳରୁ ତଡ଼ି ଦିଆଗଲା, ସେ ବିଷୟରେ ବ୍ୟାସକବି ଏହିପରି ବର୍ଣ୍ଣନା କରିଛନ୍ତି ।"

ମେଦିନୀପୁରର ଦକ୍ଷିଣାଞ୍ଚଳରୁ ଚାହାଳି ଏକାବେଳକେ ଉଠିଯିବା ଗୋଟିଏ ରହସ୍ୟମୟ ଦାରୁଣ, ଶୋଚନୀୟ ବିଷୟ ଅଟେ । ୧୮୬୫-୭୦ ଖ୍ରୀ: ଅ: ରେ ମେଦିନୀପୁର ଜିଲ୍ଲା ଦକ୍ଷିଣାଞ୍ଚଳରେ ସ୍କୁଲ ସ୍ଥାପନ କରିବା ନିମନ୍ତେ ଜଣେ ବଂଗାଳୀ ସବ୍‌ଇନ୍‌ସପେକ୍ଟର ପଦରେ ନିଯୁକ୍ତହୋଇ ଆସିଲେ । ସେ ବଂଗଳା ସ୍କୁଲ ବସାଇବାକୁ ଚେଷ୍ଟା କଲେ, ମାତ୍ର ଲୋକେ ପିଲାମାନଙ୍କୁ ବଂଗଳା ପଢ଼ାଇବାକୁ ଅସ୍ୱୀକୃତ ହେଲେ; ଅନେକ ଚେଷ୍ଟାକରି ମଧ୍ୟ କୃତ୍‌କାର୍ଯ୍ୟ ହୋଇ ପାରିଲେ ନାହିଁ । ସେ କେବଳ ଦକ୍ଷିଣାଞ୍ଚଳରେ

ସ୍କୁଲ ବସାଇବାକୁ ସ୍ୱତନ୍ତ୍ର ରୂପେ ନିଯୁକ୍ତି ହୋଇ ଆସିଛନ୍ତି । ସ୍କୁଲ ବସାଇ ନପାରିଲେ ତାହାଙ୍କର ଚାକିରି ରହିବା ଅସମ୍ଭବ । ଉପରିସ୍ଥ କର୍ମଚାରୀଙ୍କୁ ଆପଣାର ଅକୃତକାର୍ଯ୍ୟତା ଜଣାଇ ଏତେ ସୁନ୍ଦର ଚାକିରି ଖଣ୍ଡେ କ'ଣ ହରାଇବେ ?

କାର୍ଯ୍ୟ ଅଟକିଲେ ବୁଦ୍ଧିଦିଶେ । ବାବୁଙ୍କ ମୁଣ୍ଡରୁ ଚଞ୍ଚଳ ଗୋଟିଏ ବୁଦ୍ଧି ବାହାରି ପଡ଼ିଲା ଗୋଟାଏ ଗୋଟାଏ ଥାନାରେ ବସି, ସେହି ଥାନା ଇଲାକାରେ ଚାହାଳିଆ ଅବଧାନ ଯେତେଥିଲେ, ଗୋଟାଏ ଦିନ ଧାର୍ଯ୍ୟକରି, ଥାନା ଦାରୋଗା ଦ୍ୱାରା ସେହି ଅବଧାନ ମାନଙ୍କୁ ଏକାସଂଗରେ ଡକାଇ ଆଣିଲେ । ଇଂରାଜୀଲେଖା ମୋହର ମରା ଖଣ୍ଡିଏ କୃତ୍ରିମ ପରଓ୍ୱାନା ଅବଧାନମାନଙ୍କୁ ଦେଖାଇ ସେମାନଙ୍କୁ କହିଲେ, "ଏହିଦେଖ, ମେଦିନୀପୁର ଜିଲ୍ଲାର କଲେକ୍ଟର ସାହେବଙ୍କ ହୁକୁମ । ଏହି ଥାନା ଇଲାକାରେ ଯେତେ ଚାହାଳି ଅଛି ସମସ୍ତ ଉଠାଇ ଦିଆଯିବ ଏବଂ ଏହି ଥାନା ଇଲାକାରେ ଯେତେ ଅବଧାନ ଅଛନ୍ତି ଏହି ପରବାନା ଶୁଣିବା ତାରିଖଠାରୁ ସାତଦିନ ମଧ୍ୟରେ ଆପଣା ଆପଣା ଦେଶକୁ ଚାଲିଯିବେ । ନିରୁପିତ ଦିବସର ପରଦିନ ଯେଉଁ ଅବଧାନକୁ ମେଦିନୀପୁର ଇଲାକାରେ ଦେଖାଯିବ, ସେ ଓ୍ୱାରେଣ୍ଟ ଧରାଯାଇ ସଦର କଚେରିକୁ ଯିବ ଏବଂ ତାହାକୁ ଜରିମାନା ଓ ଜେଲ ଦୁଇ ପ୍ରକାର ଦଣ୍ଡ ଦିଆଯିବ" । ସବ୍‌ଇନ୍ସପେକ୍ଟର ବାବୁ ଥାନା ଅବଧାନମାନଙ୍କୁ ହୁକୁମ ଶୁଣାଇବାକୁ ଲାଗିଲେ । କ୍ଷୁଦ୍ରପ୍ରାଣୀ ବିଚରା ଅବଧାନଙ୍କର ପିତ୍ତ କେତେ ? ଜିଲ୍ଲା କଲେକ୍ଟର ସାହେବଙ୍କ ହୁକୁମ, ପୁରି ଥାନାରୁ ବାହାରିଛି; ଯେ ଯେତେ ଚଞ୍ଚଳ ପାରିବା ଚିରକାଳ ସକାଶେ ଚାହାଳି ଛାଡ଼ି ଦେଶମୁହାଁ ପଳାଇ ଆସିଲା ।

ସବ୍‌ଇନସ୍‌ପେକ୍ଟର ବାବୁ ଏଣିକି ସହଜେ ବଂଗଳାସ୍କୁଲ ବସାଇଥିଲେ, ଏକଥା ଲେଖିବା ବାହୁଲ୍ୟ ଅଟେ । ଉଲ୍ଲିଖିତ ସବ୍‌ଇନ୍‌ସପେକ୍ଟରଙ୍କ ଜ୍ୟେଷ୍ଠଭ୍ରାତା ବାଲେଶ୍ୱର ଜିଲ୍ଲାସ୍କୁଲରେ ହେଡ୍‌ମାଷ୍ଟର ଥିଲେ । ହେଡ୍‌ମାଷ୍ଟରଙ୍କ ସହିତ ମୋର ବିଶେଷ ଆତ୍ମୀୟତା ଥିଲା ସେ ନିଜ ଭ୍ରାତାର ବୁଦ୍ଧିମତ୍ତା ଓ କର୍ମଠତା ଜଣାଇବା ସକାଶେ ଉଲ୍ଲିଖିତ ଘଟଣାଟି ମୋ'ଠାରେ ବର୍ଣ୍ଣନା କରିଥିଲେ ।

ଏତେପରେବି ଓଡ଼ିଆଭାଷା, ଓଡ଼ିଆ ଚଳଣୀ, ଓଡ଼ିଆ ସଂସ୍କୃତି ଉକ୍ତ ଅଞ୍ଚଳରୁ ଲୋପ ପାଇନାହିଁ । ପ୍ରାୟ ପଚାଶ ବର୍ଷତଳେ ମୋର ବଡ଼ବାପାଙ୍କ ଝିଅକୁ ଦାନ୍ତୁଣ ଥାନା ଅନ୍ତର୍ଗତ ଷଡ଼ରଙ୍ଗ ଗ୍ରାମରେ ବାହା ଦେଲୁ । ସେତେବେଳେ ତାଙ୍କର ପଦବୀ 'ମହାନ୍ତି' ଥିଲା ଓ ତାଙ୍କ ପଡ଼ୋଶୀମାନେ ଜେନା, ପରିଡ଼ା, ପ୍ରଧାନ, ବେହେରା, ସାମଲ ପ୍ରଭୃତି ଓଡ଼ିଆ ପଦବୀ ଧାରୀ ଥିଲେ ଏବଂ ଏବେ ମଧ୍ୟ ଅଛନ୍ତି । ସେମାନଙ୍କର ଭାଷା ସଂପୂର୍ଣ୍ଣ ଓଡ଼ିଆ । କେବଳ ଉକ୍ତ ଗ୍ରାମ ନୁହେଁ, ଦକ୍ଷିଣ ମେଦିନିପୁରର ବହୁଗ୍ରାମ ଓ ସହରାଞ୍ଚଳ ଲୋକମାନଙ୍କର କଥିତ ଭାଷା, ଓଡ଼ିଆଥିଲା । କେତେକ ସ୍ଥଳରେ ଜଗନ୍ନାଥ ଦାସଙ୍କ ଭାଗବତ, ସାରଳା ମହାଭାରତ, ରାମୟଣ ଆଦି ପୁରାଣକୁ ବଂଗଳା ଅକ୍ଷରରେ ଛପାଯାଇ ଲୋକମାନଙ୍କୁ ଯୋଗାଇ ଦିଆଯାଉଥିବା ବିଷୟ ବ୍ୟାସକବି, ଆତ୍ମ ଚରିତରେ ଉଲ୍ଲେଖ କରିଛନ୍ତି । ଏହି ମଧ୍ୟମରେ ବଂଗଳା ଲିପି ସହିତ ଓଡ଼ିଆ ଭାଷାଭାଷି ଲୋକମାନଙ୍କୁ ପରିଚିତ କରାଇ ସେମାନଙ୍କୁ ଓଡ଼ିଆ ଭାଷା ଓ ସଂସ୍କୃତିରୁ କ୍ରମେ କ୍ରମେ ଦୂରେଇ ଦେବା ପାଇଁ ଅପଚେଷ୍ଟା କରାଗଲା ।

ବଂଗାଳୀ ଓ ଓଡ଼ିଆମାନଙ୍କର ପଦବୀରେ ସ୍ୱତନ୍ତତା ରହିଅଛି । 'ମହାନ୍ତି', ବେହେରା, ଜେନା, ପ୍ରଧାନ, ପଣ୍ଡା, ସାମଲ ପରିଡ଼ା ପ୍ରଭୃତି ସଂପୁର୍ଣ୍ଣ ଓଡ଼ିଆ ପଦବୀ ଅଟେ । ସେହିପରି ଭଟ୍ଟାଚାର୍ଯ୍ୟ, ଚାଟାର୍ଜୀ, ମୁଖାର୍ଜୀ, ବାନାର୍ଜୀ, ଦାସଗୁପ୍ତ, ସେନଗୁପ୍ତ, ବୋସ, ଦତ୍ତ ପ୍ରଭୃତି ବଂଗାଳୀ ପଦବୀ ଅଟେ । ଉଭୟ ପଦବୀଧାରୀ ବ୍ୟକ୍ତିବିଶେଷ ଓଡିଶା ଓ ପଶ୍ଚିମବଂଗ ରେ ବସବାସ କରୁଛନ୍ତି । ଶହଶହ ବର୍ଷ ଧରି ଓଡ଼ିଶାରେ ବାସକରୁଥିବା ବଂଗାଳୀମାନଙ୍କର ଭାଷା ଓ ସଂସ୍କୃତି ଉପରେ କେବେ, କୌଣସି ଦିନ, ଏହାକୁ ଲୋପ କରିବା ବା ପରିବର୍ତ୍ତନ କରିବାର ଅପଚେଷ୍ଟା ଓଡ଼ିଆଙ୍କଦ୍ୱାରା ହୋଇ ନାହିଁ । ଉପକୂଳବର୍ତ୍ତୀ ଅଞ୍ଚଳରେ କୃଷିକାର୍ଯ୍ୟ ପାଇଁ ଆସିଥିବା ବଂଗାଳୀମାନଙ୍କର ସ୍ୱତନ୍ତ୍ରତାକୁ ଓଡ଼ିଶାରେ କୌଣସିଦିନ ଅପଭ୍ରଂଶ

କରାଯାଇନାହିଁ । ମାତ୍ର ମେଦିନୀପୁର ଅଞ୍ଚଳରେ ବାସ କରୁଥିବା ଖାଣ୍ଟି, ନିରୋଳା ଓଡ଼ିଆମାନଙ୍କୁ ବଂଗାଳୀ କରାଇବା ଉଦ୍ଦେଶ୍ୟରେ ବା ବଂଗାଳୀ ବୋଲି ପ୍ରତିପାଦିତ କରିବାର ପ୍ରୟାସ ନେଇ 'ମହାନ୍ତି' ପରିବର୍ତ୍ତେ 'ମାଇତି', 'ଜେନା' ପରିବର୍ତ୍ତେ 'ଜାନା', 'ବେହେରା' ପରିବର୍ତ୍ତେ 'ବେରା', 'ପ୍ରଧାନ' ପରିବର୍ତ୍ତେ 'ପୋଧାନ', 'ପଣ୍ଡା' ପରିବର୍ତ୍ତେ 'ପାଣ୍ଡା', 'ପରିଡ଼ା' ପରିବର୍ତ୍ତେ 'ପଏଡ଼ା', 'ସାମଲ' ପରିବର୍ତ୍ତେ ସାସମଲ' ଆଦି ପଦବୀକୁ ଅପଭ୍ରଂଶ କରାଯାଉଅଛି । ଯେକୌଣସି ରାଜ୍ୟରେ, ଯେକୌଣସି ଭାଷାଭାଷୀ ନାଗରିକ ବସବାସ କରିବାର ଅଧିକାର ସଂବିଧାନ ପ୍ରଦତ୍ତ । ନିଜ ଭାଷା, ସଂସ୍କୃତି ରକ୍ଷା କରିବାର ଦାୟିତ୍ୱ ବ୍ୟକ୍ତି ବିଶେଷର ହୋଇଥିଲେ ମଧ୍ୟ ସମାଜ ଓ ପ୍ରଶାସନ କୌଣସି ଭାଷା ଓ ସଂସ୍କୃତିର ବିନାଶ ସାଧନ ନିମିତ୍ତ ଚକ୍ରାନ୍ତ କରିବା ସମୀଚିନ ନୁହେଁ । ଯେଉଁ ଓଡ଼ିଆମାନେ ବିଚ୍ଛିନ୍ନାଞ୍ଚଳରେ ଅବସ୍ଥାନ କରୁଛନ୍ତି ତାଙ୍କ ନିଜର ସ୍ୱତନ୍ତ୍ରତାକୁ ବଜାୟ ରଖିବା, ଭାଷା ଓ ସଂସ୍କୃତିକୁ ରକ୍ଷା କରିବା, ତାଙ୍କ ନିଜର କର୍ତ୍ତବ୍ୟ ଅଟେ ।

ଉତ୍ତର ବାଲେଶ୍ୱର ଓ ଦକ୍ଷିଣ ମେଦିନୀପୁର ଅଞ୍ଚଳର ଲୋକମାନଙ୍କ ମଧ୍ୟରେ ସାଂସ୍କୃତିକ ସଂପର୍କ ଅତି ନିବିଡ଼ । ଉତ୍ତରବାଲେଶ୍ୱର ଓ ଦକ୍ଷିଣ ମେଦିନୀପୁର ବାସୀଙ୍କ ମଧ୍ୟରେ ଭାବଗତ ବଂଧୁତ୍ୱର ସଂପର୍କ ମଧ୍ୟ ଅତି ଘନିଷ୍ଠ । ଏମାନଙ୍କର କଥିତ ଭାଷା 'ଓଡ଼ିଆ' । ସେଇଥିପାଇଁ ମେଦିନୀପୁର ଅଞ୍ଚଳବାସୀମାନଙ୍କୁ କଲିକତା ବଂଗାଳୀମାନେ "ମେଦିନୀପୁର ଉଡ଼େ" ବୋଲି ସଂବୋଧନ କରିବାର ଦେଖାଯାଏ । ଏପରି ମନ୍ତବ୍ୟ ଭୁଲନୁହେଁ । କାରଣ ଦକ୍ଷିଣ ମେଦିନୀପୁର ଅଞ୍ଚଳରେ ବାସ କରୁଥିବା ଲୋକଙ୍କର ଭାଷା, ଚଳଣୀ, ଓଡ଼ିଆଙ୍କ ସହ ସଂପୂର୍ଣ୍ଣ ସମାନ ଥିବା ହେତୁ ବଂଗାଳୀମାନଙ୍କ ସହିତ ସେମାନେ ସାମିଲ ହୋଇ ପାରୁ ନାହାନ୍ତି । ଏପରି କ୍ଷେତ୍ରରେ ମେଦିନୀପୁର ବାସୀ ଓଡ଼ିଆମାନେ ତାଙ୍କର ପଦବୀକୁ ଅପଭ୍ରଂଶ କରାଇବା ଉଚିତ କି ?

ରାଜ୍ୟର କାଳ୍ପନିକ ସୀମାରେଖା ଶାସନ ପାଇଁ ଉଦ୍ଦିଷ୍ଟ, ଏହା ଭାଷା ଓ ସଂସ୍କୃତିର ବିନାଶ ପାଇଁ ନୁହେଁ । ଯିଏ ଯେଉଁ ରାଜ୍ୟର ଥା'ନ୍ତୁନା କାହିଁକି, ସେ ତାଙ୍କର ଭାଷା, ସଂସ୍କୃତି, ବଂଶ ପରଂପରା ପ୍ରତି ସମ୍ମାନ ରଖିବା ଆବଶ୍ୟକ । ପଞ୍ଜାବୀମାନେ ପୃଥିବୀର ଯେକୌଣସି ସ୍ଥାନରେ ରହିଲେମଧ୍ୟ ସେମାନେ କେବେ ତାଙ୍କ ସଂସ୍କୃତିଠାରୁ ବିଚ୍ୟୁତ ହୋଇ ନାହାନ୍ତି । ଲାଡ଼େନ ଆକ୍ରମଣ ପରେ ଆମେରିକାବାସୀ ପଞ୍ଜାବୀମାନଙ୍କୁ ଭୁଲବୁଝି ଆତଙ୍କବାଦୀ ଭାବି ସେମାନଙ୍କୁ ଆକ୍ରମଣ କରିଥିଲେ ସୁଦ୍ଧା ସେମାନେ ଏହାର ଦୃଢ଼ ମୁକାବିଲା କଲେ ସତ ମାତ୍ର ନିଜର ସଂସ୍କୃତି ବେଶଭୂଷା ପରିବର୍ତ୍ତନ କଲେ ନାହିଁ । ଏହାକୁହିଁ ଗୋଟିଏ ଜାତିର ସ୍ୱାଭିମାନ କୁହାଯାଏ । ଏଣୁ ମେଦିନୀପୁର ସମେତ ଅନ୍ୟାନ୍ୟ ବିଚ୍ଛିନ୍ନାଞ୍ଚଳରେ ଯେଉଁ ଓଡ଼ିଆ ଭାଇମାନେ ବାସ କରୁଛନ୍ତି, ତାଙ୍କର ଭାଷା ଓ ସଂସ୍କୃତି ରକ୍ଷା କରିବା ନୈତିକ ଦାୟିତ୍ୱ ଅଟେ । ସର୍ବୋପରି, ନିଜର ବଂଶାନୁଗତ ପଦବୀର ଅପଭ୍ରଂଶ କରାଇବା – ନିଜ ପୂର୍ବ ପୁରୁଷଙ୍କ ପ୍ରତି ବିଶ୍ୱାସଘାତକତା ନୁହେଁ କି ?

ବିଳମ୍ବରେ ହେଲେ ମଧ୍ୟ ଉତ୍କଳ ବଂଗ ମୈତ୍ରୀ ସଂଘ ଉଭୟ ଅଞ୍ଚଳର ପାରମ୍ପରିକ ଭାଷା ଓ ସଂସ୍କୃତି ରକ୍ଷା କରିବାର ଯେଉଁ ପ୍ରୟାସ କରିଛନ୍ତି, ତାହା ଏକ ବୈପ୍ଳବିକ, ଯୁଗାନ୍ତକାରୀ ପଦକ୍ଷେପ ନିଶ୍ଚୟ । ଏବିଷୟରେ ବାଲେଶ୍ୱର ଟାଉନହଲଠାରେ ଅନୁଷ୍ଠିତ ବୈଠକରେ ମୋର ମତ ଦେବା ସହିତ ଶ୍ରୀଯୁକ୍ତ ଅଲୋକନନ୍ଦୀ ଓ ତାଙ୍କ ସହଯୋଗୀମାନଙ୍କୁ ବିଶେଷ ସାଧୁବାଦ ଜ୍ଞାପନ କରିଥିଲି । ଭୋଗରାଇ ଓ ଜଳେଶ୍ୱର ଅଞ୍ଚଳର ଲୋକମାନଙ୍କର ଦକ୍ଷିଣ ମେଦିନୀପୁର ବାସୀଙ୍କ ସହ ଯେପରି ଅକାଟ୍ୟ ସାଂସ୍କୃତିକ ବଂଧନ ରହିଥିଲା, ଯଦିଚ ଏହା ସାମଗ୍ରିକଭାବେ ମଉଳି ଯାଇଛି, ତଥାପି ଏହି ସଂଘ ସେହି ବଂଧନକୁ ପୁନର୍ଜୀବିତ କରି ପୁରୁଷାନୁକ୍ରମିକ, ଶହଶହ ବର୍ଷର ଭାଷା - ସଂସ୍କୃତିର ରକ୍ଷା ସକାଶେ ସହାୟକ ହେଉ, ଏଥିପାଇଁ ଉଭୟରାଜ୍ୟବାସୀ ସାମିଲ ହେବା ପୂର୍ବକ ଏହାକୁ ଏକ ମହାସଂଘରେ ପରିଣତ କରିବାକୁ ଏହି ମାହେନ୍ଦ୍ର ବେଳାରେ ଆହ୍ୱାନ କରୁଛି ।

# ବିଧାୟକ ଭୋଗରାଇ,
ସଂପାଦକ , ଉତ୍କଳ ସମ୍ମିଳନୀ ବାଲେଶ୍ୱର ଶାଖା

# ଉତ୍କଳ ସମ୍ମିଳନୀ : ଏକ ଉଦ୍ଦୀପନା

## ଅନନ୍ଦା ପ୍ରସାଦ ରାୟ

'ଆଗଙ୍ଗା ଗୋଦାବରୀ' ବିସ୍ତୃତ ଏହି ଉତ୍କଳଭୂମିର ଗୌରବୋଜ୍ଜ୍ୱଳ ପରଂପରାକୁ ଉଜ୍ଜୀବିତ କରି ରଖିବା ନିଶ୍ଚୟ ପ୍ରତ୍ୟେକ ଉତ୍କଳୀୟଙ୍କର କାମ୍ୟ । ଏହା ଏକ ଅତୀତର ସ୍ମୃତି । ଏଥିରେ ରହିଛି ଉତ୍କଳୀୟ ବୀରପୁତ୍ରମାନଙ୍କର ଯଶ, କୀର୍ତ୍ତିର ଐତିହାସିକ ସ୍ୱାକ୍ଷର । ଏକଦା ଏହି ଭୂମିର ସୀମା କେବଳ ନୁହେଁ, ଏହାର ଶୌର୍ଯ୍ୟ, ସଂସ୍କୃତି ପ୍ରତିଭା, ପରାକାଷ୍ଠା ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ପରିବ୍ୟାପ୍ତ ହୋଇଥିଲା ଯେଉଁଥିପାଇଁ ଉତ୍କଳର ଜାତୀୟମାନସରେ ତା'ର ଏକ ପ୍ରତିଧ୍ୱନି ଆଜି ପର୍ଯ୍ୟନ୍ତ ଉଜ୍ଜୀବିତ କରି ଆସିଛି । ଏହାର ପଶ୍ଚାତ୍‌ରେ ରହିଛି ଉତ୍କଳର ସଂସ୍କୃତିକ, ଆଧ୍ୟାତ୍ମିକ ତଥା ରାଜନୈତିକ କୃତିତ୍ୱର ଏକ ପରିଚୟ ।

ତେଣୁ ଉତ୍କଳ ସମ୍ମିଳନୀର ମଣ୍ଡପରେ ବିଶାଳ ଉତ୍କଳର ସେହି ଐତିହାସିକ ସ୍ମୃତିକୁ ପୁନରୁଦ୍ଦୀପିତ କରିବା ଖୁବ୍ ଯଥାର୍ଥ ମନେହୁଏ । ଉତ୍କଳୀୟ ଜାତୀୟତାର ଭିତ୍ତିଭୂମି ଶ୍ରୀ ଜଗନ୍ନାଥ ଏକ ସାର୍ବଜନୀନ ଓ ସର୍ବକାଳୀନ ପରିଚୟ ପ୍ରଦାନ କରନ୍ତି । ଏହାହିଁ ଉତ୍କଳର ଗର୍ବ, ଗୌରବ । ଭାରତବର୍ଷର ଧର୍ମ ଧାରଣାରେ ଉତ୍କଳୀୟମାନଙ୍କର ବିପୁଳ ଖ୍ୟାତି ରହି ଆସିଛି । ଯେପରି ପଞ୍ଚସଖା ଯୁଗର ଭକ୍ତିଧାରା-ଯାହା ଶହଶହ ବର୍ଷ ଧରି ଭାରତୀୟ ଧର୍ମ ଜଗତରେ ସ୍ମରଣୀୟ ହୋଇ ରହି ଆସିଛି । ସେ ଦୃଷ୍ଟିରୁ ଉତ୍କଳୀୟ ଜାତୀୟତା ଏକ ଦିଗନ୍ତବ୍ୟାପୀ ଅଭିଯାତ୍ରୀ କହିଲେ ଠିକ୍ ହେବ । ଏହା ନିର୍ଦ୍ଦିଷ୍ଟ ବା ସୀମିତି ନୁହେଁ । ଏହା ଏକ ସମ୍ମିଳିତ ଜନଗୋଷ୍ଠୀଙ୍କର ଆଶା, ଅଭିଳାଷ ଆଉ ସଂକଳ୍ପର ଅନ୍ୟତମ ଅଭିବ୍ୟକ୍ତି ।

ପ୍ରସଙ୍ଗତଃ ଉଲ୍ଲେଖଯୋଗ୍ୟ ଯେ ଭାରତବର୍ଷର ଜାତୀୟ ସଙ୍ଗୀତରେ ସ୍ଥାନ ପାଇଥିବା 'ସିନ୍ଧୁ' ଶବ୍ଦଟିକୁ ଉଠାଇ ଦେବା ପାଇଁ ଏକ ହାସ୍ୟକର ଯୁକ୍ତି ଉପସ୍ଥାପନ କରାଯାଇଛି । ତା'ର କାରଣ ସ୍ୱରୂପ କୁହାଯାଇଛି ଯେ, ସିନ୍ଧୁ ନୀଦତଟସ୍ଥ ଅଞ୍ଚଳ ଯେହେତୁ ଭାରତ ବିଭାଜନ ପରେ ଆଉ ଭାରତରେ ନାହିଁ, ତାହା ପାକିସ୍ଥାନରେ, ତେଣୁ ସେ ଶବ୍ଦକୁ ଭାରତୀୟ ଜାତୀୟ ସଙ୍ଗୀତରୁ ଉଠାଇ ଦିଆଯାଉ -ଏହା ଅତ୍ୟନ୍ତ ଦୁର୍ବଳ ମାନସିକତା । ଇତିହାସରେ ଭାରତବର୍ଷର ସ୍ଥାନ ଯେପରି ଭାବରେ ରହିଆସଛି ସେଇ ସ୍ମୃତିକୁ ଜାଗ୍ରତ କରି ରଖିବାର କୌଣସି ଅସଙ୍ଗତି ନାହିଁ । ସିନ୍ଧୁନଦୀ ଭାରତବର୍ଷର ସଭ୍ୟତାର ଆଦ୍ୟସ୍ରୋତ । ଏହାରିଠାରୁ ଉତ୍ପତ୍ତି ହୋଇଛି ସିନ୍ଧୁ ସଭ୍ୟତା ଯାହା ପରବର୍ତ୍ତୀ କାଳରେ ହିନ୍ଦୁ ସଭ୍ୟତାରେ ରୂପାନ୍ତରିତ ହୋଇଛି । ତେଣୁ 'ସିନ୍ଧୁ' ଏଇ ଶବ୍ଦଟିର ଭାବାତ୍ମକ ଉଲ୍ଲାସ ନିଶ୍ଚୟ ଭାରତୀୟମାନଙ୍କ ମାନସପଟରେ ସଞ୍ଚାରିତ ହେବ ଯେତେବେଳେ ଆମେ ଜାତୀୟ ସଙ୍ଗୀତରେ ଏହି ଶବ୍ଦର ଉଚ୍ଚାରଣ କରିବୁ । ଏ ସଂକ୍ରାନ୍ତରେ ଆପତ୍ତି ଉଠିବା ନିରର୍ଥକ ଓ ଅଯାଥାର୍ଥ ମଧ୍ୟ ।

ଠିକ୍ ସେହିପରି ଆଗଙ୍ଗା ଗୋଦାବରୀ ଉତ୍କଳ ଭୂମି କହିଲେ ଆମେ ଆମର ସେହି ଐତିହ୍ୟକୁ ସ୍ମରଣ କରିବାର ସୁଯୋଗ ପାଉଁ, ସେଥିରେ କୌଣସି ସାଂପ୍ରତିକ୍ ପରିଚୟର କଥାନାହିଁ । ଉତ୍କଳ ଜନନୀଙ୍କର ସେହି ଦୀପ୍ତିମନ୍ତ ରୂପକୁ ଆମେ ସ୍ମରଣ କଲାବେଳେ ଆମର ପୂର୍ବପୁରୁଷମାନଙ୍କର ଗୌରବକୁହିଁ ଅନୁଶୀଳନ କରିବାର ସୁଯୋଗ ପାଉଁ । ତେଣୁ ଉତ୍କଳ ସମ୍ମିଳନୀର ଜାତୀୟ ସଙ୍ଗୀତରେ ଏହା ସ୍ଥାନିତ ହେବା ସଂପୂର୍ଣ୍ଣ ଯୁକ୍ତିଯୁକ୍ତ । ଯଦିଓ କାଳକ୍ରମେ ଉତ୍କଳର ଯେ ଭୌଗୋଳିକ ସୀମରେ ପରିବର୍ତ୍ତନ ହୋଇଛି ତା ସତ୍ୱେ ଏହାର ଐତିହାସିକ ଗୁରୁତ୍ୱକୁ ଉପେକ୍ଷା କରାଯାଇ ପାରିବନାହିଁ । ସେପରି କଳିଙ୍ଗ ସମ୍ରାଜ୍ୟ କଥା କୁହାଯାଏ, ଏକଦା ଏହା ଯେ ଇତିହାସର ଏକ ସତ୍ୟ, ତାହାହିଁ ପ୍ରତିପାଦ୍ୟ । ବର୍ତ୍ତମାନ କ'ଣ

ଅଛି, କ'ଣ ନାହିଁ ସେ କଥା ସ୍ୱତନ୍ତ୍ର । କିନ୍ତୁ ଯାହାଥିଲା ଯାହା ମହାନତାକୁ ପ୍ରତିପାଦିତ କରଥିଲା ତାହା ସ୍ମରଣ କରିବା ଦ୍ୱାରା ଆମ ଭିତରେ ସେହି ମହାନତାହିଁ ପ୍ରତିବିମ୍ବିତ ହୋଇ ଉଠିବ ।

ସୁତଂରା ଇତିହାସର ପ୍ରକ୍ରିୟାର ଏଇ ଓଡ଼ିଆ ଯାହାକୁ ଆମେ ଓଡ଼ିଆ ଭାଷା, ସାହିତ୍ୟ, ସଂସ୍କୃତିର ବିଭିନ୍ନ ଲକ୍ଷ୍ୟ, ଉଲ୍ଲେଖ୍ୟରେ ଦେଖୁଁ ତାର ଯେଉଁ ଐତିହାସିକ ଭିତ୍ତିଭୂମି ରହିଥିଲା ତାକୁ ପୁନର୍ବାର ଲାଭ ନକିର ପାରିଲେ ମଧ୍ୟ ସେହି ପ୍ରେରଣାରେ ବର୍ତ୍ତମାନକୁ ବଳିଷ୍ଠ କରିବା ସର୍ବାଦୌ ସମୀଚିନ । ଆଗଙ୍ଗା ଗୋଦାବରୀ କହିଲେ ଗଙ୍ଗା ଠାରୁ ଗୋଦାବରୀ ପର୍ଯ୍ୟନ୍ତ ବିସ୍ତୃତ ଅଂଚଳ, ଯାହା ଏକଦା ଏହି ଓଡ଼ିଶାର ଥିଲା ଏକ ପରିଚୟ, ତାହା ଆମକୁ ଗୌରବାନ୍ୱିତ କରିବ ଏବଂ ସେହି ଗୌରବକୁ ଅନ୍ୟଭାଷାରେ ଆମେ ଜାହିର କରିବାରେ ସମର୍ଥ ହୋଇ ପାରିଲେ ଏହା ସାର୍ଥକ ହୋଇ ପାରିବ । ଉଦାହରଣ ସ୍ୱରୂପ କେତେକ ଭାରତୀୟ ଯୋଗଜନ୍ମା ସୁପୁରୁଷ ଯଥା ଶ୍ରୀଅରବିନ୍ଦ, ଅଖଣ୍ଡ ଭାରତର ମାନଚିତ୍ରକୁ ସ୍ମରଣ କରିବା ଉଦ୍ଦେଶ୍ୟରେ ସେହି ଅଖଣ୍ଡ ଭାରତବର୍ଷରୁ ବିଚ୍ଛିନ୍ନ ହୋଇଥିବା ଅଂଚଳକୁ ମଧ୍ୟ ମାନଚିତ୍ରରେ ତଦ୍ରୂପ ସ୍ଥାନିତ କରି, ଭାରତବର୍ଷର ବନ୍ଦନା କରିବାରେ ଲାଗିଛନ୍ତି ସେହିପରି ଆମେ ଉତ୍କଳୀୟ ଉତ୍ତର ପୁରୁଷମାନେ ଆଗଙ୍ଗା ଗୋଦାବରୀ ବିସ୍ତୃତ ଉତ୍କଳଭୂମିକୁ ଆମର ଜାତୀୟ ସମ୍ମିଳନୀର ମଣ୍ଡପରେ ବନ୍ଦନା କରିବା ସଂପୂର୍ଣ୍ଣ ଯଥାର୍ଥ ଏବଂ ବାଞ୍ଛନୀୟ ମଧ୍ୟ । ସଭ୍ୟତା ଓ ସଂସ୍କୃତିର ଗୋଟିଏ ନିରବଚ୍ଛିନ୍ନ ଧାରା ବହି ଆସିଛି ଯାହା କୌଣସି ତତ୍‌କାଳୀନ ଘଟଣାବଳୀର ପରିସରରେ ଆବଦ୍ଧ ହୋଇ ରହେନାହିଁ । ତାହା ଏକ ଭାବନାର ଦିଗନ୍ତ, ଆମେ ସେହି ଦିଗନ୍ତକୁ ସ୍ମୃତିରେହିଁ ପୁନରୁଜ୍ଜୀବିତ କରି ପାରିବା - ଯଦିଓ ବାସ୍ତବର ଆମେ ଆଉ ଏକ ପରିସ୍ଥିତିରେ ରହିବା, ତା ସତ୍ତ୍ୱେ ଏକ ଐତିହାସିକ ସତ୍ୟର ପୁନରାବଲୋକନ କରିବାରେ କୌଣସି ପ୍ରକାର ଦ୍ୱିଧା କରିବା ଉଚିତ ନୁହେଁ । ଉତ୍କଳ ସମ୍ମିଳନୀ ଏକ ଉଦ୍ଦୀପନା ।

ପରିଶେଷରେ ମୁଁ, ଉତ୍କଳ ସାହିତ୍ୟ ସମାଜର ସଭାପତି ନା ଉତ୍କଳ ସମ୍ମିଳନୀର ଜଣେ ରାଜ୍ୟସ୍ତରୀୟ ପରିଷଦ ସଭ୍ୟଭାବେ ଏହି ଉତ୍କଳ ସମ୍ମିଳନୀର ଶାଖାର ଅଧିବେଶନକୁ ସର୍ବାନ୍ତଃକରଣରେ ସଫଳ ସୁନ୍ଦର ହେଉ ବୋଲି କାମନା କରୁଛି ।

# ସଭାପତି, ଉତ୍କଳ ସାହିତ୍ୟ ସମାଜ, କଟକ

''ଉତ୍କଳ-ସାହିତ୍ୟର ଜୀବନୀଶକ୍ତି ଥିବାରୁ ବହୁ ଶତ ବର୍ଷବ୍ୟାପୀ ଅନାଚାର ସହି ମଧ ଆଜିଯାଏ ପଡ଼ି ରହିଅଛି । କିଏ ବୋଲେ ଭାଷାଟା ନିର୍ଜୀବ ?''

**- ବ୍ୟାସକବି ଫକୀରମୋହନ**

# ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନର ଇତିହାସ : ଏକ ବିହଙ୍ଗ ଦୃଷ୍ଟି

ଡକ୍ଟର କାର୍ତ୍ତିକେଶ୍ୱର ପାତ୍ର

ଭାଷା, ସାହିତ୍ୟ, ସଂସ୍କୃତି ତଥା ପରିବେଶକୁ ନେଇ ପ୍ରଦେଶମାନ ଗଢ଼ି ଉଠୁଛି । ଆମ ଓଡ଼ିଶା ପ୍ରଦେଶ ଗଠନ ପଛରେ ଏହି ଐତିହାସିକ ସତ୍ୟ ସହିତ ଏ ମାଟିର ସୁଯୋଗ୍ୟ ସନ୍ତାନମାନଙ୍କର ଭୂମିକା ଆଜି ସ୍ମରଣ କରାଯାଇପାରେ । ଆଜିର ଓଡ଼ିଶା ପ୍ରଦେଶ ଉନବିଂଶ ଶତାବ୍ଦୀରେ ଛିନ୍ନଭିନ୍ନ ହୋଇ ରହିଥିଲା । ୧୮୦୩ରେ ଇଂରେଜମାନେ ଓଡ଼ିଶା ଅଧିକାର କରି ସାରିଲା ପରେ, ମଧ୍ୟ ଯୁଗୀୟ ଓଡ଼ିଶା ତାର ଆତ୍ମପରିଚୟ ହରାଇଥିଲା । ଗଞ୍ଜାମ ପାରଳାଖେମୁଣ୍ଡି ଅଞ୍ଚଳ ମାନ୍ଦ୍ରାଜ୍‌ରେ, ସମ୍ବଲପୁର ଅଞ୍ଚଳ ମଧ୍ୟ ପ୍ରଦେଶରେ, ବାଲେଶ୍ୱରର ମେଦିନୀପୁର ଅଞ୍ଚଳକୁ ସେମାନେ ସେମାନଙ୍କର ପ୍ରଶାସନିକ ଦୃଷ୍ଟିରୁ ବଙ୍ଗ ପ୍ରେସିଡେନ୍‌ସୀ ସହିତ ସାମିଲ କରାଇଥିଲେ । ଓଡ଼ିଆ ଭାଷାଭାଷୀ ଅଞ୍ଚଳରେ ଏହି ବିଚ୍ଛିନ୍ନତାର ସୁଯୋଗ ନେଇ କେତେକ ବଙ୍ଗୀୟ ଶିକ୍ଷିତ ଯୁବକ କହିବାକୁ ଆରମ୍ଭ କରିଥିଲେ, ଓଡ଼ିଆ ଗୋଟିଏ ସ୍ୱତନ୍ତ୍ର ଭାଷା ନୁହେଁ, ବାଲେଶ୍ୱର ହାଇସ୍କୁଲର ଜନୈକ ଶିକ୍ଷକ କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟ ପ୍ରକାଶ୍ୟରେ କହିଥିଲେ ''ଓଡ଼ିଆ ଏକଟା ସ୍ୱତନ୍ତ୍ର ଭାଷା ନୟ ।'' ତାଙ୍କ ସାନଭାଇ ମେଦିନୀପୁର ଜିଲାରେ ସ୍କୁଲ ସମୂହର ପରିଦର୍ଶକ ଥିବା ସମୟରେ ମିଥ୍ୟା ନୋଟିସ ଜାରି କରି ପ୍ରାଥମିକ ସ୍କୁଲର ଓଡ଼ିଆ ଶିକ୍ଷକମାନଙ୍କୁ ସ୍କୁଲ ଛାଡ଼ି ଚାଲିଯିବା ପାଇଁ ଭୟଭୀତ କରିଥିଲେ । ଫଳରେ ସେହି ସ୍କୁଲମାନଙ୍କରେ ଦିଆ ଯାଉଥିବା ଓଡ଼ିଆ ଶିକ୍ଷା ପାଇଁ ଓଡ଼ିଆ ଶିକ୍ଷକମାନେ ଏରେଷ୍ଟ ଭୟରେ ସ୍କୁଲ ଛାଡ଼ି ପଳାଇ ଆସିଥିଲେ ।

ଏଭଳି ଏକ ସଂକଟ ମୁହୂର୍ତ୍ତରେ ଓଡ଼ିଆ ଭାଷା ସାହିତ୍ୟକୁ ରକ୍ଷା କରିବା ପାଇଁ, ସମସ୍ତ ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଏକତ୍ରିତ କରିବା ପାଇଁ ଯେଉଁ ଯୁଗଜନ୍ମା ସୁଯୋଗ୍ୟ ସନ୍ତାନମାନେ ଆଗେଇ ଆସିଥିଲେ ସେମାନଙ୍କ ମଧ୍ୟରେ ବ୍ୟାସକବି ଫକୀରମୋହନ, ଉତ୍କଳ ଗୌରବ ମଧୁସୂଦନ, କୃଷ୍ଣଚନ୍ଦ୍ର ଗଜପତି, ଗୌରୀଶଂକର, ପଣ୍ଡିତ ନୀଳମଣି ବିଦ୍ୟାରତ୍ନ, ସ୍ୱଭାବ କବି ଗଙ୍ଗାଧର ମେହେର, ମୁକୁନ୍ଦ ପ୍ରସାଦ ଓ ଦ୍ୱାରିକା ନାଥ, ଉତ୍କଳମଣି ଗୋପବଂଧୁ ଆଦି ଅନ୍ୟତମ । ଏହି ବ୍ୟକ୍ତିମାନେ କି ଭଳି ଭାବରେ କୃଚ୍ଛ୍ର ସାଧନା କରିଥିଲେ-ତାର ଗୋଟିଏ ଉଦାହରଣ ବ୍ୟାସକବି ଫକୀର ମୋହନଙ୍କ ଜୀବନରୁ ଉପସ୍ଥାପିତ କରାଯାଉଛି । ବାଲେଶ୍ୱରରେ ଓଡ଼ିଆ ଛପାକଳ ପ୍ରତିଷ୍ଠା ସମୟରେ ରାତିନାହିଁ ଦିନନାହିଁ, ସେ ଯେତେବେଳେ ଘଣ୍ଟାଘଣ୍ଟା ଛପାକଳ ଚାଲୁ କରାଇବା ପାଇଁ ଛିଡ଼ା ହୋଇ ରହୁଥିଲେ-ସେତେବେଳେ ଅର୍ଶରୋଗ ଜନିତ ମଳଦ୍ୱାରରୁ ରକ୍ତ କ୍ଷରିତ ହୋଇ କେତେବେଳେ ମାଟି ଭିଜାଇ ଦେଉଥିଲା -ସେଇଥିପାଇଁ ସେ ଭ୍ରୁକ୍ଷେପ କରୁ ନଥିଲେ । ଏହି ସନ୍ତାନମାନେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଆନ୍ଦୋଳନରେ ନିଜନିଜକୁ ଏ ଭଳି ସାମିଲ କରିଥିଲେ ଯେ ମୃତ୍ୟୁ ଆସି ଦ୍ୱାରଦେଶରେ କରାଘାତ କଲେ ମଧ୍ୟ ସେଥିପାଇଁ ସେମାନଙ୍କର ଖାତିର ନଥିଲା ।

ପ୍ରଥମେ ଉତ୍କଳ ସଭା ଗଠିତ ହୋଇଥିଲା । ଗଞ୍ଜାମରେ ଗଞ୍ଜାମ-ଉତ୍କଳ-ହିତ ବାଦିନୀ ସଭା ଏବଂ ସମ୍ବଲପୁରରୁ ହିତୈଷିଣୀ କାଗଜ ଆତ୍ମ ପ୍ରକାଶ ଲାଭ କରିଥିଲା । ଏମାନଙ୍କର ମୁଖ୍ୟ ଭୂମିକା ଥିଲା-ଆନ୍ଦୋଳନ ଓ ସଂଗଠନ ଜରିଆରେ ଓଡ଼ିଆ ଭାଷା ଭାଷୀ ଅଞ୍ଚଳକୁ ଏକତ୍ରିତ କରିବା । ଯେତେବେଳେ

୧୮୮୫ରେ ମଧ୍ୟ ପ୍ରଦେଶର ମୁଖ୍ୟ କମିଶନର ସାର୍ ଆଣ୍ଡ୍ରୁ ଫେଜର୍ ଶାସନର ସୁବିଧା ଆଳରେ ସମ୍ବଲପୁର କୋର୍ଟ କଚେରୀମାନଙ୍କରୁ ଓଡ଼ିଆ ଭାଷା ଉଚ୍ଛେଦ କରି ହିନ୍ଦୀ ଭାଷା ପ୍ରଚଳନ କଲେ । ସମ୍ବଲପୁରର ଅଧିବାସୀ ଉତ୍କ୍ଷିପ୍ତ ହୋଇ ଉଠିଲେ । ନୀଳମଣି ବିଦ୍ୟାରତ୍ନଙ୍କ ନେତୃତ୍ୱରେ ଓ ସ୍ୱଭାବ କବି ଗଙ୍ଗାଧର ମେହେରଙ୍କ ଆହ୍ୱାନରେ ଆନ୍ଦୋଳନ ତେଜି ଉଠିଲା ।

୧୮୮୮ରେ ଯେତେବେଳେ ବଙ୍ଗର ଲେଫଟ୍‌ନେଣ୍ଟ ଗଭର୍ଣ୍ଣର ସାର ଏସ୍. ସି. ବେଲେ କଟକ ଆସିଥିଲେ-କଟକରେ ଉତ୍କଳ ସଭା ତରଫରୁ ଜାନୁୟାରୀ ୧୫ ତାରିଖ ଦିନ ମଧ୍ୟ ପ୍ରଦେଶ, ମାନ୍ଦ୍ରାଜ ଓ ବଙ୍ଗ ପ୍ରେସିଡେନ୍‌ସି ସହିତ ମିଶି ରହିଥିବା ଓଡ଼ିଆ ଭାଷା ଭାଷୀ ଅଞ୍ଚଳକୁ ଅଲଗା କରି ଦେବା ପାଇଁ ଏକ ସ୍ମାରକ ପତ୍ର ପ୍ରଦାନ କରାଯାଇଥିଲା । ୧୯୦୩ରେ ମଧୁସୂଦନ ଦାସଙ୍କ ନେତୃତ୍ୱରେ ଗଠିତ ଉତ୍କଳ ସମ୍ମିଳନୀରେ ସମ୍ବଲପୁର, ଗଞ୍ଜାମ, କଟକ, ବାଲେଶ୍ୱର ସମେତ ଅନ୍ୟ ସ୍ଥାନମାନଙ୍କରେ ରହୁଥିବା ଓଡ଼ିଆ ଭାଷୀ ଲୋକଙ୍କୁ ଯୋଗଦେବାପାଇଁ ଆହ୍ୱାନ ଦିଆ ଯାଇଥିଲା । ମଧୁବାବୁ ଏହି ସମ୍ମିଳନୀରେ ଉଦ୍‌ବୋଧନ ଦେଇ ଉଦାତ୍ତ କଣ୍ଠରେ ଗାଇଥିଲେ -

"ଏହି ସମ୍ମିଳନୀ ଜାତିପ୍ରାଣସିନ୍ଧୁ କୋଟି ପ୍ରାଣବିନ୍ଦୁ ଧରେ ।
ତୋର ପ୍ରାଣବିନ୍ଦୁ ମିଶାଇ ଦେ ଭାଇ ଡେଇଁ ପଡ଼ି ସିନ୍ଧୁନୀରେ ।"

ମଧୁସୂଦନ ଦାସ ଭାଇସ୍‌ରାୟ ଲର୍ଡ଼ କର୍ଜନଙ୍କୁ ଓଡ଼ିଶାକୁ ଆମନ୍ତ୍ରଣ କରିଥିଲେ ଏବଂ ଉତ୍କଳ ସମ୍ମିଳନୀ ତରଫରୁ ଓଡ଼ିଆ ଭାଷାଭାଷୀ ଅଞ୍ଚଳରେ ଏକତ୍ରିକରଣ ପାଇଁ ଏକ ସ୍ମାରକ ପତ୍ର କଟକରେ ପ୍ରଦାନ କରାଯାଇଥିଲା । ଏହି ପ୍ରସ୍ତାବକୁ ଲର୍ଡ଼ କର୍ଜନ ଆନ୍ତରିକତାର ସହିତ ଗ୍ରହଣ କରିଥିଲେ ।

୧୯୦୩ ଡିସେମ୍ବର ୩ ତାରିଖରେ ଭାରତ ସରକାରଙ୍କ ଘରୋଇ ସଚୀବଙ୍କ ତରଫରୁ ରିସଲୀ ସର୍କୁଲାର ପ୍ରକାଶିତ ହେଲା । ଏଥିରେ ପ୍ରଥମ କରି ଓଡ଼ିଆ ଭାଷାଭାଷି ଅଞ୍ଚଳର ଏକତ୍ରୀକରଣ ପାଇଁ ସ୍ୱୀକୃତି ମିଳିଲା ।

୧୯୦୫ରେ ଜୁଲାଇ ୧୯ ତାରିଖରେ ସମ୍ବଲପୁରକୁ ମଧ୍ୟ ପ୍ରଦେଶରୁ ବିଚ୍ଛିନ୍ନ କରି ଓଡ଼ିଶା ଡିଭିଜନ ସହ ବଙ୍ଗ ପ୍ରେସିଡେନ୍‌ସିରେ ରଖାଗଲା । ସମ୍ବଲପୁର ସହିତ କଳାହାଣ୍ଡି, ସୋନପୁର, ରେଢ଼ାଖୋଲ, ବାମଣ୍ଡା ଓ ପାଟଣାକୁ ମଧ୍ୟ ପ୍ରଦେଶରୁ ତଥା ବଢ଼େଇ ଓ ଗଙ୍ଗାପୁର ଛୋଟ ନାଗପୁରରୁ ଆସି ଓଡ଼ିଶା ଡିଭିଜନରେ ମିଶିଲା । ଏହା ଥିଲା ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନର ପ୍ରଥମ ସଫଳ ପଦକ୍ଷେପ । ଏଥିରେ ସନ୍ତୁଷ୍ଟ ନହୋଇ ମଧୁସୂଦନ ଦାସଙ୍କ ନେତୃତ୍ୱରେ ବିଶିଷ୍ଟ ବ୍ୟକ୍ତିମାନେ ଇଂଲଣ୍ଡ ଯାତ୍ରା କରି ଭାରତ ଶାସନ ସହିତ ଜଡ଼ିତ ଥିବା ଶାସକମାନଙ୍କ ସହିତ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ପାଇଁ ଆଲୋଚନା କରି ଦାବି ଉପସ୍ଥାପିତ କରିଥିଲେ । କେବଳ ସେତିକି ନୁହେଁ, ବିହାର ଓଡ଼ିଶା ପ୍ରାଦେଶିକ ଲେଜିସଲେଟିଭ କାଉନ୍‌ସିଲରେ ବାରମ୍ବାର କାଉନ୍‌ସିଲର ସଦସ୍ୟ ଭାବରେ ମଧୁସୂଦନ ଦାସ ଶକ୍ତିଶାଳୀ ଯୁକ୍ତି ବାଢ଼ିଥିଲେ । ୧୯୧୨ ଏପ୍ରିଲ ୧ ତାରିଖରେ ଓଡ଼ିଶାର ସମ୍ବଲପୁର, ଅନୁଗୁଳ, ବାଲେଶ୍ୱର, କଟକ, ପୁରୀ ଆଦି ଜିଲାକୁ ବଙ୍ଗରୁ ଆଣି ବିହାର ସହିତ ମିଶାଇ ଦିଆଗଲା ଏବଂ ବିହାର-ଓଡ଼ିଶା ପ୍ରଦେଶ ଗଠିତ ହେଲା । ୧୯୧୭ରେ ସଚୀବ ମଣ୍ଟେଗୁଙ୍କୁ ମଧୁବାବୁ ଉତ୍କଳ ସମ୍ମିଳନୀ ମାଧମରେ ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଏକତ୍ରିକରଣ ପାଇଁ ସବିଶେଷ ଯୁକ୍ତି ସହ ବୁଝାଇବା ପାଇଁ ଚେଷ୍ଟା କରିଥିଲେ ଏବଂ ୧୯୧୮ରେ ଉତ୍କଳ ସମ୍ମିଳନୀର ଅଧିବେଶନରେ ସଭାପତିତ୍ୱ କରି ଚେମସ୍ ଫୋର୍ଡ଼ ଖସଡ଼ାକୁ ପୁଙ୍ଖାନୁପୁଙ୍ଖ ଆଲୋଚନା କରିଥିଲେ । ମାତ୍ର, ଦୁଃଖର ବିଷୟ ପରବର୍ତ୍ତୀ କାଳରେ ୧୯୧୯ରେ ଭାରତ ସ୍ୱାୟତ୍ତଶାସନ ପାଇଁ ଯେଉଁ ବ୍ୟବସ୍ଥା କରିଥିଲା-ସେଥିରେ ଓଡ଼ିଆଭାଷୀ ମାନଙ୍କର ଏହି ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଦାବି ସ୍ଥାନ ପାଇ ନଥିଲା ।

ମାତ୍ର ବିହାରର ଡକ୍ଟର ସଚିଦାନନ୍ଦ ସିହ୍ନା ଏହି ଦାବିକୁ କାଉନ୍‌ସିଲରେ ଉପସ୍ଥାପନ କରିଥିଲେ, ତାଙ୍କର ମତ ଥିଲା-ଓଡ଼ିଆ ଭାଷାଭାଷୀ ବିଚ୍ଛିନ୍ନାଞ୍ଚଳ ବଙ୍ଗ, ବିହାର ଓ ମଧ୍ୟପ୍ରଦେଶରୁ ଆଣି ବିହାର-ଓଡ଼ିଶା ଡିଭିଜନରେ ମିଶାଇ ଦେବା ଏକାନ୍ତ ଆବଶ୍ୟକ । ରାଜେନ୍ଦ୍ର ନାରାୟଣ ଭଞ୍ଜଦେବ ଏହାକୁ ଦୃଢ଼ ଭାବରେ ସେହି କାଉନ୍‌ସିଲରେ ସମର୍ଥନ ଜ୍ଞାପନ କରିଥିଲେ । ଭାରତର ବହୁ ନେତା ଏହାକୁ ସମର୍ଥନ କରିଥିଲେ । ୧୯୨୩ରେ ଏହି ଦାବିକୁ ମାନ୍ଦ୍ରାଜ ଲେଜିସ୍‌ଲେଟିଭ କାଉନ୍‌ସିଲର ସଦସ୍ୟ-ବିଶ୍ୱନାଥ କର ଓ ଶଶୀଭୂଷଣ ରଥ ବିହାର ଓଡ଼ିଶା ଲେଜିସ୍‌ଲେଟିଭ୍ କାଉନ୍‌ସିଲର ସଦସ୍ୟ ପୁନର୍ବାର ଉପସ୍ଥାପିତ କରିଥିଲେ ।

ଏହି ସମସ୍ତ ପଦକ୍ଷେପ ସହିତ ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଇଂଲଣ୍ଡରେ ବସିଥିବା ଗୋଲ ଟେବୁଲ ବୈଠକରେ ଯୋଗଦେଇ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶର ଗଠନର ଦାବିକୁ ସୁଦୃଢ଼ କରିଥିଲେ । ଓଡ଼ିଶାର ନେତୃବୃନ୍ଦଙ୍କର ଏହି ଚାପ ଫଳରେ ସି.ଏଲ.ଫିଲିପ୍ ଏବଂ ଏସି. ଡଫଙ୍କୁ ନେଇ ଏକ ତଦନ୍ତ କମିଟି ଗଠନ କରାଯାଇଥିଲା ଏବଂ ଏହି କମିଟି ଏକ ସମର୍ଥନସୂଚକ ରିପୋର୍ଟ ଦାଖଲ କରିଥିଲା ।

୧୯୨୮ରେ ସାଇମନ କମିଶନ ଆଗରେ ପାଟଣାଠାରେ ଓଡ଼ିଶାର ବହୁ ନେତା ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଦାବିକୁ ଉପସ୍ଥାପିତ କରିଥିଲେ । ୧୯୩୦ରେ ସାଇମନ କମିଶନ ରିପୋର୍ଟ ପ୍ରକାଶ ପାଇଲା ।ଏହି ରିପୋର୍ଟରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଦାବିକୁ ଗ୍ରହଣ ଯିବା ପାଇଁ ମତ ପ୍ରକାଶ ପାଇଥିଲା ।

ଏହି ସାଇମନ କମିଶନର ରିପୋର୍ଟ ଅନୁଯାୟୀ ମଧ୍ୟ ଏକ ସୀମା ନିର୍ଦ୍ଧାରଣ ପାଇଁ ଏକ କମିଟି ସି.ଆର୍. ଆଟଲୀଙ୍କ ଅଧ୍ୟକ୍ଷତାରେ ଗଠିତ ହେଲା । ଏହି ସୀମା ନିର୍ଦ୍ଧାରଣ କମିଟି ମଧ୍ୟ ଅନୁକୂଳ ମତ ପ୍ରଦାନ କରିଥିଲା ।

ଟେମସ ନଦୀ କୂଳରେ ବସିଥିବା ଗୋଲ ଟେବ୍‌ଲ ବୈଠକରେ ପୁଣି କୃଷ୍ଣଚନ୍ଦ୍ର ଗଜପତି ଯୋଗଦେଇ ପୂର୍ବର ଦାବି ଅତି ଦୃଢ଼ ଯୁକ୍ତିର ସହିତ ଉପସ୍ଥାପିତ କରିଥିଲେ । ଏହି ବୈଠକରେ ପ୍ରସ୍ତାବ ପ୍ରତି ସମର୍ଥନ ମିଳିଥିଲା ।

୧୯୩୧ରେ ଡୋନେଲ କମିଟି ଓଡ଼ିଶାର ସୀମା ନିର୍ଦ୍ଧାରଣ ପାଇଁ ପୁଣି ଗଠିତ ହେଲା । ଏହି କମିଟିକୁ କୃଷ୍ଣଚନ୍ଦ୍ର ଗଜପତି ପ୍ରତିନିଧିତ୍ୱ କରିଥିଲେ । ସଚ୍ଚିଦାନନ୍ଦ ସିନ୍‌ହା ଥିଲେ ବିହାରର ପ୍ରତିନିଧି, ଆସାମର ପ୍ରତିନିଧି ଥିଲେ ଟି.ଆର. ଫୁକୁ ଓ ବମ୍ବେର ପ୍ରତିନିଧି ଏଚ୍.ଏମ୍. ମେହେଟା ଏହି କମିଟିର ସଦସ୍ୟ ଥାଇ ୪୧୦ ବ୍ୟକ୍ତିଙ୍କର ମତାମତ ନେଇ ସୀମା ନିର୍ଦ୍ଧାରଣ ପାଇଁ ମତ ପ୍ରଦାନ କରିଥିଲେ । ଭାରତ ସଚୀବ ସାମୁଏଲ୍ ହୋରେ ଏହି ରିପୋର୍ଟ ଯାଞ୍ଚ କରିବା ପରେ ଏକ ଶ୍ୱେତପତ୍ର ପ୍ରକାଶ କରିଥିଲେ । ସାମୁଏଲ୍ ହୋରେଙ୍କୁ ଓଡ଼ିଶାର ପ୍ରତିନିଧିମାନେ ପାରଳାଖେମୁଣ୍ଡିର ରାଜାଙ୍କ ନେତୃତ୍ୱରେ ଇଂଲଣ୍ଡରେ ସାକ୍ଷାତ କରି ଦାବି ଉପସ୍ଥାପିତ କରିଥିଲେ ।

ବହୁ ଆଲୋଚନା ପର୍ଯ୍ୟାଲୋଚନା ପରେ ଓଡ଼ିଆ ଭାଷାଭାଷିଙ୍କର ଦାବିକୁ ପୁଙ୍ଖାନୁପୁଙ୍ଖ ଭାବରେ ଯାଞ୍ଚ କରିବା ପାଇଁ ଏକ ପାର୍ଲିଆମେଣ୍ଟାରୀ ସବ୍ କମିଟି ଗଠିତ ହୋଇଥିଲା । ଏହି କମିଟିର ରିପୋର୍ଟ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନର ଦାବିକୁ ସୁଗମ କରିଦେଲା ।

୧୯୩୩ରେ ସାର୍ ଅଷ୍ଟିନ୍ ହବାକଙ୍କ ନେତୃତ୍ୱରେ ପ୍ରଶାସନିକ କମିଟି ହାବକ୍ କମିଟି ଗଠିତ ହେଲା । ଏହି କମିଟିର ସିଦ୍ଧାନ୍ତ ଅନୁସାରେ କଟକ ହେଲା ଓଡ଼ିଶାର ରାଜଧାନୀ ଓ ପୁରୀ ହେଲା ଗ୍ରୀଷ୍ମ ନିବାସ । ଓଡ଼ିଶାର ହାଇକୋର୍ଟ ଓ ବିଶ୍ୱବିଦ୍ୟାଳୟ ସ୍ଥାପିତ ହେଲା ।

୧୯୩୫ରେ ଭାରତ ଶାସନର ୨୮୯ ଧାରାରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ସ୍ୱୀକୃତି ପାଇଲା ଏବଂ ୧୯୩୬ ମାର୍ଚ୍ଚ ୩ ତାରିଖରେ ବ୍ରିଟିଶ ସମ୍ରାଟ ତାହାକୁ ଅନୁମୋଦନ କଲେ ।

ଏହି ଅନୁମୋଦନ କ୍ରମେ ୧୯୩୬ ଏପ୍ରିଲ ୧ ତାରିଖରେ ସୃଷ୍ଟି ହେଲା ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ । ପ୍ରଥମେ କଟକ, ପୁରୀ, ବାଲେଶ୍ୱର, ସମ୍ବଲପୁର, ଗଞ୍ଜାମ ଓ କୋରାପୁଟ ଜିଲାକୁ ନେଇ ଏହା ଗଠିତ ହେଲା ।

ଅର୍ଦ୍ଧ ଶତାବ୍ଦୀରୁ ଅଧିକ କାଳ ଧରି ଓଡ଼ିଆ ଭାଷାଭାଷୀଙ୍କର ବହୁ ଆୟାସ ସାଧ୍ୟ ପ୍ରଚେଷ୍ଟା ଫଳ ସ୍ୱରୂପ ଆଜିର ଓଡ଼ିଶାର ସୃଷ୍ଟି । ରେଭେନ୍ସା କଲେଜର ଐତିହାସିକ ହଲ୍‌ରେ ସାର୍ ଅଷ୍ଟିନ୍ ହବାକ୍ ପ୍ରଥମ ରାଜ୍ୟପାଳ ହିସାବରେ ଶପଥ ଗ୍ରହଣ କଲେ ।

ଏହି ନୂତନ ପ୍ରଦେଶର ସେ ସମୟରେ ଆୟତନ ଥିଲା ୩୨,୬୯୫ ବର୍ଗ ମାଇଲ ଏବଂ ଲୋକସଂଖ୍ୟା ଥିଲା ୮୦,୪୩,୬୮୧ । ସମୟ ସୁଯୋଗ ସୁବିଧା ନେଇ ବହୁ ଓଡ଼ିଆ ଭାଷାଭାଷୀ ଅଞ୍ଚଳ ଓଡ଼ିଶା ପ୍ରଦେଶରେ ସାମିଲ ହୋଇଥିଲେ ମଧ୍ୟ ଫୁଲଝର, ମିଦିନାପୁର, ସାମେଟା, ଷଢ଼େଇକଳା ଖରସୁଆଁ ଓଡ଼ିଶାରେ ସାମିଲ ହୋଇ ପାରିନାହିଁ । ଏବର ନୂତନ ପ୍ରଦେଶ ଗଠନ ସମୟରେ ଏହା ସମ୍ଭବ ହୋଇ ପାରିଥାନ୍ତା । ଏଥିପାଇଁ ରାଜନୈତିକ ଇଚ୍ଛାଶକ୍ତି ଆବଶ୍ୟକ । ଅତୀତକୁ ସ୍ମରଣ କରି ଭବିଷ୍ୟତକୁ ଲକ୍ଷ ପ୍ରଦାନରେ ବ୍ରତୀ ହେବାପାଇଁ ଭାଇ ଭଉଣୀମାନଙ୍କୁ ନିବେଦନ କରୁଛି ।

# ଉତ୍କଳ ସମ୍ମିଳନୀ : ବାର୍ତ୍ତା-ବର୍ତ୍ତିକା

## ଡଃ ଦୁର୍ଗାପ୍ରସନ୍ନ ପଣ୍ଡା

୧. ୨୦୦୫ ମସିହାରେ ବାଲେଶ୍ୱରର ଉତ୍ତର ଉପାନ୍ତ ଅଞ୍ଚଳରେ ଉତ୍କଳ ସମ୍ମିଳନୀ ଅନୁଷ୍ଠିତ ହେଉଛି । ଇତି ପୂର୍ବରୁ ଅବିଭକ୍ତ ବାଲେଶ୍ୱର ଜିଲ୍ଲାର ସଦର ମହକୁମା ବାଲେଶ୍ୱରଠାରେ ଉତ୍କଳ ସମ୍ମିଳନୀର ତୃତୀୟ ଅଧିବେଶନ ୧୯୦୬ରେ କିଶୋର ଚନ୍ଦ୍ର ସିଂ ଦେଓଙ୍କ ଅଧକ୍ଷତାରେ ଏବଂ ସମ୍ମିଳନୀର ଦ୍ୱାଦଶ ଅଧିବେଶନ ୧୯୧୬ରେ ଶ୍ରୀନିବାସ ରାଜମଣିଙ୍କ ଅଧକ୍ଷତାରେ ଅନୁଷ୍ଠିତ ହୋଇଥିଲା । ୧୯୧୬ ବାଲେଶ୍ୱର ଅଧିବେଶନ ନିମନ୍ତେ ଏକ ସଂଗୀତ ରଚନା କରିବକୁ ସେତେବେଳେ ଗଞ୍ଜାମରେ ଥିବା କବିଶେଖର ଚିନ୍ତାମଣି ମହାନ୍ତିଙ୍କୁ କାନ୍ତକବିଙ୍କ ବାପା ଅନୁରୋଧ କରିଥିଲେ । ମାତ୍ର କବିଶେଖର ପ୍ରାରମ୍ଭିକ ସଂଗୀତ ପ୍ରେରଣ ନ କରିବାରୁ କାନ୍ତକବି (ସମ୍ଭବତଃ ପିତାଙ୍କ ଅନୁରୋଧରେ) 'ବନ୍ଦେ ଉତ୍କଳ ଜନନୀ' ରଚନା କରି ତାହାକୁ ପ୍ରାରମ୍ଭିକ ସଂଗୀତ ପାଇଁ ପ୍ରଦାନ କରିଥିଲେ ।

୨. ଉତ୍କଳ ସମ୍ମିଳନୀର ସପ୍ତମ ଅଧିବେଶନ ୧୯୧୦ରେ କଟକ ଇଦ୍‌ଗା ପଡ଼ିଆରେ ବସିଥିଲା । ଏହି ଅଧିବେଶନରେ ବାଲେଶ୍ୱରର ରାଜା ବୈକୁଣ୍ଠନାଥ ଦେ ସଭାପତି ଭାବେ ମନୋନୀତ ହୋଇଥିଲେ । ଏହି ଅଧିବେଶନରେ ରାଜା ବୈକୁଣ୍ଠ ନାଥ କେଉଁ କେଉଁ ଅଞ୍ଚଳକୁ ନେଇ ଓଡ଼ିଶା ପ୍ରଦେଶ ଗଠିତ ହେବ ତାର ପ୍ରସ୍ତାବ ଦେଇଥିଲେ ଏବଂ ତାହା ଗୃହୀତ ହୋଇଥିଲା ।

୧୯୧୭ରେ କଟକର ଇଦ୍‌ଗାଠାରେ ଉତ୍କଳ ସମ୍ମିଳନୀର ତ୍ରୟୋଦଶ ଅଧିବେଶନରେ ସଭାପତି ଆସନ ଅଳଂକୃତ କରିଥିଲେ ବ୍ୟାସକବି ଫକୀରମୋହନ ସେନାପତି । ଓଡ଼ିଶାରେ ଶିଳ୍ପର (ଯଥା-ଲବଣ, ବୟନ) ପୁନରୁଦ୍ଧାର, ଇମ୍ପିରିଆଲ୍ କାଉନ୍‌ସିଲ୍‌କୁ ଦୁଇଜଣ ଓଡ଼ିଆ ପ୍ରତିନିଧି ପଠାଇବା, ସିଂହଭୂମ ଅଦାଲତରେ ଓଡ଼ିଆ ଭାଷା ପ୍ରଚଳନ କରାଯିବା ଏବଂ ଉତ୍କଳ ଗୌରବ ମଧୁସୂଦନଙ୍କ ସମ୍ପାଦନାରେ ପ୍ରକାଶିତ The Oriyaକୁ ସମ୍ମିଳନୀର ମୁଖପତ୍ର ଭାବେ ଗ୍ରହଣ କରିବା ଆଦି ପ୍ରସ୍ତାବର ସୂତ୍ରଧର ଥିଲେ ବ୍ୟାସକବି ଫକୀରମୋହନ ।

୧୯୪୪ରେ ସମ୍ମିଳନୀର ଅଷ୍ଟବିଂଶ ଅଧିବେଶନରେ ସଭାପତିତ୍ୱ କରିଥିଲେ ହିନ୍ଦ୍‌ସେବକ ସମାଜର ସଦସ୍ୟ ପଦ୍ମଶ୍ରୀ ଲକ୍ଷ୍ମୀନାରାୟଣ ସାହୁ । ସ୍ୱାଧୀନତାପ୍ରାପ୍ତିର ପରବର୍ତ୍ତୀ କାଳରେ ଏଯାବତ୍ ବାଲେଶ୍ୱରରେ ସମ୍ମିଳନୀର କୌଣସି ଅଧିବେଶନ ହୋଇନାହିଁ । ବାଲେଶ୍ୱରର ତିନିଜଣ ବିଶିଷ୍ଟ ବ୍ୟକ୍ତି, ଯଥା-ରାଜା ବୈକୁଣ୍ଠନାଥ ଦେ, ବ୍ୟାସକବି ଫକୀରମୋହନ ସେନାପତି, ଓ ଭାରତ ସେବକ ଲକ୍ଷ୍ମୀନାରାୟଣ ସାହୁ ଉତ୍କଳ ସମ୍ମିଳନୀରେ ସଭାପତି ହୋଇ ଏହି ଜିଲ୍ଲାର ମାନ ରକ୍ଷା କରିଛନ୍ତି ।

୩. ଉତ୍କଳ ସମ୍ମିଳନୀର ପ୍ରଥମ ଅଧିବେଶନରେ ଉଦ୍‌ଘାଟନୀ ସଂଗୀତ ଭାବେ କବିବର ରାଧାନାଥଙ୍କ ''ସର୍ବେଷାଂନୋ ଜନନୀ ଭାରତ'' (ଭାରତ ଗୀତିକା) ଗାନ କରାଯାଇଥିଲା ବୋଲି ଅନେକଙ୍କ ଧାରଣା ଏ ଯାବତ୍ ଦୃଢ଼ ରହିଛି । ମାତ୍ର 'ଶତାବ୍ଦୀ ସଂକଳନ' (୨୦୦୩)ରେ ସୁପଣ୍ଡିତ ଗବେଷକ ଅଧକ୍ଷ ପଠାଣି ପଟ୍ଟନାୟକ ଲେଖିଛନ୍ତି ''ଆଠଗଡ଼ ରାଜା ରାଧାନାଥ ବର୍ମା ସଂସ୍କୃତ ଭାଷାରେ ପ୍ରଥମେ ମଙ୍ଗଳାଚରଣ ପାଠ କରିଥିଲେ ।

ସଂସ୍କୃତ ମଙ୍ଗଳାଚରଣ ପରେ ଓଡ଼ିଆ ମଙ୍ଗଳାଚରଣ ଶଶିଭୂଷଣ ରାୟ ପାଠ କରିଥିଲେ । ଓଡ଼ିଆ ମଙ୍ଗଳାଚରଣର ପ୍ରଥମ ସ୍ତବକଟି ଏହିପରି -

ଘୋଷୁ ଜନନୀ ଗୋ ଭୁବନ ତବ ମହିମା
ଅୟୁତ ରସନା ଆଜି ମା' ଉତ୍କଳ ରଟଇ ତବ ଗାରିମା ।
ଏତେ କାଳେ ସତେ ପରତେ ହେଉଛି
ବିହି ଘଟାଇଲା ଆଣି,
ନିରାଶାକୁ ହରେ ମୃତ-ସଞ୍ଜୀବନୀ
ଆଶା-ବୀଣା-ଜିଣା-ବାଣୀ ।୧।

କବିବର ରାଧାନାଥଙ୍କ ''ସର୍ବେଷାଂ ନୋ'' ବିଦାୟକାଳୀନ ସଂଗୀତ ରୂପେ ଗୀତ ହୋଇଥବା କଥା ପ୍ରଫେସର ପଟ୍ଟନାୟକ କହନ୍ତି ।

୪. ୧୯୦୩ରେ ଉତ୍କଳ ସମ୍ମିଳନୀର ମଣ୍ଡପରେ ରାଜା-ପ୍ରଜା ସମସ୍ତେ ଏକତ୍ର ଧୋତି, କୁର୍ତ୍ତା ଓ ପଗଡ଼ି ପିନ୍ଧି, ହାତରେ ପାନ ବଟୁଆ ଧରି ସମ୍ମିଳନୀର ମହାମନ୍ତ୍ରରେ ଦୀକ୍ଷିତ ହୋଇଥିଲେ । ସମ୍ମିଳନୀର ତୁଙ୍ଗ ନେତାମାନଙ୍କ ମଧ୍ୟରେ କ୍ରମେ ମନୋମାଳିନ୍ୟ ହୋଇଥିଲା । ଭାଷାକୋଷ ସଂକଳୟିତା, ସାହିତ୍ୟ ବିଶାରଦ ଗୋପାଳ ଚନ୍ଦ୍ର ପ୍ରହରାଜ ମଧୁସୂଦନଙ୍କ ବିରୋଧରେ ଶାଣିତ ବାକ୍ୟ ପ୍ରୟୋଗ କରି 'ଉତ୍କଳ ସାହିତ୍ୟ'ରେ 'ଆମ ଘରର ହାଲଚାଲ', 'ଦୁନିଆର ହାଲଚାଲ' ଲେଖି ନିଜର କ୍ରୋଧ ପ୍ରକାଶ କରିଥିଲେ । ସେ ଯୁକ୍ତି ଛଳରେ କହିଥିଲେ, ସର୍ବଭାରତୀୟ ଚେତନାକୁ ଖର୍ବୀକୃତ କରି ମିଃ ଦାସ ସଂକୀର୍ଣ୍ଣ ପ୍ରାଦେଶିକତା ପ୍ରସଙ୍ଗ ନେଇ ମାତିବା ଅନୁଚିତ । ମଧୁସୂଦନ ଦାସ ପ୍ରହରାଜଙ୍କ ବିରୁଦ୍ଧରେ ପଦେ ହେଲେ ସ୍ୱର ଉତ୍ତୋଳନ ନ କରି ତାଙ୍କର ବକ୍ତୃତାରେ କହିଥିଲେ, ''ଉତ୍କଳ ଜନନୀ ଭାରତ ଜନନୀଙ୍କ ସପତ୍ନୀ ବା ଶତ୍ରୁ ନୁହନ୍ତି ।'' 'ଆମ ଘରର ହାଲଚାଲ'ର ଯେଉଁ ଅଂଶ 'ଉତ୍କଳ ସାହିତ୍ୟ'ର ୧୮/୯ ସଂଖ୍ୟାରେ ପ୍ରକାଶ ପାଇଥିଲା ସେଥିରେ ଉଲ୍ଲିଖିତ ଅଂଶଟିକୁ ଲକ୍ଷ୍ୟ କରନ୍ତୁ-

''ଉତ୍କଳର ମାତୃମଣ୍ଡପ କେତେକ ବ୍ୟକ୍ତିଙ୍କର ହାମ୍‌ବଡ଼ା ରୀତି (self aggrandizement), ବ୍ୟକ୍ତିଗତ ଖିଆଲ (whim), ବ୍ୟକ୍ତିଗତ ଜିଦ୍ (personalism), ବ୍ୟକ୍ତିଗତ ଅନୁଗ୍ରହ (favouritism), ବ୍ୟକ୍ତିଗତ ଦଳ ପ୍ରତିଷ୍ଠା ଓ ରାଜତ୍ୱ (role of party system), ବ୍ୟକ୍ତିଗତ ରିପୁଭାବ (personal feeling of enmity), ବ୍ୟକ୍ତିଗତ ଗୋପଲୀଳା ସୁଆଙ୍ଗ (personal wear pulling and manipulation)ର ରଙ୍ଗମଞ୍ଚ ଥିଲା ।''

୫. ମହାରାଜା ବୈକୁଣ୍ଠ ନାଥ ଦେ ୧୯୦୨ ଡିସେମ୍ବର ୧୫ ତାରିଖରେ ବଡ଼ଲାଟ ଲର୍ଡ଼ କର୍ଜନଙ୍କୁ ଯେଉଁ ସ୍ମାରକପତ୍ର ଦେଇଥିଲେ ତାର ଶୀର୍ଷକ ଥିଲା "Memorial for uniting the Uriya speaking lands under different administrations into one administration."
ଏହି ସ୍ମାରକୀ ଦଲିଲ (ମେମୋରାଣ୍ଡମ୍) ଲକ୍ଷେ ଲୋକଙ୍କ ସ୍ୱାକ୍ଷର ବହନ କରି ଦିଲ୍ଲୀକୁ ପ୍ରେରିତ ହୋଇଥିଲା, ଯାହାକୁ ଚିଠା (ଡ୍ରାଫ୍ଟ) କରିଥିଲେ କବିବର ରାଧାନାଥ ରାୟ । ମୂଳ ଦଲିଲଟି ଦୁର୍ଗାଚରଣ ରାୟଙ୍କ ଦ୍ୱାରା ୧୯୪୪ରେ ପ୍ରକାଶିତ 'ରାଧାନାଥ ଜୀବନୀ' ଗ୍ରନ୍ଥରେ ସ୍ଥାନିତ ।

୬. ଉତ୍କଳ-ଗୌରବ ମଧୁସୂଦନ ଦାସ ତାଙ୍କର ନିଜସ୍ୱ ରଚନାରେ ପରିପୂର୍ଣ୍ଣ 'The Oriya' (ଦି ଓଡ଼ିଆ) ପତ୍ରିକା ବିଲାତରେ ବଣ୍ଟନ କରି ଓଡ଼ିଆମାନଙ୍କ ଦାବି ଉପସ୍ଥାପନ କରିଥିଲେ । ୧୯୩୦ରେ ଓ ୧୯୩୧ରେ ପାରଳା ମହାରାଜା ଗଜପତି କୃଷ୍ଣଚନ୍ଦ୍ର ଦେବ ସ୍ୱତନ୍ତ୍ର ଉତ୍କଳର ଭୌଗୋଳିକ ସୀମା ସମ୍ପର୍କରେ ଗୋଲଟେବୁଲ ବୈଠକ୍‌କୁ ପ୍ରଭାବିତ କରିବାକୁ ଉଦ୍ୟମ କରିଥିଲେ । ତାଙ୍କ ଉଦ୍ୟମ ବିନା

ଗଞ୍ଜାମ, ପାରଳା ଓ ଜୟପୁରକୁ ମାଡ୍ରାସ୍ ପ୍ରେସିଡେନ୍‌ସୀରୁ ଅଣାଯାଇ ପାରି ନଥାନ୍ତା । ସାଇମନ କମିଶନଙ୍କ ପାଇଁ "an urgent case for consideration and treatment is that of the Oriya speaking people" ନିର୍ଦ୍ଦେଶ ଦ୍ୱାରା ସିନ୍ଧୁ ଓ ଓଡ଼ିଶା ପ୍ରଦେଶ ଗଠନ ପାଇଁ ଶ୍ୱେତପତ୍ରର ପରିପ୍ରେକ୍ଷୀରେ ଏକ ଗୁରୁ ଦାୟିତ୍ୱ ଅର୍ପଣ କରାଯାଇଥିଲା । ସାଇମନ କମିଶନ ତା ୨୦.୯.୧୯୩୦ରେ Boundary Commission ଭାବେ ବିଦିତ ହେଲା । ସୀମା ନିର୍ଦ୍ଧାରଣ ପାଇଁ ହୋଇଥିବା ସର୍ଭେରେ ମୁଖ୍ୟ ଅଫିସର ରୂପେ SP O. Donnel ମଧୁବାବୁଙ୍କ ରୋଗଶଯ୍ୟା ନିକଟରେ ବସି ତାଙ୍କର ସାକ୍ଷ୍ୟ ଗ୍ରହଣ କରିଥିଲେ । ତାଙ୍କ ସୁପାରିଶ କ୍ରମେ ଯେଉଁ ଚୂଡ଼ାନ୍ତ ରିପୋର୍ଟ ପ୍ରକାଶ ପାଇଲା ସେଥିରେ ଓଡ଼ିଆ ଭାଷାଭାଷୀ ଅଞ୍ଚଳରୁ ଅନେକ ନ ଥିଲା । ତେଣୁ ବିହାର ଓଡ଼ିଶା ବିଧାନ ସଭାରେ ୧୯.୧.୧୯୩୨ରେ ରାୟବାହାଦୁର ଲକ୍ଷ୍ମୀଧର ମହାନ୍ତି ନିମ୍ନଲିଖିତ ପ୍ରସ୍ତାବ ସରକାରଙ୍କୁ ପେଶ କଲେ ।

This Council recommends to Government that they be pleased to move the Government of India to constitute immediately at an early date a separate province consisting of at least the areas recommended by the Orissa Boundary Commission.

୭. ସରେଇକଳା ଖରସୁଆଁ ଦିନେ ଓଡ଼ିଆ ରାଜାଙ୍କ ଅଧୀନରେ ଓଡ଼ିଶାରେ ଥିଲା; ମାତ୍ର ତାହା ଭାଗ୍ୟର ବିଦ୍ରୂପ ସହି ବିହାରରେ ମିଶିଗଲା । ସର୍ଦ୍ଦାର କେ.ଏମ୍. ପାନିକର, ପଣ୍ଡିତ ହୃଦୟନାଥ କୁଞ୍ଜୁରୁ ଏବଂ ସୟଦ୍ ଫଜଲ ଅଲ୍ଲୀ ରାଜ୍ୟ ସୀମାନିର୍ଦ୍ଧାରଣ ପାଇଁ ୧୯୫୬ରେ ଯେଉଁ ରିପୋର୍ଟ ଦେଲେ ସେଥିରେ ସରେଇକଳା ଓ ଖରସୁଆଁକୁ ଓଡ଼ିଶାରେ ମିଶାଇବାର ସୁପାରିଶ ନଥିଲା । ଏବେ ମଧ ଓଡ଼ିଆମାନେ ସରେଇକଳା ଓ ଖରସୁଆଁକୁ ଝାଡ଼ଖଣ୍ଡରୁ ଫେରି ପାଇବାର ଆଶା ରଖିଛନ୍ତି ।

# ଟୋଲଙ୍କ ସାହି, ବାଲେଶ୍ୱର

"ହେ ଉତ୍କଳ ! ହେ ମୋର ସ୍ୱଦେଶ !!
ହେ ମୋର ନିରପରାଧ-
ଜନନୀର ଭୁକ୍ତ ଅବଶେଷ ।
ପଦେ ତୋର ଶିର କରେ ନତ,
ଅଭିମାନୀ ସଂତାନ ତୋ
ଆହତ ମୁଁ, ତୋହର ପ୍ରଣତ ।।"

('ହେ ମୋର ନିରପରାଧ ଦେଶ') **-ସଚ୍ଚିଦାନଂଦ ରାଉତରାୟ**

# ଉତ୍କଳ ସମ୍ମିଳନୀ: ସ୍ମୃତି, ସାନ୍ତ୍ୱନା ଓ ବାର୍ତ୍ତମାନିକ ଆହ୍ୱାନ

ପ୍ରଫେସର ବୈଷ୍ଣବ ଚରଣ ସାମଲ

**ଉ**ତ୍କଳ ସମ୍ମିଳନୀର ସ୍ମୃତି -ସମୁଦ୍ର-ମନ୍ଥନ କରିବାକୁ ଗଲାବେଳେ ହୁଏତ ତା' ଭିତରୁ କିଛି ଗରଳ ବାହାରିପାରେ, ଯେମତି ସୁରଙ୍ଗୀର ରାଜା ବା ଗୋପାଳଚନ୍ଦ୍ର ପ୍ରହରାଜ ବା ଏଇପରି ଅନ୍ୟ କେତେଜଣ ଉତ୍କଳ ସମ୍ମିଳନୀର ମହତ୍ତ୍ୱକୁ ଲକ୍ଷ୍ୟ ନକରି ମଧୁସୂଦନଙ୍କ ବ୍ୟକ୍ତିତ୍ୱ ପ୍ରତି ଆକ୍ଷେପ କରିଥିଲେ, ମାତ୍ର ଏହି ଗରଳ ଅତିକ୍ରାନ୍ତ ଅମୃତ ମଧ ମିଳିଥିଲା, ଯାହାହିଁ ହେଲା ଯଥାର୍ଥରେ ଗୋଟିଏ ହୃତଗୌରବ ଜାତି ପ୍ରତି ସାନ୍ତ୍ୱନା । ଏହି ସାନ୍ତ୍ୱନା ହେଲା ସୁପ୍ତ ଜାତି ତା'ର ଅତୀତର ଇତିହାସକୁ ଅନୁଧ୍ୟାନ କରିବା ପାଇଁ ପ୍ରେରଣା, ତା' ଆଖି ଆଗରେ ଭାସି ଉଠିଲା ଅଶୋକର କଳିଙ୍ଗ-ଯୁଦ୍ଧ ଓ ରକ୍ତ ନଦୀର ପ୍ରବାହ, ଐର ଖାରବେଳଙ୍କର ଉତ୍‌ଥାନ ଓ ଦିଗ୍‌ବିଜୟୀ ସମ୍ରାଟ ତଥା ପ୍ରଜାନୁରଂଜକ ରାଜାଙ୍କର ଗୌରବ, କଂଗୋଦ ମଣ୍ଡଳର ବିଶାଳ ନୌବହ ଓ ନୌବାଣିଜ୍ୟର ଦୁଃସାହସିକତା, ଭୌମକର ରାଜବଂଶର ରାଣିମାନଙ୍କର ସ୍ୱାଭିମାନ ଓ ରାଜ୍ୟ ଶାସନର ଦକ୍ଷତା, ସୋମବଂଶୀ ରାଜାମାନଙ୍କର କଳିଙ୍ଗ-କଂଗୋଦ -କୋଶଳ ଓ ଉତ୍କଳକୁ ମିଶାଇ ସକଳ ଉତ୍କଳ କରିବାର ଉଦ୍ୟମ ଓ ସଫଳତା, ନାନା ମନ୍ଦିର ନିର୍ମାଣ ଓ କଳାର ବିକାଶ, ଗଂଗବଂଶର ରାଜାମାନଙ୍କର ଜଗନ୍ନାଥଙ୍କୁ ରାଷ୍ଟ୍ର ଦେବତା ଭାବରେ ଘୋଷଣା ଓ ନିଜକୁ ଜଗନ୍ନାଥଙ୍କ ସେବକ ଓ ରାଉତ ଭାବରେ ପରିକଳ୍ପନା, ସୂର୍ଯ୍ୟବଂଶର ଗଜପତି କପିଳେନ୍ଦ୍ର ଦେବଙ୍କର କୃଷ୍ଣା-ଗୋଦାବରୀ ଠାରୁ ଗଂଗା ପର୍ଯ୍ୟନ୍ତ ସାମ୍ରାଜ୍ୟ ବିସ୍ତାର, ପୁରୁଷୋତ୍ତମ ଦେବଙ୍କର କାଞ୍ଚିବିଜୟ ଇତ୍ୟାଦି କେତେକେତେ ଘଟଣା । ସେଥିରେ ପୁଣି ସେଇ ଉତ୍କଳ-ସମ୍ମିଳନୀ ମଂଚରେ ମାଟିର ମହାକବି ସାରଳା ଦାସ, ଭାଗବତକାର ଜଗନ୍ନାଥ ଦାସ, କବିସମ୍ରାଟ ଉପେନ୍ଦ୍ର ଭଂଜ, ସତେ ଯେପରି ଓଡ଼ିଆ ଭାଷା ଓ ସାହିତ୍ୟ ପାଇଁ ଜୀବନ୍ତ ପ୍ରେରଣା ହୋଇ ଉଠିଲେ । ଏସବୁ ଥିଲା ଇତିହାସ ଓ ଐତିହ୍ୟର ଅନୁଶୀଳନ ଜନିତ ସାନ୍ତ୍ୱନା । ଜାତିର ହେଲା ଜାଗରଣ । ତା'ର ଇତିହାସଦୃଷ୍ଟି ହେଲା ଶାଣିତ, ଐତିହ୍ୟ-ମମତା ହେଲା ନିବିଡ଼ । ସେଇ ପଂରପରା ପୃଷ୍ଠଭୂମି ଉପରେ ସମ୍ମିଳନୀ ମଂଚରେ ବିଚାର-ବିମର୍ଶ ହେଲା ଜାତିର ବିପର୍ଯ୍ୟୟ ଓ ଅଧୋପତନର କାରଣ ସଂପର୍କରେ । ବିପର୍ଯ୍ୟୟର କାରଣ ନ ଜାଣିଲେ ତା'ର ସମାଧାନର ମାର୍ଗ ପ୍ରକାଶ ପାଏନାହିଁ । ଉତ୍କଳ-ସମ୍ମିଳନୀ ଏହି ବିପର୍ଯ୍ୟୟର କାରଣ ରୂପେ ଏକତାର ଅଭାବ, ଆଳସ୍ୟପରାୟଣତା, କ୍ଷୁଦ୍ରତା ଓ ସଂକୀର୍ଣ୍ଣତା, ଗଣ ପ୍ରତି ଆଦରହୀନତା, ମାତୃଭାଷା ପ୍ରତି ଅବଜ୍ଞା, ଔପନିବେଶିକ ଶାସନ ଓ ସଭ୍ୟତା ପ୍ରତି ମୋହଗ୍ରସ୍ତତା, ପ୍ରାଚୀନ କବି ଓ ସାହିତ୍ୟର ଆବିଷ୍କାର ପାଇଁ ଉଦ୍ୟମହୀନତା, ଯେଉଁ ଶକ୍ତି ଜାତୀୟ ଜୀବନକୁ ବିପର୍ଯ୍ୟସ୍ତ କରି ଦେଉଛନ୍ତି ସେ ସଂପର୍କରେ ନିଶ୍ଚେତନତା, କୃଷି ଓ କୃଷକର ଦୁର୍ଦ୍ଦଶା ପ୍ରତି ଶିକ୍ଷିତ ବର୍ଗର କର୍ତ୍ତବ୍ୟହୀନତା ଇତ୍ୟାଦିକୁ ଦର୍ଶାଇଦେଲା । ଉତ୍କଳ-ସମ୍ମିଳନୀର କାର୍ଯ୍ୟହେଲା ଜାତିର ଉନ୍ନତି କରିବାକୁ ହେଲେ ତୋଷାମଦ-ଗୁଣକୁ ତ୍ୟାଗ କରିବାକୁ ହେବ, ସ୍ୱାର୍ଥକୁ ଆହୁତି ଦେବାକୁ ହେବ, ଜାତି-ପ୍ରେମ-ବହ୍ନିକୁ ପ୍ରଜ୍ୱଳିତ କରିବାକୁ ହେବ । ଜାତି-ନନ୍ଦିଘୋଷକୁ ଟାଣିବା ପାଇଁ ନିଜକୁ ସମର୍ଥବାନ ହେବାକୁ ହେବ । ଏଥିପାଇଁ ଶିକ୍ଷା-ବ୍ୟବସ୍ଥାକୁ ସଂପ୍ରସାରିତ କରିବାକୁ ହେବ, କୃଷିର ବିକାଶ କରିବାକୁ ହେବ ଓ ଜାତିର ପରଂପରାପ୍ରସୂତ ଜ୍ଞାନ-କୌଶଳକୁ ନେଇ ଶିଳ୍ପ ପ୍ରତିଷ୍ଠା କରିବାକୁ ହେବ । ଅର୍ଥନୀତିର ବିକାଶ ନେହେଲେ ଜାତିର କଲ୍ୟାଣ ହୋଇପାରିବ ନାହିଁ । ଏହାହିଁ ସେକାଳର ଉତ୍କଳ-ସମ୍ମିଳନୀର ସ୍ମୃତି ଓ ସାନ୍ତ୍ୱନା ।

ପୁନଶ୍ଚ ଉତ୍କଳ-ସମ୍ମିଳନୀ ମଂଚ ହେଲା ଜାତୀୟ ମିଳନ-ମଂଚ । ଏହି ମଂଚରେ ରାଜା-ମହାରାଜା-ଜମିଦାର-ଧନୀ ଓ ଶିକ୍ଷିତ ବ୍ୟକ୍ତିଙ୍କଠାରୁ ଆରମ୍ଭ କରି ସାଧାରଣ ବ୍ୟକ୍ତିଙ୍କର ହେଲା ମିଳନ । ଏଠି ପଦବୀ ନଥିଲା; ନଥିଲା ମଧ ଜାତିଗତ ବା ଆଭିଜାତ୍ୟଗତ ଅହଂକାର । ତେଣୁ ଏହା ଭେଦ ସୃଷ୍ଟି କରୁନଥିଲା; ଉତ୍କଳ-ଜନନୀଙ୍କର ମଧୁମୟ ପୂର୍ଣ୍ଣାଙ୍ଗ କଳେବର ପାଇଁ ଥିଲା ଏକ ସକାରାତ୍ମକ ଆହ୍ୱାନ । ଊନବିଂଶ ଶତାବ୍ଦୀର ଶେଷ ତିରିଶ ବର୍ଷ ମଧରେ ଭାଷାକୁ କେନ୍ଦ୍ର କରି ଯେଉଁ ଜାତୀୟ ଜାଗରଣ ଦେଖା ଦେଇଥିଲା ତାହା ଉତ୍କଳ-ସମ୍ମିଳନୀ ପ୍ରତିଷ୍ଠାଠାରୁ ରାଜ୍ୟ-କୈନ୍ଦ୍ରିକ ଜାତୀୟତାବୋଧରେ ରୂପାନ୍ତରିତ ହୋଇଗଲା । ଇତି ପୂର୍ବରୁ ସମ୍ବଲପୁରରେ ହିନ୍ଦୀଭାଷାର ପ୍ରଚଳନ ଓ ତାହାର ପ୍ରତିକ୍ରିୟା ସୃଷ୍ଟି ହୋଇଥିଲା । ସମ୍ବଲପୁରର ଏହି ଆନ୍ଦୋଳନ ସହିତ ମଧୁସୂଦନ ସାମିଲ ହୋଇଥିଲେ ଓ ସେଥିରେ ମଧ ସେ କୃତକାର୍ଯ୍ୟ ହୋଇଥିଲେ । ୧୮୯୯ ମସିହାରେ ମାଡ୍ରାସର କଂଗ୍ରେସ ଅଧିବେଶନରେ ଯୋଗ ଦେବାପାଇଁ ମଧୁସୂଦନ ଦାସ ଜାତୀୟ କଂଗ୍ରେସର ସଦସ୍ୟ ଭାବରେ ସେଠାକୁ ଯାଇଥିଲେ ଓ ତାଙ୍କ ସହିତ ଫକୀରମୋହନ ସେନାପତି ତଥା ଆଉ କେତେଜଣ ଯାଇଥିଲେ । ସମ୍ମିଳନୀରେ ଓଡ଼ିଶା ପ୍ରସଙ୍ଗ ଉଠାଇବା ପାଇଁ ମଧୁସୂଦନ ଉଦ୍ୟମ କଲେ ମାତ୍ର ତାଙ୍କ କଥା କେହି ଶୁଣିଲେ ନାହିଁ । ପ୍ରତିବାଦ ସ୍ୱରୂପ ମଧୁସୂଦନ ଜାତୀୟ କଂଗ୍ରେସରୁ ଇସ୍ତଫା ଦେଇ ଓଡ଼ିଶାକୁ ଫେରି ଆସିଲେ । ସେତେବେଳେ ଜାତୀୟ କଂଗ୍ରେସର ସଭାପତି ଥିଲେ ଆନନ୍ଦମୋହନ ବୋଷ । ଫକୀରମୋହନ ତାଙ୍କର ଆତ୍ମଚରିତରେ ଲେଖିଛନ୍ତି -''ମାନ୍ଦ୍ରାଜରେ ମୋର ଏହି ପ୍ରଥମ ଏବଂ ଶେଷ କଂଗ୍ରେସ ଦର୍ଶନ । ସଭାରେ ଅଧିକାଂଶ ଆଲୋଚ୍ୟ ବିଷୟ ରାଜନୈତିକ ଥିଲା । ଯଦିଚ ଆମ୍ଭମାନଙ୍କ ରାଜନୈତିକ ଆକାଙ୍‌କ୍ଷାଗୁଡ଼ିକ ସଫଳ ହେବାର କୌଣସି ନିକଟ ସମ୍ଭାବନା ନାହିଁ, ତଥାପି ଆମ୍ଭମାନଙ୍କ ଅଭାବ ଅଭିଯୋଗ ପ୍ରକାଶ ନ କରି ତୁନି ହୋଇ ରହିବା ଆମ୍ଭମାନଙ୍କ ପକ୍ଷରେ ଉଚିତ ହେବନାହିଁ ।'' ଫକୀରମୋହନ ଓ ତାଙ୍କ ସହିତ କେତେଜଣ ବିଭିନ୍ନ ସ୍ଥାନ ପରିଦର୍ଶନ କରି ଓଡ଼ିଶା ଫେରି ଆସିଲେ । ଏକଥାକୁ ଅଧୁନା ଜନୈକ ବିଶିଷ୍ଟ ସାହିତ୍ୟିକ ବ୍ୟଙ୍ଗୋକ୍ତି କରି କହନ୍ତି ଯେ ମଧୁସୂଦନ ବା ଫକୀରମୋହନଙ୍କର ଏହା ଥିଲା ପଳାୟନପନ୍ଥୀ ମନୋଭାବ । ପୁନଶ୍ଚ ତାଙ୍କର ମତ ଯେ ମଧୁସୂଦନଙ୍କର ଓଡ଼ିଶା ବ୍ୟତୀତ ବାହାର ଜଗତ ସହିତ ସଂପର୍କରେ କୌଣସି ଜ୍ଞାନ ନଥିବାରୁ ସେ କେବଳ ଓଡ଼ିଆ, ଓଡ଼ିଶା କଥା କହୁଥିଲେ । ଏହା ପ୍ରକୃତରେ ମଧୁସୂଦନଙ୍କର ଅଜ୍ଞତା ନୁହେଁ; ବରଂ ତଥାକଥିତ ସମାଲୋଚକଙ୍କ ଅଜ୍ଞତା ।

ମଧୁସୂଦନ ମାଡ୍ରାସରୁ ଫେରି ଚିନ୍ତା କରିଛନ୍ତି ବିଖଣ୍ଡିତ କଳେବରା ଉତ୍କଳ-ଜନନୀଙ୍କର ପୂର୍ଣ୍ଣାଙ୍ଗ କଳେବର ପାଇଁ । ୧୯୦୨ ମସିହାରେ ରମ୍ଭାଠାରେ ଅନୁଷ୍ଠିତ ଗଂଜାମ ସମ୍ମିଳନୀ ହିଁ ହେଲା ତାଙ୍କର ପ୍ରେରଣା ଓ ୧୯୦୩ ମସିହା ଡିସେମ୍ବର ମାସ ୩୦/୩୧ ତାରିଖ ଦୁଇଦିନ ଧରି କଟକରେ ଇଦ୍‌ଗା ପଡ଼ିଆରେ ସେ ଉତ୍କଳ-ସମ୍ମିଳନୀର ଆୟୋଜନ କଲେ ଓ ଘୋଷଣା କଲେ-''ଏହି ସମ୍ମିଳନୀ ଜାତିପ୍ରାଣ ସିନ୍ଧୁ/କୋଟି ପ୍ରାଣବିନ୍ଦୁ ଧରେ/ତୋର ପ୍ରାଣ ବିନ୍ଦୁ ମିଶାଇ ଦେ ଭାଇ/ଡେଇଁ ପଡ଼ି ସିନ୍ଧୁ ନୀରେ ।'ତ ଜୀବନ୍ତ ହୋଇ ଉଠିଲା ସମ୍ମିଳନୀ । ଏକ ଇତିହାସ ପ୍ରସିଦ୍ଧ ଜାତିର ହେଲା ଏହି ସମ୍ମିଳନୀ ଏକ ମହାତୀର୍ଥ । ମୁମୂର୍ଷୁ ଓଡ଼ିଆ ଜାତିର ପ୍ରାଣରେ ନୂତନ ଜୀବନର ସ୍ପନ୍ଦନ ସୃଷ୍ଟିହେଲା । ସେ କାଳର କବି, ଲେଖକ, ଖବରକାଗଜର ସଂପାଦକ, ଜାତିପ୍ରାଣ ବ୍ୟକ୍ତି, ରାଜା ମହାରାଜା ଜମିଦାର ସମସ୍ତେ ମିଳିତ ହେଲେ । ମଣ୍ଡପରେ ଶୋଭା ପାଇଲା ଛିନ୍ନମସ୍ତା ଉତ୍କଳ ଜନନୀ । ମଧୁସୂଦନହିଁ ପ୍ରଥମେ ଉତ୍କଳକୁ ଜନନୀ ବୋଲି ସଂବୋଧନ କଲେ । ଗୋଟାଏ ମାଆ ଓ ପୁଅର ଭାବ ସ୍ପନ୍ଦିତ ହେଲା ସମ୍ମିଳନୀ କକ୍ଷରେ । ପରେପରେ ମଧୁସୂଦନ ସାକ୍ଷାତ କଲେ ଲର୍ଡ଼ କର୍ଜନଙ୍କୁ ଓ ଅନ୍ୟାନ୍ୟ ଉଚ୍ଚପଦସ୍ଥ ଇଂରେଜ ବ୍ୟକ୍ତିଙ୍କୁ । ଦାବି ଉପସ୍ଥାପନ କଲେ ପୂର୍ଣ୍ଣାଙ୍ଗ ଉତ୍କଳ ଗଠନ ପାଇଁ । ଜାତି ଓ ଦେଶଗଠନ ସହିତ ଶିକ୍ଷା ଓ ଆର୍ଥିକ ଉନ୍ନତି ପାଇଁ ନାନା ଉଦ୍ୟମ କଲେ । ୮୫ ବର୍ଷ ବୟସ

ବେଳେ ସେ ଉପଦେଶ ଛଳରେ କହିଥିଲେ ତାଙ୍କ ସମ୍ମୁଖରେଗ ତାଙ୍କର ହସ୍ତହିଁ ଏକ ପୁସ୍ତକ । ସେହି ଦକ୍ଷିଣ ହସ୍ତ ତାଙ୍କର ପ୍ରଧାନ ଶିକ୍ଷାର ସ୍ଥଳ । ଯେତେବେଳେ ଛୋଟ ପିଲାଟିଏ ଖାଇବସେ ସେତେବେଳେ ସେ ପାଞ୍ଚ ଆଙ୍ଗୁଳିକୁ ପୃଥକ ରଖି ଭାତ ଧରିବାକୁ ଚେଷ୍ଟାକଲେ । ମାତ୍ର ଭାତ ଖାଇପାରେ ନାହିଁ । ବାପା ତାକୁ ବୁଝାଇ ଦିଏ ଆଙ୍ଗୁଳି ଯୋଡ଼ି କରି ଭାତ ଆଣିଲେ ଖାଇହେବ । ତେଣୁ ମଧୁସୂଦନ କହନ୍ତି -''ମୁଁ ସେଥିପାଇଁ ଏହି ହାତକୁ ପୁସ୍ତକ କରିଅଛି -ଏହି ହାତର ଛୋଟ ଆଙ୍ଗୁଠିରେ ଗୋଟିଏ ହୀରା ମୁଦି ଲାଗିବା ଦେଖି ଛୋଟ ଆଙ୍ଗୁଠିର ଧାରଣା, ମୁଁ ବଡ଼ । ମୋଠାରେ ବହୁମୂଲ୍ୟ ପଦାର୍ଥ ଲାଗେ । ତା'ପର ଆଙ୍ଗୁଠି କହିଲା, ଆରେ ଯା-ମୋଠାରେ କୁଶବଟୁ ନ ଲାଗିଲେ କ'ଣ ତୋର ବାପ ଜେଜେ ବାପା ପାଣି ପିଇବେ ? ପ୍ରାଧାନ୍ୟ ପଟୁ ମଧ୍ୟମା କହିଲା, ମୋର ଆକାର ବଡ଼, ମୁଁ ମୋର ବଡ଼ାଇ କରଣି ଦେଖାଇବି, ମୁଁ ଫୁଟୁକିରେ ସବୁ ଉଡ଼ାଇ ଦେବି । ଏହା ଶୁଣି ତତ୍‌ପର ଆଙ୍ଗୁଠି କହିଲା, ଦେଖ ମୁଁ ଚିହ୍ନାଇ ନ ଦେଲେ ତୁମ୍ଭମାନଙ୍କର ସକଳ କରାମତି ଏକାବେଳେ ଲୋପ ପାଇବ । ମୁଁ ବଡ଼ । ତା'ପରେ ବୁଢ଼ା କହିଲା-ସବୁ କର, ମୁଁ ନାହିଁ କଲେ ସବୁ ଅକାରଣ ।

କୁହତ ଭାଇମାନେ,ଏ ମଧରୁ କିଏ ବଡ଼, କିଏ ସାନ ? ଜଗତରେ ସାନବଡ଼ ସବୁଠାରେ ଅଛି । ଏହି କ୍ଷୁଦ୍ର ହସ୍ତରେ ଅଛି । କିନ୍ତୁ ସ୍ଥଳ ବିଶେଷରେ ବଡ଼ ସାନ ଓ ସାନବଡ଼ ଅଟେ । ସମସ୍ତେ ସମଭାବାପନ୍ନ ହେଲେ ଓ ଆପଣା ମଧରେ ଅହମିକା ଘେନି ବଡ଼ ସାନ ହୋଇ ତକରାଳ କଲେ କିଛି କାର୍ଯ୍ୟ ହେବନାହିଁ । ଆଚ୍ଛା ଘୁସି ମାରିବ । ଯଦ୍ୟପି ମଧ୍ୟମା ଏକୁଟିଆ ଆଗକୁ ଯାଏ, ତେବେ ଫଳ କ'ଣ ହେବ ? ଘୁସି ମାରିହେବ ନାହିଁ । କିଛି ଜିନିଷ ଧରିବ-ବୁଢ଼ା ସେଥିରେ ସହଯୋଗ କରିବ ନାହିଁ । ଜିନିଷଟିକୁ ବଜ୍ରମୁଷ୍ଟିରେ ଧରିପାରିବ ? ଧରି ପାରିବ ନାହିଁ । କିନ୍ତୁ ସମସ୍ତ ଆଙ୍ଗୁଳି ଏକତ୍ର ହୋଇ ଚପେଟାଘାତ କରିବ-ଦେଖ ତା'ହାର ଫଳ ।' ଏହାର ତାତ୍ପର୍ଯ୍ୟ ହେଉଛି ଜାତି ଅନ୍ତର୍ଗତ ସମସ୍ତ ଲୋକଙ୍କ ଭିତରେ ଏକତା ଓ ସହଯୋଗ ପ୍ରତିଷ୍ଠା । ଏହା ନ ହେଲେ ଜାତିର ଉନ୍ନତି ହେବନାହିଁ । ମଧୁସୂଦନ ଓ ଉତ୍କଳ-ସମ୍ମିଳନୀର ସଦସ୍ୟମାନଙ୍କର ନିବଚ୍ଛିନ୍ନ ଉଦ୍ୟମରେ ଦୀର୍ଘ ୩୩ ବର୍ଷ ପରେ ୧୯୩୬ ମସିହା ଏପ୍ରିଲ ପହିଲା ତାରିଖରେ ମାତ୍ର ଛଅ ଜିଲ୍ଲାକୁ ନେଇ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠିତ ହେଲା । ପାରଳାର ମହାରାଜା ଗଜପତି କୃଷ୍ଣଚନ୍ଦ୍ର ଦେବଙ୍କର ଭୂମିକା ମଧ ଥିଲା ଗୁରୁତ୍ୱପୂର୍ଣ୍ଣ । ଯେଉଁମାନେ କହୁଥିଲେ ଭାରତୀୟ ଜାତୀୟ କଂଗ୍ରେସରେ ଉତ୍କଳ-ସମ୍ମିଳନୀକୁ ମିଶାଇ ଦେଲେ ସ୍ୱତନ୍ତ୍ର ପ୍ରଦେଶ ହେବା ସହଜ ହେବ, ସେଥିରେ ମଧୁସୂଦନ ରାଜି ହେଲେନାହିଁ । ସେ ଉତ୍କଳ-ସମ୍ମିଳନୀକୁ ବଂଚାଇ ରଖିଲେ । ମନ୍ତ୍ରୀ ହେଲେ ବୋଲି ତାଙ୍କର କୁଶ ପୁତ୍ତଳିକାକୁ ଦାହ କରାଗଲା । ତଥାପି ସେ ନିଜ ଆଦର୍ଶରେ ଅଟଳ ରହିଲେ । ଉତ୍କଳ-ଜନନୀ ତାଙ୍କର ଉପସ୍ୟା, ତାଙ୍କର ଆଦର୍ଶ । ମାତ୍ର ଭାରତ-ଜନନୀଙ୍କୁ ସେ ଆଦୌ ନିନ୍ଦା କରି ନାହାନ୍ତି । ବରଂ ଉତ୍କଳ-ଜନନୀଙ୍କର ମଧୁମୟ ମୂର୍ତ୍ତି ମାଧମରେ ଭାରତ-ଜନନୀଙ୍କର ଅର୍ଚ୍ଚନା କରିଛନ୍ତି । ତାଙ୍କର ଅଭିମତ ଥିଲା ଶରୀରର ଗୋଟିଏ ଅଙ୍ଗରେ ପୀଡ଼ା ହେଲେ ତାକୁ ପୀଡ଼ାମୁକ୍ତ କରିବାକୁ ହେବ । ନହେଲେ ସମଗ୍ର ଶରୀରରେ ପୀଡ଼ା ସୃଷ୍ଟି ହେବ । ଭାରତ-ଜନନୀଙ୍କର ଏକ ଅଙ୍ଗ ଉତ୍କଳ-ଜନନୀ । ଉତ୍କଳ-ଜନନୀଙ୍କର ପୀଡ଼ାମୁକ୍ତି ପାଇଁ ଉଦ୍ୟମ ହେବା ଉଚିତ । ସେହି ପୀଡ଼ାମୁକ୍ତିର ଉପାୟ ପୂର୍ଣ୍ଣାଙ୍ଗ ଉତ୍କଳ-ଗଠନ ଓ ଓଡ଼ିଆ ଜାତିର ଆର୍ଥିକ ବିକାଶ ।

ସ୍ୱତନ୍ତ୍ର ପ୍ରଦେଶ ଗଠିତ ହେଲା । ୧୯୪୮ ମସିହାରେ ଗଡ଼ଜାତଗୁଡ଼ିକ ଓଡ଼ିଶା ସହିତ ମିଶିଲା । ୧୯୪୯ ମସିହାରେ ମୟୂରଭଂଜ ମିଶି ବୃହତ୍ତର ଉତ୍କଳ-ପ୍ରଦେଶ ଗଠିତ ହେଲା । ଅଥଚ ଯେଉଁସବୁ ଓଡ଼ିଆଭାଷୀ ଅଂଚଳ ବାହାର ପ୍ରଦେଶରେ ରହିଗଲା ସେସବୁ ମିଶିପାରିଲା ନାହିଁ । ମିଶିଲା ନାହିଁ ଷଢ଼େଇକଳା-ଖରସୁଆଁ, ଧଳଭୂମି, ମାନଭୂମି, ସିଂହଭୂମି, ମେଦିନାପୁର, ବିନ୍ଦ୍ରା ନୂଆଗଡ଼, ମଞ୍ଜୁଷା ଇତ୍ୟାଦି ନାନା ସ୍ଥାନ । ସ୍ୱାଧୀନତା ଲାଭର ଅବ୍ୟବହିତ ପୂର୍ବରୁ ରାଜେନ୍ଦ୍ର ପ୍ରସାଦ ବିହାରର କଂଗ୍ରେସ ନେତାଙ୍କୁ କହିଲେ ଆନ୍ଦୋଳନ ଲାଗାଇ ରଖ । ଓଡ଼ିଶା ସହିତ ବିହାର ଅନ୍ତର୍ଗତ ଅଂଚଳଗୁଡ଼ିକୁ ମିଶାଇବାକୁ

ବିରୋଧ କର । ତାହାହିଁ ହେଲା । ସ୍ୱାଧୀନ ଭାରତର ରାଷ୍ଟ୍ରପତି ହେଲେ ଡକ୍ଟର ରାଜେନ୍ଦ୍ର ପ୍ରସାଦ । ବିହାରର ହେଲା ଜିତାପଟ । ଷଢ଼େଇକଳା ସମେତ ନାନା ଓଡ଼ିଆଭାଷୀ ଅଂଚଳ ବିହାର ସହିତ ମିଶିଗଲା । ଆନ୍ଦୋଳନ ହେଲା ୧୯୫୬ ମସିହାରେ । ମାତ୍ର ପୋଲିଶ ଗୁଳିର ଶିକାର ହେଲେ ସୁନିଲ ଓ ବେଙ୍ଗପାଣିଆ । ଏବେ ପୁଣି ଖବର କାଗଜରେ ନାନା ସମୟରେ ସଂବାଦ ବାହାରୁଛି ବିହାର ପୁଣି କେତେ ଅଂଚଳକୁ ଅକ୍ତିଆର କରିଛି, ଆନ୍ଧ୍ର ପୁଣି ଓଡ଼ିଶା ସୀମା ଡେଇଁ କେତେକ ଅଂଚଳରୁ ରାଜସ୍ୱ ଆଦାୟ କରୁଛି । ଏହିପରି କେତେ ଘଟଣା ସ୍ୱାଧୀନତା ଲାଭଠାରୁ ଏଯାବତ୍ ୫୮ ବର୍ଷ ଭିତରେ ଓଡ଼ିଶା କ'ଣ ଇଂଚେ ଜାଗା ଫେରାଇଆଣି ପାରୁଛି କି ? ନାଁ ଅନେକ ଅଂଚଳକୁ ହାତଛଡ଼ା କରୁଛି ? ଏଇତ ବିହାରଠାରୁ ଅଲଗା ହୋଇ ଝାଡ଼ଖଣ୍ଡ ରାଜ୍ୟ ଗଠନ ହେଲାବେଳେ ଆମ ବିଧାନ ସଭାରେ ଷଢ଼େଇକଳା/ଖରସୁଆଁ କଥା ଉଠିଲା, କିଛି ତୁମ୍ବିତୁଫାନ ହେଲା ମାତ୍ର କ'ଣ ହେଲା ? କିଏ ପ୍ରସ୍ତୁତ କେନ୍ଦ୍ର ସରକାରଙ୍କ ବିଷ ଦୃଷ୍ଟିରେ ସମ୍ମୁଖୀନ ହେବାକୁ ? କାହାନ୍ତି ଅତୀତର ମଧୁସୂଦନ-ଗୋପବନ୍ଧୁ-ଗୋଦାବରୀ-କୃଷ୍ଣଚନ୍ଦ୍ରଙ୍କ ପରି ବ୍ୟକ୍ତିତ୍ୱସଂପନ୍ନ ମନୀଷୀ ? ସେମାନେ ହେଲେ କ୍ଷମତାଦୀପ୍ତ, ସ୍ୱାର୍ଥଲିପ୍ତ । ସେଥିରେ ପୁଣି 'ଦଳ' ନାମକ ଯେଉଁ ମୋହର ବାଜିଛି ଯାହାଠାରେ ସିଏ ଦଳ ପାଖରେ ବିନୀତ, ନତଜାନୁ । ସେ କିପରି ସଂଗ୍ରାମ କରିବ ? ରାଜନୀତିର ପଶାପାଲିରେ ଓଡ଼ିଶା ହୋଇଛି କାଠି । ଗଡ଼ଉଛନ୍ତି ନେତାମାନେ । ଏଇମିତି ଗଡୁଥିବ । ଆମେ ସବୁ ଦେଖଣାହାରୀଏ ତାଳିମାରି ଦେଖୁଥିବୁ ।

ଉତ୍କଳ-ସମ୍ମିଳନୀର ସ୍ମୃତି ଅନେକ । ସେହି ସ୍ମୃତି ଗୋଟାଏ ଜାତି ପାଇଁ ପ୍ରେରଣାପ୍ରଦ । ତାହାହିଁ ଆମର ସାନ୍ତ୍ୱନା । ଆମେ ଯେ ଏକ ମହାନ୍ ଜାତି -ଉତ୍କଳ ସମ୍ମିଳନୀ ଆମକୁ ବତେଇ ଦେଇଛି । ଏବେ କିନ୍ତୁ ଆମେ ଭୁଲିଗଲୁଣି ସେଇ ଅତୀତକୁ, ଉତ୍କଳ-ସମ୍ମିଳନୀର ଗାୟତ୍ରୀ ମନ୍ତ୍ରକୁ । ଉତ୍କଳ-ସମ୍ମିଳନୀ ଉତ୍କଳୀୟ ଜାତୀୟ ଚେତନାର ଏକ ନିର୍ଦ୍ଦିଷ୍ଟ ଭାବକୁ ସଂପ୍ରସାରିତ କରି ଦେଇଥିଲା ସାରା ଓଡ଼ିଶାଭାଷୀ ଅଂଚଳରେ । ଜନନୀ ଜନ୍ମଭୂମି ପ୍ରୀତି ସମସ୍ତଙ୍କୁ ଅନୁପ୍ରାଣିତ କରିଥିଲା । କଳା ସାହିତ୍ୟ ମଧ୍ୟ ସେହି ଆଦର୍ଶରେ ଉଦ୍‌ବୁଦ୍ଧ ହୋଇ ଉଠିଥିଲା । ଏବେ ସେସବୁ କିଛି ନାହିଁ । ଅଛି କେବଳ ସିଂହାସନ-ତୃଷ୍ଣା, ଉପଭୋଗ-ତୃଷ୍ଣା, ଦଳକୁ ବଂଚିତ କରି ନିଜେ ସମସ୍ତ ସୁବିଧାକୁ ମାରିନେବାରୁ ଅକାଂକ୍ଷା । ଗୋଟାଏ ବୌଦ୍ଧିକ ବାମନତ୍ୱ ସବାର ହୋଇ ଯାଇଛି ନେତା ଓ ବୁଦ୍ଧିଜୀବୀଙ୍କ ଉପରେ । ତାହାହିଁ ହୋଇଛି ଓଡ଼ିଶାର ଦୁର୍ଭାଗ୍ୟ । ଅଥଚ କୁହାଯାଇଛି ଓଡ଼ିଶାର ଖଣିଜ ସଂପଦ ପୂରି ରହିଛି । ମାତ୍ର ସେସବୁର କ'ଣ ବିନିଯୋଗ ହେଉଛି ? ଓଡ଼ିଶାରେ କ'ଣ ଶିଳ୍ପର ବିକାଶ ହୋଇପାରିଲା ? କୃଷିର କ'ଣ ଉନ୍ନତି ହୋଇ ପାରିଲା ? ଶିକ୍ଷାର କ'ଣ ପ୍ରଗତି ହୋଇଛି ? ଶିକ୍ଷାଳୟକୁ ଘରୋଇ କରଣ କରିଦେଲେ, ପ୍ରଯୁକ୍ତି ବିଦ୍ୟା ନାମରେ ଘରୋଇ ଉଦ୍ୟମରେ ବ୍ୟାବସାୟିକ ଦୃଷ୍ଟିକୋଣ ନେଇ କୁକୁଡ଼ା ଫାର୍ମ ପରି ଇଂଜିନିୟରିଂ ଓ ଅନ୍ୟାନ୍ୟ ଟେକ୍‌ନିକାଲ ଅନୁଷ୍ଠାନ ଖୋଲିଦେଲେ କ'ଣ ଶିକ୍ଷାର ପ୍ରସାର ଘଟିଯିବ ? ବେକାର ସମସ୍ୟା ଚାଲିଯିବ ? ଏବେ ତ ଚାକିରୀ ନାହିଁ, ବେକାର ସଂଖ୍ୟା ବଢ଼ିବାରେ ଲାଗିଛି, କିପରି ଆଶା କରିବା ଯେ ଓଡ଼ିଶାର ପ୍ରଗତି ହେବ ? ଜାତିର ଆର୍ଥନୀତିକ ମାନଦଣ୍ଡ ଭାଙ୍ଗିଗଲେ କ'ଣ ଜାତିର ବିକାଶ ଘଟିବ ?

୧୯୩୧ ମସିହାରେ ମଧୁସୂଦନ କହିଥିଲେ ଯେ ବଙ୍ଗାଳୀ ଓ ବିହାରୀ ସଂଖ୍ୟାରେ ଓଡ଼ିଆଙ୍କଠାରୁ ଅଧିକ ହୋଇଥିବାରୁ ସେମାନେ ବଡ଼ ଗଛ । 'ଓଡ଼ିଆମାନେ ଏତେକାଳ ବଡ଼ଗଛ ଛାଇରେ ଥିବାରୁ ବଢ଼ି ପାରି ନାହାନ୍ତି । ଈଶ୍ୱରଙ୍କଠାରେ ପ୍ରାର୍ଥନା କରିବେ ଯେପରି ସେମାନେ, ଏଣିକି କାହାରି ଛାଇତଳେ ନରହି ଗୋଟିଏ ସ୍ୱତନ୍ତ୍ର ପ୍ରଦେଶରେ ବିନା ବାଧାରେ ନିଜ ଜାତିର ଉନ୍ନତି ବିଧାନ କରିବାକୁ ସୁବିଧା ପାଆନ୍ତୁ ।' ସେତେକବେଳେ ଉତ୍କଳ ପ୍ରଦେଶ ବଂଗଳା ଓ ବିହାର ସହିତ ମିଶିଥିଲା, ୧୯୧୨ରୁ ବିହାର ସହିତ ମିଶି

ରହିଲା । ସେହି ପରିସ୍ଥିତିକୁ ଲକ୍ଷ୍ୟକରି ମଧୁସୂଦନ ଏକଥା କହିଥିଲେ । ଏବେ ଆମେ ସ୍ୱାଧୀନ । ଆମର ଅଛି ସ୍ୱତନ୍ତ୍ର ପ୍ରଦେଶ । ତଥାପି କୁହନ୍ତୁ ତ ଆମେ କ'ଣ ମୁକ୍ତ ? ପ୍ରତିବେଶୀ ରାଜ୍ୟ ଆଉ କେନ୍ଦ୍ରର ନାଲି ଆଖି ନିକଟରେ ଆମେ କ'ଣ ନତଜାନୁ ହୋଇଯାଉ ନାହୁଁ ? ବାହାରର ଗଛ ଛାଇ ତଳେ ଘୁଙ୍ଗୁଡ଼ି ମାରୁ ନାହୁଁ ?

ଉତ୍କଳ ସମ୍ମିଳନୀର କାର୍ଯ୍ୟ ସରିଯାଇଥିଲା ୧୯୩୬ ମସିହାଠାରୁ । ତଥାପି ଏହା ଗତି କରିଥିଲା ୧୯୪୯ ମସିହା ପର୍ଯ୍ୟନ୍ତ । ପୁଣିଥରେ ମୁଣ୍ଡଟେକି ଥିଲା ୧୯୫୬ ମସିହାରେ । ଏବେ ଏହାର ଆବଶ୍ୟକତା କ'ଣ ? ଏବେ ତ ସବୁ କଥା ରାଜନୀତିକ ଇଚ୍ଛାଶକ୍ତିର ଅଧୀନ । ଉତ୍କଳ-ସମ୍ମିଳନୀ କିପରି ଭାବରେ ରାଜନୀତିକୁ ପ୍ରଭାବିତ କରିପାରିବ ? ଉତ୍କଳ-ସମ୍ମିଳନୀ ଏକ ଜାତୀୟ ଅନୁଷ୍ଠାନ । ଏହା ପଛରେ ଅଛି ଏକଶହ ବର୍ଷର ସଂଗ୍ରାମକ୍ଷତ ଇତିହାସ । ଏବେ ଆମେ ଲକ୍ଷ୍ୟ କରୁଯେ ସେହି ସ୍ଥାନ ପୂରଣ କରିବା ପାଇଁ ନୀଳଚକ୍ର, ନୀଳଶୈଳ ପରି ଅନୁଷ୍ଠାନ ଗଢ଼ି ଉଠିଛି ? ଏମାନେ କ'ଣ ଉତ୍କଳ ସମ୍ମିଳନୀର ଅତୀତ ଗୌରବର ଉତ୍ତରାଧିକାରୀ ? ନା' -ଉତ୍କଳ-ସମ୍ମିଳନୀର ଉତ୍ତରାଧିକାରୀ କେହି ହୋଇପାରିବେ ନାହିଁ । ତା'ର କାରଣ ଉତ୍କଳ-ସମ୍ମିଳନୀର ତ୍ୟାଗ, ନିଷ୍ଠା, ଜାତୀୟ ଅଙ୍ଗୀକାରବଦ୍ଧତା, ମାତୃଭୂମି-ପ୍ରୀତି ଓ ସାମଗ୍ରିକ ଦୃଷ୍ଟି କାହାର ନାହିଁ । ବକ୍ତୃତା ଦେଇଦେଲେ, ଉପଢୌକନ, ଉପାୟନ ଦେଇଦେଲେ ହୁଏନାହିଁଚ ହୁଏ ଜାତିର ମଙ୍ଗଳ ପାଇଁ ସମର୍ପିତ ମନୋଭାବରେ । ତେଣୁ ଆଜି ଉତ୍କଳ-ସମ୍ମିଳନୀ ହୁଏତ କେଉଁକେଉଁ ସ୍ଥାନରେ ସଭାର ଆୟୋଜନ କରୁଛି, ରାଜନୀତିକ ନେତାମାନଙ୍କୁ ନିମନ୍ତ୍ରଣ କରି ସେମାନଙ୍କ ମୁଖରୁ ଦି'ପଦ ମନଭୁଲାଣିଆ କଥା ଶୁଣୁଛି; ଏହା ଦ୍ୱାରା ଜାତିର କ'ଣ ଉପକାର ହେଉଛି ?

ସମୟ ଆସିଛି ଜାତିକୁ ନିଜ ଗୋଡ଼ରେ ଛିଡ଼ା ହେବାକୁ ହେବ । ରାଜିନୀତିକ ଦଳ ଭିତରେ ଏକତା ସ୍ଥାପନ କରିବାକୁ ହେବ ଅନ୍ତତଃ ଜାତିର ସ୍ୱାର୍ଥ ପାଇଁ । ବୌଦ୍ଧିକ ବାମନତ୍ୱକୁ ତ୍ୟାଗ କରି ପ୍ରସାରିତ ଦୃଷ୍ଟି ଭଙ୍ଗୀକୁ ଗ୍ରହଣ କରିବାକୁ ହେବ । ଶିକ୍ଷାକୁ ଜନମୁଖୀ କରିବାକୁ ହେବ । ଓଡ଼ିଶାର ପୂର୍ଣ୍ଣାଙ୍ଗ ଇତିହାସ ପ୍ରଣୟନ କରିବାକୁ ହେବ । ଗୋଡ଼ାଣିଆ ମନୋବୃତ୍ତିକୁ ଛାଡ଼ି ସ୍ୱାଭିମାନ ବଜାୟ ରଖିବାକୁ ହେବ । ପଶ୍ଚିମ ଓଡ଼ିଶା ଓ ଉପକୂଳବର୍ତ୍ତୀ ଓଡ଼ିଶା ମଧ୍ୟରେ ଯେଉଁ ଦ୍ୱନ୍ଦ୍ୱ ସୃଷ୍ଟି ହେଉଛି ତାହାକୁ ଯଥାଶୀଘ୍ର ସମାଧାନ କରିବାକୁ ହେବ । ମୁଖ୍ୟଭାଷା ଓଡ଼ିଆକୁ ଗୁରୁତ୍ୱ ଦେଇ ଆଂଚଳିକ ଭାଷାଗୁଡ଼ିକର ବିକାଶ ଦିଗରେ ଉଦ୍ୟମ କରିବାକୁ ହେବ । ଆଦିବାସୀ ଓ ଅନ୍ୟାନ୍ୟ ଅନୁସୂଚିତ ବର୍ଗକୁ ଏକ ଜାତୀୟ ସ୍ରୋତରେ ସାମିଲ କରିବାକୁ ହେବ । ଇଂରାଜୀ ଭାଷାର ସର୍ବଗ୍ରାସୀ କ୍ଷୁଧାରୁ ଓଡ଼ିଆ ଭାଷାକୁ ରକ୍ଷା କରିବାକୁ ହେବ । ଓଡ଼ିଶାର ଭୂସଂପଦକୁ ବିନିଯୋଗ କରିବାକୁ ହେବ । ବେକାର ସମସ୍ୟାକୁ ସମାଧାନ କରିବାକୁ ହେବ । ସିଂହାସନୀ ମଣିଷମାନଙ୍କର ଆତ୍ମମ୍ଭରିତାକୁ ଦୂର କରିବାକୁ ହେବ । କୃଷିର ଉନ୍ନତି ପାଇଁ ଯାବତୀୟ ପଦକ୍ଷେପ ନେବାକୁ ହେବ । ଭୋଟ-ରାଜନୀତିର ଊର୍ଦ୍ଧ୍ୱକୁ ଯାଇ ଜାତିର ସମସ୍ୟାକୁ ବିଚାର କରିବାକୁ ହେବ । ଏହାହିଁ ବାର୍ତ୍ତମାନିକ ପରିସ୍ଥିତିରେ ଉତ୍କଳ-ସମ୍ମିଳନୀର ଆହ୍ୱାନ । ଏହା ସତ୍ୟ ଯେ ଉତ୍କଳ-ସମ୍ମିଳନୀ ଶତ ଚେଷ୍ଟା କଲେ ମଧ୍ୟ ପଡ଼ୋଶୀ ରାଜ୍ୟରୁ ଆଉ ଇଞ୍ଚେ ମାତ୍ର ସ୍ଥାନ ଆଣି ପାରିବ ନାହିଁ । ଯେତିକି ଅଛି ତାର ସୁରକ୍ଷା କରିବାକୁ ହେବ । ଉପାନ୍ତ ଅଂଚଳ ପ୍ରତି ବିଶେଷ ଧ୍ୟାନ ଦେବାକୁ ହେବ । ଏହା ହେଲେ ଉତ୍କଳ-ସମ୍ମିଳନୀର କର୍ତ୍ତବ୍ୟ ସରିଗଲା ବୋଲି ମନେ କରିବା ଭୁଲ ହେବ । ସଂପ୍ରତି ଉତ୍କଳ-ସମ୍ମିଳନୀ ଆଉ ଏକ ସଂଗ୍ରାମୀ ଅନୁଷ୍ଠାନ ନୁହେଁ; ଏକ ସାଂସ୍କୃତିକ ଅନୁଷ୍ଠାନ, ଜାତିର ବିବେକ । ଏହି ବିବେକକୁ ଜାଗ୍ରତ କରିବାକୁ ହେବ । ବିଚାରବନ୍ତ ଭାବରେ କାର୍ଯ୍ୟ କରିବାକୁ ହେବ । ଅପସଂସ୍କୃତିର ଉତ୍ତାଳ ତରଙ୍ଗକୁ ପ୍ରତିହତ କରିବାକୁ ହେବ ।

ସ୍ମୃତି ମଧୁର । ସ୍ମୃତି ମଧ୍ୟ ଯନ୍ତ୍ରଣାଦାୟକ । ସ୍ମୃତି ମଧ୍ୟ ନୂତନ କାର୍ଯ୍ୟପନ୍ଥା ଗ୍ରହଣ କରିବାର

ପ୍ରେରଣାପ୍ରଦ ଓ ସାନ୍ତ୍ୱନାଦାୟକ । ଉତ୍କଳ-ସମ୍ମିଳନୀର ସ୍ମୃତି ଭୁଲିବାର ନୁହେଁ । ଗୋଟାଏ ହୃତ ଗୌରବ, ଲୁପ୍ତ ବୈଭବ'ଜାତି ପାଇଁ ଉତ୍କଳ-ସମ୍ମିଳନୀର ଭୂମିକା ଯେ କେତେ ଗୁରୁତ୍ୱପୂର୍ଣ୍ଣ ତାହା ବୁଝାଇ କହିବାର ନାହିଁ । ତାହା ଆଜି ହୋଇଯାଇଛି ଇତିହାସ । ସେହି ଇତିହାସ ସାନ୍ତ୍ୱନା ଦେଉଛି କିନ୍ତୁ ଶୁଆଇ ପକାଉ ନାହିଁ । ଯେଉଁ ଇତିହାସ ଶୁଆଇ ପକାଏ, ଶୀତଳ କରିଦିଏ ତାହା ଠିକ୍ ଇତିହାସ ନୁହେଁ । ଇତିହାସ ଜାତିର ଜୀବନ୍ତ ବାର୍ତ୍ତା । ଉତ୍କଳ-ସମ୍ମିଳନୀ ସେହି ଜୀବନ୍ତ-ବାର୍ତ୍ତା । ଏହି ବାର୍ତ୍ତା ଜାତିର ହୃଦୟର ଅତୀତ-ବିଧୁରତା ସୃଷ୍ଟି ନ କରୁ; ଭବିଷ୍ୟତ ପାଇଁ ଆଗେଇ ଯିବାର ପ୍ରେରଣା ପ୍ରଦାନ କରୁ, ବର୍ତ୍ତମାନର ଜାତୀୟ ସମସ୍ୟା ସଂକୁଳ ଅନ୍ଧକାର ଭିତରେ ଆଲୋକ ଦେଖାଉ । ମୋର ବିଶ୍ୱାସ ଉତ୍କଳ-ସମ୍ମିଳନୀ ଆଉ ଆନ୍ଦୋଳନାତ୍ମକ ଭୂମିକା ନେଇ ପାରିବନାହିଁ । ତେଣୁ ତାହା ବୌଦ୍ଧିକ ଜଡ଼ତାକୁ ଭାଙ୍ଗି ଜାତୀୟ ଚେତନା ସୃଷ୍ଟିକରୁ । ଏହି ଜାତୀୟ ଚେତନା ହେଉ ଦେଶପ୍ରେମ (Patriotism) ରେ ଉଦ୍‌ବୁଦ୍ଧ । ଜାତିର ବୁଦ୍ଧିଦୀପ୍ତ ମଣିଷମାନେ ଆଗେଇ ଆସିଲେ ଉତ୍କଳ-ସମ୍ମିଳନୀର ଶ୍ରମ ସାର୍ଥକ ହେଲାବୋଲି ମନେହେବ । ଏଇ ପଚାଶ ବର୍ଷ ଭିତରେ ଏ ଜାତିର ରାଜନେତା ଓ ଅଧିକାରୀବର୍ଗ ନିଜ ପାଇଁ ଅନେକ କିଛି କରିଗଲେଣି । ଏବେ ବିବେକର ଜାଗରଣ ହେଉ, ଅନ୍ତତଃ ଜାତିର କଲ୍ୟାଣ ପାଇଁ କିଛି କରନ୍ତୁ । ସାହିତ୍ୟିକମାନେ ପରୀକ୍ଷା ନିରୀକ୍ଷା ଛାଡ଼ି, ବୌଦ୍ଧିକ କସରତ ଛାଡ଼ି ମାଟି-ପ୍ରତ୍ୟୟ ଓ ଜାତି-ପ୍ରତ୍ୟୟ ସୃଷ୍ଟି କରନ୍ତୁ । ଲବି କରି ବାହାବା ନେବାର ମନୋବୃତ୍ତିରୁ କ୍ଷାନ୍ତ ହୁଅନ୍ତୁ । ଉତ୍କଳ-ସମ୍ମିଳନୀର ବାର୍ତ୍ତାକୁ ଲୋକଙ୍କ ଭିତରକୁ ନିଅନ୍ତୁ । ମନେ ପକାନ୍ତୁ ଉତ୍କଳମଣି ଗୋପବନ୍ଧୁଙ୍କ ଉକ୍ତିକୁ-

‘ପୁଣ୍ୟ ଜନ୍ମମାଟି ଜୀର୍ଣ୍ଣ ଦେବାଳୟ
ଉଦ୍ଧରିବା ପାଇଁ କଲେ ତନୁକ୍ଷୟ,
ମାନବ ଜୀବନ ହୁଅଇ ସଫଳ
ଏ ମହାଦୀକ୍ଷାକି ବୁଝିବ ଉତ୍କଳ !’

-ଜୟ ଉତ୍କଳ ଜନ୍ମନୀ

# ଉତ୍କଳ ସମ୍ମିଳନୀର ପ୍ରାସଙ୍ଗିକତା

ପ୍ରଫେସର ନିତ୍ୟାନନ୍ଦ ଶତପଥୀ

ବର୍ତ୍ତମାନ ବହୁ ବୁଦ୍ଧିଜୀବୀ ଓଡ଼ିଆଙ୍କ ମନରେ ଏ ପ୍ରଶ୍ନ ସ୍ୱତଃ ଜାଗରିତ ହେଉଛି : ଆଉ 'ଉତ୍କଳ ସମ୍ମିଳନୀ'ର ପ୍ରାସଙ୍ଗିକତା ଅଛି କି ? ଓଡ଼ିଶାର ବିଚ୍ଛିନ୍ନାଞ୍ଚଳମାନଙ୍କର ମିଶ୍ରଣ ପାଇଁ ଶହେ ବର୍ଷ ପୂର୍ବେ ଯେଉଁ ସମ୍ମିଳନୀ ତାର ବାର୍ଷିକ ଅଧିବେଶନମାନଙ୍କରେ ଦାବୀ ଉପସ୍ଥାପିତ କରି ଆସୁଥିଲା ୧୯୩୬ ମସିହାରେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ହେବାପରେ ଏବଂ ୧୯୫୬ ମସିହାର ରାଜ୍ୟ ପୁନର୍ଗଠନ ପରେ ତାର କି ଆବଶ୍ୟକତା ଆଉ ଅଛି ? ଅବଶ୍ୟ ଯେଉଁଯେଉଁ ଓଡ଼ିଆ ଭାଷାଭାଷୀ ଅଂଚଳକୁ ନେଇ ୧୯୩୬ରେ ଉତ୍କଳପ୍ରଦେଶ ସ୍ୱତନ୍ତ୍ର ରାଜନୈତିକ ଓ ଭୌଗୋଳିକ ଭୂଖଣ୍ଡ ଭାବେ ଆତ୍ମପରିଚିତି ଲାଭ କଲା ତା ବାହାରେ ଆହୁରି ଅଂଚଳଗୁଡ଼ିକ ନାନାଦି କାରଣରୁ ଓଡ଼ିଶାପ୍ରଦେଶକୁ ଆସି ପାରି ନଥିଲା । ୧୯୩୬ରୁ ୧୯୫୬-ଏ କୋଡ଼ିଏ ବର୍ଷ ମଧ୍ୟରେ ଉତ୍କଳ ସମ୍ମିଳନୀର ତଦାନୀନ୍ତନ ନେତୃମଣ୍ଡଳୀ ବୋଧହୁଏ ଏକ ପ୍ରକାର ଉଲ୍ଲାସରେ ଯଥାରୀତି ସନ୍ତୁଷ୍ଟ ହୋଇ ରହିଗଲେ; ତେଣୁ ସେମାନଙ୍କ ସ୍ୱର ଉତ୍ତୋଳିତ ହେଲାନାହିଁ । ଯେଉଁ ତୁଙ୍ଗ ବ୍ୟକ୍ତିବର୍ଗ ଭାରତର ସମଗ୍ର ଓଡ଼ିଆ ଭାଷାଭାଷୀ ଅଂଚଳକୁ ଏକ ଶାସନାଧୀନରେ ରଖିବାକୁ ଚାହୁଁଥିଲେ ସେମାନଙ୍କ ମଧ୍ୟରୁ ଉତ୍କଳମଣି ଓ ଉତ୍କଳ ଗୌରବଙ୍କ ମୃତ୍ୟୁ ହୋଇ ଯାଇଥିଲା । ପଣ୍ଡିତ ନୀଳକଣ୍ଠ, ପଣ୍ଡିତ ଗୋଦାବରୀଶ, ପାରଳା ମହାରାଜା ଗଜପତି କୃଷ୍ଣଚନ୍ଦ୍ର ଦେବ ଓ ହରେକୃଷ୍ଣ ମହାତାବ ୧୯୩୬ରୁ ୧୯୫୬ ମଧ୍ୟରେ ତୁଙ୍ଗ ରାଜନୈତିକ ବ୍ୟକ୍ତିତ୍ୱ ଭାବେ ଗଣା ହେଉଥିଲେ । ଏମାନଙ୍କର କାହାର କାହା ସହିତ ମନର ମେଳ ନଥିଲା । ଭାରତୀୟ ଜାତୀୟ କଂଗ୍ରେସ ଓଡ଼ିଶା ଶାଖାର ତତ୍‌କାଳୀନ ସଭାପତି ନୀଳକଂଠ ଦାଶ କିମ୍ବା ପରବର୍ତ୍ତୀ ସମୟରେ ସଭାପତି ହରେକୃଷ୍ଣ ମହତାବ କଂଗ୍ରେସ ସଂସ୍ଥା ମାଧ୍ୟମରେ ଆଉ ବିଚ୍ଛିନ୍ନାଞ୍ଚଳ ମିଶ୍ରଣ ପାଇଁ ଦାବୀ କରୁନଥିଲେ । ପାରଳା ମହାରାଜା କଂଗ୍ରେସରେ ଆଦୌ ନଥିଲେ ଏବଂ କେତେକ ବ୍ୟକ୍ତିଗତ କାରଣରୁ ପଣ୍ଡିତ ଗୋଦାବରୀଶଙ୍କର ନୀଳକଂଠଙ୍କ ସହିତ ମନୋମାଳିନ୍ୟରୁ ଗୋଦାବରୀଶ ମଧ କଂଗ୍ରେସ ତ୍ୟାଗ କରିଥିଲେ । ୧୯୪୭ ପର୍ଯ୍ୟନ୍ତ କଂଗ୍ରେସର ପ୍ରତ୍ୟେକ ନେତା ଭାରତର ସ୍ୱାଧୀନତା ପାଇଁ ଅଧିକ ସକ୍ରିୟ ଥିଲେ । ତାପରେ ଯେତେବେଳେ ଗଡ଼ଜାତ ରାଜ୍ୟମାନଙ୍କର ଓଡ଼ିଶା ସହିତ ମିଶ୍ରଣ ଘଟିଲା ଷଢ଼େଇକଳା, ଖରସୁଆଁର ତତ୍‌କାଳୀନ ରାଜାମାନେ ନିଜନିଜର ଦୁର୍ବଳ ବ୍ୟକ୍ତିତ୍ୱ ଯୋଗୁ କିମ୍ବା ବାହାରର ଉଗ୍ରପନ୍ଥୀ ନେତାମାନଙ୍କ ପ୍ରତି ଭୟରୁ ଦୃଢ଼ ସ୍ୱରରେ ଆଉ ସେ ସବୁ ଅଂଚଳର ମିଶ୍ରଣ କଥା ଉତ୍ଥାପନ କରିପାରୁ ନଥିଲେ । ସେସବୁ ଅଂଚଳରେ ସ୍ୱର୍ଗତ ଉତ୍କଳମଣି ଗୋପବଂଧୁଙ୍କ ସହିତ ପାଦକୁ ପାଦ ମିଳେଇ ଯେଉଁ ଏକମାତ୍ର ବ୍ୟକ୍ତି ପଣ୍ଡିତ ଗୋଦାବରୀଶ କାମ କରି ଆସିଥିଲେ ତାଙ୍କର ୧୯୪୭ ପରେ ରାଜନୈତିକ ଅସ୍ତିତ୍ୱ ପ୍ରାୟ ନଥିଲା-କାରଣ ସେ ଆଉ କଂଗ୍ରେସରେ ନ ଥିଲେ । ପଣ୍ଡିତ ନୀଳକଂଠ କେବେ ବି କଠିନ ସାଂଗଠନିକ ଶ୍ରମ ପାଇଁ ଆଉ ପରିଣତ ବୟସରେ ପ୍ରସ୍ତୁତ ନଥିଲେ । ବରଂ ବୌଦ୍ଧିକ କାର୍ଯ୍ୟରେ ସମୟ ବିନିଯୋଗ କରିବାକୁ ସେ ଥିଲେ ଉତ୍ସୁକ ଓ ଅନୁବ୍ରତୀ । ଡକ୍ଟର ହରେକୃଷ୍ଣ ମହାତାବ୍‌ଙ୍କ ଉପରେ ଏ ସମୟକୁ ଓଡ଼ିଶାବାସୀଙ୍କ ମନରେ ଅଧିକ ଭରସା ଥିଲା । କିଂତୁ ରାଜନୈତିକ ବାଧ୍ୟବାଧକତାରୁ ସେ ମଧ୍ୟ ଆଉ ଷଢ଼େଇକଳା ଖରସୁଆଁ ପ୍ରସଙ୍ଗକୁ ତେଜୋଦୀପ୍ତ କରି ରଖିବାକୁ ମାନସିକ ଭାବେ ପ୍ରସ୍ତୁତ ନଥିଲେ । ଆଉ ଯେଉଁ ଦୁଇଜଣ ନେତାଙ୍କ ଉପରେ ସେତେବେଳେ ଓଡ଼ିଶାବାସୀଙ୍କ ମନରେ ଶ୍ରଦ୍ଧା ଓ ସମର୍ପଣର ଭାବ ଉପ୍ତବୀଜ ହୋଇଥିଲା ଶ୍ରୀ ନବକୃଷ୍ଣ ଚୌଧୁରୀ ଓ ତାଙ୍କ ଅଗ୍ରଜ ଗୋପବନ୍ଧୁ ଚୌଧୁରୀ-

ସେମାନେ ଭୂଦାନ ଯଜ୍ଞ ଓ ତନ୍‌ମାଧମରେ ସାମାଜିକ କ୍ରାନ୍ତି ପାଇଁ ଏତେ ବଦ୍ଧମୂଳ ବିଶ୍ୱାସ ସ୍ଥାପନ କରିଥିଲେ ଯେ ଷଢ଼େଇକଳା ଖରସୁଆଁ କଥା ପ୍ରାୟ ସେମାନଙ୍କୁ ବିବ୍ରତ କରୁ ନଥିଲା । ଏପରିକି ଦକ୍ଷିଣ ଭାରତରେ ଯେଉଁଯେଉଁ ଓଡ଼ିଆ ଭାଷୀ ଅଂଚଳଗୁଡ଼ିକ ଦୀର୍ଘକାଳ ଧରି ଓଡ଼ିଆ ସଂସ୍କୃତିର ପରିପୋଷକତା କରି ଆସୁଥିଲେ ଗଂଜାମର ସର୍ବବାଦୀ ନେତା ଶ୍ରୀ ବିଶ୍ୱନାଥ ଦାଶ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶର ପ୍ରଥମ ପ୍ରଧାନମନ୍ତ୍ରୀ (ଅର୍ଥାତ୍ ମୁଖ୍ୟମନ୍ତ୍ରୀ) ଦାୟିତ୍ୱ ଚାରିବର୍ଷ ଧରି ବହନ କରି ଥିଲେ ବି ଏସବୁ ଅଂଚଳର ମିଶ୍ରଣ ପାଇଁ ଉତ୍କଳ ସମ୍ମିଳନୀକୁ ସକ୍ରିୟ କରିଥିବାର କୌଣସି ଐତିହାସିକ ନଜିର ମିଳେନାହିଁ । ପ୍ରଧାନମନ୍ତ୍ରୀ ପଦ ହରାଇବା ପରେ ତାଙ୍କର ସାମାଜିକ କାର୍ଯ୍ୟଧାରା ପ୍ରାୟ ଥିଲା ନିସ୍ତରଙ୍ଗ । ଦ୍ୱିତୀୟ ପୃଥିବୀ ମହାଯୁଦ୍ଧ କାଳରେ ଯେଉଁ ମିଳିତ ମନ୍ତ୍ରୀମଣ୍ଡଳ ଗଠିତ ହେଲା ତାର ନେତୃତ୍ୱ ନେଇଥିଲେ ପାରଳା ମହାରାଜା ଗଜପତି କୃଷ୍ଣଚନ୍ଦ୍ର । ସମ୍ଭବତଃ ସେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନରେ ନିଜ ରାଜକୋଷରୁ ପ୍ରଭୂତ ଅର୍ଥ ବ୍ୟୟ କରି ସମଗ୍ର ପାରଳାଖେମୁଣ୍ଡି ଅଂଚଳକୁ ଓଡ଼ିଶା ପ୍ରଦେଶ ଅନ୍ତର୍ଗତ କରାଇ ପାରି ନ ଥିବାର ମାନସିକ କ୍ଷୋଭରେ ଆଉ ଅଧିକ ସଂଗ୍ରାମ କରିବାକୁ ମାନସିକ ଉତ୍ସାହ ହରେଇ ବସିଥିଲେ । କିଛି ବର୍ଷପାଇଁ ଓଡ଼ିଶାର ପ୍ରଧାନମନ୍ତ୍ରୀ (ବା ମୁଖ୍ୟମନ୍ତ୍ରୀ) ହୋଇଯାଇ ସେ ବି ହୋଇ ପଡ଼ିଥିଲେ complacent । ପୁଣି ବାର୍ଦ୍ଧକ୍ୟ ମଧ୍ୟ ତାଙ୍କୁ ଅବନତ କରି ଦେଉଥିଲା । ତା'ହେଲେ ବିଚ୍ଛିନ୍ନାଞ୍ଚଳ ପାଇଁ କିଏ ସେ ସାଂଗଠନିକ ସଂଗ୍ରାମ କରି ପାରିଥାନ୍ତେ ? ବୋଧହୁଏ ଏହାହିଁ ଥିଲା ଓଡ଼ିଶାର ନିୟତି ।

ଯେଉଁମାନେ ଜନନେତା ହେବାକୁ ଉତ୍ସର୍ଗୀକୃତ ଭାବେ ସମର୍ପିତ ହୋଇଥାନ୍ତି ସେମାନେହିଁ କ୍ଷମତା ବଳୟ ଠାରୁ ବରଂ ଦୂରରେ ରହି ଜାତୀୟଜୀବନର ଆହ୍ୱାନ ପାଇଁ ଆତ୍ମୋତ୍ସର୍ଗ କରିଥାନ୍ତି । ସେହି ପରି ନେତା ଥିଲେ ମଧୁବାବୁ ଓ ଗୋପବଂଧୁ । ସେମାନଙ୍କ ସ୍ତରର ନେତା ଖୁବ୍ ବେଶୀ ସଂଖ୍ୟାରେ ଜନ୍ମ ହୁଅନ୍ତି ନାହିଁ । ଏହାହିଁ ଓଡ଼ିଶା ପାଇଁ ଶୋଚନାର କଥା । ଭାରତର ସ୍ୱାଧୀନତା ପରେ କଂଗ୍ରେସ ନେତାମାନେ କ୍ଷମତାର ବଳୟ ମଧକୁ ଆସିବାପାଇଁ ଏତେ ବେଶୀ ଗଳଦ୍‌ଘର୍ମ ଉଦ୍ୟମ ଆରମ୍ଭ କରି ଦେଇଥିଲେ ଯେ ସେମାନେ ଆଉ ବିଚ୍ଛିନ୍ନାଞ୍ଚଳରେ ଥିବା ଓଡ଼ିଆମାନଙ୍କ ଅଶ୍ରୁ ଓ ଆକୁତିକୁ ହୃଦୟ ଭିତର ଦେଇ ଉପଲବଧି କରିବାକୁ ପ୍ରସ୍ତୁତ ନଥିଲେ । ରାଜନୈତିକ ଫେଡ଼ାଣ ଓ ମିଶାଣରେ ସେମାନେ କେବଳ ଲାଗି ପଡ଼ିଥିଲେ ନୁହେଁ ମହାଭାରତୀୟ କଂଗ୍ରେସ ନେତାମାନଙ୍କୁ ପରିତୁଷ୍ଟ କରି ମୁଖ୍ୟମନ୍ତ୍ରିତ୍ୱ ଓ କେନ୍ଦ୍ରମନ୍ତ୍ରିତ୍ୱକୁ ଅଧିକ ଗୁରୁତ୍ୱପୂର୍ଣ୍ଣ ମଣିଥିଲେ । ଜନତା ପାଖରେ ପହଂଚି ସେମାନଙ୍କ ସମସ୍ୟାକୁ ଉପଲବ୍ଧି କରିବା ପାଇଁ ସେମାନଙ୍କର ଇଚ୍ଛାଶକ୍ତି ଫିକାପଡ଼ି ଆସିଥିଲା । ତା' ନ ହୋଇଥିଲେ ୧୯୫୧ ମସିହାର ଜନଗଣନା ବେଳେ ଏମାନେ ଅଧିକ ସକ୍ରିୟ ହୋଇ ପାରିଥାନ୍ତେ ଓ ବିଚ୍ଛିନ୍ନାଞ୍ଚଳ ମାନଙ୍କରେ ବୁଲି, ସଂଗଠନ କରି ଓଡ଼ିଆମାନଙ୍କ ଇଚ୍ଛାକୁ ସେତିକିବେଳେ ଉଜ୍ଜୀବିତ କରି ପାରିଥାନ୍ତେ-ଯାହା ସ୍ୱଳ୍ପ ସଂକଳ ସତ୍ତ୍ୱେ ୧୯୨୧ ମସିହାରେ ଗୋପବଂଧୁ ମଧ୍ୟପ୍ରଦେଶର ଓଡ଼ିଆ ଭାଷାଭାଷୀ ଅଂଚଳ ମାନଙ୍କରେ କରି ପାରିଥିଲେ । ସେତେବେଳେ ଜନଗଣନା ଚାଲିଥାଏ । ଭୂମିମାଲିକ ଗୌନ୍ତିଆ ଓ ଜମିଦାରମାନେ ପୁରାତନ କୋଶଳର ଏହି ଅଂଚଳରେ ପ୍ରାୟ ଥିଲେ ସକ୍ରିୟ । ସେମାନେ ଥିଲେ ଲରିଆ ଭାଷାର ପକ୍ଷପାତୀ । ଅଖିଦେଖେଇ ଓଡ଼ିଆମାନଙ୍କୁ ସେମାନେ ଲରିଆ ଭାଷୀ ବୋଲି ଲେଖେଇବାକୁ ବାଧ କରୁଥିଲେ । ଏଇ ସମୟରେ କିଛି ଓଡ଼ିଆଙ୍କ କରୁଣ ନିବେଦନମୂଳକ ପତ୍ର ପାଇ ସମ୍ବଲପୁରରୁ ଚନ୍ଦ୍ରଶେଖର ବେହେରାଙ୍କୁ ଧରି ଗୋପବନ୍ଧୁ ସେ ସବୁ ଜନଗଣନା କ୍ୟାମ୍ପରେ ପହଂଚିଲେ । କେତେଗୁଡ଼ିଏ ସଂକୀର୍ତ୍ତନ ଦଳ ଯୋଗାଡ଼ କରି ଗୋଟିଏ ଚାରିଧାଡ଼ିଆ ଗୀତକୁ ସେମାନଙ୍କୁ ଧରେଇ ଦେଲେ । ଗୀତଟି ଥିଲା ଏହିପରି -

''ଚାଲହୋ ଏଇ ବାଟେ ଯିବା
ଓଡ଼ିଆ ଦାଣ୍ଡରେ ମିଳିବା,
ଚାଲହୋ ଏଇବାଟେ ଯିବା
କାଳିଆ ଶ୍ରୀମୁଖ ଦେଖିବା ।''

ଏ ଗୀତଟିର ଏପରି ମନସ୍ତାତ୍ତ୍ୱିକ ପ୍ରଭାବ ଥିଲା ଯହିଁରେ ଓଡ଼ିଆ ଲୋକମାନେ ସଂପୂର୍ଣ୍ଣ ନିଃଶଙ୍କ ହୋଇ ଗୌନ୍ତିଆମାନଙ୍କୁ ନ ଡରି ସେମାନେ ଓଡ଼ିଆ ଭାଷାଭାଷୀ ବୋଲି ଲେଖାଇ ଥିଲେ । ଜନନେତା କେବଳ ବୁଝେ କିପରି ଅସଚେତନ ଗଣମାନସକୁ ଧରି ରଖିବାକୁ ହେବ । ୧୯୫୧ ଜନଗଣନାର ସୁବର୍ଣ୍ଣ ସୁଯୋଗକୁ ଓଡ଼ିଆ ନେତାଏ ହରେଇ ୧୯୫୬ ରାଜ୍ୟ ପୁନର୍ଗଠନ କମିଶନ ଆଗରେ ସେଠାରେ ଓଡ଼ିଆମାନଙ୍କ ସ୍ଥିତି ଓ ବୃତ୍ତି ବିଷୟରେ ଯେତେ ପ୍ରମାଣ ଉପସ୍ଥାପିତ କଲେ ବି ତାହା ବିଶେଷ ପ୍ରଭାବ ପକାଇ ପାରି ନଥିଲା । ପୁଣି ରାଜ୍ୟପୁନର୍ଗଠନ କମିଶନରେ ବେଶି ଥିଲେ ଦକ୍ଷିଣଭାରତୀୟ ସଭ୍ୟ । ଷଢ଼େଇକଳା ଖରସୁଆଁ ଓଡ଼ିଶାରେ ମିଶିଲେ ବା ନ ମିଶିଲେ ସେମାନଙ୍କର କୌଣସି ଉଦ୍‌ବେଗ ନଥିଲା । କାରଣ ତତ୍‌କାଳୀନ ସ୍ୱାଧୀନ ଭାରତର ରାଷ୍ଟ୍ରପତି ବିହାରୀବାସୀ ରାଜେନ୍ଦ୍ର ପ୍ରସାଦଙ୍କ ଇଚ୍ଛା ବିରୁଦ୍ଧରେ ସେମାନେ ଯିବା ଏତେ ସହଜ କଥା ନଥିଲା । ହରେକୃଷ୍ଣ ମହତାବ୍ ସେତେବେଳେ ବମ୍ବେର ରାଜ୍ୟପାଳ । କେନ୍ଦ୍ର ସରକାରରେ ଏକ ପ୍ରମୁଖ ସ୍ଥାନପାଇଁ ତାଙ୍କର ଥିଲା ଲକ୍ଷ୍ୟ । ତେଣୁ ସେ ନିଜ ରାଷ୍ଟ୍ରପତିଙ୍କୁ ବିରୁଦ୍ଧାଚରଣ କରି ପାରି ନଥାନ୍ତେ । ତେବେ ଷଢ଼େଇକଳା ଖରସୁଆଁରେ ସ୍ୱତଃସ୍ଫୁର୍ତ୍ତ ଜନଜାଗରଣ ନ ହେଲା କାହିଁକି ? କାରଣ ସେମାନେ ମଧ୍ୟ ଓଡ଼ିଶାର ଏହି ନେତାମାନଙ୍କଠାରୁ ବିଶ୍ୱାସ ଓ ଭରସା ହରେଇ ବସିଥିଲେ । ତେଣୁ ସବୁଦିନ ପାଇଁ ଏ ଦୁଇ ଗଡ଼ଜାତ ରାଜ୍ୟର ଭାଗ୍ୟ ମୀମାଂସା ହୋଇଗଲା; ଯାହାକୁ ବଦଳେଇବା ପାଇଁ କେତେକ କଲେଜ ଛାତ୍ରଙ୍କୁ ମତେଇ ପୋଡ଼ାଜଳା କରିବାରେ କୌଣସି ପରିବର୍ତ୍ତନ ହୋଇ ପାରି ନଥାନ୍ତା । ହୋଇ ପାରିଲା ନାହିଁ ମଧ୍ୟ ।

ସେତେବେଳେ ଉତ୍କଳ ସମ୍ମିଳନୀ ସକ୍ରିୟ ଥିଲେ ଅବା କିଛିଟା ଆଶା କରାଯାଇଥାନ୍ତା । ଯଥାର୍ଥ ସମୟରେ ସମ୍ମିଳନୀ ନିଶ୍ଚେଷ୍ଟ ରହି ପରେ ସତୁରୀ ବା ଅଶୀ ଦଶକରେ ତାର ପୁନରୁତ୍ଥାନ (revival) କେବେବି ଏ ଦୁଇ ଅଂଚଳକୁ ଆଉ ଓଡ଼ିଶାରେ ମିଶାଇ ପାରି ନଥାନ୍ତା । ତା'ହେଲେ ଏ ଅଂଚଳର କିଛି ଲୋକଙ୍କୁ ମତେଇ ପୁଣି ଚକ୍ରଧରପୁରରେ ଉତ୍କଳ ସମ୍ମିଳନୀର ବାର୍ଷିକ ଉତ୍ସବ କରିବାର ତାତ୍‌ପର୍ଯ୍ୟ କଣ ? ଆଉ ଏ ଦୁଇଟି ଅଂଚଳ କେବେବି ଫେରିବ ନାହିଁ ଜାଣି ମଧ୍ୟ ଉତ୍କଳ ସମ୍ମିଳନୀ ବାର୍ଷିକ ଅଧିବେଶନରେ କାର୍ଯ୍ୟକାରୀ ସମିତିର ସଭ୍ୟମାନେ ଉତ୍ତେଜନାପୂର୍ଣ୍ଣ ଭାଷଣ ଦେବାରେ ଆଉ କେଉଁ ଲକ୍ଷ୍ୟ ବା ସାଧିତ ହେବ ? ତେବେ ଉତ୍କଳ ସମ୍ମିଳନୀ ଏବକୁ ତା'ର ଆଭିମୁଖ୍ୟକୁ ବଦଳାଇ ସେ ସବୁ ଅଂଚଳରେ ଓଡ଼ିଆ ଭାଷା ଓ ସଂସ୍କୃତି କିପରି ସଂରକ୍ଷିତ ହେବ ସେକଥା କହିବାକୁ ଆରମ୍ଭ କରିଛି । ଏହା ନିଶ୍ଚୟ ଏକ ଗୁରୁତ୍ୱପୂର୍ଣ୍ଣ କଥା । ତେବେ ଏସବୁ ବିଚ୍ଛିନ୍ନାଞ୍ଚଳରେ ଯେତେ ଓଡ଼ିଆଏ ନାହାନ୍ତି ତାଠାରୁ ଅଧିକ ଓଡ଼ିଆ ବର୍ତ୍ତମାନ କଲିକତା, ସୁରଟ ଓ ଦିଲ୍ଲୀରେ ରହୁଛନ୍ତି । ଉତ୍କଳ ସମ୍ମିଳନୀ ଚାହିଁଲେ ମଧ୍ୟ ଏମାନଙ୍କ ସାମୂହିକ ସ୍ୱାର୍ଥ ପାଇଁ କିଛି କରି ପାରିବନି । କାରଣ ଏ ସଂସ୍ଥାରେ ଆଉ ପୂର୍ବପରି କେହି ଜନନେତା ନାହାନ୍ତି କିମ୍ବା ନିଜର ସବୁକିଛି ସ୍ୱାର୍ଥକୁ ତ୍ୟାଗ କରି ଜୀବନ ଉତ୍ସର୍ଗ କରିଦେବା ପରି ବ୍ୟକ୍ତିତ୍ୱ ନାହାନ୍ତି । ଏ ସମ୍ମିଳନୀ ଆଉ ଓଡ଼ିଆମାନଙ୍କର ସଂପୂର୍ଣ୍ଣ ଭରସାର ଭାରକେନ୍ଦ୍ର ହୋଇ ପାରୁନାହିଁ -ଯଦିଓ ମଝିରେ ମଝିରେ ଓଡ଼ିଆ ଭାଷାର ସ୍ୱାର୍ଥକଥା ସେମାନେ ଉତ୍ଥାପନ କରୁଛନ୍ତି । ସେତେବେଳେ ଭାରତ ସରକାରଙ୍କ ନିଷ୍ପତ୍ତି ବିରୁଦ୍ଧରେ ଉତ୍କଳ ସମ୍ମିଳନୀ ନିଜକୁ ଓଡ଼ିଆମାନଙ୍କ ପ୍ରମୁଖ ସଂସ୍ଥାଭାବେ ପ୍ରତିପାଦିତ କରୁଥିଲା । ବର୍ତ୍ତମାନ ନିଜର ସ୍ଥିତି ବା ଅସ୍ତିତ୍ୱ ପାଇଁ ସଂସ୍ଥା ସଂଗ୍ରାମଶୀଳ । ମୋ ପରି ଅନେକ ଆଜୀବନ ସଭ୍ୟ ସମ୍ମିଳନୀର ବାସ୍ତବତା ପ୍ରତି ଆଉ ଆସ୍ଥାଶୀଳ ହୋଇ ପାରୁନାହାନ୍ତି । ସମ୍ମିଳନୀ ବୁଦ୍ଧିଜୀବୀ ଓ ଗଣ ଅବଚେତନଠାରୁ କ୍ରମେ ଦୂରବର୍ତ୍ତୀ ହୋଇ ପଡ଼ିଚି । କେବଳ ଆଂଚଳିକ କିଛି ରାଜନୈତିକ ବ୍ୟକ୍ତି ସମ୍ମିଳନୀର ଆବାହକ ଭାବେ ଗୋଟିଏ ଗୋଟିଏ ଅଧିବେଶନ କାର୍ଯ୍ୟକାରୀ କରାଇ ସଂଗଠକମାନଙ୍କ ଇଚ୍ଛାନୁସାରେ କିଛି ପ୍ରସ୍ତାବ ପାଶ୍ କରୁଛନ୍ତି । ନିଜ ଅଂଚଳର ଭୋଟରମାନଙ୍କୁ ଏ ମେଳାପ୍ରତି ଅଧିକ୍ ସଂଖ୍ୟାରେ ଆକୃଷ୍ଟ କରି ନିଜର ନିର୍ବାଚନ ଲକ୍ଷ୍ୟପ୍ରତି ଗୁରୁତ୍ୱ

ଦେଉଛନ୍ତି । ମେଳା ସରିଗଲେ ସେମାନେ ମଧ୍ୟ ସମ୍ମିଳନୀର ଲକ୍ଷ୍ୟପ୍ରତି ପୂର୍ବପରି ହୋଇ ଯାଉଛନ୍ତି ଉଦାସୀନ । ସେମାନଙ୍କର ସମ୍ମିଳନୀ ପ୍ରୀତି କେବଳ କାର୍ଯ୍ୟଘେନା । ତେଣୁ ସମ୍ମିଳନୀ ତାର ପ୍ରାସଙ୍ଗିକତା ଦିନକୁ ଦିନ ଦ୍ରୁତବେଗରେ ହରେଇ ବସୁଛି ଓ ଏକ ବାର୍ଷିକ ସୌଖୀନ ମିଳନମଂଚରେ ପରିଣତ ହୋଇ ଯାଉଛି । ଓଡ଼ିଆ ଭାଷାର ରକ୍ଷଣାବେକ୍ଷଣ ପାଇଁ ଏଇ କେତେବର୍ଷ ଭିତରେ ସମ୍ମିଳନୀ ଅନେକ ପ୍ରସ୍ତାବ ପାଶ୍ କରାଇଛି । କିଂତୁ 'ଦାସେ ଆସିଲେ ମୂଳରୁ ଗାଆ' ପରି ସେସବୁ ସରକାରଙ୍କ ପରିବର୍ତ୍ତନ ସହିତ ଅଳିଆଗଦାକୁ ଚାଲି ଯାଉଛି । ସରକାରୀ ଦପ୍ତରମାନଙ୍କରେ ଖୁବ୍ ଉତ୍ସାହରେ ଓଡ଼ିଆରେ ନଥିପତ୍ର ଲେଖାହେଲା ୧୯୮୦ରୁ ୯୦ ପର୍ଯ୍ୟନ୍ତ । ଅନେକ ଓଡ଼ିଆ ଟାଇପ୍ ରାଇଟର କିଣାହେଲା । କମ୍ପ୍ୟୁଟରରେ ଓଡ଼ିଆ ମୁଦ୍ରଣ ହେଲା । କିଂତୁ ନବେ ଦଶକ ଓ ଏକବିଂଶ ଶତାବ୍ଦୀର ଆରମ୍ଭରେ ସେସବୁ କଥା ସରକାରଙ୍କ ସଚିବାଳୟ ଖୁବ୍ ଉଲ୍ଲାସର ସହିତ ଭୁଲିଗଲା । ମୁଖ୍ୟମନ୍ତ୍ରୀ ଓଡ଼ିଆ ଜାଣି ନାହାନ୍ତି -ତେଣୁ ଓଡ଼ିଆରେ ନଥିପତ୍ର ଆଉ କାହିଁକି ଲେଖାହେବ ଏକଥା କର୍ମଚାରୀମାନେ ଯଦି କୁହନ୍ତି ତେବେ ସେମାନଙ୍କ ମୁହଁକୁ କେହି ବନ୍ଦ କରି ପାରିବେକି ? ଉତ୍କଳ ସମ୍ମିଳନୀର ସଂଗଠକମାନଙ୍କର ମଧ୍ୟ ଶକ୍ତିନାହିଁ ଆଉଥରେ ଦପ୍ତର ମାନଙ୍କରେ ଓଡ଼ିଆ ପ୍ରଚଳନ ପାଇଁ ପଦକ୍ଷେପ ନେବେ । ଇଂରାଜୀ ମାଧ୍ୟମ ସ୍କୁଲମାନଙ୍କରେ ଆମ ମେଧାବୀ ଛାତ୍ରଛାତ୍ରୀମାନେ ଓଡ଼ିଆ ଭାଷା ସାହିତ୍ୟକୁ ଅନାବଶ୍ୟକ ମଣିଲେଣି । ଇଂରାଜୀ ପ୍ରତି ଯେତେ ଗୁରୁତ୍ୱ ମାତୃଭାଷାପ୍ରତି ତାର ଚଉଠେ ଗୁରୁତ୍ୱ ମଧ୍ୟ ନାହିଁ । ଇଂରାଜୀ ମାଧ୍ୟମ ଛାତ୍ରଛାତ୍ରୀମାନେ ଯେଉଁ ଓଡ଼ିଆ ଭାଷା ଶିଖୁଛନ୍ତି ବା କହୁଛନ୍ତି ତା'ପାଇଁ କୌଣସି ବ୍ୟାକରଣ ନିୟମ ଲାଗୁ ହୋଇ ପାରିବନି । କ୍ରମେ ଓଡ଼ିଆ ପରି ଏକ ସମୃଦ୍ଧ ସାହିତ୍ୟ ବି ଅବହେଳିତ ହୋଇଯିବ । ପାଠକ ଅଭାବରେ ସାହିତ୍ୟ ସୃଷ୍ଟିର ଉପଯୋଗିତା ରହିବନି । ଉତ୍କଳ ସମ୍ମିଳନୀ କୋଟିକୋଟି ଓଡ଼ିଆଙ୍କ ଏଇ ଦ୍ରୁତ ମାନସିକ ପରିବର୍ତ୍ତନକୁ କେଉଁପରି ଭାଷା ସାହିତ୍ୟ ଆଭିମୁଖୀ କରି ପାରିବେ ତାହାହିଁ ବର୍ତ୍ତମାନ ବଡ଼ ସମସ୍ୟା । ଓଡ଼ିଶାରେ ବର୍ତ୍ତମାନ ଓଡ଼ିଆ ଭାଷାର ସ୍ଥିତି ଯେତେବେଳେ ଟଳମଳ ସେତେବେଳେ ଆଉ ଝାଡ଼ଖଣ୍ଡର ଷଢ଼େଇକଳା ଖରସୁଆଁ ପାଇଁ ଆନ୍ଦୋଳନ କରିବାର ପ୍ରାସଙ୍ଗିକତା ଅଛିକି ? ଅତୀତ ଓଡ଼ିଶାର ଗୌରବଗାନ କରି ଯେଉଁପରି ନେତାମାନେ ଉପସ୍ଥିତ ଶ୍ରୋତାଙ୍କୁ ଉତ୍ତେଜିତ କରିଥା'ନ୍ତି ଏ ସମ୍ମିଳନୀ ସେପରି ଅନ୍ତତଃ ନ କରୁ । ଅତୀତ ଏଣିକି ଆଉ ପ୍ରସଙ୍ଗ ନୁହେଁ । ପ୍ରସଙ୍ଗ ହେଉଛି ବର୍ତ୍ତମାନ ଓ ଭବିଷ୍ୟତ । 'ଉତ୍କଳ ସମ୍ମିଳନୀ'ର ମହାନ୍ ଉଦ୍‌ଗାତା ମହାନାୟକ ମଧୁବାବୁ ଯେଉଁ ଉଦ୍‌ବୋଧନ ସେଦିନ ଦେଇଥିଲେ —

'ନିଜର ଜୀବନ ଜାତିକୁ ଅର୍ପଣ
କଲେ ମିଳେ ଜାତିପ୍ରାଣ
ଜାତୀୟ ଜୀବନ ନ ମିଳିବ କଲେ
ହାଟେ ବାଟେ ଅନ୍ୱେଷଣ ।''

ତାହାର ପ୍ରାସଙ୍ଗିକ ତା ଆଜିବି ଅଛି । ମିଳନମଂଚ ଜାତିର ଅବଚେତନକୁ ଆହ୍ୱାନ ଦେବାପାଇଁ ସାହିତ୍ୟରେ କିଛି ଚିରାୟତ ମୂଲ୍ୟବୋଧ ସୃଷ୍ଟି କରି ନପାରିଲେ ଏ ଭାଷା ସାହିତ୍ୟ କ୍ରମେ ବର୍ଣ୍ଣଶଙ୍କର ହୋଇଯିବ । ନିମ୍ନ ମାଧ୍ୟମିକ ଶିକ୍ଷା ଠାରୁ ସ୍ନାତକୋତ୍ତର ଶିକ୍ଷା ପର୍ଯ୍ୟନ୍ତ ଓଡ଼ିଆ ଭାଷା ତାର ଓଜ ଓ ବୀର୍ଯ୍ୟରେ ଛାତ୍ରର ମନ ଓ ଆତ୍ମାକୁ କିପରି ଛୁଇଁ ପାରିବ ତାର ଆୟୋଜନ 'ସମ୍ମିଳନୀ' କରି ପାରିବକି ? ଆଉ ଥରେ ବୋଧହୁଏ ନିକଟ ଭବିଷ୍ୟତରେ ଓଡ଼ିଆ ଭାଷା ବିଲୋପ ବିରୁଦ୍ଧରେ ଆନ୍ଦୋଳନ ମୁଣ୍ଡ ଟେକିବ । ସମ୍ମିଳନୀ ତାର ନେତୃତ୍ୱ ନେଲେ ତାହାହିଁ ହେବ ତା'ର ପ୍ରାସଙ୍ଗିକତା ।

# ପୂର୍ବତନ ପ୍ରଫେସର, ସତ୍ୟବାଦୀ ଚେୟାର, ଉତ୍କଳ ବିଶ୍ୱବିଦ୍ୟାଳୟ

# ଉତ୍କଳ ସମ୍ମିଳନୀ ପାଇଁ ଆହ୍ୱାନ ଆଞ୍ଚଳିକ ଭାରସାମ୍ୟ ରକ୍ଷା କରିବା

**ଡଃ ପ୍ରହ୍ଲାଦ ଚରଣ ମହାନ୍ତି**

ଓଡ଼ିଆ ପାଇକମାନଙ୍କ ଦ୍ୱାରା ଏକାଧିକବାର ପରାଭବ ଲାଭକରି ଇଂରେଜମାନେ ପ୍ରତିହିଂସା ପରାୟଣ ତଥା ପ୍ରତିଶୋଧ ପରାୟଣ ହୋଇ ଓଡ଼ିଆ ଜାତିର ଯେଉଁ କ୍ଷତି କରି ଯାଇଛନ୍ତି, ଏହା ମଧ୍ୟରେ ୨୦୦ ବର୍ଷ ଅତିକ୍ରମ କରିଯାଇଥିଲେ ମଧ୍ୟ ତାହାର ଭରଣା ଏପର୍ଯ୍ୟନ୍ତ କରାଯାଇ ପାରିନାହିଁ । ଓଡ଼ିଆ ଜାତିର ମେରୁଦଣ୍ଡ ଭାଙ୍ଗିଦେବା ପାଇଁ ଇଂରେଜମାନେ ପ୍ରଥମେ ତାହାର ଆଞ୍ଚଳିକ ଅଖଣ୍ଡତା ଉପରେ ପ୍ରବଳ ଆଘାତ କରିଥିଲେ । ସେମାନେ ଉତ୍ତରରେ ମେଦିନୀପୁର, ବୀରଭୂମ ପ୍ରଭୃତି ଓଡ଼ିଆ ଅଞ୍ଚଳ ବଂଗ-ବିହାର ସହିତ, ପଶ୍ଚିମରେ ସମ୍ବଲପୁର ପ୍ରଭୃତି ଓଡ଼ିଆ ଅଞ୍ଚଳ ହିନ୍ଦୀଭାଷୀ ମଧ୍ୟପ୍ରଦେଶ ସହିତ ଦକ୍ଷିଣରେ ଗଞ୍ଜାମ, ପାରଳାଖେମୁଣ୍ଡି ପ୍ରଭୃତି ଓଡ଼ିଆ ଅଞ୍ଚଳ, ତେଲ୍‌ଗୁ-ତାମିଲଭାଷୀ ମାଡ୍ରାସ ପ୍ରେସିଡେନ୍‌ସି ସହିତ ମିଶାଇଦେଇ ବାଲେଶ୍ୱର-କଟକ-ପୁରୀ ତିନୋଟି ଜିଲ୍ଲା ମଧ୍ୟରେ ଓଡ଼ିଆ ଡିଭିଜନକୁ ସୀମିତ କରି ରଖିଥିଲେ । ମୋଗଲବନ୍ଦୀ ଅଞ୍ଚଳ ରୂପେ ବିବେଚିତ ହେଉଥିବା ବାଲେଶ୍ୱର, କଟକ, ପୁରୀ ଜିଲ୍ଲା ଇଂରେଜମାନଙ୍କ ପ୍ରତ୍ୟକ୍ଷ ଶାସନାଧୀନ ଥିବା ସମୟରେ ଅବଶିଷ୍ଟ ଅଞ୍ଚଳ ଛବିଶଟି ଗଡ଼ଜାତ ରାଜ୍ୟରୂପେ ଇଂରେଜମାନଙ୍କ ଦ୍ୱାରା ସ୍ୱୀକୃତି ଲାଭ କରି ସ୍ଥାୟୀ ବନ୍ଦୋବସ୍ତର ସୁବିଧା ପାଇଥିଲେ ଏବଂ ଶିକ୍ଷା, ସ୍ୱାସ୍ଥ୍ୟ, କୃଷି, ଗମନାଗମନ ପ୍ରଭୃତି କ୍ଷେତ୍ରରେ ନିଜେ ନିଜେ ନୀତି ନିର୍ଦ୍ଧାରଣ କରି ନିଜରାଜ୍ୟକୁ ଶାସନ କରି ପାରିବେ ବୋଲି ଆପାତ ସ୍ୱାଧୀନତା ପାଇଥିଲେ । ଏଥିରୁ ସ୍ପଷ୍ଟ ପ୍ରମାଣ କରିହେବ ଯେ ଇଂରେଜ ସରକାର ଓଡ଼ିଆ ଜାତିକୁ ଦୁର୍ବଳ କରିବା ଥିଲା ତାହାର ସୁଚିନ୍ତିତ ଶାସନ-ନୀତି । ଭାଷାଗତ ଐକ୍ୟ ପ୍ରତିଷ୍ଠା ହେଲେ ଗୋଟିଏ ଜାତି କିପରି ଶକ୍ତିଶାଳୀ, ସାହସୀ, ଅପ୍ରତିହତ ଓ ପ୍ରଭାବଶାଳୀ ହୋଇପାରେ ତାହା ବୁଝାଇ କହିବା ନିଷ୍ପ୍ରୟୋଜନ । ଏସଂପର୍କରେ ଓଡ଼ିଶା ଇତିହାସରେ ବହୁ ଉଦାହରଣ ରହିଛି ।

ଏହି ପରିପ୍ରେକ୍ଷୀରେ ଉତ୍କଳ ସମ୍ମିଳନୀର ଦ୍ୱାୟିତ୍ୱ ସୁଦୂର ପ୍ରସାରୀ । ଓଡ଼ିଶାରେ ଏବଂ ଓଡ଼ିଶା ବାହାରେ ଥିବା ଓଡ଼ିଆଭାଷାଭାଷୀ ଅଧିବାସୀଙ୍କ ମଧ୍ୟରେ ଓଡ଼ିଆ-ଭାଷାଗତ ସଂହତି ଓ ଏକତା ରକ୍ଷା କରିବା ଏକାନ୍ତ ବାଞ୍ଛନୀୟ । ଓଡ଼ିଶା ମଧ୍ୟରେ ଆଞ୍ଚଳିକ ଭାଷା ବା ଓଡ଼ିଆ ଉପଭାଷାକୁ ଅବଲମ୍ବନ କରି ସ୍ୱତନ୍ତ୍ର ପ୍ରଦେଶ ପାଇଁ ଯେଉଁ ଆନ୍ଦୋଳନ ମୁଣ୍ଡ ଟେକୁଛି, ତାହା ଉଭୟ ମୂଳ ଭୂଖଣ୍ଡ ଓ ବିଚ୍ଛିନ୍ନ ଭୂଖଣ୍ଡକୁ ଦୁର୍ବଳ, ଶକ୍ତିହୀନ କରିଦେବ । ଶକ୍ତିହୀନ, ଦୁର୍ବଳ ରାଜ୍ୟ କେନ୍ଦ୍ର ସରକାର ଦ୍ୱାରା ଅବହେଳିତ ହେବା ସ୍ୱାଭାବିକ । ବରଂ ଓଡ଼ିଶାର ଆଞ୍ଚଳିକ ଭାଷା ଏବଂ ଆଦିବାସୀ ଭାଷା ଓ ସାହିତ୍ୟର ବିକାଶ ପାଇଁ ଓଡ଼ିଆ-ଭାଷାରେ ସେଗୁଡ଼ିକୁ ସମନ୍ୱିତ କରିବା ପାଇଁ ପ୍ରୋତ୍ସାହନ ଦିଆଯିବା ଉଚିତ । କୋଶଳୀ ବା ସମ୍ବଲପୁରୀ ଭାଷାକୁ ନେଇ କୋଶଳ ରାଜ୍ୟ ଗଠନ ପାଇଁ ଯେଉଁ ଦାବି ଉଠୁଛି, ତାହା ଭବିଷ୍ୟତରେ ସେହି କୋଶଳ ରାଜ୍ୟ ପାଇଁ କାଳ ହେବ । କାରଣ ପଶ୍ଚିମ ଓଡ଼ିଶାର ଯେଉଁ ଯେଉଁ ଜିଲ୍ଲା ଓ ଅଞ୍ଚଳକୁ ନେଇ କୋଶଳ ରାଜ୍ୟ ସ୍ଥାପନ ପାଇଁ ଉଦ୍ୟମ ହେଉଛି, ସେଗୁଡ଼ିକର ଅଧିକାଂଶ ଜିଲ୍ଲା ଓ ଅଞ୍ଚଳର ଆଦିବାସୀଙ୍କ ସଂଖ୍ୟା ସମ୍ବଲପୁରୀ ଭାଷାଭାଷୀଙ୍କ ଠାରୁ ଯଥେଷ୍ଟ ଅଧିକ । ଏଣୁ ସେମାନେ ମଧ୍ୟ ଦିନେ ଭାଷାସୂତ୍ରରେ ଗୋଟିଏ ପ୍ରଦେଶ ଦାବି କରିବା କିଛି ବିଚିତ୍ର ନୁହେଁ । ପଶ୍ଚିମ ଓଡ଼ିଶା ଓ ଦକ୍ଷିଣ ଓଡ଼ିଶାର ଆଦିବାସୀ- ପାଇକମାନେ ଖାରବେଳଙ୍କର ବହୁ ପୂର୍ବରୁ ଓ ପରେ ଓଡ଼ିଶା-ସାମରିକ ଶକ୍ତିର ମେରୁଦଣ୍ଡ ଥିଲେ । ଏପରିକି ଅପରିଣାମଦର୍ଶୀ ରାଜ୍ୟଲିପ୍ସୁ ଅଶୋକ କଳିଙ୍ଗର ଏହି ଦୁର୍ଦ୍ଧାନ୍ତ ଓଡ଼ିଆ ପାଇକଙ୍କ ଯୋଗୁଁ କଳିଙ୍ଗକୁ ଜୟ କରିବାକୁ ସମର୍ଥ

ହୋଇ ନଥିଲେ । କେତେକଙ୍କ ମତରେ ସେ ଓଡ଼ିଶାର ରାଷ୍ଟ୍ରଧର୍ମରେ ଦୀକ୍ଷିତ ହେବାକୁ ବାଧ ହୋଇଥିଲେ ଅଥବା କଳିଙ୍ଗ-ଆକ୍ରମଣ ଜନିତ ଅପରାଧର ପ୍ରାୟଶ୍ଚିତ ସ୍ୱରୂପ ରାଷ୍ଟ୍ରଧର୍ମ ଗ୍ରହଣ କରି କଳିଙ୍ଗର ଶରଣାପନ୍ନ ହୋଇଥିଲେ । କଳିଙ୍ଗ-ଉତ୍କଳର ଭାଷାଗତ ଓ ସାଂସ୍କୃତିକ ସଂହତି ଯୋଗୁଁ ସମସ୍ତ ଭାରତରେ ପ୍ରାୟ ଦୁଇ ହଜାର ବର୍ଷବ୍ୟାପୀ ଏକ ଅପରାଜେୟ ରାଷ୍ଟ୍ରରେ ପରିଣତ ହୋଇ ସାହିତ୍ୟ ସଂସ୍କୃତି, କଳା, ସ୍ଥାପତ୍ୟ, ନୃତ୍ୟ, ସଂଗୀତ, ନାଟକ, ଚିକିତ୍ସା, ଜ୍ୟୋତିର୍ବିଜ୍ଞାନ ଆଦି କ୍ଷେତ୍ରରେ ଓଡ଼ିଶା ଅସମ୍ପନ୍ନ ପ୍ରତିଷ୍ଠା ଅର୍ଜନ କରିଥିଲା । ଉତ୍କଳ ସମ୍ମିଳନୀ ଏଥି ପ୍ରତି ଧ୍ୟାନ ଦେଇ ଆଞ୍ଚଳିକ ଓ ଭାଷାଗତ ସଂହତି ପ୍ରତିଷ୍ଠା ପାଇଁ ଉଦ୍ୟମ କରିବା ଉଚିତ ।

ଓଡ଼ିଶାର ଉନ୍ନତିମୂଳକ ଯୋଜନା ପ୍ରସ୍ତୁତ କଲାବେଳେ ଆଞ୍ଚଳିକ ଆବଶ୍ୟକତା ଓ ଭାରସାମ୍ୟ ପ୍ରତି ଦୃଷ୍ଟି ଦିଆଯାଉଛି କି ନାହିଁ ଏବଂ ଉନ୍ନୟନ-ପ୍ରକଳ୍ପଗୁଡ଼ିକ ନିର୍ଦ୍ଧାରିତ ସମୟ ମଧ୍ୟରେ ସଂପୂର୍ଣ୍ଣ ହେଉଛି କି ନାହିଁ ଉତ୍କଳ ସମ୍ମିଳନୀ ସେ ସଂପର୍କରେ ସବିଶେଷ ତଥ୍ୟ ଜନସାଧାରଣଙ୍କ ସମ୍ମୁଖରେ ଉପସ୍ଥାପନ କରିବା ଉଚିତ । ଓଡ଼ିଶାର ଉନ୍ନୟନ କ୍ଷେତ୍ରରେ ଭାରସାମ୍ୟ କିପରି ରକ୍ଷା କରାଯାଇ ପାରୁନାହିଁ ଉତ୍ତର ଓଡ଼ିଶା ତା'ର ଜ୍ୱଳନ୍ତ ଉଦାହରଣ । ଶିକ୍ଷା, ସ୍ୱାସ୍ଥ୍ୟ, କୃଷି, ଜଳସେଚନ, ଗମନାଗମନ - ପଥର ବିକାଶ କ୍ଷେତ୍ରରେ ଉତ୍ତର ଓଡ଼ିଶା କିପରି ଉପେକ୍ଷିତ ଓ ଅବହେଳିତ ତାହାର ବହୁ ଦୃଷ୍ଟାନ୍ତ ରହିଛି । ପ୍ରାୟ ୧୯୬୮ ମସିହାରେ ରାଜ୍ୟସରକାର ପଶ୍ଚିମ ଓଡ଼ିଶା ପାଇଁ ସମ୍ବଲପୁର ଓ ଦକ୍ଷିଣ ଓଡ଼ିଶା ପାଇଁ ବ୍ରହ୍ମପୁରରେ ଗୋଟିଏ ଗୋଟିଏ ବିଶ୍ୱବିଦ୍ୟାଳୟ ସ୍ଥାପନ କଲେ ଅଥଚ ଉତ୍ତର ଓଡ଼ିଶା ପ୍ରତି ଆଦୌ ଧ୍ୟାନ ଦେଲେନାହିଁ । ଫଳରେ ବାଲେଶ୍ୱରରେ ଶିକ୍ଷା ପରିଷଦ ଓ ବିଶ୍ୱବିଦ୍ୟାଳୟ କ୍ରିୟାନୁଷ୍ଠାନ କମିଟି ସ୍ଥାପନ କରାଯାଇ ଆନ୍ଦୋଳନ କରାଗଲା, ଶେଷରେ ଶିକ୍ଷା ପରିଷଦ ଦ୍ୱାରା ପ୍ରଦତ୍ତ ଜମି ଓ ଚାରି ମହଲା କୋଠାରେ, ରାଜ୍ୟସରକାର ଆନ୍ଦୋଳନର ପ୍ରାୟ ଦୀର୍ଘ ତିରିଷ ବର୍ଷପରେ ବାଲେଶ୍ୱରଠାରେ ଫକୀରମୋହନ ବିଶ୍ୱବିଦ୍ୟାଳୟ ସ୍ଥାପନ କଲେ । ଯେଉଁ ଅଞ୍ଚଳ ତୀବ୍ର ଆନ୍ଦୋଳନ ସୃଷ୍ଟି କରିପାରେ ଅଥବା ଜଣେ ପ୍ରତିପତ୍ତିଶାଳୀ ରାଜନେତା ଜନ୍ମ ଦେଇପାରେ ସେହି ଅଞ୍ଚଳର ଦାବିପ୍ରତି ଓଡ଼ିଶା ସରକାର ଧ୍ୟାନ ଦେଉଥିବାର ବହୁ ଦୃଷ୍ଟାନ୍ତ ଓଡ଼ିଶା ଇତିହାସରେ ରହିଛି । ଉଚ୍ଚ ଶିକ୍ଷା କ୍ଷେତ୍ରରେ ବିଶେଷତଃ ବିଶ୍ୱିଦ୍ୟାଳୟ ପ୍ରତିଷ୍ଠା କ୍ଷେତ୍ରରେ ରାଜ୍ୟ ସରକାରଙ୍କ ପାତରଅନ୍ତର ଜନିତ ଆଞ୍ଚଳିକ ବୈଷମ୍ୟର ସଦ୍ୟତମ ଦୃଷ୍ଟାନ୍ତ ହେଉଛି, ବାଲେଶ୍ୱରର ଫକୀରମୋହନ ବିଶ୍ୱବିଦ୍ୟାଳୟ । ଉତ୍କଳସମ୍ମିଳନୀ ଯଦି ସେତେବେଳେ ଉତ୍ତର ଓଡ଼ିଶା ପ୍ରତି ରାଜ୍ୟ ସରକାରଙ୍କ ଏ ଅନ୍ୟାୟ ନିଷ୍ପତ୍ତି ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଥାନ୍ତେ ଅବିଭକ୍ତ ବାଲେଶ୍ୱର ଜିଲ୍ଲାର ଲୋକଙ୍କୁ ଆନ୍ଦୋଳନ କରିବାକୁ ପଡ଼ି ନ ଥାନ୍ତା ଅଥବା ସର୍ବ ପ୍ରକାର ସୁବିଧା, ସୁଯୋଗ ଭିତ୍ତିଭୂମି, ଆବଶ୍ୟକତା ଥିଲେ ମଧ୍ୟ ଗୋଟିଏ ବିଶ୍ୱବିଦ୍ୟାଳୟ ପାଇବା ପାଇଁ ତିରିଶ ବର୍ଷ ଅପେକ୍ଷା କରିବାକୁ ପଡ଼ିନଥାନ୍ତା । ଓଡ଼ିଶାରେ ଉଚ୍ଚଶିକ୍ଷାର ବିସ୍ତାର ଓ ବିକେନ୍ଦ୍ରୀକରଣ ପାଇଁ ପ୍ରାୟ ୧୫୦ ବର୍ଷ ପୂର୍ବେ ଇଂରେଜ ସରକାର ପରାଧୀନ ଓଡ଼ିଶାରେ ଯେଉଁ ଦୂରଦୃଷ୍ଟି ପ୍ରୟୋଗ କରି ଉତ୍ତର ଓଡ଼ିଶା, ପଶ୍ଚିମ ଓଡ଼ିଶା ଓ ଦକ୍ଷଣ ଓଡିଶାରେ ଜିଲ୍ଲାସ୍କୁଲ ସ୍ଥାପନ କରିଥିଲେ ଏବଂ କେନ୍ଦ୍ରୀୟ ଓଡ଼ିଶା (ବ୍ରିଟିଶ ଓଡ଼ିଶାର ରାଜଧାନୀ କଟକରେ ଜିଲ୍ଲାସ୍କୁଲ ସ୍ଥାପିତ ହୋଇ ସାରିଥିଲା) ସହିତ ଶିକ୍ଷାଗତ ଭାରସାମ୍ୟ ରକ୍ଷା କରିବା ପାଇଁ ଏତାଦୃଶ ପଦକ୍ଷେପ ନେଇ ପ୍ରଶାସନିକ ନିରପେକ୍ଷତାର ଦୃଷ୍ଟାନ୍ତ ସୃଷ୍ଟି କରିଥିଲେ । ଦୁର୍ଭାଗ୍ୟର ବିଷୟ ଯେ ଆଜି ଭାରତୀୟ ଗଣତାନ୍ତ୍ରିକ ସ୍ୱାଧୀନ ଓଡ଼ିଶାରେ ଏପରି ନିରପେକ୍ଷତା ବିଡ଼ମ୍ବନାରେ ପରିଣତ ହୋଇଛି ।

ରୁପ୍‌ସା - ବାଙ୍ଗିରିପୋଷି ରେଳପଥ ଏପର୍ଯ୍ୟନ୍ତ ଓସାରିଆ ନହେବ । ଏବଂ ଟାଟା ସହିତ ଯୋଗ ନ ହେବା, ଉତ୍ତର ଓଡ଼ିଶା ପ୍ରତି ଅବହେଳାର ଅନ୍ୟ ଏକ ଦୃଷ୍ଟାନ୍ତ । ଏହି ଲେଖକ ଅନ୍ୟାନ୍ୟ ପ୍ରବନ୍ଧରେ ଉଲ୍ଲେଖ କରି ଦର୍ଶାଇଛି ଯେ ଭାରତରେ ଓଡ଼ିଶା ଯେପରି ଅବହେଳିତ ଓଡ଼ିଶାରେ ଉତ୍ତର ଓଡ଼ିଶା ବିଶେଷତଃ

ବାଲେଶ୍ୱର ସେହିପରି ଅବହେଳିତ, ଭାରତର ବ୍ରିଟିଶ ଭାଇସ୍‌ରୟ ଲର୍ଡ କର୍ଜନ ଓଡ଼ିଆଙ୍କ ସଂପର୍କରେ ବ୍ରିଟିଶ ସରକାରଙ୍କୁ ଯାହା ଲେଖିଥିଲେ ତାହା ଅକ୍ଷରେ ଅକ୍ଷରେ ସତ୍ୟ । ଓଡ଼ିଆ ଜାତି, ଆନ୍ଦୋଳନ-ପ୍ରବଣ ଜାତି ହୋଇଥିଲେ ସେମାନେ କେବେଠାରୁ ଗୋଟିଏ ସ୍ୱତନ୍ତ୍ର ପ୍ରଦେଶ ପାଇ ସାରିଥାନ୍ତେ ବୋଲି ଲର୍ଡ଼ କର୍ଜନ ବ୍ରିଟିଶ ସରକାରଙ୍କୁ ମୃଦୁ ଚେତାବନୀ ଦେଇଥିଲେ । ସବୁଠାରୁ ଆଶ୍ଚର୍ଯ୍ୟର କଥା ଯେ ଆମର ଗଣତାନ୍ତ୍ରିକ ଜାତୀୟ ସରକାର ନିରପେକ୍ଷ ନିଷ୍ପତ୍ତିକୁ ବଳିଦେଇ ଆନ୍ଦୋଳନାତ୍ମକ ପନ୍ଥାକୁ ପ୍ରୋତ୍ସାହନ ଦେଉଛନ୍ତି । କୃତ୍ରିମ ଉପାୟରେ ସୁସଜ୍ଜିତ ଦୀଘା ବେଳାଭୂମିକୁ ରେଳପଥ ପଡ଼ି ପାରିଲା, ଅଥଚ 'ଅନିର୍ବଚନୀୟ ପ୍ରାକୃତିକ ସୌନ୍ଦର୍ଯ୍ୟରେ ବିମଣ୍ଡିତ ଚନ୍ଦନେଶ୍ୱର ତାଳସାରି, ଭୁଷଣ୍ଡେଶ୍ୱର, ଚାନ୍ଦିପୁର, ଆଖଣ୍ଡଳମଣି, ଧାମରା, ଶିମଳିପାଳ, ଖିଚିଙ୍ଗ, ତାରିଣୀ-ଘଟଗାଁ, ସାନ-ବଡ଼-ଘାଘରା ପ୍ରଭୃତି ସ୍ଥାନଗୁଡ଼ିକ ରେଳପଥଦ୍ୱାରା ସଂଯୁକ୍ତ ହୋଇନାହିଁ । ଉତ୍ତର ଓଡ଼ିଶାର କୃଷିର ବିକାଶ ପାଇଁ ଦୁଇଟି ବୃହତ୍ ଜଳସେଚନ ପ୍ରକଳ୍ପ ସୁବର୍ଣ୍ଣରେଖା ଓ ସାଳିନ୍ଦୀ ଜଳପ୍ରକଳ୍ପର କାର୍ଯ୍ୟ ବର୍ଷ ବର୍ଷ ଧରି କଚ୍ଛପ ଗତିରେ ଚାଲିଛି । ଆଞ୍ଚଳିକ ବିକାଶ ନାମରେ ଗୋଟିଏ ଅଞ୍ଚଳର ଲୋକଙ୍କୁ କିପରି ଭୁଆଁ ବୁଲାଯାଏ ବା ପ୍ରତାରଣା କରାଯାଏ ଏ ଦୁଇଟି ପ୍ରକଳ୍ପ ହେଉଛି ତାର ନମୁନା ।

ଶୁଣାଯାଏ ବ୍ରିଟିଶ ସରକାର ଚାନ୍ଦିପୁରର ନିରାପତ୍ତା ପାଇଁ ରାସଗୋବିନ୍ଦପୁର ଠାରେ ଗୋଟିଏ ବିମାନ ବନ୍ଦର ନିର୍ମାଣ କରିଥିଲେ । ଚାନ୍ଦିପୁରରେ ପୁରାତନ ଗୋଳାବାରୁଦ ପରୀକ୍ଷଣ କେନ୍ଦ୍ର ବ୍ୟତୀତ ଆଇ.ଟି.ଆର୍, ଏନ୍.ଟି,ଆର, ଇସ୍ରୋ ପରି ସର୍ବାଧୁନିକ କ୍ଷେପଣାସ୍ତ୍ର ପରୀକ୍ଷଣ କେନ୍ଦ୍ର ସ୍ଥାପିତ ହୋଇଥିଲେ ମଧ୍ୟ ଉକ୍ତ ବିମାନ ବନ୍ଦରର ଉନ୍ନତିବିଧାନ କରାଯାଉନାହିଁ କିମ୍ବା ଉତ୍ତର ଓଡ଼ିଶାକୁ ଭାରତର ବିମାନ-ବନ୍ଦର ସହିତ ସଂଯୋଗ କରାଯାଉ ନାହିଁ ।

ଉତ୍କଳ-ସମ୍ମିଳନୀ ପକ୍ଷରେ ଏହା ଏକ ଆହ୍ୱାନ ଯେ ଓଡ଼ିଆ ଜାତି ଏବଂ ଓଡ଼ିଶାର ବିଭିନ୍ନ ଅଞ୍ଚଳ ମଧ୍ୟରେ ସଂହତି ସ୍ଥାପନ କରିବା । ସର୍ବଦା ସଜାଗ ପ୍ରହରୀ ପରି କାର୍ଯ୍ୟ କରି ଦଳ, ମତ, ଆଞ୍ଚଳିକତାର ଉର୍ଦ୍ଧ୍ୱରେ ରହି ଓଡ଼ିଶା ସରକାରଙ୍କୁ ସତର୍କ କରାଇ ଦେଲେ ଓଡ଼ିଶାର ସର୍ବାଙ୍ଗୀନ ଉନ୍ନତି ତ୍ୱରାନ୍ୱିତ ହୋଇ ପାରିବ । ବାଲେଶ୍ୱର ଜିଲ୍ଲା ପକ୍ଷରେ ଏହି ସୌଭାଗ୍ୟର ବିଷୟ ଯେ ପ୍ରାୟ ଆଠ ଦଶନ୍ଧି ପରେ ଉତ୍କଳ ସମ୍ମିଳନୀର ପୂର୍ଣ୍ଣାଙ୍ଗ ଅଧିବେଶନ ଚନ୍ଦନେଶ୍ୱର ଠାରେ ଅନୁଷ୍ଠିତ ହେଉଛି । ଓଡ଼ିଶାର ମୁଖ୍ୟମନ୍ତ୍ରୀ ଏହାକୁ ଉଦ୍‌ଘାଟନ କରିବା ପାଇଁ ସ୍ୱୀକୃତି ଜଣାଇଛନ୍ତି । ଉତ୍ତର ଓଡ଼ିଶା କିପରି ଦୀର୍ଘ ବର୍ଷ ଧରି ଆଞ୍ଚଳିକ ବୈଷମ୍ୟର ଶିକାର ହୋଇଛି, ଓଡ଼ିଶାର ବିଭିନ୍ନ ପ୍ରାନ୍ତରୁ ଆସୁଥିବା ପ୍ରତିନିଧିମାନେ ସେ ସମ୍ପର୍କରେ ପ୍ରତ୍ୟକ୍ଷ ଜ୍ଞାନ ଅର୍ଜନ କରି ପାରିବେ ଓ ତାହାର ପ୍ରତିକାର ବିଷୟରେ ସୁଚିନ୍ତିତ ପରାମର୍ଶ ଦେଇ ପାରିବେ ।

# ଅବସରପ୍ରାପ୍ତ ପ୍ରାଧାପକ, ଗୋପାଳଗାଁ, ବାଲେଶ୍ୱର ।

# ସ୍ୱତନ୍ତ୍ର ଉତ୍କଳ ଗଠନରେ ଓଡ଼ିଆ ଭାଗବତର ଅମୃତଯୋଗ

## ଡକ୍ଟର ସନାତନ ନାୟକ

'ହରି ଚରିତ ଭାଗବତ-ଅମୃତ ରସମୟ ଗୀତ ।'

ଏହି 'ଅମୃତ ରସମୟ ଗୀତ'-ଭାଗବତହିଁ ଉତ୍କଳବାସୀଙ୍କର ଜୀବନସାଥୀ । ଗତିମୁକ୍ତି ଦାତା । ସକାଳରୁ ସଞ୍ଜଯାଏ ଯେତେବେଳେ ଚାହିଁବ, ସେତେବେଳେ ବସି ଓଡ଼ିଆ ଭାଗବତ ଗାଇ ପାରିବ । ଏହା ଓଡ଼ିଶାବାସୀଙ୍କର ଧର୍ମ, ଦର୍ଶନ ଓ ଜୀବନଚିନ୍ତା ସହ ଓତଃପ୍ରୋତ ଭାବେ ଜଡ଼ିତ । ସେଇଥିପାଇଁ ସମଗ୍ର ପୃଥିବୀରେ ଓଡ଼ିଆମାନେହିଁ କେବଳ ଭାଗବତ ମହାପୁରାଣକୁ ଖଟୁଲୀରେ ରଖି ଫୁଲଚନ୍ଦନରେ ପୂଜା କରନ୍ତି । ସାହିତ୍ୟ-ଜୀବନର ବେଦ । ଏହି ଭାଗବତ ସାହିତ୍ୟ ସହିତ ନାନାପୁରାଣ ଶାସ୍ତ୍ର ଭାଗବତ ଗାଦିରେ ରହି ପୂଜାପାଏ ସମଗ୍ର ଉତ୍କଳରେ । ସେହି ଓଡ଼ିଆ ଭାଗବତହିଁ ସାରା ଉତ୍କଳକୁ ଭାବଜଗତରେ ଗୋଟିଏ ସୂତ୍ରରେ ଆବଦ୍ଧକରି ରଖିଆସିଛି ।

ଓଡ଼ିଆ ଭାଗବତର ରଚନାକାଳ ଷୋଡ଼ଶ ଶତାବ୍ଦୀ । ଅତିବଡ଼ ଜଗନ୍ନାଥ ଦାସ ଶ୍ରୀମନ୍ଦିରର ବଟଗଣେଶ ମୂଳେ ବସି ଏହା ରଚନା କରିଥିଲେ । ସେତେବେଳେ ଉତ୍କଳର ରାଜା ଥିଲେ ଗଜପତି ପ୍ରତାପରୁଦ୍ର ଦେବ । ଅବଶ୍ୟ ସେତେବେଳକୁ କପିଳେନ୍ଦ୍ର ଦେବଙ୍କ ପ୍ରତିଷ୍ଠିତ ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ବିସ୍ତୃତ ଉତ୍କଳର କଳେବର ଖଣ୍ଡିତ ହୋଇ ଯାଇଥିଲା । 'ଗଙ୍ଗା ଧୋଇଲା ଚିକୁର ଯାହାର କୃଷ୍ଣା ଚରଣ ତଳ-ମଡ଼ାଦେଶ ଆଜି ଶମଶାନ ଆଜି ଏହି ସେହି ଉତ୍କଳ'ର ନିନ୍ଦିତ ଗଜପତି ଥିଲେ ପ୍ରତାପରୁଦ୍ର । ତାଙ୍କ ସମୟରେ ଉତ୍କଳର ଦକ୍ଷିଣରୁ କୃଷ୍ଣ ଦେବରାୟ ଓ ଉତ୍ତରରୁ ମୁସଲମାନ ଶାସକ ଆକ୍ରମଣ କରି ଉତ୍କଳକୁ ସଂକୁଚିତ ଓ ଅସହାୟ କରି ଦେଇଥିଲେ । ଦୁର୍ଭାଗ୍ୟକୁ ସେତେବେଳେ ସୈନ୍ୟ ସେନାପତିମାନେ ରାଜାଙ୍କ ଛତ୍ରଛାୟା ତଳେ ବିଳାସବ୍ୟସନରେ ଦିନ କାଟୁଥିଲେ ଓ କେତେକ ରାଜ୍ୟକୁ ନିଜର ଅଧୀନକୁ ନେଇ ଶାସନ କରିବାକୁ ଷଡ଼ଯନ୍ତ୍ର କରୁଥିଲେ । ତା' ସାଙ୍ଗକୁ ଚୈତନ୍ୟ ପ୍ରଚାରିତ ଗୌଡ଼ୀୟବୈଷ୍ଣବ ଧର୍ମ ଉତ୍କଳୀୟମାନଙ୍କୁ ଯୁଦ୍ଧବିମୁଖ କରାଇ ନେଇଥିଲା । ଏହିପରି ଏକ ଅସହାୟ ମୁହୂର୍ତ୍ତରେ ପଞ୍ଚସଖା କବିମାନଙ୍କ ଗହଣରେ ଥାଇ ଅତିବଡ଼ ଜଗନ୍ନାଥ ଦାସ ଭାଗବତ ରଚନା କିରଥିଲେ । ଜଗନ୍ନାଥ ଦାସ ଥିଲେ ଗଜପତି ରାଜାଙ୍କ ପୁରାଣ ପଣ୍ଡା ଭଗବାନ ଦାସଙ୍କ ପୁଅ । ପିତାଙ୍କ ଅନ୍ତେ ସେ ମଧ୍ୟ ପୁରାଣ ପଣ୍ଡା ହୋଇ ଓଡ଼ିଆ ଜାତିର କର୍ଣ୍ଣଧାର ହେଲେ ।

ଓଡ଼ିଆ ଜାତିକୁ ଆବଦ୍ଧକରି ରଖିବାର ପ୍ରଥମ କାରଣ ହେଲେ ଶ୍ରୀକ୍ଷେତ୍ରର ପ୍ରଭୁ ଜଗନ୍ନାଥ । ଉତ୍କଳମଣି ଗୋପବନ୍ଧୁଙ୍କ ଭାଷାରେ 'ଉତ୍କଳର ନେତା ନିଜେ ନାରାୟଣ ।' ଏହି ଶ୍ରକ୍ଷେତ୍ରବାସୀ ନାରାୟଣଙ୍କ ଦର୍ଶନପାଇଁ ସମଗ୍ର ପୃଥିବୀରୁ ଲୋକ ଆସିଥାଆନ୍ତି । ବିଶେଷତଃ ଉତ୍ତର ଭାରତରୁ ବହୁ ସନ୍ଥକବି ଓ ଦକ୍ଷିଣ ଭାରତରୁ କେତେକ ଦାର୍ଶନିକ ଶ୍ରୀକ୍ଷେତ୍ରକୁ ଆସି ସାହିତ୍ୟ ଓ ଦର୍ଶନର ପ୍ରଚାର କରିଥିଲେ  ତେଣୁ ଉତ୍ତର ଭାରତର ସାହିତ୍ୟିକ ଭାବଧାରା ଓ ଦକ୍ଷିଣ ଭାରତର ଦାର୍ଶନିକ ଭାବଧାରାର -ଶ୍ରୀକ୍ଷେତ୍ରରେ ଥିବା ଧର୍ମୀୟ ଭାବଧାରା ସହ ମିଳନ ଘଟିଥିଲା । ସେଇଥିପାଇଁ ଶ୍ରୀକ୍ଷେତ୍ର-ସାହିତ୍ୟ, ଧର୍ମ ଓ ଦର୍ଶନର ସମନ୍ୱୟପୀଠ ଭାବେ ସ୍ୱୀକୃତି ଲାଭ କରି ଆସିଅଛି । ମହିମାମୟ ଶ୍ରୀକ୍ଷେତ୍ର ଓ ମହାପୁରାଣ ଭାଗବତ ଓଡ଼ିଆ ଜାତିର ହେଲା ଗତିମୁକ୍ତି ଦାତା । ବିଶେଷତଃ ସାହିତ୍ୟର ଏହି କ୍ରାନ୍ତିକାରୀ ଭୂମିକାକୁ ସମ୍ମାନ ଜଣାଇ ଶ୍ରୀ ଅଖିଳଚନ୍ଦ୍ର ପାଳିତ ଯଥାର୍ଥରେ କହିଛନ୍ତି -''କୌଣସି ଜାତିକୁ ବୁଝିବାକୁ ହେଲେ, ତାହାର ପ୍ରାଣର ଆଶା ଓ ଆକାଂକ୍ଷାର

ବିଷୟ ବୁଝିବାକୁ ହୁଏ । ସାହିତ୍ୟାଲୋଚନାଭିନ୍ନ କୌଣସି ଜାତିର ପ୍ରକୃତିକୁ ଚିହ୍ନିବାର ଉପାୟ ନାହିଁ । ଆମ୍ଭମାନଙ୍କର ଶିକ୍ଷା ଓ ସଭ୍ୟତା ଏତାଦୃଶ କୃତ୍ରିମ ଓ ଅନ୍ତଃସାର ଶୂନ୍ୟ ଯେ, ଆମ୍ଭେମାନେ କଥାଟି ବୁଝି ପାରୁନାହୁଁ ।' (ରାଧାନାଥ ଜୀବନୀ -ଲେଖକ-ଶ୍ରୀ ଦୁର୍ଗାଚରଣ ରାୟ-ପୃଷ୍ଠା ୫୮୪) ।

ଇତିହାସରୁ ଜଣାଯାଏ -ଭାଗବତ ଓଡ଼ିଶାରେ ଶିକ୍ଷା ବିସ୍ତାରରେ ସାହାଯ୍ୟ କରି ଆସିଥିଲା । ପିତାମାତାଙ୍କ ମୃତ୍ୟୁଶଯ୍ୟା ନିକଟରେ ଦି'ପଦ ଭାଗବତ ଗାଇବା ପାଇଁ ଲୋକେ ସେତେବେଳେ ସାକ୍ଷର ହେଉଥିଲେ । ବିଶେଷ କରି ଏହି ଧର୍ମବିଶ୍ୱାସହିଁ ଗଣଚେତନାରେ ମିଶି ଯାଇଥିବାରୁ ଲୋକେ ପାଠପଢ଼ାକୁ ଆଗ୍ରହ କରୁଥିଲେ । ଏଣୁ ଓଡ଼ିଆ ଭାଷାର ଉନ୍ନତି ହେବା ସଂଗେସଂଗେ ଓଡ଼ିଶାର ଜାତୀୟ ସଂହତି ରକ୍ଷା କରିବାରେ ଭାଗବତ ସହାୟକ ହୋଇଥିଲା ।

ଖ୍ରୀ.୧୮୦୩ରେ ଇଂରେଜମାନେ ଓଡ଼ିଶା ଅକ୍ରମଣ କରି ସେମାନଙ୍କ ଶାସନାଧୀନ କରିଥିଲେ । ଶାସନଗତ ସୁବିଧାକୁ ଦୃଷ୍ଟିରେ ରଖି ସେମାନେ ଓଡ଼ିଶାର ବହୁ ଅଂଚଳ ପଶ୍ଚିମବଙ୍ଗ, ମଧ୍ୟପ୍ରଦେଶ ଓ ମାଡ୍ରାସ ସଂଗେ ମିଶାଇ ଦେଇଥିଲେ . ସେଥିପାଇଁ ଅନ୍ୟ ପ୍ରଦେଶରେ ଶିକ୍ଷାର ଅଗ୍ରଗତି ହେଲାବେଳେ ଓଡ଼ିଶା ଶିକ୍ଷାକ୍ଷେତ୍ରରେ ପଛରେ ପଡ଼ିଯାଇଥିଲା । ଯେଉଁ କ୍ଷୁଦ୍ର ଅଂଶ ଓଡ଼ିଶା ନାମରେ ରହିଥିଲା ତାହାର ମଧ୍ୟ କୌଣସି ଉନ୍ନତି ପ୍ରତି ବିଦେଶୀ ଶାସକ ତଥା ଏ ଦେଶର ନାଗରିକମାନେ ସଚେତନ ନଥିଲେ । ଏହି ଅସହାୟ ଅବସ୍ଥାକୁ ଆଖି ଆଗରେ ରଖି ଓଡ଼ିଶାର ବୁଦ୍ଧିଜୀବୀମାନେ ସେତେବେଳେ ଓଡ଼ିଶାକୁ ସ୍ୱତନ୍ତ୍ର ପ୍ରଦେଶ କରିବାର ସୁଚିନ୍ତିତ ଯୋଜନା କଲେ । ସେହି ଯୋଜନାକୁ ରୂପଦେବା ଲାଗି ନବଜାଗରଣ ଓ ଜନଚେତନାର ଅବଶ୍ୟକତା ଉପଲବ୍ଧ ହେଲା । ଏହି ଆବଶ୍ୟକତାକୁ ପୂରଣ କରିବାରେ ପ୍ରବଳ ସହାୟକ ହୋଇଥିଲା ସେତେବେଳେ ପ୍ରକାଶିତ ହେଉଥିବା ସମ୍ବାଦ ପତ୍ର ସମୂହ ।

ସେହି ସମୟରେ ଉତ୍କଳର ସୁଯୋଗ୍ୟ ସମ୍ପାଦକମାନେ କେତେକ ସମ୍ବାଦପତ୍ର ପ୍ରକାଶ କରୁଥିଲେ ଯାହାକି ଓଡ଼ିଶାରେ ଜନସଚେତନତା ସୃଷ୍ଟି କରିଥିଲା ଓ ଓଡ଼ିଆ ଭାଷାକୁ ସୁରକ୍ଷା ପ୍ରଦାନ କରିଥିଲା । ଫକୀରମୋହନ ସେନାପତିଙ୍କ ସମ୍ପାଦିତ 'ସମ୍ବାଦ ବାହିକା', ଗୌରୀଶଂକର ରାୟଙ୍କ ସମ୍ପାଦିତ 'ଉତ୍କଳ ଦୀପିକା' ଓ ନିଳମଣି ବିଦ୍ୟାରତ୍ନଙ୍କ ସମ୍ପାଦିତ 'ସମ୍ବଲପୁର ହିତୈଷିଣୀ' ଯଥାକ୍ରମେ ବାଲେଶ୍ୱର, କଟକ ଓ ସମ୍ବଲପୁରରୁ ପ୍ରକାଶିତ ହୋଇ ଓଡ଼ିଶାର ବିଭିନ୍ନ ସମସ୍ୟାକୁ ଲୋକଲୋଚନକୁ ଆଣିବା ସଂଗେସଂଗେ ଓଡ଼ିଆମାନଙ୍କ ମନରେ ନବଜାଗରଣ ସୃଷ୍ଟି କରିଥିଲା । ପୁଣି ଉନବିଂଶ ଶତାବ୍ଦୀର ଶେଷପର୍ବରେ ଉତ୍କଳମଣି ଗୋପବନ୍ଧୁ ଦାସଙ୍କ ସମ୍ପାଦିତ 'ସତ୍ୟବାଦୀ', ଶଶିଭୂଷଣ ରଥଙ୍କ ଦ୍ୱାରା ସମ୍ପାଦିତ 'ଆଶା' ଓ ହରେକୃଷ୍ଣ ମହାତାବଙ୍କ ଦ୍ୱାରା ସମ୍ପାଦିତ 'ପ୍ରଜାତନ୍ତ୍ର' ଓଡ଼ିଶାର ବିଭିନ୍ନ ସସମ୍ୟାକୁ ରୂପରେଖ ଦେଇ ଓଡ଼ିଶାର ଉନ୍ନତି ସାଧନ କରିବାର ପଥ ପରିଷ୍କାର କରିଥିଲେ । ଏହି ସମୟରେ ପ୍ରଜାତନ୍ତ୍ର ସବୁଠାରୁ ଅଧିକ ସମ୍ମାନ ପାଇଥିଲା ତାହାର ସାପ୍ତହିକୀ, ସାହିତ୍ୟିକ ଓ ଶିଶୁ ପତ୍ରିକାର ପ୍ରକାଶନ ପାଇଁ । ଏହିସବୁ ପତ୍ରିକା ସ୍ୱତନ୍ତ୍ର ଉତ୍କଳ ଗଠନ ସ୍ୱପ୍ନକୁ ସୁଗମ କରାଇଥିଲା । ପୁଣି ଏହି ସମୟରେ ଓଡ଼ିଶାର ସ୍କୁଲ ସମୂହରୁ ଓଡ଼ିଆ ଭାଷାକୁ ଉଠାଇ ଦେବାକୁ କେତେକ ଉଚ୍ଚଶିକ୍ଷିତ ବଂଗାଳୀଙ୍କ ଚକ୍ରାନ୍ତକୁ କେତେକ ଉଚ୍ଚମନା ଓଡ଼ିଆ, ବଂଗାଳୀ ଓ ଇଂରେଜମାନଙ୍କ ବିରୋଧ ଓ ଓଡ଼ିଆ ଭାଷାର ସୁରକ୍ଷା-ଇତିହାସ ବଡ଼ ଚମତ୍କାରପ୍ରଦ । ଓଡ଼ିଆ ଭାଷାର ସୁରକ୍ଷାପାଇଁ ସବୁଠାରୁ ବଡ଼ ଅବଦାନ ଥିଲା ଓଡ଼ିଶାର କମିଶନର ରେଭେନ୍‌ସା ସାହେବ ଓ ବାଲେଶ୍ୱରର କଲେକ୍ଟର ବିମ୍‌ସ ସାହେବଙ୍କର । କବି, ଲେଖକ, ସାମ୍ବାଦିକ ଓ ବିପ୍ଳବୀ ଫକୀରମୋହନ ସେନାପତି ସେତେବେଳେ ଓଡ଼ିଆ ଭାଷାର ସୁରକ୍ଷା ପାଇଁ ସେନାପତି ଭାବରେ ଆଗରେ ଛିଡ଼ାହୋଇ ତାଙ୍କ ସମ୍ବାଦ ବାହିକାର ଯେଉଁ ମସୀଯୁଦ୍ଧ ଚଳାଇ ଥିଲେ-ତାହା ଆଜବି ପାଠକକୁ ବିସ୍ମିତ କରିଦିଏ । ଏଠାରେ କହିଲେ ଅତ୍ୟୁକ୍ତି ହେବନାହିଁ ଯେ-

ଫକୀରମୋହନ ସେନାପତି ଓ ଉତ୍କଳମଣି ଗୋପବନ୍ଧୁ ବିଶେଷଭାବେ ଓଡ଼ିଆ ଭାଗବତର ଅବଗାହୀ ଥିଲେ ଏବଂ ଓଡ଼ିଶା ଭାଷାର ପ୍ରୀତି ଏହି ଓଡ଼ିଆ ଭାଗବତହିଁ ସେମାନଙ୍କୁ ଯୋଗାଇଥିଲା ।

ଖ୍ରୀ. ୧୯୦୨ ବେଳକୁ ନୀଳମଣି ବିଦ୍ୟାରତ୍ନ ଖଲ୍ଲିକୋଟ ରାଜା ହରିହର ମର୍ଦ୍ଦରାଜଙ୍କ ସହାୟତାରେ 'ପ୍ରଜାବନ୍ଧୁ' ପତ୍ରିକାର ସମ୍ପାଦନା କରୁଥିଲେ । ସେତେବେଳେ ବିଦ୍ୟାରତ୍ନ ରାଜାଙ୍କ ଅନୁମତି କ୍ରମେ 'ଉତ୍କଳ ସଭା' ନାମକ ଅନୁଷ୍ଠାନ ଗଠନ କରିଥିଲେ -ଯାହାକି ପରେ 'ମାଡ୍ରାସ ଓଡ଼ିଶା ସମ୍ମିଳନୀ' ନାମରେ ପରିଚିତ ହୋଇଥିଲା । ବ୍ରହ୍ମପୁରରେ ଏହି ସଭା ଅନୁଷ୍ଠିତ କରାଇବା ପାଇଁ ବିଦ୍ୟାରତ୍ନ ମଧୁସୂଦନ ଦାସ ଓ ବିଶ୍ୱାନାଥ କରଙ୍କୁ ନିମନ୍ତ୍ରଣ କରିଥିଲେ । ଏହିଠାରେ ହିଁ 'ଉତ୍କଳ ସମ୍ମିଳନୀ'ର ମୂଳଦୁଆ ପଡ଼ିଥିଲା -ଯାହାଦ୍ୱାରା କି ଭାଷାସୂତ୍ରରେ ସ୍ୱତନ୍ତ୍ର ଉତ୍କଳ ଗଠନର ଆହ୍ୱାନ ଦିଆଯାଇଥିଲା । ଏହା ପୂର୍ବରୁ ଓଡ଼ିଆ ଭାଷାର ସୁରକ୍ଷା ଓ ଉନ୍ନତି ପାଇଁ ସରସ୍ୱତୀ ଫକୀରମୋହନ, ଗୌରୀଶଂକର, ରାମଶଂକର, ରାଧାନାଥ, ମଧୁସୂଦନ, ମହାରାଜା ବୈକୁଣ୍ଠନାଥ ଦେ, ବିଶ୍ୱନାଥ କର, ନୀଳକଣ୍ଠ ଦାସ, ଗୋପୀନାଥ ଦାସ, ପଣ୍ଡିତ କୃଷ୍ଣଚନ୍ଦ୍ର ଆଚାର୍ଯ୍ୟ, ଶ୍ରୀପତି ମିଶ୍ର, ଧରଣୀଧର ମିଶ୍ର, ଚନ୍ଦ୍ରଶେଖର ବେହେରା, ବ୍ରଜସୁନ୍ଦର ଦାସ, ନୀଳମଣି ବିଦ୍ୟାରତ୍ନ, କୃଷ୍ଣଚନ୍ଦ୍ର ଗଜପତି ଓ ମହାରାଜ ବିକ୍ରମଦେବ ପ୍ରଭୃତି ଓଡ଼ିଆ ମାତୃଭାଷାପ୍ରେମୀବୃନ୍ଦ ଅଣ୍ଟା ଭିଡ଼ିଥିଲେ । ଶେଷରେ ଏମାନେ ଏହି ଭାଷାସୂତ୍ରରେ ସ୍ୱତନ୍ତ୍ର ଉତ୍କଳ ଗଠନର ଆହ୍ୱାନ ନେଇ କୃତକାର୍ଯ୍ୟ ହୋଇଥିଲେ ।

ଖ୍ରୀ. ୧୯୩୬ରେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେଲା । ଏହାର ଆୟତନ ରହିଲା -୧୫୫୭୦୭ ସ୍କୋୟାର କିଲୋମିଟର । ଏଥିରେ ବସବାସ କରୁଥିବା ଲୋକସଂଖ୍ୟା ୩.୬ କୋଟି । ଏହାର ୨୦% ଲୋକ ବନବାସୀ ଆଦିବାସୀ । ୮୦% ଲୋକ ଗ୍ରାମାଞ୍ଚଳରେ ବାସ କରନ୍ତି । ସମଗ୍ର ଭାରତବର୍ଷରେ ଏହି ପ୍ରଦେଶ ଆଜି ପଛରେ ପଡ଼ିଯାଇଛି । ଭାଗବତକୁ The National Bible of Orissa ବୋଲି କୁହାଯିବାର ସାର୍ଥକତା ଅଛି । ଏହି ଭାଗବତର ଭାଷା ଓ ଭାବ ଭବିଷ୍ୟତରେ ଆମ ଭାଷାର ସମୃଦ୍ଧି ଘଟାଇଛି ଓ ଆମେ ଏହି ଭାଷାସୂତ୍ରରେ 'ସ୍ୱତନ୍ତ୍ର ଉତ୍କଳ' ପାଇଛୁ । ଷୋଡ଼ଶ ଶତକରେ ସଂସ୍କୃତ, ଊନବିଂଶ ଶତକରେ ହିନ୍ଦୀ ଓ ବଂଗଳା ଯେପରି ଓଡ଼ିଆ ଭାଷାକୁ ଉପରକୁ ଉଠିବାକୁ ଦେଉନଥିଲା -ଆଜି ମଧ୍ୟ ସେହିପରି ଇଂରାଜୀପ୍ରେମୀ ବହୁ ଉଚ୍ଚଶିକ୍ଷିତ ଓଡ଼ିଆ ଭାଷାକୁ ସମୃଦ୍ଧି ଲାଭ କରିବାକୁ ଦେଉନାହାନ୍ତି । ଯୁଗେଯୁଗେ ଓଡ଼ିଆ ଭାଷା ବିଭିନ୍ନ ଭାଷାଦ୍ୱାରା କବଳିତ ହେଉଛି । କାରଣ ଓଡ଼ିଆମାନେ ଏଯାଏଁ ମାତୃଭାଷାକୁ ସମ୍ମାନ ଓ ଶ୍ରଦ୍ଧା ଦେବାକୁ ପ୍ରସ୍ତୁତ ହୋଇ ନାହାନ୍ତି । 'ଉତ୍କଳ ସମ୍ମିଳନୀ' ଭାଗବତର ଏହି ଅମୃତଯୋଗାଯୋଗକୁ ଲକ୍ଷ୍ୟ କରି ଓଡ଼ିଆ ଭାଷାର ଉତ୍ତରୋତ୍ତର ଉନ୍ନତି କରାଇଥିଲେ ସ୍ୱତନ୍ତ୍ର ଉତ୍କଳ ଧନ୍ୟହେବ ।

# ଅବସରପ୍ରାପ୍ତ ଅଧ୍ୟାପକ, ପୋଖରୀପୁର,
ଲୁଙ୍ଗା, ଏଡ଼ତାଳ, ଭଦ୍ରକ

# ୨୦୦୫ ଉତ୍କଳ ସମ୍ମିଳନୀ : ଏକ ଅନୁଚିନ୍ତା

## ଚନ୍ଦ୍ର କୁମାର ମହାନ୍ତି

ଏ ଭିତରେ ଉତ୍କଳ ସମ୍ମିଳନୀର ବୟସ ଶହେ ପୂରି ଦୁଇ ଟପିଲାଣି । ତା୨୫.୧୦.୧୯୦୩ ମସିହାରେ କଟକ କନିକା ରାଜବାଟୀରେ ଉତ୍କଳ ସମ୍ମିଳନୀ ଗଠନ ପୂର୍ବରୁ ତହିଁର ଉଦ୍ଦେଶ୍ୟ ସମ୍ପର୍କରେ ଯେଉଁ ଆଲୋଚନା କରାଯାଇଥିଲା ସେଥିରେ ମୁଖ୍ୟତ ଗୋଟିଏ କଥା କୁହାଯାଇଥିଲା - ''ସମାଜ ମଧରେ ମିତ୍ରତା ବର୍ଦ୍ଧନ କରିବା ପାଇଁ, ଦୃଢ଼ ନିର୍ବନ୍ଧ ସହିତ କୌଣସି ଜାତୀୟ ଅନୁଷ୍ଠାନ କରିବା ଏକାନ୍ତ ଆବଶ୍ୟକ ।'' 'ଉତ୍କଳ ସମ୍ମିଳନୀ'କୁ ପ୍ରଥମରୁ ଏକ ଜାତୀୟ ଅନୁଷ୍ଠାନ ଭାବେ ଗଢ଼ିତୋଳିବାର ଉଦ୍ଦେଶ୍ୟ ରହିଥିଲା । ଏହି ଜାତୀୟ ଅନୁଷ୍ଠାନକୁ ଦେଶର ଉନ୍ନତି କରିବା ପାଇଁ ସମ୍ପୂର୍ଣ୍ଣଭାବେ ସମର୍ପିତ କରିବାର ପ୍ରତିବଦ୍ଧତା ସକାଶେ ୧୯୦୪ ମସିହା ଡିସେମ୍ବର ୨୮ ତାରିଖରେ ସମ୍ମିଳନୀର ଦ୍ୱିତୀୟ ଅଧିବେଶନରେ ଯେଉଁ ପ୍ରସ୍ତାବ ଗ୍ରହଣ କରାଯାଇଥିଲା ସେଥିରେ କୁହାଯାଇ ଥିଲା କି ଦେଶର ଉନ୍ନତି କରିବା ବେଳେ ଦେଶର ଗରିବ ଦୁଃଖୀଙ୍କୁ ଭୁଲନାହିଁ । ସମସ୍ତଙ୍କୁ ସଂଗେ ନେଇ ଦେଶର ଉନ୍ନତି କର । ଏହିଭଳି ଅନେକଗୁଡ଼ିଏ ନିଷ୍ପତ୍ତି ନିଆଯାଇ ଏହି ସମ୍ମିଳନୀକୁ ସକ୍ରିୟ କରିବାର ଉଦ୍ୟମ ଜାରି ରହିବା କଥା କୁହାଯାଉଥିବାବେଳେ କାର୍ଯ୍ୟତ ଦେଖାଗଲା ସେ ସବୁ ପ୍ରସ୍ତାବମାନ ମୋଟେ କାର୍ଯ୍ୟକାରୀ ହେଉନାହିଁ; ଅଥଚ ସମ୍ମିଳନୀ ହେବାରେ ଲାଗିଛି । ଏହାକୁ ଅନୁଭବ କରି ସତର୍କ କରେଇ ଦେବା ସକାଶେ ୧୯୦୬ମସିହା ବାଲେଶ୍ୱରରେ ଅନୁଷ୍ଠିତ ହୋଇଥିବା ଉତ୍କଳ ସମ୍ମିଳନୀରେ ମଧୁବାବୁ ଅତି କଠୋର ଭାଷାରେ କହିଥିଲେ କି -''ଏ ପର୍ଯ୍ୟନ୍ତ କୌଣସି କାର୍ଯ୍ୟ କରିବାକୁ କ୍ଷମ ହୋଇନାହଁ । ବର୍ତ୍ତମାନ ତା'ର ଶୈଶବାବସ୍ଥା । ଏ ଅବସ୍ଥାରେ ବିଶେଷ କାର୍ଯ୍ୟ ଯଦିଚ ଆଶା କରାଯାଏ ନାହିଁ ତଥାଚ ତାମସା ଦେଖିବା ବ୍ୟତୀତ ଉତ୍କଳୀୟମାନଙ୍କର ସମ୍ମିଳନୀର ଉଦ୍ଦେଶ୍ୟ ସାଧନରେ ବ୍ରତୀ ହୋଇ ଅନ୍ତରର ସହିତ ଚେଷ୍ଟା କରିବା ଉଚିତ ଥିଲା । ପ୍ରତି ଅଧିବେଶନରେ ଶତଶତ, ସହସ୍ର ସହସ୍ର ଲୋକେ କେବଳ ତାମସା ଦେଖିବା ନିମନ୍ତେ ଉପସ୍ଥିତ ହୁଅନ୍ତି ଏବଂ ମୁଁ ସେହି ତାମସା ଦେଖିଅଛି; କିନ୍ତୁ କିଛି କରିପାରିନାହିଁ ।'' ଉତ୍କଳ ସମ୍ମିଳନୀ ସଂପର୍କରେ ମଧୁବାବୁ ଏହିଭଳି ଖେଦ ପ୍ରକାଶ କରି ଆଶା କରିଥିଲେ ଏହାର କିଛି ସୁଫଳ ମିଳିବ; ମାତ୍ର ସୁଫଳତ ସେମିତି ଆଖିକୁ ଦିଶିଲା ଭଳି ମିଳିଲା ନାହିଁ, ବରଂ ଏହି ଅନୁଷ୍ଠାନର ସଭାପତି ହେବାପାଇଁ ଲୋକ ଅମିଳକ ହେଲେ ବୋଲି ମଧୁବାବୁ ୧୯୧୩ ମସିହାରେ ଅନୁଷ୍ଠିତ ସମ୍ମିଳନୀର ନବମ ଅଧିବେଶନ (ପୁରୀଠାରେ) ରେ ସୂଚେଇ ଦେବାକୁ ଯାଇ କହିଥିଲେ -''ମୁଁ ଶୁଣୁଛି, ସଭାପତିର ଆସନ ଗ୍ରହଣ କରିବାକୁ କେହି ଇଚ୍ଛୁକ ନହେବାରୁ ଗତବର୍ଷ ସମ୍ମିଳନୀର ଅଧିବେଶନ ହୋଇନାହିଁ । ଏଥିରୁ ପ୍ରକାଶ ପାଉଛି ଯେ ସମ୍ମିଳନୀ ପ୍ରତି ଉତ୍କଳବାସୀଙ୍କର ଯେ ପ୍ରକାର ଶ୍ରଦ୍ଧା, ଭକ୍ତି ଓ ସ୍ନେହ ପ୍ରଥମାବସ୍ଥାରେ ଥିଲା, ତାହା ବର୍ତ୍ତମାନ ନାହିଁ । ପୂର୍ବେ ସଭାପତିର ଆସନ ସମ୍ମାନସୂଚକ ଥିଲା । ବର୍ତ୍ତମାନ ତାହା ଅସମ୍ମାନର ସ୍ଥାନ ହୋଇଛି । ସେହି ହେତୁରୁ ଉତ୍କଳର କୌଣସି କୃତୀସନ୍ତାନ ସେ ସ୍ଥାନରେ ବସିବାକୁ ଚାହାନ୍ତି ନାହିଁ । ମନେ କରନ୍ତି ଯେ ଏହା ଅଯୋଗ୍ୟ ଲୋକର ଉପଯୁକ୍ତ ସ୍ଥାନ । ଏଣୁ କରି ଉତ୍କଳ ମାତାର ମୁଁ ଜଣେ ଅଯୋଗ୍ୟ ସନ୍ତାନ ଥିବାରୁ କର୍ତ୍ତବ୍ୟାନୁରୋଧରେ ବାଧ ହୋଇ ଏ ସ୍ଥାନରେ ଉପସ୍ଥିତ ହେଲି । ଏହାଦ୍ୱାରା ଉତ୍କଳର ମଙ୍ଗଳ ହେବ କି ଅମଙ୍ଗଳ ହେବ ତାହା ଆପଣମାନେ ବିଚାର କରିବେ । ସମ୍ମିଳନୀର ପ୍ରତ୍ୟେକ ଅଧିବେଶନରେ ଉତ୍କଳର ଉନ୍ନତି ସାଧନ ସକାଶେ ଅନେକ ପ୍ରସ୍ତାବ କାର୍ଯ୍ୟରେ ପରିଣତ ହୋଇନାହିଁ ବୋଲି ମୁଁ ଶୁଣୁଛି । ତାହା ସତ୍ୟ ମିଥ୍ୟା କି ବିଚାର କରିବାର ଅଧିକାର ମୋର ନାହିଁ;

କିନ୍ତୁ ଯେଉଁ ସବୁ କାର୍ଯ୍ୟକରିବାର ପ୍ରସ୍ତାବ ହୋଇଥିଲା ସେ ସବୁ ଉନ୍ନତି ପଥରେ ଉତ୍କଳବାସୀମାନେ ଯେ ଗତ ଦଶବର୍ଷ ମଧ୍ୟରେ ଅଗ୍ରସର ହୋଇ ଅଛନ୍ତି ତାହା କୌଣସି ପ୍ରକାରେ କୁହାଯାଇ ନପାରେ ।'' ଏଇଥିରୁ ମୂଳରୁ ଉତ୍କଳ ସମ୍ମିଳନୀର କାର୍ଯ୍ୟକାରିତା ସଂପର୍କରେ ଏକ ହତାଶାଗୋଳା ବିଫଳତାର ଚିତ୍ର ଦେଖିବାକୁ ମିଳୁଥିବାବେଳେ ମଧୁସୂଦନ ଦାସ, ଫକୀରମୋହନ ସେନାପତି, ରାଜା ବୈକୁଣ୍ଠ ନାଥ ଦେବ, ଶ୍ରୀରାମଚନ୍ଦ୍ର ଭଂଜ, ଗୌରୀଶଂକର ରାୟ, ଗଂଗାଧର ମେହେର ପ୍ରମୁଖ ନିରୁତ୍ସାହିତ ନହୋଇ ବରଂ ଅଧିକରୁ ଅଧିକ ଭାବେ ଏହି ସମ୍ମିଳନୀକୁ ସକ୍ରିୟ ଓ ବଳିଷ୍ଠ କରିବାରେ ଲାଗିଲେ । ସେମାନଙ୍କ ମନରେ ଗୋଟିଏ ମଂତ୍ର ଗୁଂଜରିତ ହେଉଥିବାର ଆମେ ଜାଣିବାକୁ ପାଉ । ୧୯୧୮ ମସିହାରେ କଟକ ଉତ୍କଳ ସମ୍ମିଳନୀ ମଂଚରେ ଘୋଷଣା କରାଗଲା ''ଏହି ସମ୍ମିଳନୀର ଉଦ୍ଦେଶ୍ୟ ଓଡ଼ିଆ ଜାତିକୁ ଉଠାଇବା; ଓଡ଼ିଆ ଜାତିର କୃଷକମାନଙ୍କ ସଂଖ୍ୟା ବେଶୀ; ତେଣୁ ସେମାନଙ୍କର ଉନ୍ନତି ନହେଲେ ଦେଶର ଆଉ କି ଉନ୍ନତି ?''

ଏହି ଭଳି ଆଭିମୁଖ୍ୟରେ ଆଧାରିତ ଉତ୍କଳ -ସମ୍ମିଳନୀର ସଫଳ କାର୍ଯ୍ୟଧାରା ଭିତରେ ୧୯୩୬ ଏପ୍ରିଲ ପହିଲାରେ (ବର୍ତ୍ତମାନର ଉତ୍କଳ) ସ୍ୱତନ୍ତ୍ର ଉତ୍କଳ ଗଠିତ ହେଲା । ଏହାଥିଲା ହସଖୁସିର ଦିନ ଓ କିଛି ଓଡ଼ିଆ ଭାଷାଭାଷୀ ଅଞ୍ଚଳ ବାହାରେ ରହିଯାଇଥିବା ଯୋଗୁ ଅନୁଶୋଚନା ପର୍ବର ଅୟମାରମ୍ଭ । ସେତେବେଳକୁ ମଧୁସୂଦନ ଦାସ, ଫକୀରମୋହନ ସେନାପତି, ବୈକୁଣ୍ଠନାଥ ଦେବ, ଶ୍ରୀରାମଚନ୍ଦ୍ର ଭଂଜ, ଗୌରୀଶଂକର ରାୟ, ରାଧାନାଥ ରାୟ ପ୍ରମୁଖ ଆଗଧାଡ଼ିର ନେତାମାନଙ୍କର ସ୍ୱର୍ଗପ୍ରାପ୍ତି ହୋଇସାରିଥାଏ । ଜାତୀୟ କଂଗ୍ରେସର ହାୱାରେ ଓଡ଼ିଶାର ରାଜନୀତିକ ବାତାବରଣ ସରଗରମ ହେବାରେ ଲାଗିଥାଏ । ଓଡ଼ିଶାର ନେତାମାନେ କ୍ରମଶଃ ଉତ୍କଳ-ସମ୍ମିଳନୀ ପାଖରୁ ଦୂରେଇ ଯାଇଥିବାର ଆମେ ଦେଖୁ । ଏହାର କାରଣ ମାନଙ୍କ ଭିତରୁ ଗୋଟିଏ ହେଲା ଜାତୀୟ ରାଜନୀତିକ ମଂଚରେ ନେତୃତ୍ୱ ଜାହିର କରିବାକୁ ହେଲେ ମୁଖ୍ୟ ସ୍ରୋତରେ ସାମିଲ ହୋଇ ଆଞ୍ଚଳିକତାଠାରୁ ଦୂରରେ ରହିବା । ସେଥିପାଇଁ ପରବର୍ତ୍ତୀ ପିଢ଼ିର ଆଗ ଧାଡ଼ିର ନେତା ହରେକୃଷ୍ଣ ମହତାବ ଯେ କି ମୃତ୍ୟୁ ପର୍ଯ୍ୟନ୍ତ ଓଡ଼ିଶାର ରାଜନୀତିଠୁଁ ଆରମ୍ଭ କରି ସାହିତ୍ୟ-ସଂସ୍କୃତି ସବୁ କ୍ଷେତ୍ରରେ ମୁକୁଟ ବିହୀନ ସମ୍ରାଟ ହୋଇ ରହିଥିଲେ, ତାଙ୍କର ଆତ୍ମଜୀବନୀରେ କୌଣସିଠାରେ ଉତ୍କଳ ସମ୍ମିଳନୀରେ ତାଙ୍କର ସକ୍ରିୟ ସଂପୃକ୍ତି ସଂପର୍କରେ ଧାଡ଼ିଟିଏ ଛାଡ଼ି ଯାଇନାହାନ୍ତି । ପରବର୍ତ୍ତୀ କାଳରେ ରାଜନୀତିକ ଇଚ୍ଛାଶକ୍ତିର ଅଭାବ ଓ ପ୍ରଭାବର ମଳିନତା ଯୋଗୁଁ ଓଡ଼ିଆ ଭାଷାଭାଷୀ ବିଚ୍ଛିନ୍ନାଞ୍ଚଳ ଓଡ଼ିଶାରେ ମିଶିବା ସମ୍ଭବ ହେଲାନାହିଁ । ୧୯୫୬ରେ ରାଜ୍ୟ ପୁନର୍ଗଠନ ହେବା ସମୟରେ ସେଥିପାଇଁ ଆମକୁ ନିରାଶ ହେବାକୁ ପଡ଼ିଛି । ବେଙ୍ଗପାଣିଆ, ସୁନୀଲ ଭଳି ବହୁ ନିରୀହ ଉତ୍କଳ ଜନନୀଙ୍କର ସୁପୁତ୍ରମାନଙ୍କ ଆତ୍ମବଳି ଓଡ଼ିଆ ନେତାଙ୍କ ଏହି ଜାତୀୟ ରାଜନୀତିର ପଶାପାଲିରେ ହାୱାରେ ଉଭେଇ ଯାଇଛି । ଆଜି ଉତ୍କଳ ସମ୍ମିଳନୀ ଅବକାଶରେ ମୁଁ ସେହି ଦିବଂଗତ ବୀରପୁରୁଷଙ୍କୁ କୃତଜ୍ଞତାର ସହ ସ୍ମରଣ କରୁଛି ।

ଆମର ନେତାମାନେ ଜାତୀୟ ରାଜନୀତି ମଂଚରେ ନିଜନିଜ ନେତୃତ୍ୱ ସୁରକ୍ଷିତ କଲାବେଳେ ବିଚ୍ଛିନ୍ନାଞ୍ଚଳ ଓଡ଼ିଆ ଭଷାଭାଷୀଙ୍କ କୁଥା ଭୁଲି ଏବଂ ଏହାକୁ ଗୁରୁତ୍ୱ ଦେଉ ନଥିବାବେଳେ ଭାରତର ପ୍ରଥମ ରାଷ୍ଟ୍ରପତି ଡକ୍ଟର ରାଜେନ୍ଦ୍ର ପ୍ରସାଦ ବିହାରୀ ହୋଇଥିବାରୁ ଆମର ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ କି ଭଳି ବିହାରରେ ରଖିବାପାଇଁ ହୀନ ଚକ୍ରାନ୍ତ କରିଥିଲେ ତାର ଏକ ଚିତ୍ର ଆମେ ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ ଆତ୍ମଜୀବନୀ 'ଅର୍ଦ୍ଧ ଶତାବ୍ଦୀର ଓଡ଼ିଶା ଓ ତହିଁରେ ମୋର ସ୍ଥାନ'ରୁ ଏହିପରି ଦେଖିବାକୁ ପାଉଁ । -''କମିଟିର ବୈଠକେ ବସି ସ୍ଥିର ହେଲା ଯେ ସମଗ୍ର ସିଂହଭୂମି ଜିଲ୍ଲାରେ ଯେତେଜଣ କଂଗ୍ରେସ ମେମ୍ବର ହୋଇଥିଲେ ସିଂହଭୂମ, ବିହାର ଓଡ଼ିଶା କେଉଁ ପ୍ରଦେଶରେ ରହିବ ତାହା ସେମାନଙ୍କ ମତଦ୍ୱାରା ନିଷ୍ପତ୍ତି ହେବ । ସଂଖ୍ୟାଗୁଡ଼ିକ ମୋର ଠିକ୍ ମନେ ନାହିଁ । ମୋଟାମୋଟି ଯାହା ମନେ ଅଛି ସେଥିରୁ କହି ପାରେଯେ ସେ

ବର୍ଷ ସେ ଜିଲ୍ଲାରେ ପାଞ୍ଚହଜାର ଦୁଇଶହ ପର୍ଯ୍ୟନ୍ତ କଂଗ୍ରେସ ମେମ୍ବର ହୋଇଥିଲେ । ଉପର୍ଯ୍ୟୁକ୍ତ ପ୍ରକାରେ ମତ ଜଣାଇବା ପାଇଁ ସମସ୍ତଙ୍କ ପାଖକୁ ରିପ୍ଲାଇ ପୋଷ୍ଟକାର୍ଡ଼ ପଠାଗଲା । ପ୍ରାୟ ହଜାରେ ଲୋକଙ୍କଠାରୁ କୌଣସି ଉତ୍ତର ଆସିଲା ନାହିଁ । ବାକି ତିନି ହଜାର ନଅଶହ ଓଡ଼ିଶା ସପକ୍ଷରେ ଏବଂ ଦୁଇଶହ ଆଶୀ ପର୍ଯ୍ୟନ୍ତ ବିହାର ସପକ୍ଷରେ ମତଦେଲେ । ମତ ନେବାର ସେହି ଫଳାଫଳରୁ ବିଚାର କମିଟିର ସଦସ୍ୟମାନେ ସ୍ଥିର କରିଦେଲେ ଯେ ସିଂହଭୂମି ଜିଲ୍ଲା କଂଗ୍ରେସ କମିଟି ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟି ସହିତ ସଂଲଗ୍ନ ହେବ ।

ସେ ନିଷ୍ପତ୍ତି ପକ୍‌କା କରିନେବା ପାଇଁ ମୁଁ ଓଡ଼ିଶାରୁ ପଣ୍ଡିତ ଗୋପବଂଧୁ ଦାସ ଓ ବିହାରରୁ ରାଜେନ୍ଦ୍ର ପ୍ରସାଦଙ୍କୁ ସିଂହଭୂମିକୁ ଡକାଇଲି । ଉଭୟେ ମୋ' ଅନୁରୋଧରେ ଅନୁଗ୍ରହ କରି ଆସିଲେ । ଉଭୟେ ମିଶି ସମଗ୍ର ଜିଲ୍ଲାରେ ବୁଲି କଂଗ୍ରେସ ବାର୍ତ୍ତା ପ୍ରଚାର କରିବାପାଇଁ ପାଞ୍ଚଦିନ ଲାଗିବା ଭଳି କାର୍ଯ୍ୟକ୍ରମ ସ୍ଥିର ହେଲା । ଶ୍ରୀଯୁକ୍ତ ରାଜେନ୍ଦ୍ର ପ୍ରସାଦ ସଭାମାନଙ୍କରେ ବୁଝାଇ କହିଲେ, ''ଆପଣମାନେ ନିଜ ନିଷ୍ପତ୍ତି ଦ୍ୱାରା ଦେଖାଇ ଦେଇଛନ୍ତି ଯେ, ଏ ଅଞ୍ଚଳ ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟି ଅଧୀନରେ ରହିବା ଦରକାର ।'' ମାତ୍ର ସେହି ରାଜେନ୍ଦ୍ର ପ୍ରସାଦ ସିଂହଭୂମି ଅଞ୍ଚଳରୁ ଫେରିଗଲା ପରେପରେ ଓଡ଼ିଆ ଭାଷାଭାଷୀ ସିଂହଭୂମକୁ ବିହାରରେ ରଖିବା ପାଇଁ ବିହାରୀମାନଙ୍କୁ ମତାଇଲେ ଓ ସେମାନଙ୍କୁ ଚିଠିରେ ଯାହା ଲେଖିରେ ତାହା ପଣ୍ଡିତ ଗୋଦାବରୀଶ ମିଶ୍ର ତାଙ୍କର ସେହି ଆତ୍ମଜୀବନୀରେ ଏହିଭଳି ଉଲ୍ଲେଖ କରିଛନ୍ତି- ''ମୁଁ ଯାହା ପ୍ରକାଶ୍ୟରେ କହିଲି ତାହା ଯେ ମୋର ଆନ୍ତରିକ ମତ ନୁହେଁ, ଆପଣମାନେ ସେ କଥା ଜାଣନ୍ତି । ବର୍ତ୍ତମାନ ଏକମାତ୍ର ଉପାୟ ହେଉଛି ଆପଣମାନଙ୍କୁ କାମରେ ଲାଗିବା ।''

ଏଥିରୁ ସ୍ପଷ୍ଟ ହୋଇ ଯାଉଛି ଯେ କିପରି ନିଜ ପ୍ରଦେଶର ସ୍ୱାର୍ଥକୁ ଆଖିରେ ରଖି ଅନ୍ୟ ପ୍ରଦେଶର ଜାତୀୟସ୍ତରର ନେତାମାନେ ମଧ୍ୟ ନିଜ ମନୋବୃତ୍ତିର ପରିଚୟ ଦେବାକୁ ପଛଉ ନଥିଲାବେଳେ ଆମର ନେତାମାନେ ସତକଥା ପାଇଁ ସାହସର ସହିତ ଲଢ଼ିବାକୁ ଉତ୍ସାହ ଦେଖେଇ ନାହାନ୍ତି; ବରଂ ନିଜନିଜର ସ୍ଥିତିକୁ ଜାତୀୟ ରାଜନୀତି କ୍ଷେତ୍ରରେ ସୁଦୃଢ଼ କରିବା ପାଇଁ ପ୍ରଦେଶର ସ୍ୱାର୍ଥକୁ ଅନେକ କ୍ଷେତ୍ରରେ ଜଳାଞ୍ଜଳି ଦେଇଛନ୍ତି । ଏହା ସେ ଦିନରୁ ଏଯାଏଁ ଚଳି ଆସୁଥିବାର ଆମେ ଦେଖୁଁ । ଏହାହିଁ ବିଡ଼ମ୍ବନା । ୧୯୫୬ରେ ସୀମା ପୁନର୍ଗଠନ ସମୟରେ ବିଚ୍ଛିନ୍ନାଞ୍ଚଳକୁ ଓଡ଼ିଶାରେ ମିଶାଇବା ପାଇଁ ଆସିଥିବା ସୁଯୋଗକୁ ଏହି କାରଣରୁ ହାତ ଛଡ଼ାକଲୁ । ପୁଣି କେନ୍ଦ୍ରରେ NDA ସରକାର ଚାଲୁଥିବାବେଳେ ଓଡ଼ିଶାର BJD ଓ BJP ବଡ଼ ଅଂଶୀଦାର ଦଳ ହିସାବରେ NDAର ଅଂଶୀଦାର ଥିଲା । ଏହି ସମୟରେ (Bihar, U.P. and M.P.) ବିହାର, ଉତ୍ତର ପ୍ରଦେଶ ଓ ମଧ୍ୟ ପ୍ରଦେଶରେ ସ୍ୱତନ୍ତ୍ର ଭାବରେ ଆଉ କିଛି ପ୍ରଦେଶ ଗଠନ ପାଇଁ ଦାବି ଜୋରଦାର୍ ହେବାରୁ ରାଜ୍ୟ ପୁନର୍ଗଠନର ନିଷ୍ପତ୍ତି ନିଆଗଲା; ଫଳରେ ଝାଡ଼ଖଣ୍ଡ, ଉତ୍ତରାଞ୍ଚଳ ଓ ଛତିଶଗଡ଼ ପ୍ରଦେଶମାନ ନୂଆ କରି ଗଠିତ ହେଲା । ଏହି ସମୟରେ ଓଡ଼ିଆ ଭାଷାଭାଷୀ ବିଚ୍ଛିନ୍ନାଞ୍ଚଳକୁ ଓଡ଼ିଶାରେ ମିଶାଇ ବୃହତ ଓଡ଼ିଶା ଗଠନର ଆଉ ଏକ ସୁବିଧା ସୁଯୋଗ ମିଳିଥିଲା; ମାତ୍ର ଉପରୋକ୍ତ କାରଣରୁ ଆମର ବର୍ତ୍ତମାନର ରାଜନୀତିକ ନେତାମାନେ ଏହି ସୁଯୋଗକୁ ହାତଛଡ଼ା କରିଦେଲେ । ଏମାନଙ୍କୁ ଇତିହାସରେ ନିଶ୍ଚୟ ଦିନେ ନିନ୍ଦିତ ହେବାକୁ ପଡ଼ିବ ।

ଏହିଭଳି ପ୍ରେକ୍ଷାପଟରେ ଆଜି ବି ଉତ୍କଳ ସମ୍ମିଳନୀ ମଧୁସୂଦନଙ୍କ ଭାଷାରେ ଏକ 'ତାମ୍‌ସା' କହିବାରେ ଭୁଲହେବନି ।

ବିଚ୍ଛିନ୍ନାଞ୍ଚଳକୁ ମିଶାଇବା ପାଇଁ ଉଦ୍ୟମ କରିବା ପରିବର୍ତ୍ତେ ପଶ୍ଚିମାଞ୍ଚଳରେ 'କୋଶଳ' ପ୍ରଦେଶ ଗଠନ ପାଇଁ ଆନ୍ଦୋଳନ ମୁଣ୍ଡ ଟେକୁଥିବା ବେଳେ ଆମର କେତେକ ବିଧାୟକ ଓ ମନ୍ତ୍ରୀମାନେ କେତେବେଳେ ସିଧା ସିଧାତ, କେତେବେଳେ ପରୋକ୍ଷରେ ସେହି ଉଦ୍ୟମକୁ ପ୍ରୋତ୍ସାହନ ଯୋଗାଇ ଦେଉଥବାର ଦେଖିବାକୁ ମିଳୁଛି ।

ସେହିପରି ଏହି ସମ୍ମିଳନୀର ଉଦ୍ଦେଶ୍ୟ ନେଇ 'ଓଡ଼ିଆ ଜାତିକୁ ଉଠାଇବା' ପାଇଁ ସମ୍ମିଳନୀ ମଂଚରୁ ଯେଉଁ ଆହ୍ୱାନ ଦିଆଯାଇ ଥିଲା ଆଜି ତାହା ବିଡ଼ମ୍ବିତ ହୋଇଥିବାର ଜଣାଯାଏ । ଓଡ଼ିଆ ଭାଷାକୁ ବାଦଦେଇ 'ଓଡ଼ିଆ ଜାତିକୁ ଉଠାଇବା' କଥା କହିବା ସମ୍ପୂର୍ଣ୍ଣ ଅବାନ୍ତର । ନବକୃଷ୍ଣ ଚୌଧୁରୀ ୧୯୫୪ ମସିହାରେ ମୁଖ୍ୟମନ୍ତ୍ରୀ ଥିଲାବେଳେ ଓଡ଼ିଆକୁ ସରକାରୀ ଭାଷାଭାବେ ପ୍ରଚଳନ କରିବାପାଇଁ ଓଡ଼ିଶା ସରକାରୀ ଭାଷା ଆଇନ ୧୯୫୪ ଜାରି କରାଇଥିଲେ; ମାତ୍ର ତାକୁ କେହି ମାନିଲେ ନାହିଁ । ତାଙ୍କ ପରେ ଯେତେ ମୁଖ୍ୟମନ୍ତ୍ରୀ ୧୯୮୦ ମସିହା ପର୍ଯ୍ୟନ୍ତ ହେଲେ ଏ ଦିଗରେ କେହି ମନ ବଳେଇବାର ଦେଖାଯାଇ ନାହିଁ । ୧୯୮୫ ମସିହାରେ ଜାନକୀ ବଲ୍ଲଭ ପଟ୍ଟନାୟକ ମୁଖ୍ୟମନ୍ତ୍ରୀ ହେବାପରେ ଜଣେ ସାହିତ୍ୟ ସଂସ୍କୃତି ପ୍ରେମୀ ହିସାବରେ ପୁଣି ସରକାରୀ କାର୍ଯ୍ୟ ଓଡ଼ିଆ ଭାଷାରେ ଚଳେଇବା ପାଇଁ ଉଦ୍ୟମ ଆରମ୍ଭ କଲେ । ମାତ୍ର କେଉଁ ତାରିଖରୁ ବାଧ୍ୟତାମୂଳକ ଭାବେ ଓଡ଼ିଆ ଭାଷାକୁ ସରକାରୀ ଭାଷାଭାବେ ପ୍ରଚଳନ କରାଯିବା ତାହା ଠିକ୍ ଭାବେ ସରକାରୀ ବିଜ୍ଞପ୍ତି ଜାରି ହୋଇନଥିବା କଥା ଏବର ମୁଖ୍ୟମନ୍ତ୍ରୀ ମାନ୍ୟବର ନବୀନ ପଟ୍ଟନାୟକ ଓଡ଼ିଶା ବିଧାନସଭାରେ ୨୦୦୧ ମସିହାରେ କହିଥିଲାବେଳେ ଇଂରାଜୀରେ ବିବୃତିଟି ଏହିପରି ଦେଇଥିଲେ-

" State Govt, have notified for using Oriya language for all official purposes with effect form 1.4.1985 in pursuance of section 2 of the Orissa Official Language Act 1954 (Orissa Act 14 of 1954) vide GA dept. Notification No. 7152/Gen dt 29.3.1985. The said notification has excluded the Orissa High Court and subordinate offices of Judges in the State Govt. along with other business as specified in the schedule annexed to that notification, for use of Oriya as official language. This notification has been implemented in all offices of State Govt. with little variation, for the convenience of general public as a whole.

As enshrined in sec.2 (3) of Orissa official language Act 1954 State Govt. have to issue a notification appointing a specific date for use of Oriya language in all bills and the introduced or amended there to be moved in the Orissa Legislative Assembly, all ordinance promulgated by the Governor and all orders, rules regulations and bye laws issued by the state Govt. Govt. are to take all these aspects consistent with the provisions under article 348 and other relevant articles thereto of the Indian Constitution. For this purpose state Govt. with the prior consent of the Govt. of India, will take a decision for use of Oriya language from a specific date."

ଏଇଥିରୁ ବୁଝାଯାଏ ଯେ ଓଡ଼ିଆ ଭାଷାକୁ ସରକାରୀ ସ୍ତରରେ ଚଳେଇବାରେ ନିର୍ଦ୍ଦିଷ୍ଟ ତାରିଖ-ପଦ୍ମ ଘୁଞ୍ଚୁଘୁଞ୍ଚୁ ଯାଉଛି । ନା ଏ ଦିଗରେ ଜନସାଧାରଣଙ୍କର ଦାବି ଅଛି ନା ସରକାରୀ ମାନସିକତା ଅଛି;. ସବୁ ଆକାଶ କଇଁଆ ଚିଲିକା ମାଛ ପାଳଟିଛି ।

ଏବେ ଓଡ଼ିଆ ମାଧ୍ୟମ ସ୍କୁଲ ନୂଆ ଖୋଲାଯାଉ ନଥିଲାବେଳେ ଏହି ସବୁ ସ୍କୁଲମାନଙ୍କରେ ଛାତ୍ରଛାତ୍ରୀ ସଂଖ୍ୟା କମିବାରେ ଲାଗିଛି । ଅନ୍ୟ ପକ୍ଷରେ ଇଂରାଜୀ ମାଧ୍ୟମ ସ୍କୁଲ ସବୁ ଛତୁ ଫୁଟିବାରେ ବଢ଼ିବଢ଼ି ଚାଲିଛନ୍ତି । ସମଗ୍ର ଉପକୂଳବର୍ତ୍ତୀ ଜିଲ୍ଲାମାନଙ୍କରେ ଲକ୍ଷାଧିକ ସଂଖ୍ୟାରେ ବାଂଲାଦେଶୀ (East Bengal) ଅନୁପ୍ରବେଶକାରୀମାନେ ବଢ଼ିବାରେ ଲାଗିଛନ୍ତି ଓ ଅଦୂର ଭବିଷ୍ୟତରେ ଏମାନେ ଭାଷା ଓ ଜାତୀୟତା ପ୍ରତି ବିପଦ ସୃଷ୍ଟି କରିବା ସମ୍ଭାବନା ଜଳଜଳ ହୋଇ ଦେଖାଯାଉଛି ।

ଏହିସବୁ ସମସ୍ୟା ଗୁଡ଼ିକ ପ୍ରତି ଦୃଷ୍ଟି ଦେଇ ଏବର ଉତ୍କଳ ସମ୍ମିଳନୀ କାର୍ଯ୍ୟକଲେ ୨୦୦୫ରେ ବାଲେଶ୍ୱରର ଚନ୍ଦନେଶ୍ୱରଠାରେ ଅନୁଷ୍ଠିତ ହେଉଥିବା ସମ୍ମିଳନୀ ନିଷ୍ପତ୍ତି ସାର୍ଥକ ହେବ; ନଚେତ୍ ମଧୁସୂଦନଙ୍କ ଭାଷାରେ ଏହାକୁ 'ତାମ୍‌ସା' ଛଡ଼ା ଆଉ କିଛି କୁହାଯିବ ନାହିଁ ।

# ଆଡ଼ଭୋକେଟ୍, ସଂକେତ,
ବିବେକାନନ୍ଦ ମାର୍ଗ, ବାଲେଶ୍ୱର-୭୫୬ ୦୦୧

# ଦିଗ୍‌ବିଜୟ ବାନା ଉଡ଼ାରେ ଓଡ଼ିଆ

## ରବୀନ୍ଦ୍ରମୋହନ ସେନାପତି

ଯୁଗେଯୁଗେ ସାମରିକ ଶକ୍ତିରେ, କଳିଙ୍ଗ ବୀର ଯୋଦ୍ଧା ଜାତି, ଅତୀତରେ ଅନନ୍ୟ ଦେଶପ୍ରେମ ଓ ଅମିତ ବିକ୍ରମ ପ୍ରଦର୍ଶନ କରୁଥିଲେ । କଳିଙ୍ଗର ରାଜାମହାରାଜାମାନେ ଦେଶାନ୍ତରକୁ ସୈନ୍ୟସାମନ୍ତ ସହ ଯାତ୍ରା କରୁଥିଲେ ଓ ଅନ୍ୟାନ୍ୟ ରାଜାମାନଙ୍କ ସହ ଘମାଘୋଟ ଯୁଦ୍ଧକରି, ଜୟଲାଭ କରୁଥିଲେ ଓ ନିଜ ରାଜ୍ୟର ସୀମାକୁ ବଢ଼ାଉଥିଲେ । ସେମାନଙ୍କୁ କୁହାଯାଉଥିଲା 'ଦିଗ୍‌ବିଜୟୀ' ରାଜା । ତାହା ଜନସମାଜରେ ଘୋଷଣା କରିବା ପାଇଁ ଯୁଦ୍ଧରଥ ଆଗରେ 'ଦିଗ୍‌ବିଜୟ ବାନା ବା ପତାକା' ଉଡ଼ାଉଥିଲେ । ଆମ ଓଡ଼ିଶା ମୂଲକରେ ଅତୀତରେ ଦିଗ୍‌ବିଜୟୀ ରାଜାଙ୍କ ସଂଖ୍ୟା କମ୍ ନଥିଲା । ସମ୍ରାଟ ଖାରବେଳ ଓ କଳିଙ୍କ ସମ୍ରାଟ କପିଳେନ୍ଦ୍ର ଦେବ ବହୁ ପଡ଼ୋଶୀ ରାଜ୍ୟ ଜୟକରି, ସ୍ୱରାଜ୍ୟକୁ ସ୍ୱରଥରେ ଦିଗବିଜୟ ବାନା ଉଡ଼ାଇ ଫେରୁଥିଲେ ।

ଦିନଥିଲା, ଯେତେବେଳେ ରାଜାମାନେ ନିଜର ଗରିମା ଗାନ କରୁଥିଲେ । ପଡ଼ୋଶୀ ବଙ୍ଗାଳୀମାନେ କହୁଥିଲେ -ଆମର ସୋନାର ବାଙ୍ଗଲା । ତେଲଗୁମାନେ କହୁଥିଲେ -ତେଲ୍‌ଗୁ ବିଡ୍ଡା । କିନ୍ତୁ ଆମ ଓଡ଼ିଆମାନେ ସ୍ୱାଭିମାନର ଦ୍ୱାହି ଦେଉଥିଲେ । ବୀରତ୍ୱ, କଳା ଓ ସଂସ୍କୃତି ନାମରେ ଆମେ ଅତୀତର ଗରିମାକୁ ବିକି ଭାଙ୍ଗି ଖାଇସାରିଲୁଣି । ଏବେ ଓଡ଼ିଆମାନେ ସମଗ୍ର ଭାରତରେ ସବୁଠାରୁ ଗରୀବ ବୋଲି ତଥ୍ୟ ପ୍ରକାଶ ପାଇଲାଣି । ତଥାପି ଆମର ଚେତନା ପଶିନାହିଁ । ସ୍ୱାଭିମାନ ନୁହେଁ, ଆମ ଓଡ଼ିଶାର ସମୃଦ୍ଧି ବର୍ତ୍ତମାନ ଦରକାର ।

ଇଂରେଜମାନେ ୧୮୦୩ରେ ଓଡ଼ିଶା ଦଖଲ କଲାପରେ ଗୋଟିଏ ଶତାବ୍ଦୀ ଧରି ଓଡ଼ିଆମାନେ ଭାଗଭାଗ ହୋଇ ବିଭିନ୍ନ ପଡ଼ୋଶୀ ପ୍ରଦେଶରେ ରହିଲେ । ଖଣ୍ଡେ ବଙ୍ଗ ସରକାର ସାଙ୍ଗରେ, ଖଣ୍ଡେ ମାନ୍ଦ୍ରାଜ ସରକାରଙ୍କ ସାଙ୍ଗରେ ଓ ଆଉ ଖଣ୍ଡେ ମଧ୍ୟପ୍ରଦେଶ ସରକାରଙ୍କ ସାଙ୍ଗରେ ଇଂରେଜମାନଙ୍କ ଅଧୀନରେ ରହିଲା । ତେଣୁ ସେସବୁ ଓଡ଼ିଆ ବିଚ୍ଛିନ୍ନାଞ୍ଚଳ ହୋଇଗଲା । ଖାଲି ସେତିକି ନୁହେଁ ବଙ୍ଗ ସରକାର ଅନ୍ତର୍ଭୁକ୍ତ ଓଡ଼ିଆ ଅଞ୍ଚଳରେ ବଙ୍ଗଳା ଭାଷା ପ୍ରଚଳନ ପାଇଁ ଉଦ୍ୟମ ହେଲା । ତେଣେ ମାନ୍ଦ୍ରାଜ୍ ସରକାରଙ୍କ ଅଧୀନରେ ଥିବା ଗଂଜାମ ଓ କୋରାପୁଟରେ ପଡ଼ୋଶୀ ତେଲୁଗୁଭାଷା ପ୍ରଚଳନ ପାଇଁ ଉଦ୍ୟମ ହେଲା । ଏଣେ ପଶ୍ଚିମାଞ୍ଚଳରେ ମଧ୍ୟପ୍ରଦେଶ ସରକାର ଅଧୀନରେ ଥିବା ସମ୍ବଲପୁରରେ ହିନ୍ଦୀ ଭାଷା ପ୍ରଚଳନ ଆରମ୍ଭ ହେଲା । ଓଡ଼ିଆ ଭାଷା ବିଲୋପ ହେବା ଜଳଜଳ ହୋଇ ଦିଶିଲା । ସେଥିରୁ ଆରମ୍ଭ ହେଲା ଓଡ଼ିଆ ଭାଷାକୁ ରକ୍ଷା କରିବା ପାଇଁ ଆନ୍ଦୋଳନ । ଏହି ସମୟରେ ଓଡ଼ିଆଙ୍କ ରୁଦ୍ଧ ଜାତୀୟତା ଭାବର ପରିପ୍ରକାଶ ହେଲା । ୧୯୦୩ ମସିହାରେ ଉତ୍କଳ ଗୌରବ ମଧୁସୂଦନ ଦାସଙ୍କ ବଳିଷ୍ଠ ନେତୃତ୍ୱରେ ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଏକତ୍ରୀକରଣ ଓ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ପାଇଁ ଉତ୍କଳ ସମ୍ମିଳନୀ କଟକଠାରେ ଅନୁଷ୍ଠିତ ହେଲା । ସେହିଦିନଠାରୁ ପ୍ରତ୍ୟେକ ବର୍ଷ ଉତ୍କଳ ସମ୍ମିଳନୀର ବାର୍ଷିକ ଅଧିବେଶନ ବିଭିନ୍ନ ସ୍ଥାନରେ ଅନୁଷ୍ଠିତ ହେଲା । ଉତ୍କଳ ସମ୍ମିଳନୀ ସମସ୍ତ ବିଚ୍ଛିନ୍ନାଞ୍ଚଳ ଓଡ଼ିଆଙ୍କ ପାଇଁ ଏକ କେନ୍ଦ୍ରୀୟ ମଞ୍ଚ ହେଲା । ଭାଷା ଆନ୍ଦୋଳନରେ ଓଡ଼ିଆଙ୍କର ଜୟହେଲା । ସେଇଠୁ ଆରମ୍ଭ ହେଲା ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଏକତ୍ରିକରଣ । ୧୯୩୬ ମସିହା ଏପ୍ରିଲ ପହିଲାରେ ଉତ୍କଳ ସମ୍ମିଳନୀର ତଥା ଓଡ଼ିଆମାନଙ୍କର ଦୀର୍ଘଦିନର ଆନ୍ଦୋଳନ ଫଳରେ, ଓଡ଼ିଶା ଏବେ ସ୍ୱତନ୍ତ୍ର ପ୍ରଦେଶ ହେଲା । ଏହି ସମୟରେ ଆଉ ଗୋଟିଏ ତାତ୍ପର୍ଯ୍ୟପୂର୍ଣ୍ଣ ବିଷୟ ହୋଇଥିଲା,

ଉତ୍କଳ ସମ୍ମିଳନୀର ବାଲେଶ୍ୱର ଅଧିବେଶନରେ କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ରଙ୍କର ରଚିତ ଜାତୀୟ ସଂଗୀତ 'ବନ୍ଦେ ଉତ୍କଳ ଜନନୀ' ଗାନ । ଏହାର ପ୍ରଥମ ପଂକ୍ତି ଥିଲା -

'ବନ୍ଦେ ଉତ୍କଳ ଜନନୀ
ଚାରୁ ହାସମୟୀ ଚାରୁ ଭାଷମୟୀ ଜନନୀ ଜନନୀ ଜନନୀ,
ପୂତ-ପୟୋଧି- ବିଧୌତ-ଶରୀରା
ତାଳତମାଳ -ସୁଶୋଭିତ -ତୀରା
ଶୁଭ୍ର ତଟିନୀକୂଳ-ଶୀକର-ସମୀରା
ଜନନୀ, ଜନନୀ, ଜନନୀ'

x x x

ଆଜି ପୁଣି ବାଲେଶ୍ୱରଠାରେ ଉତ୍କଳ ସମ୍ମିଳନୀରେ ୧୦୧ତମ ବାର୍ଷିକ ଅଧିବେଶନ ଅନୁଷ୍ଠିତ ହେଉଛି ଯେଉଁଥିରେ ଓଡ଼ିଆଙ୍କ ଜାତୀୟ ସଂଗୀତ 'ବନ୍ଦେ ଉତ୍କଳ ଜନନୀ' ପୁଣି ଗାନ କରାଯିବ ।

ବର୍ତ୍ତମାନ ତ ଭାରତ ଦେଶରେ ରାଜ୍ୟରାଜ୍ୟ ମାନଙ୍କ ଭିତରେ ଯୁଦ୍ଧ ନାହିଁ କିମ୍ବା ଦିଗ୍‌ବିଜୟ ବାନା କଥା ପ୍ରଶ୍ନ ଉଠୁନାହିଁ । ଯୁଦ୍ଧ ଚାଲିଛି ବିଜ୍ଞାନ ଓ କାରିଗରୀ କ୍ଷେତ୍ରରେ, ଆଧୁନିକତାବାଦ କ୍ଷେତ୍ରରେ, ଶିକ୍ଷା ଇତ୍ୟାଦି କ୍ଷେତ୍ରରେ, କୃଷି ଓ ଶିଳ୍ପ ଉତ୍ପାଦନ କ୍ଷେତ୍ରରେ । ଆମେ ଏସବୁଥିରେ ପଛୁଆ । ଆମେ ଓଡ଼ିଆମାନେ ସମଗ୍ର ଦେଶ ଭାରତରେ ସବୁଠାରୁ ଗରିବ ବୋଲି ତଥ୍ୟ ପ୍ରକାଶ ପାଇଛି । ଏହା ଉତ୍କଳ ଦେଶ ଓ ଜାତିପାଇଁ ଗଭୀର ଉଦ୍‌ବେଗର ବିଷୟ । ଏହା ବାଲେଶ୍ୱରଠାରେ ୨୦୦୫ ମସିହା ଫେବୃଆରୀ ୬ ଓ ୭ ତାରିଖ ଦୁଇଦିନ ଧରି ଅନୁଷ୍ଠିତ ହେବାକୁ ଯାଉଥିବା ଉତ୍କଳ ସମ୍ମିଳନୀର ୧୦୧ତମ ବାର୍ଷିକ ଅଧିବେଶନରେ ଚର୍ଚ୍ଚା କରାଯାଉ । ଓଡ଼ିଶାର ଅତୀତକୁ ଛାଡ଼ି ଭବିଷ୍ୟତ ଆଡ଼କୁ ଦୃଷ୍ଟିପାତ କରିବା ବର୍ତ୍ତମାନ ନିହାତି ଜରୁରୀ । ଏବେ ତ ସମୃଦ୍ଧି ଲାଭ ପାଇଁ ତୀବ୍ର ପ୍ରତିଦ୍ୱନ୍ଦ୍ୱିତାର ଯୁଗ । ଏଥିରେ ଯେଉଁ ରାଜ୍ୟମାନେ ବିଜୟୀ ହେବେ ସେମାନେ ହେବେ ଦିଗ୍‌ବିଜୟୀ ।

ବାଲେଶ୍ୱରଠାରେ ଅନୁଷ୍ଠିତ ହେବାକୁ ଯାଉଥିବା ୧୦୧ତମ ଉତ୍କଳ ସମ୍ମିଳନୀ ଅଧିବେଶନରେ ଓଡ଼ିଶାର ସମୃଦ୍ଧିପାଇଁ ଏକ ଅର୍ଥନୈତିକ ଆନ୍ଦୋଳନ କଥା, ଜାତୀୟ ମହାସମ୍ମିଳନୀ ଚର୍ଚ୍ଚା କରୁ, ଯେପରି ଆମେ ଓଡ଼ିଆମାନେ ସମଗ୍ର ଦେଶ ଭାରତରେ ଅର୍ଥନୈତିକ ସମୃଦ୍ଧି କ୍ଷେତ୍ରରେ ଅଗ୍ରଗଣ୍ୟ ରାଜ୍ୟ ଭାବରେ ପରିଚିତ ହେବୁ । ଏକବିଂଶ ଶତାବ୍ଦୀରେ ଆମର ସ୍ଲୋଗାନ ହେବ -

'ଦିଗ୍‌ବିଜୟ ବାନା ପୁଣି ଉଡ଼ାରେ ଓଡ଼ିଆ -ଅର୍ଥନୈତିକ ସମୃଦ୍ଧି କ୍ଷେତ୍ରରେ ।'

# ପୂର୍ବତନ ସ୍ୱତନ୍ତ୍ର ଚିଫ୍ ସେକ୍ରେଟାରୀ

# ଓଡ଼ିଶାର ନିଜସ୍ୱ ଅନୁଷ୍ଠାନ : ଉତ୍କଳ ସମ୍ମିଳନୀ

ଯଦୁନାଥ ଦାଶମହାପାତ୍ର

୧୯୦୩ ମସିହାରେ ଉତ୍କଳ ସମ୍ମିଳନୀର ସୃଷ୍ଟି । ସ୍ରଷ୍ଟା ଉତ୍କଳ ଗୌରବ ମଧୁସୂଦନ ଦାସ । ଏହା ପୂର୍ବରୁ ୧୮୭୧ରେ 'ଉତ୍କଳ ସଭା' ନାମକ ଏକ ସଂଗଠନ ଆରମ୍ଭ ହୋଇଥିଲା । ଏହାର ପ୍ରଥମ ସମ୍ପାଦକ ଥିଲେ ଗୋପାଳ ଚନ୍ଦ୍ର ଦତ୍ତ । ଏହାର ଉଦ୍ଦେଶ୍ୟ ଥିଲା ଓଡ଼ିଆ ଭାଷା ସାହିତ୍ୟର ଉନ୍ନତି । ଏହି ସଭାର ବୈଠକ ପ୍ରାୟ ପ୍ରତ୍ୟେକ ବର୍ଷ ଦୁଇଥର କରି ବସୁଥିଲା । ଏହି ସଭାର ବୈଠକରେ କବିବର ରାଧାନାଥ ରାୟ, ପ୍ୟାରିମୋହନ ଆଚାର୍ଯ୍ୟ ପ୍ରମୁଖ ଶିକ୍ଷାବିତ୍‌ମାନେ ଭାଷଣ ଦେଉଥିଲେ । ମଧୁସୂଦନ ଦାସ ମଧ୍ୟ ଏହି ଉତ୍କଳ ସଭା ସହିତ ସଂପୃକ୍ତ ଥିଲେ । ପରେ ଗୌରୀଶଂକର ରାୟ ସଂପାଦକ 'ଉତ୍କଳ ଦୀପିକା' ମଧ୍ୟ ଏହାର ସମ୍ପାଦକ ହୋଇଥିଲେ । ୧୮୮୫ ମସିହାରେ ମଧୁସୂଦନ ଉତ୍କଳ ସଭାର ସମ୍ପାଦକ ଓ ୧୮୮୮ ମସିହାରେ ଏହାର ଉପ ସଭାପତି ହେଲେ । ଏହି ସମୟରେ ଜାତୀୟ କଂଗ୍ରେସ ସହିତ ଘନିଷ୍ଠ ସଂପର୍କରେ ଆସିଥିଲା ଉତ୍କଳ ସଭା । ଉତ୍କଳ ସଭାର ମୁଖ୍ୟ ଲକ୍ଷ୍ୟ ଥିଲା ଓଡ଼ିଶାର ସ୍ୱତନ୍ତ୍ର ଅସ୍ତିତ୍ୱ । ଓଡ଼ିଆ ଭାଷାଭାଷୀ ବିଚ୍ଛିନ୍ନାଞ୍ଚଳର ଓଡ଼ିଶା ସହିତ ମିଶ୍ରଣ ପ୍ରଭୃତି । ମାତ୍ର ପରବର୍ତ୍ତୀ ସମୟରେ ମଧୁସୂଦନ ଅନୁଭବ କଲେ ଯେ' ଉତ୍କଳ ସଭା ଦ୍ୱାରା ଲକ୍ଷ୍ୟ ପୂରଣ ହେବା ସମ୍ଭବ ନୁହେଁ । ୧୯୦୩ ମସିହା ଡିସେମ୍ବର ମାସରେ ମଧୁସୂଦନ ପ୍ରତିଷ୍ଠା କଲେ ଉତ୍କଳ ସମ୍ମିଳନୀ । ଡିସେମ୍ବର ୩୦ ତାରିଖରେଗ ଏହାର ପ୍ରଥମ ଅଧିବେଶନ କଟକଠାରେ ଅନୁଷ୍ଠିତ ହେଲା । ଏହାର ପୂର୍ବଦିନ ଅର୍ଥାତ୍ ୨୯ ତାରିଖରେ ସେହି କଟକଠାରେ ଅନୁଷ୍ଠିତ ହୋଇଥିଲା ଉତ୍କଳ ସାହିତ୍ୟ ସମାଜର ପ୍ରଥମ ବାର୍ଷିକ ଅଧିବେଶନ । ଉତ୍କଳ ସମ୍ମିଳନୀର ଅଧିବେଶନରେ ଓଡ଼ିଶାର ଅନେକ ରାଜା, ମହାରାଜା, ଜମିଦାର ଯୋଗଦେଇଥିଲେ । ସେହି ଅଧିବେଶନରେ କବିବର ରାଧାନାଥ ନିମ୍ନ ପ୍ରସ୍ତାବଟି ଆଗତ କରିଥିଲେ ଏବଂ ତାହା ସର୍ବସମ୍ମତି କ୍ରମେ ଗୃହୀତ ହୋଇଥିଲା । ପ୍ରସ୍ତାବଟି ଥିଲା - ''ଓଡ଼ିଆ ଭଷାର ଏବଂ ସାହିତ୍ୟର ଉନ୍ନତି ସାଧାନାର୍ଥ ସମ୍ମିଳିତ ଓ ସୁଚାଳିତ ଚେଷ୍ଟାର ଆବଶ୍ୟକତା ଏହି ସମ୍ମିଳନୀ ଉପଲବ୍‌ଧି କରୁଅଛନ୍ତି । ସେହି ଉଦ୍ଦେଶ୍ୟ ସାଧାନାର୍ଥ ନିମ୍ନଲିଖିତ ବ୍ୟକ୍ତିମାନଙ୍କଦ୍ୱାରା ଗୋଟିଏ ସ୍ଥାୟୀ ସମିତି ଗଠିତ ହେଉ । ଉକ୍ତ ସ୍ଥାୟୀ ସମିତି କଟକର 'ଉତ୍କଳ ସାହିତ୍ୟସମାଜ' ସଂଗେ ଯୁକ୍ତହୋଇ ଉଦ୍ଦେଶ୍ୟ ସାଧନ ନିମନ୍ତେ ବିହିତ ଉପାୟର ବିଧାନ କରନ୍ତୁ ।'' ଉତ୍କଳ ଭାଷାର ଇତିହାସ ସଂକଳନ ଓ ପ୍ରାଚୀନ ଉତ୍କଳୀୟ ଗ୍ରନ୍ଥ ସଂଗ୍ରହ ଓ ପ୍ରକାଶ କରିବା ନିମନ୍ତେ ସମ୍ମିଳନୀ ପକ୍ଷରୁ ଉତ୍କଳ ସାହିତ୍ୟ ସମାଜକୁ ସାହାଯ୍ୟ ଦିଆଯିବାର ନିର୍ଦ୍ଧାରିତ ହେଉ ।

**ବ୍ୟକ୍ତିବର୍ଗଙ୍କ ନାମ**

ମହାରାଜା ଶ୍ରୀ ରାମଚନ୍ଦ୍ର ଭଞ୍ଜ, ବାରିପଦା

ରାଜା କିଶୋର ଚନ୍ଦ୍ର ବୀରବର ହରିଚନ୍ଦନ, ତାଳଚେର

ରାଜା ବୈକୁଣ୍ଠନାଥ ଦେ ବାହାଦୂର, ବାଲେଶ୍ୱର

ବାବୁ ମଧୁସୂଦନ ରାଓ

ବାବୁ ଫକୀରମୋହନ ସେନାପତି

ବାବୁ ରାମଶଙ୍କର ରାୟ

ବାବୁ ବିଶ୍ୱନାଥ କର

ବାବୁ ନୀଳମଣି ବିଦ୍ୟାରତ୍ନ
ବାବୁ ଗୋପାଳ ବଲ୍ଲଭ ଦାସ
ବାବୁ ଦାମୋଦର ପଟ୍ଟନାୟକ
ବାବୁ ବ୍ରଜସୁନ୍ଦର ଦାସ
ବାବୁ କାମପାଳ ମିଶ୍ର
ବାବୁ ନୀଳମଣି ଚାନ୍ଦ ଦେ
ବାବୁ ଗୋପାଳ ଚନ୍ଦ୍ର ପ୍ରହରାଜ
ବାବୁ ନନ୍ଦ କିଶୋର ବଳ
ବାବୁ ଅଭିରାମ ଭଞ୍ଜ

ଉତ୍କଳ ସମ୍ମିଳନୀର ଏହି ଅଧିବେଶନ କଟକ ସହରର ଇଦ୍‌ଗା ପଡ଼ିଆରେ ମହା ସମାରୋହରେ ଅନୁଷ୍ଠିତ ହୋଇଥିଲା । ସଭାପତି ହୋଇଥିଲେ ମୟୂରଭଞ୍ଜ ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜ । ଏହି ସଭାରେ ପ୍ରାୟ ପାଞ୍ଚଛଅ ହଜାର ଲୋକ ଯୋଗ ଦେଇଥିଲେ । ତତ୍‌କାଳୀନ କମିଶନ୍‌ର କେ.ଡି.ଗୁପ୍ତ ମଧ ଏହି ସମ୍ମିଳନୀରେ ଉପସ୍ଥିତ ଥିଲେ । ରାଧାନାଥଙ୍କ ଲିଖିତ ସଂସ୍କୃତି ଗୀତ 'ଭାରତ ଗୀତିକା' ଏହି ସମ୍ମିଳନୀରେ ଗାନ କରାଯାଇଥିଲା । ଏହାକୁ ଜାତୀୟ ସଂଗୀତର ମାନ୍ୟତା ଦିଆ ଯାଇଥିଲା ଏବଂ ଗାନ ସମୟରେ ସମସ୍ତେ ନୀରବରେ ଠିଆ ହୋଇଥିଲେ । ଏହି ସଂଗୀତର ପ୍ରଥମ ଦୁଇଧାଡ଼ି ହେଉଛି -

''ସର୍ବେଷାଂ ନୋ ଜନନୀ ଭାରତ-
ଧରଣୀ କଳ୍ପଲତେୟଂ
ଜନନୀ ବତ୍ସଳ ତନୟଗଣୈସ୍ତତ-
ସମ୍ୟକ୍ -ଶର୍ମ ବିଧେୟମ୍ ।....

ଏହି ସମ୍ମିଳନୀରେ ବିଚ୍ଛିନ୍ନାଞ୍ଚଳର ଓଡ଼ିଶା ସହିତ ମିଶ୍ରଣ ଉପରେ ବିଶେଷ ଗୁରୁତ୍ୱ ଦିଆଯାଇଥିଲା । ସମ୍ମିଳନୀର ପରଦିନ ମଧୁବାବୁଙ୍କୁ ସରକାରଙ୍କ ତରଫରୁ ସି.ଆଇ.ଇ. ଉପାଧିରେ ଭୂଷିତ କରାଯାଇଥିଲା ।

୧୯୦୩ରୁ ୧୯୨୦ ଭିତରେ ଉତ୍କଳ ସମ୍ମିଳନୀରେ ୧୬ଟି ବାର୍ଷିକ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ସେତେବେଳେ କଂଗ୍ରେସ ନେତା ଗୋପବଂଧୁ ଦାଶ ଚାହୁଁଥିଲେ ଉତ୍କଳ ସମ୍ମିଳନୀର ଜାତୀୟ କଂଗ୍ରେସ ସହିତ ମିଶ୍ରଣ । ମାତ୍ର ତାହା ହୋଇ ପାରିନଥିଲା । ମଧୁସୂଦନ ଦାସ କିଛିବର୍ଷ ଉତ୍କଳ ସମ୍ମିଳନୀର ସଭାପତି ଥାଇ ଓଡ଼ିଶାର ସମସ୍ୟା ସମାଧାନ ପାଇଁ ଉଦ୍ୟମରତ ଥିଲେ । ତାଙ୍କର ସହଯୋଗୀ ଯେଉଁମାନେ ଥିଲେ ସେମାନେ ହେଲେ ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓ, ବୈକୁଣ୍ଠ ନାଥ ଦେ, ବ୍ରଜସୁନ୍ଦର ଦାସ, ବିଶ୍ୱନାଥ କର, ହରିହର ପଣ୍ଡା ପ୍ରମୁଖ ।

ବହୁ ଘାତ ପ୍ରତିଘାତ ମଧ୍ୟରେ ଉତ୍କଳ ସମ୍ମିଳନୀ ଓଡ଼ିଆ ଜାତିର ସ୍ୱାର୍ଥରକ୍ଷା ପାଇଁ ଉଦ୍ୟମ କରୁଥିଲା । ୧୯୩୪ ମସିହାରେ ଜାତୀୟତାର ମଶାଲଧାରୀ ମଧୁସୂଦନ ଦାସଙ୍କର ମହାପ୍ରୟାଣ ଘଟିଥିଲା । ତାଙ୍କ ପୂର୍ବରୁ ଉତ୍କଳମଣି ଗୋପବଂଧୁ ଦାଶ ୧୯୨୮ ମସିହାରେ ପରଲୋକ ଗମନ କରିଥିଲେ । ୧୯୩୬ ମସିହା ଏପ୍ରେଲ୍ ତା୧ରିଖ ଦିନ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେଲା । ଓଡ଼ିଶାର ତିନିପାଖରେ ଅନେକ ଓଡ଼ିଆ ବିଚ୍ଛିନ୍ନାଞ୍ଚଳହୋଇ ରହିଗଲା । ବିଗତ ଅନେକ ବର୍ଷଧରି ଶ୍ରୀ ବସନ୍ତ କୁମାର ପାଣିଗ୍ରାହୀ ଏହି ଅନୁଷ୍ଠାନକୁ ଜୀବିତ ରଖିଛନ୍ତି । ଓଡ଼ିଆ ଭାଷାର ସଂକଟ ଆଜି ବି ଦୂର ହୋଇନାହିଁ । ଓଡ଼ିଆ ବହିର ପାଠକ ପାଠିକା ସଂଖ୍ୟାର ଦ୍ରୁତହ୍ରାସ ଆଜି ଚିନ୍ତାର କାରଣ ହୋଇଛି । ଉତ୍କଳ ସମ୍ମିଳନୀ ଯେଉଁ ଲକ୍ଷ୍ୟନେଇ ପ୍ରତିଷ୍ଠିତ ହୋଇଥିଲା ସେ ଲକ୍ଷ୍ୟକୁ ପୂର୍ଣ୍ଣାଙ୍ଗ କରିବା ପାଇଁ ଆଜିର କର୍ମକର୍ତ୍ତାମାନେ ଧ୍ୟାନ ଦିଅନ୍ତୁ ।

# ପୂର୍ବତନ ଶିକ୍ଷାମନ୍ତ୍ରୀ, ଓଡ଼ିଶା, ୩୯ ଭି.ଆଇ.ପି. କଲୋନୀ, ଭୁବନେଶ୍ୱର-୧୫

# ଉତ୍କଳ ସମ୍ମିଳନୀର ଶହେଦୁଇବର୍ଷ

## ଡକ୍ଟର ଗୁରୁପ୍ରସାଦ ମହାନ୍ତି

୨୦୦୩ ମସିହା ଡିସେମ୍ବର ୩୧ ତାରିଖରେ ଉତ୍କଳ ସମ୍ମିଳନୀର ଶତାବ୍ଦୀ ଉତ୍ସବ କଟକଠାରେ ଅନୁଷ୍ଠିତ ହେଲା । ତାପରେ ଆରମ୍ଭ ହେଲା ଦ୍ୱିତୟ ଶତାବ୍ଦୀ । ବିଗତ ଶତାବ୍ଦୀରେ ଏହି ଅନୁଷ୍ଠାନ ସୃଷ୍ଟି ହୋଇଥିଲା କଟକର ଇଦ୍‌ଗା ପଡ଼ିଆରେ । ଯେଉଁ ସ୍ୱାଭିମାନୀ ଓଡ଼ିଆମାନେ ଇଦ୍‌ଗା ପଡ଼ିଆରେ ଏକତ୍ରିତ ହୋଇ ଓଡ଼ିଆଭାଷୀ ଅଞ୍ଚଳଗୁଡ଼ିକରଗ ଏକତ୍ରୀକରଣ ଦାବି କରିଥିଲେ ସେମାନଙ୍କ ପ୍ରତି ସମଗ୍ର ଓଡ଼ିଆ ଜାତି କୃତଜ୍ଞ । ତେବେ ଏହି ପ୍ରାତଃସ୍ମରଣୀୟ ବ୍ୟକ୍ତିମାନଙ୍କ ମଧ୍ୟରୁ ମାତ୍ର କେତେଜଣଙ୍କ ନାମ ସର୍ବାଦୌ ମନକୁ ଆସେ, ସେମାନେ ହେଲେ ଉତ୍କଳ ଗୌରବ ମଧୁସୂଦନ, କର୍ମବୀର ଗୌରୀଶଙ୍କର, ରାମଶଙ୍କର, ଫକୀରମୋହନ, ରାଧାନାଥ, ନୀଳମଣି ବିଦ୍ୟାରତ୍ନ, ଜଗବନ୍ଧୁ ସିଂହ, ହରିହର ମର୍ଦ୍ଦରାଜ, ଶ୍ୟାମସୁନ୍ଦର ରାଜଗୁରୁ, ଶ୍ରୀବତ୍ସ ପଣ୍ଡା, ଲୋକନାଥ ବିଦ୍ୟାଧର, ଗନ୍ନେୟା ଶାସ୍ତ୍ରୀ, ଭକ୍ତକବି ମଧୁସୂଦନ, ବାଗ୍ମୀ ବିଶ୍ୱନାଥ କର, ଗଙ୍ଗାଧର ମେହେର, ନନ୍ଦକିଶୋର ବଳ, ଗୋପାଳ ବଲ୍ଲଭ ଦାସ, ବୈକୁଣ୍ଠନାଥ ଦେ, ଯୋଗେଶ ଚନ୍ଦ୍ର ରାୟବିଦ୍ୟାନିଧି, ଗୋପାଳ ଚନ୍ଦ୍ର ପ୍ରହରାଜ, ବ୍ରଜସୁନ୍ଦର ଦାସ, ଉତ୍କଳମଣି ଗୋପବନ୍ଧୁ, ଶ୍ରୀରାମଚନ୍ଦ୍ର ଭଞ୍ଜ, ମହନ୍ତ ବିହାରୀ ଦାସ, ବଳଭଦ୍ର ସୂପକାର, ଶ୍ରୀପତି ମିଶ୍ର ପ୍ରଭୃତି କବି ଓ ନେତୃବୃନ୍ଦ । ପରବର୍ତ୍ତୀ କାଳରେ ମହାରାଜା କୃଷ୍ଣଚନ୍ଦ୍ର ଗଜପତି, ସତ୍ୟନାରାୟଣ ରାଜଗୁରୁ, ଗୋଦାବରୀଶ ମିଶ୍ର, ନୀଳକଣ୍ଠ ଦାଶ ଓ ଆଚାର୍ଯ୍ୟ ହରିହର ଆଦି ଏହି ଅନୁଷ୍ଠାନ ସହିତ ଜଡ଼ିତ ହେଲେ । ୧୯୩୦ ମସିହା ପର୍ଯ୍ୟନ୍ତ ଉତ୍କଳ ସମ୍ମିଳନୀର କର୍ମକର୍ତ୍ତାବୃନ୍ଦ ଓଡ଼ିଆମାନଙ୍କ ପାଇଁ ଏକ ସ୍ୱତନ୍ତ୍ର ରାଜ୍ୟ ସୃଷ୍ଟି କରିବା ଲାଗି ଇଂରେଜ ସରକାରଙ୍କ ପାଖରେ ଦୃଢ଼ଦାବି କରି ୧୯୩୬ ମସିହା ଅପ୍ରେଲ ପହିଲା ଦିନ ସ୍ୱତନ୍ତ୍ର ଓଡ଼ିଶା ରାଜ୍ୟ ଲାଭ କରିବାରେ କୃତକାର୍ଯ୍ୟ ହୋଇଥିଲେ । ଉତ୍କଳ ଗୌରବ ମଧୁସୂଦନଙ୍କ ମହାପ୍ରାୟାଣ ପରେ ଏହି ଅନୁଷ୍ଠାନ ଦୁର୍ବଳ ହୋଇପଡ଼ିଲା । ଓଡ଼ିଆ ନେତୃବୃନ୍ଦ ଏ ଦେଶର ସ୍ୱାଧୀନତା ଆନ୍ଦୋଳନରେ ଝାସଦେଇ ଓଡ଼ିଶା ବାହାରେ ଥିବା ବିଚ୍ଛିନ୍ନାଞ୍ଚଳର ଓଡ଼ିଆମାନଙ୍କ ପ୍ରତି ବୀତସ୍ପୃହ ହୋଇ ପଡ଼ିଲେ । ୧୯୪୮ ମସିହାରେ ଗଡ଼ଜାତ ମିଶ୍ରଣ ହେଲା; ମାତ୍ର ଚାରିମାସ ପରେ ଷଢ଼େଇକଳା, ଖରସୁଆଁ ରାଜ୍ୟ ଦୁଇଟିକୁ ବିହାର ସହିତ ମିଶାଇ ଦିଆଗଲା । ଏହି ଅନ୍ୟାୟ ବିରୁଦ୍ଧରେ ସଂଗ୍ରାମ କରିବାକୁ ଉତ୍କଳ ସମ୍ମିଳନୀର କର୍ମକର୍ତ୍ତାମାନଙ୍କ ପକ୍ଷରେ ଆଉ ସମ୍ଭବ ହୋଇ ପାରିଲାନାହିଁ । ୧୯୫୭ ମସିହାରେ ବିଧିବଦ୍ଧ ଭାବେ ଷଢ଼େଇକଳା ଓ ଖରସୁଆଁ ରାଜ୍ୟ ଦୁଇଟି ଓଡ଼ିଶାରୁ ଅଲଗା ହୋଇଗଲା । ହେଲେ ଉତ୍କଳ ସମ୍ମିଳନୀ ପକ୍ଷରୁ ଏଦୁଇ ରାଜ୍ୟକୁ ଓଡ଼ିଶାକୁ ଫେରାଇ ଦେବା ପାଇଁ କେନ୍ଦ୍ର ସରକାରଙ୍କୁ ବାରମ୍ବାର ଅନୁରୋଧ ଜଣାଇବା ଚାଲୁ ରହିଲା ।

ଗତ ଶତାବ୍ଦୀର ନବେ ଦଶକର ଦ୍ୱିତୀୟାର୍ଦ୍ଧରେ ସ୍ୱର୍ଗତଃ ହରିଶ୍ଚନ୍ଦ୍ର ବକ୍ସିପାତ୍ର ସମ୍ମିଳନୀର କାର୍ଯ୍ୟକାରୀ ସଭାପତି ହେବାପରେ ଏହାର ମୁଖ୍ୟ କାର୍ଯ୍ୟାଳୟ ଭୁବନେଶ୍ୱରଠାରେ କାର୍ଯ୍ୟ କଲା ଓ ଜିଲାଶାଖାମାନ ଗଠନ କରିବାରେ ଉଦ୍ୟମ ହେଲା । ଫଳରେ କେତେକ ଜିଲାରେ ଉତ୍କଳ ସମ୍ମିଳନୀ କାର୍ଯ୍ୟକ୍ରମ ପ୍ରତି ଗୁରୁତ୍ୱ ଦିଆଗଲା । ଏସବୁ ଶାଖା ମଧ୍ୟରେ କଟକ, ଗଞ୍ଜାମ, ଭୁବନେଶ୍ୱର (ଖୋର୍ଦ୍ଧା), ବାଲେଶ୍ୱର, ମୟୂରଭଞ୍ଜ, କେନ୍ଦୁଝର, ଢେଙ୍କାନାଳ, କୋରାପୁଟ, ଜଗତସିଂହପୁର, କେନ୍ଦ୍ରାପଡ଼ା, ସୁନ୍ଦରଗଡ଼, ରାଉରକେଲା, ପାରାଦ୍ୱୀପ, ଭଦ୍ରକ, ସୋର ଆଦି ଶାଖାମାନଙ୍କର ନାମ ଉଲ୍ଲେଖଯୋଗ୍ୟ ।

୧୯୯୮ ମସିହାରେ କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ରଙ୍କ ରଚିତ 'ବନ୍ଦେ ଉତ୍କଳ ଜନନୀ' ସଙ୍ଗୀତକୁ ଓଡ଼ିଆ ଜାତିର ଜାତୀୟ ସଙ୍ଗୀତ ଭାବରେ ଉତ୍କଳ ସମ୍ମିଳନୀ ଘୋଷଣା କଲା । ଫଳରେ ପ୍ରତି ସଭା ସମିତି ପ୍ରାରମ୍ଭରେ ଏହି ମାତୃବନ୍ଦନା ଗାନ କରିବାର ପ୍ରକ୍ରିୟା ଓଡ଼ିଆମାନଙ୍କ ମନରେ ସ୍ୱାଭିମାନ ସୃଷ୍ଟି କରିବାର ଏକ ବଳିଷ୍ଠ ପଦକ୍ଷେପ ହୋଇଛି । ଉତ୍କଳ ସମ୍ମିଳନୀର ଏହି ନିଷ୍ପତ୍ତିକୁ ଓଡ଼ିଶାର ବିଧାନସଭା ତଥା ନବୀନ ପଟ୍ଟନାୟକ ମନ୍ତ୍ରୀମଣ୍ଡଳ ସ୍ୱୀକୃତି ଦେଇଛନ୍ତି ।

୧୯୯୮ ମସିହା ଜୁଲାଇଠାରୁ ନଭେମ୍ବର ମାସ ମଧ୍ୟରେ ଯୁକ୍ତରାଷ୍ଟ୍ର ଆମେରିକାର ମିନିଆପଲିସ୍, ନ୍ୟୁୟର୍କ, ୱାଶିଂଟନ, ଡାଲସ୍, ଡେଟ୍ରୟେଟ୍, ଟେନିସି ଓ କାନାଡ଼ାର ଟରଣ୍ଟୋଠାରେ ଉତ୍କଳ ସମ୍ମିଳନୀର ଶାଖାମାନ ପ୍ରତିଷ୍ଠିତ ହେଲା । ଫଳରେ ଏହି ଅନୁଷ୍ଠାନ ଏକ ଆନ୍ତର୍ଜାତିକ ଓଡ଼ିଆ ଅନୁଷ୍ଠାନ ଭାବେ ମାନ୍ୟତା ପାଇଲା । ଏହାପରେ ଚଳିତ ଶତାବ୍ଦୀର ୨୦୦୨ ମସିହାରେ କାଲିଫର୍ଣ୍ଣିଆର ସାନ୍‌ଫ୍ରାନ୍‌ସିସ୍କୋଠାରେ ଉତ୍କଳ ସମ୍ମିଳନୀ ଶାଖା ପ୍ରତିଷ୍ଠିତ ହେଲା । ମିନିଆପଲିସ୍‌ର ଓଡ଼ିଆମାନେ ଝାଡ଼ଖଣ୍ଡ ରାଜ୍ୟରେ ଓଡ଼ିଆ ଶିକ୍ଷାକେନ୍ଦ୍ର ଖୋଲିବା ପାଇଁ ତିନିଲକ୍ଷ ଟଙ୍କା ଦାନକଲେ । ଫ୍ଲୋରିଡା ଠାରେ ଥିବା ପୁରୀଜିଲା ରେଞ୍ଚ ଶାସନର ଡାକ୍ତର ଉଦୟନାଥ ଦାସ ମଧ୍ୟ ଏଥିଲାଗି ଦୁଇଲକ୍ଷ ଟଙ୍କା ଦାନକଲେ । ଏ ସମସ୍ତ ଅର୍ଥ ସ୍ଥାୟୀଭାବେ ଜମା ରଖାଯାଇ ତାର ସୁଧରେ ଝାଡ଼ଖଣ୍ଡରେ ଓଡ଼ିଆ ଶିକ୍ଷାକେନ୍ଦ୍ର ମାନ ଖୋଲାଗଲା।

୨୦୦୨ ମସିହା ଅକ୍ଟୋବର ମାସରେ ଓଡ଼ିଶା ଗଣଶିକ୍ଷା ମନ୍ତ୍ରୀ ଶ୍ରୀଯୁକ୍ତ ସୁରେନ୍ଦ୍ର ନାଥ ନାୟକ, ଝାଡ଼ଖଣ୍ଡ ଗସ୍ତରେ ଯାଇ ସେଠାକାର ଓଡ଼ିଆମାନଙ୍କର ମାତୃଭାଷା ପ୍ରତି ଆଦର ଦେଖିବା ପରେ ସମସ୍ତ ବିଚ୍ଛିନ୍ନାଞ୍ଚଳରେ ଓଡ଼ିଆ ଶିକ୍ଷାର ପ୍ରସାର ଲାଗି ଉତ୍କଳ ସମ୍ମିଳନୀ ଜରିଆରେ ଅର୍ଥ ଉପଯୋଗ କରିବାର ବ୍ୟବସ୍ଥା କଲେ । ୨୦୦୪ ମସିହାରେ ଏହି ଅର୍ଥର ଉପଯୋଗ କରାଯାଇ ଝାଡ଼ଖଣ୍ଡ, ଛତିଶଗଡ଼, ଆନ୍ଧ୍ର ଓ ପଶ୍ଚିମବଙ୍ଗରେ ଥିବା ବିଚ୍ଛିନ୍ନାଞ୍ଚଳ ମାନଙ୍କରେ ଓଡ଼ିଆ ଶିକ୍ଷାକେନ୍ଦ୍ରମାନ ଆରମ୍ଭ କରାଗଲା । ଏପର୍ଯ୍ୟନ୍ତ ଝାଡ଼ଖଣ୍ଡରେ ୭୬ଟି ଓଡ଼ଆ ଶିକ୍ଷାକେନ୍ଦ୍ର ଖୋଲାଯାଇ ୨୫୦୦ ଛାତ୍ରଛାତ୍ରୀଙ୍କୁ ଓଡ଼ିଆ ଶିକ୍ଷା ଦିଆଯାଉଛି । ଆଠଗୋଟି ଓଡ଼ିଆ ଉଚ୍ଚବିଦ୍ୟାଳୟ ଓ ସାତଟି ମଧ୍ୟ ବିଦ୍ୟାଳୟରେ ମଧ୍ୟ ଓଡ଼ିଆ ମାଧ୍ୟମରେ ଶିକ୍ଷାଦାନ କରାଯାଉଛି । ଆନ୍ଧ୍ର ପ୍ରଦେଶରେ ଥିବା ତିନିଗୋଟି ଓଡ଼ିଆ ଅଧ୍ୟୁଷିତ ଜିଲାରେ ୭୦ଟି ଓଡ଼ିଆ ଶିକ୍ଷାକେନ୍ଦ୍ର ଖୋଲାଯାଇଛି ୨୦ଟି ସରକାରୀ ବିଦ୍ୟାଳୟରେ ଓଡ଼ିଆ ଶିକ୍ଷା ଦେବାପାଇଁ ଶିକ୍ଷକ ରଖାଯାଇ ଓଡ଼ିଆ ଛାତ୍ରଛାତ୍ରୀମାନଙ୍କୁ ମାତୃଭାଷା ଓଡ଼ିଆ ପଢ଼ାଇ ଦିଆଯାଉଛି । ଛତିଶଗଡ଼ ରାଜ୍ୟରେ ମଧ୍ୟ ୬୦ଟି ଓଡ଼ିଆ ଚାଟଶାଳୀ ଖୋଲାଯାଇ ୨୦୦୦ ପିଲାଙ୍କୁ ଓଡ଼ିଆ ପଢ଼ାଯାଉଛି ।

ସବୁଠାରୁ ଆନନ୍ଦର କଥା ହେଉଛି ପଶ୍ଚିମବଙ୍ଗର ମେଦିନୀପୁର ଜିଲାର ଓଡ଼ିଆ ଶିକ୍ଷାକେନ୍ଦ୍ର ସ୍ଥାପନ । ଏପର୍ଯ୍ୟନ୍ତ ସେଠାକାର ଛଅଗୋଟି ଥାନାରେ (ଗୋପିବଲ୍ଲଭପୁର, ବେଲିଆବେଡ଼ା, ଝାରଗ୍ରାମ, ନୟାଗ୍ରାମ, ଦାନ୍ତୁନ ଓ ଜାମବନି) ୬୦ଟି ଓଡ଼ିଆ ଶିକ୍ଷାକେନ୍ଦ୍ର ସ୍ଥାପନ କରାଯାଇ ପ୍ରାୟ ୨୦୦୦ ଓଡ଼ିଆ ଛାତ୍ରଛାତ୍ରୀଙ୍କୁ ଓଡ଼ିଆ ଶିକ୍ଷା ଦିଆଯାଉଛି ।

ଇତି ମଧ୍ୟରେ ଓଡ଼ିଶା ସରକାରଙ୍କ ଶିକ୍ଷା ବିଭାଗ ପକ୍ଷରୁ ଉତ୍କଳ ସମ୍ମିଳନୀର ଦାବି ବିଚାରକୁ ନେଇ ବିଚ୍ଛିନ୍ନାଞ୍ଚଳର ଓଡ଼ିଆ ଛାତ୍ରଛାତ୍ରୀମାନଙ୍କ ପାଇଁ ଓଡ଼ିଶାର ଇଞ୍ଜିନିୟରିଂ ମହାବିଦ୍ୟାଳୟ ମାନଙ୍କରେ ଏବେ ଓଡ଼ିଆଭାଷା ଏକ ବାଧ୍ୟତାମୂଳକ ପରୀକ୍ଷଣୀୟ ବିଷୟଭାବେ ପ୍ରତି ଶ୍ରେଣୀରେ ପଢ଼ାଯାଉଛି । ଓଡ଼ିଆ ପ୍ରାଥମିକ ବିଦ୍ୟାଳୟମାନଙ୍କରେ ଓଡ଼ିଆ ଶିକ୍ଷାଦାନର ମାନ କମିଯିବା ଉତ୍କଳ ସମ୍ମିଳନୀର ମୁଣ୍ଡବ୍ୟଥାର କାରଣ ହୋଇଛି । ତେଣୁ ସମ୍ମିଳନୀ ପକ୍ଷରୁ ପ୍ରାଥମିକ ବିଦ୍ୟାଳୟଗୁଡ଼ିକର ଶିକ୍ଷକ ଶିକ୍ଷୟିତ୍ରୀମାନଙ୍କୁ

ବର୍ଣ୍ଣବୋଧ ପଢ଼ାଇ ପ୍ରତି ବିଦ୍ୟାଳୟର ଛାତ୍ରଛାତ୍ରୀଙ୍କୁ ବର୍ଣ୍ଣବୋଧ ଶିକ୍ଷା ଦେବାକୁ ସରକାରଙ୍କୁ ଅନୁରୋଧ କରାଯାଇଛି ।

ଓଡ଼ିଶାର ପ୍ରତି ସହର ତଥା ମଫସଲର ଅଧିକାଂଶ ଦୋକାନ ଓ ସରକାରୀ କାର୍ଯ୍ୟାଳୟ ମାନଙ୍କରେ ଇଂରାଜୀ ନାମଫଳକ (ସାଇନ୍‌ବୋର୍ଡ଼) ଥିବା ଯୋଗୁଁ ଉତ୍କଳ ସମ୍ମିଳନୀ ପକ୍ଷରୁ ସରକାରଙ୍କ ଠାରେ ଏହା ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ କରିବାକୁ ଦାବି କରାଯାଇଥିଲା । ଫଳରେ ଶ୍ରମ ମନ୍ତ୍ରଣାଳୟ ଦ୍ୱାରା ଏହା ବିରୁଦ୍ଧରେ କଡ଼ା ନିୟମ ପ୍ରଣୟନ କରାଯାଇଛି । ନାମ ଫଳକରେ ଓଡ଼ିଆ ଭାଷାକୁ ମୁଖ୍ୟସ୍ଥାନ ନଦେଲେ ପ୍ରଥମେ ଟ୫୦୦/- ଜୋରିମାନା ବା ଏକମାସ ସଶ୍ରମ କାରାଦଣ୍ଡର ବ୍ୟବସ୍ଥା ହୋଇଛି । ପରବର୍ତ୍ତୀ ଅବମାନନା ପାଇଁ ଟ୧୦,୦୦୦/- (ଦଶହଜାର ଟଙ୍କା) ପର୍ଯ୍ୟନ୍ତ ଜୋରିମାନା ଓ ଛଅମାସ ଜେଲଦଣ୍ଡ ଆଦେଶ ହୋଇଛି ।

ଉତ୍କଳ ସମ୍ମିଳନୀ ଗୋଟିଏ ଶତାବ୍ଦୀ ଅତିବାହିତ କରି ତାର ପ୍ରଥମ ବର୍ଷ ମଧ୍ୟରେ ଯଥେଷ୍ଟ କାର୍ଯ୍ୟ କରିପାରିବାର ସନ୍ତୋଷ ମନରେ ଆଣିବା କଥା ନୁହେଁ । ଯେତେଦିନ ପର୍ଯ୍ୟନ୍ତ ମାତୃଭାଷା ଓଡ଼ିଆକୁ ଓଡ଼ିଶାର ପ୍ରତ୍ୟେକ ନାଗରିକ ପ୍ରାଣଦେଇ ଭଲପାଇ ପାରିନାହାନ୍ତି, ସେ ପର୍ଯ୍ୟନ୍ତ ଉତ୍କଳ ସମ୍ମିଳନୀର କୌଣସି ସଦସ୍ୟ ଶାନ୍ତିରେ ରହିପାରିବେ ନାହିଁ । ଏବେ ଏହି ଜାତୀୟ ଅନୁଷ୍ଠାନର ଏକଶହ ଦୁଇବର୍ଷ ଆରମ୍ଭ ହୋଇଛି । ପୂର୍ବ ବର୍ଷମାନଙ୍କ ତୁଳନାରେ ଏବର୍ଷ ସମ୍ମିଳନୀ ଅଧିକ ସାଫଲ୍ୟ ମଣ୍ଡିତ ହେଉ, ଏହାହିଁ କାମନା ।

# ଉପସଭାପତି, ଉତ୍କଳ ସମ୍ମିଳନୀ

# ଇଏ ସେ ଓଡ଼ିଶା ନୁହେଁ

ଭୂପେନ୍ ମହାପାତ୍ର

ଇଏ ସେ ଓଡ଼ିଶା କେବେ ବି ହୋଇ ନପାରେ । ଆମେ ଯାହା ଦେଖିଥିଲୁଁ, ହଜାରେ ବା ଦୁଇ ହଜାର ବର୍ଷ ପୂର୍ବେ ଯାହା ଆମର ଅଛି ବୋଲି ଶୁଣିଥିଲୁଁ; ଯାହା ଆମର ବୋଲି ଜାଣିଥିଲୁଁ କିମ୍ବା ଯାହା ଆମର ପୂର୍ବ ପୁରୁଷମାନେ ଆମ ପାଇଁ ଛାଡ଼ି ଯାଇଥିଲେ ଏବକୁ ଆମେ ତାହା ଆମର ବୋଲି କହି ଗର୍ବ କରିବା ପାଇଁ, ସେ ଓଡ଼ିଶା କିନ୍ତୁ ଏଇଟା ନୁହେଁ । ସେ ଓଡ଼ିଶା ଏକ ସ୍ୱତନ୍ତ୍ର ଓଡ଼ିଶା । ସେ ମଣିଷମାନେ ବି ଥିଲେ ସ୍ୱତନ୍ତ୍ର । ସେମାନଙ୍କର ଭାଷା, ଭାବ, ଚିନ୍ତା, ଚେତନା, ଅଭିମାନ ଓ ସ୍ୱାଭିମାନ ଏସବୁ ଥିଲା ଭିନ୍ନ । ଏବେ ତା'ର କାଣିଚାଏ ମଧ୍ୟ ଆମେ ଦେଖିବାକୁ ପାଇବାନି । ତାର ମାନଚିତ୍ର ମଧ୍ୟ ଥିଲା ଅଲଗା । ସେ ଓଡ଼ିଶାର ମାନଚିତ୍ରରେ ଓଡ଼ିଆର ଗୋଟାଏ ସ୍ୱତନ୍ତ୍ର ମନ ଲାଗି ରହିଥିଲା । ସେ ମନ ସହିତ ମାଟିର ଏକୀଭୂତ ମିଶ୍ରଣ ମଧ୍ୟ ହେଇଥିଲା । ମାଟିମନସ୍କ ବୋଲି ଯାହା କୁହାଯାଏ, ମାଟିକୁ ଭଲ ପାଇବା ଏକ ଭିନ୍ନ କଳା । ସେ କଳାକୁ ସମସ୍ତେ ଆପଣେଇ ପାରନ୍ତି ନାହିଁ । କାରଣ ସେ ମାଟିର ମହମହ ବାସ୍ନା ସବୁ ନାକକୁ ବିଭୋରିତ କରେ ନାହିଁ ।

ସେ ଓଡ଼ିଶାର ଭୂଗୋଳ ଥିଲା ଭିନ୍ନ । ସେ ଭୂଗୋଳରେ ଭୂ ରୁ ଭୂମାଯାଏ ପରିବ୍ୟାପ୍ତ ଥିଲା ଭିନ୍ନ ଆକାଶ । ସେ ଆକାଶରେ ଥିଲେ ଆଉ ଏକ ସୂର୍ଯ୍ୟ ଓ ଚନ୍ଦ୍ର । ତାର ତାରକା ସବୁ ନିଜ ନିଜ ଆଲୋକରେ ଦୀପ୍ତିମାନ । ସବୁ ତାରାହିଁ ଥିଲେ ଧ୍ରୁବତାରା । ସବୁ ଧ୍ରୁବତାରା ପଥ କଢ଼େଇ ପାରୁଥିଲେ । ପଥ ପରିଷ୍କାର କରି ଦେଇ ପାରୁଥିଲେ । ସେ ଆଲୋକରେ ବାଟ ଦେଖି ହେଉଥିଲା, ଦିଗବି ବାରି ହେଉଥିଲା । ଦିଗ ବାରି ହେଉଥିଲା ବୋଲିତ ଆମେ ଯାଇ ପାରୁଥିଲୁଁ ଦିଗରୁ ଦିଗକୁ । ମେରୁରୁ ମେରୁକୁ । ମଥା ଉପରେ ଥିଲା ଅନନ୍ତ ନୀଳ ଆକାଶ ଓ ଆଖି ଆଗରେ ଥିଲା ଅନନ୍ତ ନୀଳ ଜଳରାଶି । ସେଠି ବାଟ କଢ଼ାଉ ଥିଲା ସେଇ ଧ୍ରୁବତାରା । ଓଡ଼ିଶାର ଧ୍ରୁବତାରା ତାକୁ ବରାବର ବାଟ କଢ଼େଇ ଆସିଚି । ସୁଦିନରେ ଓ ଦୁର୍ଦ୍ଦିନରେ । ସେ ସବୁ ଥିଲା ବୋଲି ଓଡ଼ିଆ ସାଧବପୁଅ ମାଡ଼ି ଯାଉଥିଲା ଗୋଟିଏ ଗୋଲକରୁ ଆଉ ଏକ ଗୋଲକକୁ । ବହି ଆଣୁଥିଲା ହୀରାନୀଳା ମୋତିମାଣିକ୍ୟ ସବୁ । ସୁନାବି ଫଳୁଥିଲା ମାଟିରେ । ତା'ରି ଉପରେ ଲୋଭ ଥିଲା ଅନେକଙ୍କର । ଘୋଡ଼ା ଓ ହାତୀ ଛୁଟେଇ ମାଡ଼ି ଆସୁଥିଲେ ପଙ୍ଗପାଳ ଦଳ । ଲୁଟି ନେଉଥିଲେ ସବୁ । ଲୁଟିବା ଥିଲା ସେମାନଙ୍କ କାମ । ମାଡ଼ିବି ଆସୁଥିଲେ ସଶସ୍ତ୍ର ସେନାନୀ । ଗୋଟାଏ ଜଘନ୍ୟ ବିଳାସିତାରେ ସେମାନେ ରକ୍ତାକ୍ତ କରି ଦେଉଥିଲେ ଆମ ମାଟି ଓ ନଈକୁ । ବିଭତ୍ସ ଯୁଦ୍ଧର ଆଦିମ ପ୍ରବୃତ୍ତିକୁ ଓଡ଼ିଆ ମୁକାବିଲା କରିଥିଲା ଜୀବନ ଦେଇ, ପ୍ରାଣଦେଇ । କିନ୍ତୁ କେବେ ମୁଣ୍ଡ ନୁଆଁଇ ନଥିଲା । ପଦାନତ ହେଇ ନଥିଲା । ଭାଙ୍ଗିଯାଏ, ସେ କେବେବି ନଇଁ ନାହିଁ । ନିଃଶେଷ ହେଇ ଯାଇଚି, ହାରି ନାହିଁ ।

ପରବର୍ତ୍ତୀ ଦୃଶ୍ୟ ଆହୁରି ଆମୋଦିତ କରେ । ବୀଜିତ ନଇଁ ପଡ଼ିଚି ନିଃଶେଷିତର କବର ପାଖରେ ନୁହେଁ, ଶବ ପାଖରେ । ଆଣ୍ଠୁମାଡ଼ି ବସିଚି । ପ୍ରଣିପାତ ଜଣେଇଚି ପାଦ ପାଖରେ । ସ୍ୱୀକାର କରିଚି ବୀରତ୍ୱକୁ । ନମସ୍କାର କରିଚି ବୀରର ମାଟିକୁ । ବଦଳି ଯାଇଚି ପୃଥିବୀ । ଯୁଦ୍ଧର ପୃଥିବୀ ହେଇ ଯାଇଚି ପ୍ରେମର ପୃଥିବୀ । ଅମାନବିକତା ଓ ହିଂସାର ପୃଥିବୀ ରୂପାନ୍ତରିତ ହେଇ ଯାଇଚି ସ୍ନେହ, ଶ୍ରଦ୍ଧାର ପୃଥିବୀରେ । ରକ୍ତ ବିବର୍ତ୍ତିତ ହେଇ ଯାଇଚି ଫୁଲରେ । ସେ ଫୁଲର୍ ମହକ ବିଛାଡ଼ି ହୋଇ ପଡ଼ିଲା ବଣ ପାହାଡ଼, ନଈ, ନାଳ, କ୍ଷେତ, ଖମାର ସବୁଠି । ସବୁଠି ମହକି ଉଠିଲା । ତାର ଆକାଶ ଓ ବତାସ ।

ଜନ୍ମନେଲା ଆଉ ଏକ ପୃଥିବୀ । ସେ ପୃଥିବୀ ଥିଲା ଶାନ୍ତ ଓ ସୁନ୍ଦର । ସେ ସୁନ୍ଦର ପୃଥିବୀରେ ନଥିଲା ଭୟ ଓ ଭୀରୁତା । ସେ ପୃଥିବୀରେ ବି ନଥିଲା ଅହଂ ଓ ଅହମିକା । ନଥିଲା ସେଠି ମୋହ ଓ ମାତ୍ସର୍ଯ୍ୟ । ଏକ ନୂତନ ଓଡ଼ିଶାର ଜନ୍ମହେଲା ସେଇଦିନ । ନୂତନ ଓଡ଼ିଶାକୁ ସ୍ୱାଗତ ଜଣେଇ ଥିଲା ନୂତନ ସୂର୍ଯ୍ୟ । ସେ ସୂର୍ଯ୍ୟକିରଣରେ ବିଞ୍ଚି ହେଇ ଯାଇଥିଲା ଶାନ୍ତି, ମୈତ୍ରୀ ଓ ପ୍ରେମର ପରାଗ ସବୁ । ଅତୀତର ବିଷାଦ, କାଳିମା, ଦୁଃଖ ଓ ଅବସାଦକୁ ଭୁଲି ନୂଆ ଓଡ଼ିଶାଟିଏ ତିଆରି ହେଲା ।

ତା ପରେ ବିତିଗଲା ବର୍ଷ ପରେ ବର୍ଷ । ଶହେ କି ହଜାରେ । ଅବା ତାହାଠାରୁ ଆହୁରି ବେଶୀ । ଏ ଦୀର୍ଘ ସମୟ ଭିତରେ ଓଡ଼ିଶା ନିଜକୁ ଦୃଢ଼ ଭାବରେ ଠିଆ କରେଇଚି । ଠିଆ ହେଇଚି ନିଜର ସମସ୍ତ ସ୍ୱାତନ୍ତ୍ର୍ୟ ନେଇ । ନିଜର ପରିଚୟ ତିଆରି କରିଚି । ନିଜର ଆଇଡେଣ୍ଟିଟି ଅନ୍ୟକୁ ଦେଇଚି । କହିଚି, ଦେଖ ଇଏ କିଏ । ଚିହ୍ନ ତାକୁ । ତାର ସେ ପରିଚୟରେ ଥିଲା ଜଗନ୍ନାଥ-ସାମ୍ୟର ପ୍ରତୀକ, ମୈତ୍ରୀର ପ୍ରତୀକ । ସିଏ ଠାକୁର ନୁହେଁ କି ଦେବତା ନୁହେଁ । ଠାକୁର ଦେବତା ସେମିତି ହୁଅନ୍ତି ନାହିଁ । ତାର ଗୋଟାଏ ପ୍ରତୀତାତ୍ମକ ଇଙ୍ଗିତଟା ବଡ଼ କଥା । ତାକୁ ଦେଖିଲେ ସେଠି ଦେବତା ମିଳନ୍ତି ନାହିଁ । ମିଳେ ମାନବତା । ତା ଭିତରେ ସମସ୍ତଙ୍କୁ ସମାନ ଆଖିରେ ଦେଖୁଥିବା ବିଶାଳ ପୃଥିବୀଟିଏ ଅଛି । ସେ ପୃଥିବୀରେ ଥାଆନ୍ତି ଜୟଦେବ, ଚୈତନ୍ୟ ଓ ଜଗନ୍ନାଥ ଦାସ । ସେଠିବି ଥାଆନ୍ତି 'ନବମ ଅବତାର' ନିଜେ । ଜଗନ୍ନାଥ ତାଙ୍କୁ କୋଳେଇ ନେଇ କହିଥିଲେ 'ତୁ ହିଁ ସତ୍ୟ, ଆଉ ସବୁ ମିଥ୍ୟା' । ତାର ପ୍ରମାଣ ପାଇଁ ସେ ତାଙ୍କ ପାଇଁ ନିଜ ଦେହରେ ସ୍ୱତନ୍ତ୍ର ସ୍ଥାନଟିଏ ଛାଡ଼ିଗଲେ ।

ଆଜି ଖାଲି ଓଡ଼ିଶା ନୁହେଁ ସମସ୍ତ ଭାରତ ବର୍ଷ, ସମଗ୍ର ପୃଥିବୀ ଆମ ଜଗନ୍ନାଥଙ୍କ 'ନବମ ଅବତାର' ପାଇଁ ଗର୍ବିତ । ତାର ଶ୍ରେଷ୍ଠତ୍ୱ ସର୍ବାଗ୍ରେ । ସେ ଶ୍ରେଷ୍ଠତ୍ୱ ଆମେ ଦେଇ ନାହୁଁ । ଦେଇଚନ୍ତି ଜଗନ୍ନାଥ ନିଜେ ।

ଓଡ଼ିଶାରେ ସେ ଆଇଡେଣ୍ଟିରେ ସେତିକିବେଳେ ସୃଷ୍ଟିହେଲା ତାର ଭାଷା । ଜାତିଟିଏ ଗଠିତ ହେଲା । ଗୋଟିଏ ବିଶାଳ ତଥା ମହାନ ଜାତି । ଯୋଉ ଜାତିର ସ୍ୱତନ୍ତ୍ର ଭାଷା ଅଛି, ସାହିତ୍ୟ ଅଛି ତାକୁ ମହାନ କୁହାଯିବ । ଭାଷା ସୃଷ୍ଟି ହେଉହେଉ ତାର ମଧ୍ୟ ସୃଷ୍ଟି ହେଇଗଲା ସ୍ୱତନ୍ତ୍ର ମହାଭାରତ ଓ ସ୍ୱତନ୍ତ୍ର ଭାଗବତ । କୋଉ ଜାତି ଏମିତି ସାହିତ୍ୟଟିଏ ସୃଷ୍ଟି କରି ପାରିଚି ଯାହା ଯୁଗ ଯୁଗକୁ ଘରେଘରେ ପଢ଼ା ଯାଉଚି ? ଏଇ ଦୃଷ୍ଟିରୁ ସେ ପୂଜା ପାଉଚି ବୋଲି କୁହା ଯାଉଚି । ଭାଗବତ ଓ ମହାଭାରତକୁ ଆଉ ବେଦ ବା ପୁରାଣ ଅର୍ଥରେ ଗ୍ରହଣ କରି ହେଉନାହିଁ । ଗୋଟିଏ ଚଳନ୍ତି ସଭ୍ୟତାର ଇତିହାସ । ଗୋଟିଏ ମହାକାବ୍ୟ ଅର୍ଥରେ ନିଆ ଯାଉଚି । ଜଗନ୍ନାଥ ସଂସ୍କୃତିରୁ ଏଇ ଯୋଉ ନୂତନ ଜାତିଟିଏ ସୃଷ୍ଟିହେଲା, ସେ ମଧ୍ୟ ନିର୍ମାଣ କଲା କୋଣାର୍କର କାରୁକଳା । ଅପୂର୍ବ ଓ ବିଶ୍ୱ ବିଦିତ । କଳା ଓ ସାହିତ୍ୟର ଦେଶ । ଶାନ୍ତି ଓ ମୈତ୍ରୀର ଦେଶ ।

ଆଉ ଆଜି ? ଆଜି ଆମ ଯେଉଁ ଓଡ଼ିଶାକୁ ଦେଖୁଚୁଁ ତାକୁତ ସେମାନେ ଜନ୍ମ ଦେଇ ନଥିଲେ । ଏ ଓଡ଼ିଶାକୁ ଯଦି ସେ ମହାପୁରୁଷମାନଙ୍କୁ ଆଣି ପଚାରାଯାଏ, ''କହିଲ ଦେଖି ଇଏ କିଏ ? ୟାକୁ କୋଉଠି ଆଗରୁ ଦେଖିଚ ? ଚିହ୍ନିଚ ଏ ଓଡ଼ିଶାକୁ ? ତାର ମାଟି ଓ ମଣିଷମାନଙ୍କୁ ?'

ସେମାନଙ୍କ ପାଟି ଖନି ମାରିଯିବ । ସେମାନଙ୍କ ଚକ୍ଷୁ ବିସ୍ଫାରିତ ହେଇଯିବ । ସେମାନେ ମଧ୍ୟ ବୁଝି ପାରିବେ ନାହିଁ ସେମାନେ କାହାକୁ ଦେଖୁଚନ୍ତି । ସେମାନେ ତାଙ୍କୁ ଆଗରୁ କୋଉଠି ଦେଖିଚନ୍ତି ନା ମୋଟେ କୋଉଠି ଭେଟି ନାହାନ୍ତି ? ଗୋଟିଏ ଜାତିର ଶହଶହ ବର୍ଷର ଇତିହାସରେ ସେମାନେ ହୁଏତ କହିବେ, ଆମେ ଏମିତିକା ଓଡ଼ିଆକୁ ତ କେବେ ଦେଖିନାହୁଁ । ଏମିତି ନିସ୍ତେଜ ରକ୍ତ, ମେରୁଦଣ୍ଡ ବିହୀନ ମଣିଷଟାଏ ରାସ୍ତା ଦେଖାଇ ଦେଲେ ମଧ୍ୟ ଚାଲି ପାରୁନାହିଁ । ତା ଦେହରେ ହାଡ଼ମାଂସ ଅଛି କି ନା ବୁଝି ହେଉନାହିଁ ।

ଯୋଉ ରକ୍ତ ଆମେ ଦେଖୁଛୁଁ ସେ ରକ୍ତ ଆମର ନୁହେଁ । ତୁମେ ଯାହାକୁ 'ଜିନ' ବୋଲି କହୁଚ ତାକୁ 'ରକ୍ତ' ବୋଲି କହୁଥିଲୁଁ । କାହିଁ ସେ ରକ୍ତ ? ଦେହ ତ ହିମ ଥଣ୍ଡା । ଏଥିରେ ଜୀବନ ଅଛି ବୋଲି କେମିତି କହି ହେବ ? ମୃତ ବୋଲି ମଧ୍ୟ କହି ହେଉ ନାହିଁ । କାରଣ 'ମୃତ'ର ଲକ୍ଷଣ ନାହିଁ ଏ ଦେହରେ ।

ଏ ଦେହରେ ବୀରତ୍ୱ ଥିଲା । କଥା କହିଦେଲେ ଚିହିଁକି ଉଠୁଥିଲା । ମାଆ ଓ ମାଟିର ଅବମାନନା ମୋଟେ ସହି ପାରୁନଥିଲା । ଭାଷା ବିରୁଦ୍ଧରେ ଶବ୍ଦଟିଏ ଉଚ୍ଚାରିତ ହେଉଥିଲେ ତା ଭିତରେ ବିସ୍ଫୋରଣ ସୃଷ୍ଟି ହେଉଥିଲା । କାହିଁ ଆଜିତ ସେ ସବୁ କିଛି ହେଉନାହିଁ । ବିସ୍ଫୋରଣ ହେବା ଦୂରର କଥା ଉଁ କି ଚୁଁ ମଧ୍ୟ କରୁନାହିଁ । ଯୁଦ୍ଧ କରିବା ଦୂର କଥା ସେ ଏବେ କାହାରି (ବିଲୁଆର ମଧ୍ୟ) ରଡ଼ିଟିଏ ଶୁଣିଲେ ଘର କୋଣରେ ପଶି କବାଟ କିଳି ଦେଉଚି । ଭୟ ତାର ସର୍ବାଙ୍ଗକୁ ଘେରି ରଖିଚି ।

ତେବେ ଇଏ କିଏ ? ଯାହାର ଭୟ ଓ ସ୍ତାବକତା ଏକମାତ୍ର ଅସ୍ତ୍ର ? ଇଏ କିଏ ଯା'ର ପ୍ରତି ଲୋମକୂପରେ ଭରି ହେଇ ଯାଇଚି ସମର୍ପଣ ଭାବର ନଗ୍ନ ଅଭିସାର ? ଏବଂ ଇଏ ତାକୁଇ ନେଇ ଗର୍ବ କରୁଚି । ବାହୁସ୍ଫୋଟ ମାରୁଚି । ଦେଖେଇ ହେଉଚି । କହୁଚି ଦେଖ ମୁଁ କେମିତି କରିଦେଲି । ତୁମେ ଚାହିଁଥା । ସ୍ତାବକତାରେ ବି ଗର୍ବ ? ଶ୍ୱାନପଣରେ ବି ଏତେ ଗର୍ବ ଓ ଅହଂକାର ଥାଏ ? ତେବେ ସମଗ୍ର ପୃଥିବୀରେ ବିରଳ ଜାତିଟିଏ । ଏପରି କୋଉ ଜାତି ଏ ପୃଥିବୀରେ ଅଛି ଯିଏ ଅଧଃପତନତାକୁ ନେଇ ଡିଣ୍ଡିମ ପିଟେ ?

ଇଏ କଣ ସେଇ ଓଡ଼ିଆ ଯିଏ କଳିଙ୍ଗ ଯୁଦ୍ଧ କରିଥିଲା ? ରକ୍ତ ସବୁ ନିଗାଡ଼ି ଦେଇଥିଲା ନିଜ ଦେହରୁ ? ସେଇ ରକ୍ତରେ ନଦୀ ହେଇଥିଲା ? ଇଏ କଅଣ ସେଇ ଓଡ଼ିଆ ଯିଏ ଜାହାଜ ବାହି ଯାଇଥିଲା ଜାଭା ଓ ସୁମାତ୍ରା ? ଏତେ ବୁଦ୍ଧି ଓ ବଳ ତାର କୁଆଡ଼େ ଗଲା ? କୁଆଡ଼େ ଗଲା ତାର ସେ କଳିଙ୍ଗ ଯୁଦ୍ଧର ବୀରତ୍ୱ ? ଆଉ ଖାରବେଳ ସମୟର ଗଡ଼ଜିଣା ବୀରତ୍ୱ ? ଦିନକୁ ପରା ଗୋଟିଏ ଦେଶ ଜୟ କରୁଥିଲା ? ସେ ରକ୍ତସବୁ ଏ ଦେହକୁ ଆସିଲା ନାହିଁକି ?

ଓଡ଼ିଆ ଯଦି ଏତେ ବୀରଥିଲା ତେବେ ଏବେ ସେ ଯୁଦ୍ଧଭୂଇଁ ନାଁ ଶୁଣିଲେ ଡରି ଯାଉଚି କାହିଁକି ? କେଇ ଜଣ ବୀର ଓଡ଼ିଆ ଆମ ସୈନ୍ୟ ବାହିନୀରେ ଅଛନ୍ତି ? କେଇ ଜଣ ସେନାପତି ହେଉଚନ୍ତି ?

ଓଡ଼ିଆ ଯଦି ସାତ ସମୁଦ୍ର ତେର ନଈ ପାର ହେଇ ବେପାର ବଣିଜ କରିବାକୁ ଯାଉଥିଲେ, ଆଜି ସେ ବେପାରୀ ପୁଅ କୁଆଡ଼େ ଗଲେ ? କେଇ ଜଣ ଓଡ଼ିଆ ବ୍ୟବସାୟୀ ବଣିଜ କରି ସର୍ବ ଭାରତୀୟ ସ୍ତରରେ ନ ହେଲେ ମଧ୍ୟ ରାଜ୍ୟସ୍ତରରେ ନାଁ କରିଚନ୍ତି ? ସେମାନେ ଯଦି ବ୍ୟବସାୟରେ ଦକ୍ଷତା ହାସଲ କରିଥାଆନ୍ତେ ତେବେ ଆମର ଏଠି ଅଣ-ଓଡ଼ିଆମାନେ କେମିତି କୋଠା ପିଟି ଥାଆନ୍ତେ ? କେମିତି ଏ 'ବେଦାନ୍ତମାନେ' ଆସି ଆମର ସବୁ ଦାନ୍ତକୁ ହୁଗାଳି ଦିଅନ୍ତେ ? ଆମେ ଯୋଗ୍ୟ ହେଇଥିଲେ ଆମେ ସେମାନଙ୍କୁ ଡାକି ଥାଆନ୍ତେ ? ତା ଛଡ଼ା ସେତେବେଳେ ଓଡ଼ିଆମାନେ ଯାଉଥିଲେ ଜାଭା ସୁମାତ୍ରା । ଏଇ କଥା ତ ? ଆମେ ଯଦି ତାଙ୍କ ଦାୟାଦ ତେବେ ଏବେ ଆମକୁ କଟକରୁ ଚଉଦୁଆର ବଦଳି ହେଲେ ଟ୍ରାଇବୁନାଲକୁ କିଆଁ ଦଉଡୁଚୁଁ । ଯଦି ଟ୍ରାଇବୁନାଲ ନ ହେଲା ତେବେ ମନ୍ତ୍ରୀଙ୍କ ପାଦତଳେ ମୁଣ୍ଡ ପିଟି ଦେଉଁଛୁ । ସେଥିପାଇଁ ଦରକାର ହେଲେ ସ୍ତ୍ରୀର ସବୁ ଗହଣା ବିକି ଦଉଁଛୁ । ଏଥିରେ ବି ବୀରତ୍ୱ ଅଛି ନା କି ସାହସିକତା ଅଛି ? ଯାଠୁ ଭୀରୁତା ଆଉ ଅଛି ? ଆମର ମାନସିକତା ହେଲା, ଗାଁ ପ୍ରାଇମେରୀ ସ୍କୁଲ ଭଲ କିନ୍ତୁ କଳାହାଣ୍ଡିର ଅଧ୍ୟାପକ ପଦ ଭଲନୁହେଁ । ଗାଁର ଜଡ଼ିବୁଟି, ଗୁଣୀ ଗାରେଡ଼ି କରି ପେଟ ପୋଷିବା ଭଲ କିନ୍ତୁ କଳାହାଣ୍ଡି କି ଫୁଲବାଣୀ ଜିଲ୍ଲା ହସ୍‌ପିଟାଲକୁ ଡାକ୍ତର ହେଇଯିବା ଠିକ୍ ନୁହେଁ ।

ତେବେ ଓଡ଼ିଆ କାହିଁ ? କୋଉଠି ଅଛନ୍ତି ଓଡ଼ିଆ ପୁଏ ? ଇଏତ ଗଲା ଚାକିରି ବାକିରି କଥା । ଏବେ ଚାଷ କଥା । କୋଉ ଚାଷରେ ଆମେ ସ୍ୱାବଲମ୍ବୀ ? ସବୁତ ଆନ୍ଧ୍ରରୁ ନଚେତ ୟୁ.ପିରୁ ଆସୁଚି । ଆମେ ଗୋଡ଼ ଉପରେ ଗୋଡ଼ ପକେଇ ବସି ଖାଉଁଚୁ । ଚାଉଳ, ଡାଲି, ତେଲ, ଲୁଣ, ଅଣ୍ଡା, ମାଛ, କୁକୁଡ଼ା,

କଦଳୀ, କମଳା, ଚା, ଚିନି ଠାରୁ ଆରମ୍ଭ କରି ନାରୀମାନଙ୍କର ଶାଢ଼ି, ଚୁଡ଼ି, ଶଂଖା, କୁଙ୍କୁମ, କଜଳ, ସିନ୍ଦୂର, ଅଳତା ଇତ୍ୟାଦି କୋଉଟା ଆମ ଓଡ଼ିଶାରେ ତିଆରି ହୁଏ ? ସେତେବେଳେ ଜାହାଜ ଭର୍ତ୍ତି ଜିନିଷ ଯାଉଥିଲା । ଏବେ ୱାଗନ ଭର୍ତ୍ତି ଜିନିଷ ଆମ ଦେଶକୁ ଆସୁଚି । ଜାହାଜ ସବୁ ହୁଲି ଡଙ୍ଗାରେ ପରିଣତ ହେଇ ଗଲାଣି । ଆଉ ସେ ଓଡ଼ିଆମାନେ କୁଆଡ଼େ ଗଲେ ?

ଜଗନ୍ନାଥଙ୍କୁ 'ଜଗତ ନାଥ' କରିଥିବା ଲୋକମାନେ କୁଆଡ଼େ ଗଲେ ? ଜଗନ୍ନାଥ ଇମିତି କି କିମିଆଁ ଜାଣିଥିଲେ ଯେ ତାଙ୍କୁ କେନ୍ଦ୍ର କରି ଇମିତି ଭାଷା, ସାହିତ୍ୟ ଓ ସଂସ୍କୃତିର ସୁଦୃଢ଼ ବଳୟଟିଏ ଗଢ଼ି ପକେଇଲେ ଯେ ଗୋଟାଏ ଜାତିର ମୂଳଦୁଆ ସ୍ଥାପିତ ହୋଇଗଲା ? ଗୋଟିଏ ଶକ୍ତ ଦୁର୍ଗ ନିର୍ମିତ ହୋଇଗଲା । ହଜାର ହଜାର ବର୍ଷ ଧରି ଅନ୍ୟ ଭାଷା ଅନ୍ୟ ସଂସ୍କୃତି ତା ପାଖ ପଶି ପାରୁ ନଥିଲା, ଏବେ ସେ ଜଗତର ନାଥଙ୍କ ମୃତ୍ୟୁ ହେଇଚି । ତାଙ୍କ ଜାଗାରେ ଠିଆ ହେଇଚନ୍ତି 'ହନୁମାନ' । ଆମେ ପୋଷାପୁଅମାନେ ଜୟ ଜଗନ୍ନାଥ ନ କହି କହୁଛୁଁ 'ଜୟ ବଜରଙ୍ଗବାଲୀ' । ସଂଜ ହେଲେ 'ଭାଗବତ' ନ ପଢ଼ି ପଢୁଚୁଁ 'ତୁଳସୀ ରାମାୟଣ' । ହନୁମାନ ଚାଳିଶା ଏବେ ଘରେଘରେ । ରାମାୟଣ ପାରାୟଣ ଏବେ ଧୂମ୍ ଚାଲିଚି । ସେଥିରେ କିଏ ଯୋଗ ନଦେଲେ, ହାତ ଦଳା ମହାପ୍ରାସାଦ ସେବନ ପାଇଁ ଚାନ୍ଦା ନ ଦେଲେ ହନୁମାନମାନେ ଗଛରୁ ଉହ୍ଲେଇ ଆସି ଆମ୍ ଘର ଉଜାଡ଼ି ପକାଉଚନ୍ତି । ଆଉ ଭାଷା କଥା ନ କହିବା ଭଲ । ଆଜିର ଛାତ୍ରକୁ ଆମର ମାତୃଭାଷା କଅଣ ବୋଲି ପଚାରିଲେ ତା'ଠୁ କଅଣ ଉତ୍ତର ମିଳିବ ସେ କଥା ସମସ୍ତେ ଜାଣନ୍ତି । ଯାତ୍ରା, ଥିଏଟର, ଟିଭିରେ କୋଉ ଓଡ଼ିଆ ସଂସ୍କୃତି ମିଳୁଚି ଆଜିକାଲି ? ଓଡ଼ିଆ ସଂସ୍କୃତି କହିଲେ ଆମେ ଓ ଆମ ପିଲାମାନେ 'କଅଣ ବୁଝନ୍ତି ?

ସେଥିରେ ବି ଆମର ଗର୍ବ ଓ ଅହଂକାର । ମାଗିଆଣି ଥିବା ଭାଷା, ସାହିତ୍ୟ ଓ ସଂସ୍କୃତିରେ ଆମର ଗର୍ବ କଳ୍ପନାତୀତ । ଚମତ୍କାର ଭାବେ ଅନୁସରଣ/ଅନୁକରଣ କରି ପାରୁଚୁଁ ବୋଲି ଆମେ ସେଥିରେ ଫାଟି ପଡୁ । ସତେ ଅବା ବଂଶାନୁକ୍ରମେ ଆମେ ତାକୁ ପାଇଁଛୁଁ । ଏହି ଲେଖକ ଭାରତର ବହୁ ଅଞ୍ଚଳ ବୁଲିଚି । ଦେଖିଚି ଓ ସେ ଲୋକଙ୍କ ସହିତ ମିଶିଚି । କୋଉଠି ଏତେ ସ୍ତାବକତା ଦେଖିନାହିଁ । ଏତେ ପରାଙ୍ଗପୁଷ୍ଟତା ଆଦୌ ଦେଖିନାହିଁ । ଏତେ ନୀଚତା ଆଉ କୋଉ ଜାତିଠାରେ ଦେଖିନାହିଁ । ଏପରି କୋଉଠି ଦେଖିନାହିଁ ଯୋଉଠି ସ୍ତାବକତାର ଶୀର୍ଷରେ ପହଞ୍ଚିବାକୁ ତାର ଅଦମ୍ୟ ବ୍ୟାକୁଳତା । ସେ ତାର ସର୍ବସ୍ୱ ସେଥିପାଇଁ ଦେଇ ଦେବାକୁ ପ୍ରସ୍ତୁତ ।

ତେବେ ଏ ଜାତି କିଏ ? କୋଉଠୁ ଆସିଲା ? ତା ଜନ୍ମର ଉତ୍ସ କୋଉଠି ? ଗୋଟାଏ ବିରାଟ ଓ ମହାନ ଜାତି କାହିଁକି ଏମିତି ହଠାତ ହୋଇଗଲା ? କାହିଁକି ସେ ତାର ମୂଳଠାରୁ ବିଚ୍ଛିନ୍ନ ହେଇଗଲା ? କିଏ ତାକୁ ଅଲଗା କଲା ? ଜଗନ୍ନାଥ ନା ଚୈତନ୍ୟ ନା ଜୟଦେବ ? କିଏ କହିବ ସେ ଏପରି କେମିତି ହେଲା ? କାହିଁକି ସେ ଆଉ ଗୋଟାଏ କୋଣାର୍କ ଗଢ଼ି ପାରୁନାହିଁ ? ଆଉ ଗୋଟାଏ ଭାଗବତ କି ମହାଭାରତ ଲେଖି ପାରୁନାହିଁ ?

ସେ ସବୁ କିଛି ନ ହେଲା ନାହିଁ । ଆଉ ଗୋଟିଏ ମଧୁ ବାରିଷ୍ଟର କି ସୁଭାଷ ତ ଜନ୍ମ ଦେଇ ପାରନ୍ତା ? ତା ବି ପାରୁନାହିଁ । ତେବେ କଅଣ ଏ ଜାତି ବନ୍ଧ୍ୟା ହେଇଗଲା ? କ୍ଲୀବତ୍ୱ ତାର ସର୍ବାଙ୍ଗକୁ ଗ୍ରାସ କରିଦେଲା ? ସେ ଅଥର୍ବ ? ଅପାରଗ ? ଅସମର୍ଥ ? କିଏ କହି ପାରିବ ଏ ଜାତିଟା କଅଣ ? ଆଶ୍ଚର୍ଯ୍ୟ, ଇତିହାସ ମଧ ଏ ବିଷୟରେ ନୀରବ । ଯୋଉଠି ଇତିହାସ ନୀରବ ସେଠି ଇତିହାସର ତର୍ଜମା ହେଇ ପାରେନା । ଆଲୋଚନା ହେଇ ପାରେନା । ଆମେ ବି ତ ଇତିହାସ ଖୋଜିବାକୁ ଚେଷ୍ଟା କରୁନାଁ । ଖୋଜିବା ଆମ ପକ୍ଷେ ସମ୍ଭବ ନୁହେଁ । ଅଣ-ଓଡ଼ିଆମାନେ ଆମକୁ ଯାହା ଦେଇ ଯାଇଚନ୍ତି ତାକୁଇ ନେଇ ଆମେ

ଗର୍ବ କରୁଁ । ତାକୁଇ ନେଇ ବାରମ୍ବାର ଏବଂ ଭିନ୍ନ ଭାବରେ ଉଦ୍ଧାର କରି ଆମର ପାଣ୍ଡିତ୍ୟ ବଖାଣୁଁ । କିନ୍ତୁ ନୂଆ କିଛି ଖୋଜୁନାଁ । ଇତିହାସର ମାଟି କିଏ ଖୋଳିବ ? କାହାର କାମ ନାହିଁ ? ଓଡ଼ିଆମାନେ ସେ ସବୁ ଠାରୁ ଦୂରରେ ।

ଓଡ଼ିଆ ଆଜି ଗୋଟିଏ ଡେଛକିରେ ପହଞ୍ଚିଛି । ସେ ତେଛକିରେ ଅଛି ଅବକ୍ଷୟ । ହୀନମନ୍ୟତା ଓ ଭୀରୁତା । ଏଇ କଥାଗୁଡ଼ିକ ଆମ ପୂର୍ବ ପୁରୁଷ ବରାବର କହି ଆସୁଛନ୍ତି । ଆଜି ନୂଆ କରି କୁହା ଯାଉନାହିଁ । ଆମର ହୀନମନ୍ୟତାର ଯେମତି ସୀମାନାହିଁ, ଭୀରୁତା ଆମକୁ ସେମିତି ଗ୍ରାସ କରିସାରିଛି । ସେଥିରୁ ଜନ୍ମଲାଭ କରୁଚି ଅବକ୍ଷୟ । ସମୟ ଯେତିକି ଗଡୁଚି ଆମର ସ୍ଖଳନ ସେତିକି ଦ୍ରୁତ ହେଉଛି । ଆମର ପତନ ସେତିକି ଅବଶ୍ୟମ୍ଭାବୀ ହେଇ ଉଠୁଚି । ଓଡ଼ିଆ ଆଜି ସେଇ ତେଛକିରେ ପହଞ୍ଚି ଅନ୍ଧ ହେଇ ଯାଇଚି । ସେ କୁଆଡ଼େ ଯିବ ବାଟ ପାଉନାହିଁ । ତାକୁ ବାଟ ଦେଖେଇବାକୁ ମଧ୍ୟ କେହିନାହିଁ । ନା ବ୍ୟକ୍ତି ନା ଅନୁଷ୍ଠାନ । ଯେମିତି ଗୋଟିଏ ଅପରିସୀମ ଅନ୍ଧକାର ଭିତରେ ଆମେ ଅଣ୍ଡାଳି ହେଉଛୁଁ । ଅନିର୍ଦ୍ଦିଷ୍ଟ କାଳ ପାଇଁ ଆମେ ଏମିତି ଚାଲିଥିବା ? ଖସୁଥିବା ଏମିତି ତଳକୁ ଏବଂ ଝୁରି ହେଉଥିବା ଅତୀତକୁ ? ତାର କଅଣ ଅନ୍ତ ନାହିଁ ? ରାତି ପାହିବ ନାହିଁ ?

# କଥାଘର (ଏଲ-୪୫) ଛେଣ୍ଡ କଲୋନୀ, ରାଉରକେଲା-୧୫

# ଅବହେଳିତ ଭୂଖଣ୍ଡ

## ଡଃ ଶ୍ୟାମସୁନ୍ଦର ମିଶ୍ର

ଊନବିଂଶ ଶତକର ଶେଷପାଦରେ ଓଡ଼ିଶାର ବରେଣ୍ୟ ଜନ୍ମଭୂମିପ୍ରେମୀ କବି ରାଧାନାଥ ତତ୍କାଳୀନ ଓଡ଼ିଶାର ଦୟନୀୟ ଅବସ୍ଥା ଦେଖି ଅତି ଦୁଃଖରେ ଲେଖିଥିଲେ :

''ଦେବୀ ବୀଣାପାଣି କେଉଁ ପାପଫଳେ,
କରୁଣା ତୋହର ଊଣାଏ ଉତ୍କଳେ ।''

ଏହି ଭାବକୁ ବିଶ୍ଳେଷଣ କରେ ସେ ବର୍ଣ୍ଣନା କରିଥିଲେ ଯେ ଭଗବତ୍ କୃପା ଲାଭ କରି ବା ମହାକବିଙ୍କ ଲେଖନୀ ସ୍ପର୍ଶ ମାତ୍ରକେ ଭାରତର ଅନ୍ୟାନ୍ୟ ଅଞ୍ଚଳର ଅତି ସାଧାରଣ ସ୍ଥଳ ସମୂହ ଐତିହାସିକ, ଭୌଗୋଳିକ ଓ ସାରସ୍ୱତ ପ୍ରସିଦ୍ଧି ଲାଭ କରିଥିଲେ ମଧ୍ୟ ତାହାରି ଅଭାବରେ ପ୍ରକୃତି ଦେବୀର ଗନ୍ତାଘର ପରି ଉତ୍କଳ ଭୂମି ସେ ସ୍ଥାନ ଲାଭରୁ ବଞ୍ଚିତ ହୋଇଛି । ଯେପରିକି ମହାକବି କାଳିଦାସଙ୍କ ସହ ସମ୍ପୃକ୍ତ ଥିବାରୁ ଛୋଟିଆ ନଦୀ ସିପ୍ରା ଭାରତ ପ୍ରସିଦ୍ଧ ହେଲେ ମଧ ଓଡ଼ିଶାର ପ୍ରବାହିତ ବିଶାଳ ନଦୀ ମହାନଦୀ ଲୋକଲୋଚନ ଅନ୍ତରାଳରେ ରହିଯାଇଛି । ଗୋପପୁରରେ କୃଷ୍ଣଙ୍କ ସହ ସମ୍ପୃକ୍ତ ଥିବାରୁ କ୍ଷୁଦ୍ର ପାହାଡ଼ ଗୋବର୍ଦ୍ଧନ ପୁରାଣ ପ୍ରସିଦ୍ଧ କିନ୍ତୁ ଓଡ଼ିଶାର ସୁଉଚ୍ଚ ପର୍ବତ ମେଘାସନ ସର୍ବଭାରତୀୟ ଭୂଗୋଳ ଗଣନାରେ ଅଜ୍ଞାତ ।

ଏହିପରି ଅନେକଗୁଡ଼ିଏ ବିଷୟରେ ମର୍ମାହତ କବି ରାଧାନାଥ ସେଦିନ ଯେଉଁ କରୁଣ ଭାବୋଚ୍ଛ୍ୱାସ ପ୍ରକାଶ କରିଥିଲେ ଆଜି ମଧ ଓଡ଼ିଶାବାସୀଙ୍କୁ ସେ ବିଷୟରେ ଥରେ ଚିନ୍ତା କରିବାର ଅବସର ଆସିଛି । ଆଜି କିନ୍ତୁ ସେଇ ନୈରାଶ୍ୟର ଚିତ୍ର କେବଳ ଭୂଗୋଳରେ ସୀମିତ ନ ରହି ଇତିହାସ, ସାହିତ୍ୟ, ରାଜନୀତି, ସମାଜ ଓ କଳା ପ୍ରଭୃତି ପ୍ରତ୍ୟେକ ସାଂସ୍କୃତିକ ମାନବିନ୍ଦୁକୁ ପ୍ରସାରିତ ହୋଇଯାଇଛି -ଏଇ ଲେଖାଟିର ଉଦ୍ଦେଶ୍ୟ ହେଉଛି ଓଡ଼ିଆ ଜାତିର ଆଗାମୀ ପିଢ଼ିକୁ ଏଇ ଗ୍ଳାନିକର ଅବସ୍ଥିତି ସମ୍ପର୍କରେ ସାମାନ୍ୟ ପରିଚିତ କରାଇ ଦେବା ।

**ଇତିହାସର ଅବମୂଲ୍ୟାୟନ :**

ବୁଦ୍ଧଙ୍କ ସମୟରୁ ଓଡ଼ିଶାରେ ଯେ ଏକ ସମୃଦ୍ଧ ସଂସ୍କୃତି ରହିଥିଲା ତାହାର ଅନେକ ତଥ୍ୟ ଏବେ ଲୋକଲୋଚନକୁ ଆସୁଛି । ସେ ତପସୁ ଭଲ୍ଲିକ ହୁଅନ୍ତୁ, ମୋଦଗଲାୟନ ହୁଅନ୍ତୁ ବା ଇନ୍ଦ୍ରଭୂତି ଲକ୍ଷ୍ମୀଙ୍କରା ହୁଅନ୍ତୁ ଏ ସବୁ ଚରିତ୍ର କେବଳ କଳିଙ୍ଗ ବା ଉତ୍କଳ ମଧ୍ୟ ଦେଇ ବୁଦ୍ଧଧର୍ମ ଓ ଏହାର ପ୍ରଚାର ସହ ପ୍ରତ୍ୟକ୍ଷ ଭାବରେ ସମ୍ପୃକ୍ତ । ଆଜି ସର୍ବଭାରତୀୟ ଇତିହାସ କେବଳ ଆଶୋକଙ୍କର କଳିଙ୍ଗ ବିଜୟର କଥା କହେ ଓ ଅଶୋକଙ୍କୁ ମହାବୀର ସମ୍ମାନ ଦିଏ କିନ୍ତୁ ଏଇ ସମର ପ୍ରାଙ୍ଗଣରେ ଯେଉଁ ଅଢେଇଲକ୍ଷ କଳିଙ୍ଗ ସନ୍ତାନ ମୃତାହତ ହେଲେ ସେମାନଙ୍କର ଦେଶପ୍ରେମ ଓ ଆତ୍ମବଳିଦାନ ବିଷୟରେ ସେ ଇତିହାସ ନୀରବ । ଏବେ ଓଡ଼ିଶାର ଦକ୍ଷିଣ ଉତ୍ତର ସୀମାନ୍ତ ପର୍ଯ୍ୟନ୍ତ ବୁଦ୍ଧଯୁଗର ଯେଉଁସବୁ କୀର୍ତ୍ତି ଆବିଷ୍କୃତ ହେଉଛି, ସେଥିରୁ ଏବଂ ଆଉ କେତେକ ଆନୁଷଙ୍ଗିକ ତଥ୍ୟରୁ ବୁଦ୍ଧଦେବଙ୍କ ଜନ୍ମ ଓ ଆଧ୍ୟାତ୍ମିକ ଅଧିଷ୍ଠାନ ଯେ ଓଡ଼ିଶା ତାହା ସ୍ଥାନୀୟ କେତେକ ଗବେଷକଙ୍କ ଯଥାର୍ଥ ଦୃଷ୍ଟି ଆକର୍ଷଣ କରିଛି; କିନ୍ତୁ କେତେଜଣ ଜାତୀୟ ସ୍ତରର ଗବେଷକ ସେ ବିଷୟରେ ସଚେତନ ?

କଳିଙ୍ଗ ଯୁଦ୍ଧ ଅଳ୍ପ କେତେବର୍ଷ ମଧ୍ୟରେ ଖାରବେଳଙ୍କ ନେତୃତ୍ୱରେ ଏ ଜାତିର ଅଭୂତ ପୁନର୍ଜାଗରଣ ହେଲା । ଖଣ୍ଡଗିରି ଶିଳାଲେଖକୁ ପର୍ଯ୍ୟାଲୋଚନା କଲେ ଜଣାଯାଏ ମାତ୍ର ୧୨ବର୍ଷ ମଧ୍ୟରେ ସେ ସମଗ୍ର ଆର୍ଯ୍ୟାବର୍ତ୍ତର ଯେତେ ଅଂଶ ଦଖଲ କରିଥିଲେ ତାହା ମୋଗଲ ସମୟର ଆକବରଙ୍କ ସାମ୍ରାଜ୍ୟରୁ କମ୍ ନୁହେଁ । କିନ୍ତୁ ସେ ଆଜିର ଜାତୀୟ ଇତିହାସର ପାଠ୍ୟ ହୋଇ ପାରିନାହାନ୍ତି । ଶିବାଜୀ, ରାଣାପ୍ରତାପ ବା ରଣଜିତ ସିଂଙ୍କ ସ୍ଥାନ ମଧ୍ୟ ସେ ଅଧିକାର କରିପାରି ନାହାନ୍ତି । କପିଳେନ୍ଦ୍ରଙ୍କ ପରି ଦିଗ୍‌ବିଜୟଙ୍କ ନାମୋଲ୍ଲେଖ ମଧ୍ୟ ଜାତୀୟ ଇତିହାସରେ ଏପର୍ଯ୍ୟନ୍ତ ହୋଇ ପାରିନାହିଁ । ଅବଶ୍ୟ ଏ ସମ୍ପର୍କରେ କେନ୍ଦ୍ରୀୟ କର୍ତ୍ତାମାନଙ୍କୁ ଦାୟୀ କରିବା ପୂର୍ବରୁ ଆଜିର ଉତ୍କଳୀୟମାନେ ଆତ୍ମସମୀକ୍ଷା କରିବା ଉଚିତ । ଆମର ନିଜ ଇତିହାସକାରମାନଙ୍କୁ ପଚାରିବା ଉଚିତ, ସମାଜର ନେତୃବର୍ଗଙ୍କୁ ପଚାରିବା ଉଚିତ ଯେ ଏଇ ଅବହେଳାର ପ୍ରତିକାର ପାଇଁ ସେମାନଙ୍କର କିଛି କର୍ତ୍ତବ୍ୟ ଅଛି କି ନାହିଁ ?

ଆତ୍ମସମ୍ମାନ ରକ୍ଷାପାଇଁ ବିଦେଶୀ ଶକ୍ତିମାନଙ୍କ ସହ ସଂଗ୍ରାମ କରିବାରେ ଯେଉଁ ଉତ୍କଳୀୟ ବୀରମାନେ ପ୍ରାଣବଳି ଦେଇଛନ୍ତି, ସେମାନଙ୍କ ମଧ୍ୟରୁ ବଂଗଳାର ଅଫଗାନ ଶକ୍ତି ବିରୁଦ୍ଧରେ ଯୁଦ୍ଧକରି ଗୋହିରିକୋଟିକିରିଠାରେ ମୃତ୍ୟୁ ବରଣ କରିଥିବା ରାଜା ମୁକୁନ୍ଦ ଦେବ ବା ବ୍ରିଟିଶ ଶାସନ ବିରୋଧରେ ସଂଗ୍ରାମ କରି ନିର୍ଯ୍ୟାତନା ସହ ମୃତ୍ୟୁ ବରଣ କରଥିବା ଜୟକୃଷ୍ଣ ରାଜଗୁରୁଙ୍କୁ ସମ୍ପୂର୍ଣ୍ଣ ଭୁଲିଯାଇ ଆମେ ଇତିହାସ୍‌ରୁ କେବଳ ଶିବାଜୀ, ରାଣାପ୍ରତାପ, ଗୁରୁଗୋବିନ୍ଦ ସିଂହ, ଟିପୁ ସୁଲତାନ, ଭଗତ ସିଂହ, ଚନ୍ଦ୍ରଶେଖର ଆଜାଦଙ୍କ ନାମକୁ ହିଁ ସ୍ମରଣ କରୁଛୁ । ସବୁଠାରୁ ବିଡ଼ମ୍ବନାର କଥା ହେଲା ଉତ୍ତରରୁ ବାରମ୍ବାର ଆକ୍ରମଣ କରୁଥିବା ଆଫଗାନ ଶକ୍ତିକୁ ପ୍ରାୟ ଏକ ଶତାବ୍ଦୀ ଧରି ଗଜପତି ରାଜାମାନେ ଅଟକାଇ ରଖିଥିଲେ । ସେମାନଙ୍କର ଏଇ ପ୍ରାଣମୂର୍ଚ୍ଛା ସଂଗ୍ରାମକୁ ଉଚିତ ଗୁରୁତ୍ୱ ନ ଦେଇ ସେଇ ସଂଗ୍ରାମର ସୁଯୋଗ ଉଣ୍ଡି ଗଜପତି ପ୍ରତାପରୁଦ୍ରଙ୍କ ସମୟରେ ଦକ୍ଷିଣରୁ ଓଡ଼ିଶାରାଜ୍ୟକୁ ଆକ୍ରମଣ କରି କିଛି ଅଂଶ ଦଖଲ କରିନେଇଥିବା ଆଉ ଜଣେ ହିନ୍ଦୁ ରାଜା କୃଷ୍ଣଦେବ ରାଏଙ୍କୁ ମହାବୀରର ସମ୍ମାନ ଦିଆଯାଇଥାଏ ।

**ସାଂସ୍କୃତିକ ଅନ୍ଧକାର :**

କେତେବର୍ଷ ତଳେ ଦିଲ୍ଲୀ ଦୂରଦର୍ଶନ ପକ୍ଷରୁ ରାମାୟଣ, ମହାଭାରତ ବା କୃଷ୍ଣ ପ୍ରସଙ୍ଗ ଆଧାରିତ କେତେକ ଲୋକପ୍ରିୟ ବିଷୟ ଉପରେ ଧାରାବାହିକ ପ୍ରସ୍ତୁତ କରାଯାଇଥିଲା । ଭାରତର ବିଭିନ୍ନ ଭାଷାମାନଙ୍କର ଲିଖିତ ରାମାୟଣ ଓ ମହାଭାରତର ବିଷୟବସ୍ତୁ ସେଥିରେ ସଂଯୋଜିତ ବୋଲି ଉଲ୍ଲେଖ ରହିଥିଲା; କିନ୍ତୁ ଆଶ୍ଚର୍ଯ୍ୟର ବିଷୟ ଓଡ଼ିଆର ରଚିତ ଏକାଧିକ ରାମାୟଣ ଓ ମହାଭାରତ ଗ୍ରନ୍ଥ ପ୍ରାଚୀନତା, ବିଶାଳତା ବା ଲୋକପ୍ରିୟତାରେ ସେସବୁ ଗ୍ରନ୍ଥଠାରୁ କୌଣସି ଗୁଣରେ ନ୍ୟୂନ ନ ହେଲେ ମଧ୍ୟ ଟି.ଭି. ଧାରାବାହିକର ପ୍ରଯୋଜକ ସେସବୁର ନାମୋଲ୍ଲେଖ କରିବା ଆବଶ୍ୟକ ମନେକଲେ ନାହିଁ । ସେତେବେଳେ ଓଡ଼ିଶାର କାଁ ଭାଁ କେଉଁଠି କିପରି ବିରୋଧର ସ୍ୱର ଉଠିଥିଲେ ମଧ୍ୟ ଏହାର ଫଳପ୍ରଦ ସାମୂହିକ ପ୍ରତିବାଦ ହୋଇପାରିଲା ନାହିଁ । ଆମ ପାଇଁ ଏହା କମ୍ ଗ୍ଳାନିକର ନୁହେଁ ।

ଭାରତର ବିଭିନ୍ନ ଅଞ୍ଚଳରେ ବହୁ ମହାତ୍ମା ଜନ୍ମଗ୍ରହଣ କରି ସଂସ୍କୃତର ଆଧ୍ୟାତ୍ମ ଗ୍ରନ୍ଥମାନଙ୍କୁ ଆଞ୍ଚଳିକ ଭାଷା ମାଧ୍ୟମରେ ଲୋକପ୍ରିୟ କରି 'ସନ୍ଥ' ପଦବୀ ପାଇଛନ୍ତି । ଉଦାହରଣ ସ୍ୱରୂପ ସନ୍ଥ ତୁଳସୀ ଦାସ ଓ ସନ୍ଥ ଜ୍ଞାନେଶ୍ୱରଙ୍କୁ ଗ୍ରହଣ କରାଯାଇପାରେ । ତୁଳସୀ ଦାସ ବାଲ୍ମୀକି ରାମାୟଣର ଭାବକୁ ସରଳ ବ୍ରଜବୋଲି ଭାଷାରେ ଓ ଜ୍ଞାନେଶ୍ୱର ଭଗବତ ଗୀତାର ଭାବକୁ ମରାଠୀ ଭାଷାରେ

ଅନୁବାଦ କରି ସର୍ବଭାରତୀୟ ଜ୍ଞାନୀଗଣନରେ ଯେଉଁ ପ୍ରାଧାନ୍ୟ ଲାଭ କରିଛନ୍ତି, ଭାଗବତ ଗ୍ରନ୍ଥକୁ ସରଳ ଓଡ଼ିଆ ଭାଷାରେ ରୂପାନ୍ତରିତ କରିବାରେ ଜଗନ୍ନାଥ ଦାସଙ୍କର କୃତିତ୍ୱ ମଧ୍ୟ ତାହାର କୌଣସି ଗୁଣରେ କମ ନୁହେଁ । ଆଜିର ଓଡ଼ିଶା ଓ ବିଚ୍ଛିନ୍ନାଞ୍ଚଳର ଓଡ଼ିଆଭାଷୀ ଅଞ୍ଚଳମାନଙ୍କରେ ଭାଗବତ ଗାଦି ବା ଟୁଙ୍ଗିମାନ ପ୍ରତିଷ୍ଠିତ ହୋଇ ଏହି ଗ୍ରନ୍ଥ ଯେଉଁ ଆଧ୍ୟାତ୍ମିକ ଓ ସାମାଜିକ ଆନ୍ଦୋଳନ ସୃଷ୍ଟି କରିଥିଲା, ତାହା ଭାରତର ଅନ୍ୟତ୍ର କ୍ୱଚିତ ଦେଖାଯାଏ । ତଥାପି ଆମେ ଜଗନ୍ନାଥ ଦାସଙ୍କୁ ସନ୍ଥର ସମ୍ମାନ ଦେଇପାରିନାହୁଁ ବା ଜାତୀୟ ସାରସ୍ୱତ ଗଗନରେ ତାଙ୍କ ଭଳି ନକ୍ଷତ୍ରକୁ ସ୍ଥାନଦେଇ ପାରିନାହୁଁ ।

ଅଳ୍ପ କେତେ ଦଶନ୍ଧି ପୂର୍ବରୁ ବିଶ୍ୱପ୍ରସିଦ୍ଧ ସଂସ୍କୃତ ଗୀତିକାବ୍ୟ 'ଗୀତଗୋବିନ୍ଦ'ର ରଚକ ଜୟଦେବଙ୍କୁ ବଙ୍ଗଦେଶର ଅଜୟ ନଦୀ ତଟର କେନ୍ଦୁଲି ଗ୍ରାମ ନିବାସୀ ରୂପେ ଗ୍ରହଣ କରାଯାଉଥିଲା । କିନ୍ତୁ ଅନେକ ଆନୁଷଙ୍ଗିକ ପ୍ରମାଣ ଓ ଓଡ଼ିଆ ଗବେଷକମାନଙ୍କ ପରିଶ୍ରମ ଫଳରେ ଏବେ ଜୟଦେବ ପୁରୀ ପ୍ରାନ୍ତର କେନ୍ଦୁବିଲ୍ୱ ବା କେନ୍ଦୁବିଳି ଗ୍ରାମନିବାସୀ ଜଣେ ଜଗନ୍ନାଥ ଭକ୍ତ ବୋଲି ସିଦ୍ଧ କରାଯାଇଛି । ଭାରତର ଅନ୍ୟ ଅଞ୍ଚଳର କେତେକ ପଣ୍ଡିତ ମଧ୍ୟ ଏହାକୁ ସ୍ୱୀକାର କଲେଣି । ତଥାପି ଆଶ୍ଚର୍ଯ୍ୟ ଲାଗେ କାହାର ଅଦୃଷ୍ଟ ଚାପରେ କେଜାଣି ଭାରତ ସରକାରଙ୍କ ସଂସ୍କୃତି ବିଭାଗ ବା ଗଣମାଧ୍ୟମ କେହି ଜୟଦେବଙ୍କ ଜନ୍ମସ୍ଥାନ ସମ୍ପର୍କରେ ଏହି ନବଲବ୍ଧ ତଥ୍ୟକୁ ଗ୍ରହଣ କରିପାରୁ ନାହାନ୍ତି । ଚାହିଁ ଶୋଇଥିବା ଲୋକକୁ ଜାଗ୍ରତ କରିବା ପରି ଏହା କଷ୍ଟସାଧ୍ୟ ହୋଇ ରହିଛି ।

କିଛିଦିନ ତଳେ ଭାରତୀୟ ଡାକ ବିଭାଗ ଓଡ଼ିଆବାସୀଙ୍କ ବହୁଦିନର ଅସନ୍ତୋଷକୁ ଦୂର କରିବା ପାଇଁ ମଧ୍ୟଯୁଗୀୟ ଓଡ଼ିଶାର ସର୍ବଶ୍ରେଷ୍ଠ କବି -କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ନାମରେ ଏକ ଡାକ ଲଫାପା ପ୍ରକାଶ କରିଥିବାର ଘୋଷଣା କଲେ । ଓଡ଼ିଶାବାସୀ କିଞ୍ଚିତ ଆଶ୍ୱସ୍ତ ହୋଇଥିଲେ । କିନ୍ତୁ ସେ ଲଫାପାଟି ବଜାରକୁ ଆସିବା ପରେ ଦେଖାଗଲା ଯେ ଡାକ ଲଫାପା ଉପରେ ଉପେନ୍ଦ୍ର ଭଞ୍ଜଙ୍କ ଚିତ୍ରଟିଏ ଅବଶ୍ୟ ଅଛି; କନ୍ତୁ ତାହା ବିଧିବଦ୍ଧ ଡାକ ମୋହର ନୁହେଁ । ସେହି ଚିତ୍ରଟିର ପାଖକୁ ୫ ଟଙ୍କିଆ ଷଣ୍ଢମାର୍କା ଡାକଟିକଟଟିଏ ଅଛି । କୌଣସି ବଙ୍ଗାଳୀ, ତାମିଲ, ମରାଠୀ ବା ପଞ୍ଜାବୀ ଲେଖକଙ୍କ ପ୍ରତି ଯଦି ଏହି ବ୍ୟବସ୍ଥା ଗ୍ରହଣ କରାଯାଇଥାଆନ୍ତା, ତେବେ ତାହାର ପ୍ରତିକ୍ରିୟା ସରକାର ସମ୍ଭାଳି ପାରିଥାଆନ୍ତେ କି ? ରସଗୋଲା ପାଇଁ ଅଳି କରୁଥିବା କୌଣସି ଶିଶୁକୁ ଚିନିରେ ଭଣ୍ଡେଇବା ପରି ଏ ବ୍ୟାପାର ।

### ଅନ୍ୟ ଏକ ଭାଷା ବିପର୍ଯ୍ୟୟ :

ଆଜକୁ ପ୍ରାୟ ୧୨୦ ବର୍ଷ ତଳେ ଓଡ଼ିଆ ଭାଷା ଓ ସାହିତ୍ୟର ସ୍ଥିତିକୁ ନେଇ ଏକ ସଙ୍କଟ ସୃଷ୍ଟି ହୋଇଥିଲା । ସେତେବେଳେ ଏ ଅଞ୍ଚଳର ଶାସନବ୍ୟବସ୍ଥାକୁ ନିୟନ୍ତ୍ରଣ କରୁଥିବା ଅନ୍ୟଭାଷାଭାଷୀ ବ୍ୟକ୍ତିଗଣ ଓଡ଼ିଶାରୁ ଓଡ଼ିଆ ଭାଷାକୁ ଲୋପକରି ପଡ଼ୋଶୀ ଭାଷାକୁ ପ୍ରଚଳନ କରାଇବାର ଉଦ୍ୟମ କରିଥିଲେ । ଏବେ କିନ୍ତୁ ସେହି ସଙ୍କଟ ଆଉଥରେ ଆସିଛି । ଏଥର କିନ୍ତୁ ଆସିଛି ରାଜ୍ୟ ଭିତରୁ । ବହିରାଗତ କେତେକ ବ୍ୟବସାୟୀ ଓ ଅମଲାତନ୍ତ୍ରୀ ଅଧିକାରୀ ନିଜନିଜ ବ୍ୟବସାୟ କ୍ଷେତ୍ରରେ ଓ ପ୍ରଶାସନିକ କ୍ଷେତ୍ରରେ ଓଡ଼ିଆ ଭାଷାକୁ ମର୍ଯ୍ୟାଦା ଦେବାକୁ ପରାଙ୍ମୁଖ । ଶାସନ କ୍ଷେତ୍ରରେ ଓଡ଼ିଆ ବ୍ୟବହାର କୌଣସି ଉଦ୍ୟମ ନ ହେବାରୁ ସାଧାରଣ ଜନତା ଏପରିକି ଅନେକ ଶିକ୍ଷିତ ଓ ଅଭିଜାତ ସମ୍ପନ୍ନ ଓଡ଼ିଆ ପରିବାର ମଧ ମନେ କରନ୍ତି ଯେ ଓଡ଼ିଆ ଭାଷାର ଆଉ ବ୍ୟବହାରିକ ଭବିଷ୍ୟତ ନାହିଁ । ତେଣୁ ସେମାନେ ନିଜନିଜ ସନ୍ତାନମାନଙ୍କୁ ଇଂରାଜୀ ମାଧ୍ୟମ ବିଦ୍ୟାଳୟମାନଙ୍କୁ ପଠାଉଛନ୍ତି । ନିଜ ମାତୃଭାଷା ଓ ସଂସ୍କୃତିରୁ ବିଚ୍ୟୁତ ଏଇ ରାଜ୍ୟର ଭିବଷ୍ୟତ

ନାଗରିକଗଣ ଓଡ଼ିଆ ଭାଷା, ଇତିହାସ, ସାହିତ୍ୟ, ସଂସ୍କୃତି ଓ ଆଧ୍ୟାତ୍ମିକତା ସମ୍ପର୍କରେ କୌଣସି ସୂଚନା ମଧ୍ୟ ପାଇପାରୁନାହାନ୍ତି । ଅବସ୍ଥା ଏପରି ହେଲାଣି ଯେ ଏହି ଯୁବକ ଯୁବତୀମାନେ ସରକାରୀ ବା ବେସରକାରୀ କର୍ମକ୍ଷେତ୍ରରେ ପ୍ରବେଶ କଲାବେଳେ କାର୍ଯ୍ୟାଳୟର ପତ୍ରାଦି ଓଡ଼ିଆ ଲେଖିପାରିବା ତ ଦୂରର କଥା, ନିଜ ମନର ଅନ୍ତରତମ ଭାବ ପ୍ରକାଶ କରୁଥିବା ପ୍ରେମପତ୍ରଟିଏ ମଧ୍ୟ ଓଡ଼ିଆରେ ଲେଖିବାକୁ କୁଣ୍ଠିତ ।

ଆମ ଗଣମାଧ୍ୟମମାନେ ମଧ୍ୟ ଏହି ଭ୍ରଷ୍ଟତାରୁ ବାଦ୍ ନୁହନ୍ତି । ଟି.ଭି.ରେ ଓଡ଼ିଆ ଚାନେଲ ବୋଲି କେତେକ କାର୍ଯ୍ୟକ୍ରମକୁ ଭଲଭାବରେ କାନଡେରି ଶୁଣିଲେ ବେଳେବେଳେ ଗୋଟିଏ ଦୁଇଟି ଶବ୍ଦଶୁଣି ଏହା ଓଡ଼ିଆ କାର୍ଯ୍ୟକ୍ରମ ବୋଲି ଅନୁମାନ କରାଯାଏ । ଅସଂଖ୍ୟ ଇଂରାଜୀ, ଉର୍ଦ୍ଦୁ ଇତ୍ୟାଦି ଯାବନିକ ଶବ୍ଦର ପ୍ରଚୁର ବ୍ୟବହାର ମଧ୍ୟରେ ବିଦେଶୀ ଛାପ ସହଜରେ ବାରିହୁଏ । ମୁଦ୍ରଣ ଗଣମାଧ୍ୟମର ଅବସ୍ଥା ମଧ୍ୟ ତଦ୍ରୂପ । ଶୁଦ୍ଧ, ଶୃଙ୍ଖଳିତ ଓଡ଼ିଆ ଶବ୍ଦ ଓ ବାକ୍ୟର ବ୍ୟବହାରର ଘୋର ଅଭାବ ଦେଖି ଜାଣିହୁଏ ଓଡ଼ିଆ ସାମ୍ବାଦିକତାର ସ୍ତର ଗୋପବନ୍ଧୁ, ଗୌରୀଶଙ୍କରଙ୍କ ଯୁଗଠାରୁ କେତେ ତଳକୁ ଖସିଗଲାଣି ।

ଏଇ ଧରଣର ଅଧଃପତନ ଯେ ଆମର ବିଧାୟକ ଓ ମନ୍ତ୍ରୀମାନଙ୍କୁ ବ୍ୟଥିତ କରୁନାହିଁ ତାହା ନୁହେଁ, କିନ୍ତୁ ମନେହୁଏ ସେମାନେ ମଧ୍ୟ କିଂକର୍ତ୍ତବ୍ୟବିମୂଢ଼ । ଏ କ୍ଷେତ୍ରରେ ଅପସଂସ୍କୃତିର ଖରସ୍ରୋତାରେ ଭାସିଚାଲିଥିବା 'ଉତ୍କଳ' ନାମକ ଭଙ୍ଗା ନୌକାର ମଙ୍ଗର ଦିଗକୁ କିପରି ମୋଡ଼ ଦିଆଯାଇପାରେ, କିପରି ଦୃଢ଼ ପଦକ୍ଷେପ ନିଆଯାଇପାରେ, ଅବହେଳା ଓ ଆତ୍ମବିସ୍ମୃତିର କୁହେଳି ମଧ୍ୟରୁ କିପରି ଜାତିକୁ ମୁକ୍ତ କରାଯାଇପାରେ-ଉତ୍କଳ ସମ୍ମିଳନୀର ସେ ବିଷୟରେ ଗଭୀର ଭାବରେ ଚିନ୍ତା କରିବାର ଅଛି ।

# ମିଶ୍ରଗଳି, ଝାଞ୍ଜରୀମଙ୍ଗଳା, କଟକ-୯

"ମୁଁ ଓଡ଼ିଆମାନଙ୍କ ମଧରେ ଅଗ୍ରଗଣ୍ୟ ପାପୀ । ଉତ୍କଳ-ମାତାଙ୍କର ନିକୃଷ୍ଟ ସନ୍ତାନ । ତାହାର କାରଣ ବୋଧହୁଏ ଯେ ମୁଁ ଓଡ଼ିଶାରେ ପ୍ରଥମେ ଏମ୍.ଏ. । ମୁଁ ପ୍ରଥମେ ଇଂରାଜୀ ଶିଖି ଯେତେ ନିକୃଷ୍ଟବୁଦ୍ଧି ହୋଇଛି, ସେଥିରୁ ମୁଁ ଉତ୍ତମ ରୂପେ ତାହା ବୁଝି ପାରୁଛି ।"

**-ମଧୁବାବୁ**

# ଓଡ଼ିଆ ମୌଳିକତା ଓ ବିଚ୍ଛିନ୍ନତାର ସ୍ୱର

ସଞ୍ଜୀବ ଚନ୍ଦ୍ର ହୋତା

ବିଂଶ ଶତାବ୍ଦୀର ଶେଷ ଭାଗରେ ଆରମ୍ଭ ହୋଇଥିବା ଜଗତୀକରଣ ପ୍ରକ୍ରିୟା ଏକବିଂଶ ଶତାବ୍ଦୀରେ ଆହୁରି ଦୃଢ଼ତର ହେବାକୁ ଲାଗିଛି । ବିଶ୍ୱର ବିଭିନ୍ନ ଦେଶ ଭିତରେ ଆଦାନ ପ୍ରଦାନ ବୃଦ୍ଧି ପାଇଛି ଉଭୟ ରାଜନୈତିକ ଓ ବାଣିଜ୍ୟିକ କ୍ଷେତ୍ରରେ । ଯାହା ଫଳରେ ଗଢ଼ି ଉଠିଛି ୟୁରୋପୀୟ ଦେଶୀୟ ସଂଘ, ଦକ୍ଷିଣ ଏସିଆ ଦେଶ ଗୁଡ଼ିକର ସଂଘ, ଏସିଆ ଓ ପ୍ରଶାନ୍ତ ମହାସାଗରୀୟ ଦେଶୀୟ ସଂଘ । କିନ୍ତୁ ଏହା ମାନିବାକୁ ହେବ ଯେ ଜଗତୀକରଣ ପ୍ରକ୍ରିୟା ଦ୍ରୁତତର ହେବା ସଂଗେସଂଗେ ନୂତନ ପିଢ଼ିର ସନ୍ତାନମାନେ ବିଶେଷ ଭାବରେ ଆକର୍ଷିତ ହେଉଛନ୍ତି ଏକ ଭୋଗବାଦୀ ଓ ଅର୍ଥ ଆହରଣ ପ୍ରକ୍ରିୟାରେ । ଏହା ସହିତ ପୁଣି ଦେଖାଦେଇଛି ବିଭିନ୍ନ ଆଂଚଳିକ ସାଂସ୍କୃତିକ ଗୋଷ୍ଠୀସ୍ୱତନ୍ତ୍ର୍ୟକୁ ଦୃଢ଼ୀଭୂତ କରିବାର ସୁଦୃଢ଼ ପ୍ରଚେଷ୍ଟା । ପ୍ରତ୍ୟେକ ସାଂସ୍କୃତିକ ଗୋଷ୍ଠୀ ନିଜର ସାଂସ୍କୃତିକ ଆତ୍ମ ପରିଚୟକୁ ଜଗତ ଆଗରେ ପ୍ରତିଷ୍ଠା କରିବା ପାଇଁ ତତ୍ପର ହୋଇ ପଡୁଛନ୍ତି । ଅନେକ କ୍ଷେତ୍ରରେ ଏହା ମୌଳବାଦର ରୂପ ନେଉଛି । ମୌଳବାଦୀମାନେ ବିଶ୍ୱାସ କରନ୍ତି, ସତେ ଯେପରି ଅନ୍ୟାନ୍ୟ ସାଂସ୍କୃତିକ ଗୋଷ୍ଠୀ ଅନ୍ତର୍ଗତ ପ୍ରତ୍ୟେକ ବ୍ୟକ୍ତି ସେମାନଙ୍କର ଚରମ ଶତ୍ରୁ ।

ଏହି ପରିପ୍ରେକ୍ଷୀରେ, ଓଡ଼ିଆତ୍ୱ ଓ ଉତ୍କଳୀୟ ମୌଳିକତାର ପ୍ରତିଷ୍ଠା ପ୍ରତ୍ୟେକ ଓଡ଼ିଆଙ୍କ ପାଇଁ ଏକ ଆହ୍ୱାନ ହୋଇଛି । ଓଡ଼ିଆ ଏକ ସାଂସ୍କୃତିକ ଗୋଷ୍ଠୀ ଓ ଏହି ସଂସ୍କୃତିର ମୁଖ୍ୟବାହକ ହେଲା ଓଡ଼ିଆ ଭାଷା । ଭାଷା ଛଡ଼ା ଚଳଣି, ରୀତିନୀତି, ଖାଦ୍ୟପେୟ, ବର୍ଷସାରା ଲାଗି ରହିଥିବା ବିଭିନ୍ନ ଋତୁରେ ବିଭିନ୍ନ ପର୍ବ ଓ ସର୍ବୋପରି ଏକ ଗୌରବମୟ ଓ ସାଂସ୍କୃତିକ ଓ ରାଜନୈତିକ ଇତିହାସର ପୃଷ୍ଠଭୂମିରେ ଏହି ଆହ୍ୱାନକୁ ପ୍ରତ୍ୟେକ ଓଡ଼ିଆଂକୁ ସମ୍ମୁଖୀନ ହେବାକୁ ପଡ଼ିବ । ସେଥିପାଇଁ ସାମୂହିକ ଉଦ୍ୟମ ଲୋଡ଼ା ଓଡ଼ିଶାର ପ୍ରତ୍ୟେକ ପ୍ରାନ୍ତରେ । ନୀରବରେ ବସି ରହିଲେ ଜଗତୀକରଣର ତୀବ୍ର ସ୍ରୋତରେ (ଯେଉଁ ସ୍ରୋତର ମୁଖ୍ୟ ଆଧାର ହେଲା ଭୋଗବାଦ ଓ ଅଧିକ ଧନ ଆହରଣ ଓ ସୀମାହୀନ ଅଭୀପ୍ସା) ଓଡ଼ିଆ ମୌଳିକତା ବି ଲୋପ ପାଇଯିବ ଓ ଯାହା ଅବଶେଷ ରହିବ ତାହା ହେବ ଏକ ସଂକର ସଂସ୍କୃତି । ଉତ୍କଳ ସମ୍ମିଳନୀ ଆରମ୍ଭ ହୋଇଥିଲା ବ୍ରିଟିଶ ରାଜତ୍ୱ ସମୟରେ । ସେତେବେଳକୁ ଓଡ଼ିଶାର ଏକତ୍ରୀକରଣ ହୋଇନଥିଲା । ଏକ ପୂର୍ଣାଂଗ ଉତ୍କଳ ପ୍ରଦେଶ ଗଠନ କରିବା ଦାବି ଉଠିଥିଲା ଦେଶପ୍ରାଣ ମଧୁସୂଦନଂକ ବଳିଷ୍ଠ ନେତୃତ୍ୱରେ । ଉତ୍କଳ ସମ୍ମିଳନୀ ଆରମ୍ଭ କରିଥିଲା ତାର ଅଭିଯାନ ଏକ ବିଶାଳ ଉତ୍କଳ ପ୍ରଦେଶ ପାଇଁ । ବିଶାଳ ଉତ୍କଳ ପ୍ରତିଷ୍ଠା ନହେଲେ ବି ଯେଉଁ ଏକ ସ୍ୱତନ୍ତ୍ର ଓଡ଼ିଶା ପ୍ରତିଷ୍ଠା ହେଲା ସେହି ରାଜନୈତିକ ସୀମା ବାହାରେ ରହିଯାଇଛି ଅନେକ ଓଡ଼ିଆଭାଷୀ ଅଂଚଳ । ସେ ଅଂଚଳରେ କ୍ରମାଗତ ଭାବରେ ଭାଷା ଓ ସଂସ୍କୃତିର ବିଲୟ ଘଟିଛି । ସେହି ଅଂଚଳରେ ପ୍ରାଥମିକ ଶିକ୍ଷାରେ ନୂତନ ପିଢ଼ିର ପିଲାମାନେ ସଂପୃକ୍ତ ରାଜ୍ୟର ଭାଷାରେ ପାଠ ପଢୁଛନ୍ତି । ଯାହାଫଳରେ ଓଡ଼ିଆ ଭାଷାର ମୂଳପିଣ୍ଡ ଯାହାକି ବିଭିନ୍ନ ଅଂଚଳର ଅନେକ ଦେଶଜ ଶବ୍ଦନେଇ ସୃଷ୍ଟି ହୋଇଛି, ସେମାନେ ସେଥିରୁ ସମୟକ୍ରମେ ଦୂରେଇ ଯାଉଛନ୍ତି । ଓଡ଼ିଶାର ସାହିତ୍ୟିକ ଓ ଐତିହାସିକ ପୃଷ୍ଠଭୂମି ବିଷୟରେ ସେମାନେ ଅଜଣା ରହୁଛନ୍ତି । ପରେପରେ ଆପଣେଇ ନେଉଛନ୍ତି ପ୍ରାଦେଶିକ ସଂସ୍କୃତିକୁ । ଏହି ଦୃଷ୍ଟିରୁ, ସେହିସବୁ ଓଡ଼ିଆ ଭାଷାଭାଷୀ ଅଂଚଳରେ ରାଜ୍ୟ ସରକାର ତଥା ଭାରତ ସରକାରଂକ ସାହାଯ୍ୟରେ ମାଧ୍ୟମିକ ସ୍ତର ପର୍ଯ୍ୟନ୍ତ ଯଦି ଓଡ଼ିଆ ଭାଷାରେ ଶିକ୍ଷା ଦିଆଯାଏ ତାହେଲେ ଓଡ଼ିଆ ଭାଷାର ଭିତ୍ତିଭୂମି ସେହିସବୁ ଅଂଚଳରେ ରହିବ । ଏହା ଏକ ଅସମ୍ଭବ ପ୍ରସ୍ତାବ ନୁହେଁ । ଏଥିପାଇଁ ଆବଶ୍ୟକ ହେଉଛି ନିରନ୍ତର ପ୍ରଚେଷ୍ଟା, ଗଭୀର ଆତ୍ମବିଶ୍ୱାସ ଓ ସର୍ବୋପରି ବିଚ୍ଛିନ୍ନାଂଚଳଗୁଡ଼ିକରେ ଓଡ଼ିଆ ଭାଷାର ପ୍ରସାର ପାଇଁ ସେମାନଂକର ଆଗ୍ରହ ।

ଆଉ ଗୋଟିଏ ବିଷୟ ଦୁଃଖର ସହିତ ଅବତାରଣା କରୁଛି ଯେ, ବର୍ତ୍ତମାନ ବିଚ୍ଛିନ୍ନତାର ସ୍ୱର ଦେଖାଦେଇଛି ଓଡ଼ିଶାର ପଶ୍ଚିମାଂଚଳରେ । ଏକ ପୃଥକ କୋଶଳ ରାଜ୍ୟ ଗଠନ କରିବା ପାଇଁ ଅନେକ ଓଡ଼ିଆ ସ୍ୱର ଉତ୍ତୋଳନ କରୁଛନ୍ତି ଯାହାରକି ମୂଳ ପୃଷ୍ଠଭୂମି ହେଲା ସେହି ଅଂଚଳର ଓଡ଼ିଆ 'ବୋଲି' ଓ ମୂଳତଃ ଅର୍ଥନୈତିକ ଅନଗ୍ରସରତା । ଏହା ସତ୍ୟ ଯେ ଦକ୍ଷିଣ କୋଶଳ ବୋଲି ଚିହ୍ନିତ ହେଉଥିବା ପଶ୍ଚିମ ଓଡ଼ିଶାର 'ବୋଲି' ଯାହାକୁକି ସମ୍ବଲପୁରୀ ବା କୋଶଳୀ କୁହାଯାଏ, ତାହା ମଧ୍ୟ ଓଡ଼ିଆ ଭାଷାର ଅନ୍ତଃସ୍ୱର । ଓଡ଼ିଆ ଭାଷାରେ ଯେତେଗୁଡ଼ିଏ ଦେଶଜ ଶବ୍ଦ ବର୍ତ୍ତମାନ ସୁଦ୍ଧା ଗ୍ରନ୍ଥ ମାନଂକରେ ଲିଖିତ ଅଛି, ସେଥିରେ ଉପକୂଳ ଅଂଚଳର ଅନେକ ଦେଶଜ ଶବ୍ଦ ବ୍ୟବହୃତ ହେଉଛି । କିନ୍ତୁ ପଶ୍ଚିମାଂଚଳର ଅଫୁରନ୍ତି ଦେଶଜ ଶବ୍ଦର ଭଣ୍ଡାରରୁ ଅଳ୍ପ କିଂଚିତ ବ୍ୟବହାର ହୋଇଛି ବିଭିନ୍ନ ପ୍ରବଂଧ ଓ ଉପନ୍ୟାସରେ । ଲବ୍ଧପ୍ରତିଷ୍ଠ ଐତିହାସିକ ସ୍ୱର୍ଗତ ଗୋପିନାଥ ମହାନ୍ତିଂକର 'ଅମୃତ ସନ୍ତାନ' ଓ 'ପରଜା'ରେ ଅନେକ ପରିମାଣରେ ସେ ଯେଉଁ ଦେଶିଆ ଭାଷା ବ୍ୟବହାର କରିଛନ୍ତି, ତାହା ପଶ୍ଚିମାଞ୍ଚଳର ଓଡ଼ିଆ ଭାଷା ଅଟେ । ଏଠାରେ କହିଲେ ଅତୁକ୍ତି ହେବନାହିଁ ଯେ ଏହି ରୂପାନ୍ତରିତ ଓଡ଼ିଆ ଭାଷା କେବଳ ପଶ୍ଚିମାଞ୍ଚଳର ଜିଲ୍ଲାଗୁଡ଼ିକ ମଧ୍ୟରେ ସୀମିତ ନୁହେଁ, ଏହା ସୁଦୂର ଦଣ୍ଡକାରଣ୍ୟ ଅଂଚଳକୁ ମଧ୍ୟ ପ୍ରସାର ଲାଭ କରିଛି । ପୂର୍ବରୁ ଅବିଭକ୍ତ କୋରାପୁଟ ଜିଲ୍ଲା (ଯାହାକି ବର୍ତ୍ତମାନ ଚାରୋଟି ଜିଲ୍ଲାରେ ପରିଣତ ହୋଇଛି)ର ଗ୍ରାମାଂଚଳରେ ଜନଜାତି, ବନବାସୀ ଓ ସାଧାରଣ ଗାଉଁଲି ଲୋକ ଯେଉଁ ଦେଶିଆ ଭାଷା ପ୍ରୟୋଗ କରନ୍ତି, ତାହା ପୂରାପୂରି ପଶ୍ଚିମାଞ୍ଚଳର ସମ୍ବଲପୁରୀ ଓଡ଼ିଆ ନହେଲେ ମଧ୍ୟ ତାହାର ଆଉ ଏକ ରୂପାନ୍ତର, ଯେଉଁଥିରେ କି ଦକ୍ଷିଣ ଓଡ଼ିଶା ଜନଜାତିର ଅନେକ ଶବ୍ଦ ଭର୍ତ୍ତି ହୋଇ ରହିଛି । ମନଟା ଭାରି ଆନଂଦ ଲାଗେ ଓଡ଼ିଶାର ସୀମାନ୍ତ ରାଜ୍ୟ ଆନ୍ଧ୍ର ପ୍ରଦେଶ ଭିତରେ ପରଜା, ଗାଦବା ଓ ସଉରାମାନେ ଯେତେବେଳେ ଦେଶିଆ ଓଡ଼ିଆରେ ପରସ୍ପର ଭିତରେ କଥାବାର୍ତ୍ତା ହୁଅନ୍ତି । ସଂଧ୍ୟାବେଳେ ମାଦଳ ଓ ମହୁରୀ ରାଗିଣୀ ଭିତରେ ସେଇ ଶବ୍ଦ ସମ୍ଭାର ଭର୍ତ୍ତି ଲୋକଗୀତ ଶୁଣିଲେ ଅସକଟିଆ ମନ ଭିତେର ଫୁର୍ତ୍ତି ଦେଖାଯାଏ । ଓଡ଼ିଆ ବାଗିର୍ ଭାଷାଟି ଶୁଣିଲେ ମନଟା କେମିତି ବା ଚହଲି ନ ଉଠିବ ? ବର୍ତ୍ତମାନ ସମୟ ଆସିଛି ଅତି ମାର୍ଜିତ ଓଡ଼ିଆ କବିତା (ଆଧୁନିକ କବିତା), ଓଡ଼ିଆ ଗପ ଓ ଉପନ୍ୟାସରେ ଏହି ଶବ୍ଦଗୁଡ଼ିକ ପ୍ରଯୋଗ ହେଉ । ପିଲାଦିନର ବଇଶିରାରୁ ମୁଁ କହୁଛି ଯେ ସେହି ଶୁଣିବା ଶବ୍ଦଗୁଡ଼ିକ ପ୍ରଯୋଗ କଲେ ଓଡ଼ିଆ ଭାଷା ଆହୁରି ମାର୍ଜିତ ହେବ । ଗୋଟିଏ ପ୍ରାନ୍ତର ଭାଷା ଅପର ପ୍ରାନ୍ତରେ ନିକଟତର ହେବ ।

ବିଚ୍ଛିନ୍ନତାର ସ୍ୱର ଯେଉଁମାନେ ଉଠାଉଛନ୍ତି ଓ ଓଡ଼ିଶାକୁ ବିଚ୍ଛିନ୍ନ କରିବାର ଚିନ୍ତା କରୁଛନ୍ତି, ସେମାନେ ମନେ ରଖିବା ଉଚିତ୍ ଯେ ସେମାନଂକର ଅନ୍ତର ଭିତରୁ ଯଦି କୌଣସି ଭାଷା ଶୁଣାଯାଏ, ତେବେ ଏହା ନିଚ୍ଛକ ଓଡ଼ିଆ ଅଟେ । ଇହାଦେ ସେମାନେ ଭାବୁଛନ୍ତି ଯେ ଏ ଅଂଚଳର କଥିତ ଭାଷା ଓଡ଼ିଆରୁ ପୃଥକ୍ । ମୁଁ କହିବି ସେହି କଥିତ କୋଶଳୀ ଭାଷା ଓଡ଼ିଆ ଭାଷାର ମୂଳପିଣ୍ଡ ।

ରାଜନୈତିକ ଦୃଷ୍ଟିକୋଣରୁ ମଧ୍ୟପ୍ରଦେଶ ବିଚ୍ଛିନ୍ନ ହେଲା ଓ ସେହିପରି ବିଭାଜିତ ହେଲା ବିହାର । ବିଭାଜିତ ରାଜ୍ୟଗୁଡ଼ିକରେ ରାଜଭାଷା ହେଲା ହିଂଦୀ । ଛତିଶଗଡ଼ରେ ଲରିଆ ଭାଷା ରାଜ୍ୟ ଭାଷାର ସ୍ଥାନ ନେଇ ନାହିଁ ବା ଝାଡ଼ଖଣ୍ଡରେ ସାନ୍ତାଳୀ ଭାଷା ରାଜଭାଷା ହୋଇନାହିଁ । ସମସ୍ତେ ରାଜଭାଷା ଭାବେ ହିଂଦିକୁ ଆଦରି ନେଇଛନ୍ତି । ବର୍ତ୍ତମାନ ଅର୍ଥନୈତିକ ଦୃଷ୍ଟିରୁ କେବଳ ପଶ୍ଚିମାଞ୍ଚଳ ପଛୁଆ ନୁହେଁ, ସମଗ୍ର ଦଣ୍ଡକାରଣ୍ୟ ଅର୍ଥାତ୍ ଅବିଭକ୍ତ କୋରାପୁଟର ଲୋକେ ଦେଶିଆ ଭାଷା କହନ୍ତି । ସେହିପରି ପଶ୍ଚିମ ଓଡ଼ିଶା ଲୋକଂକ କଥିତ ଭାଷାକୁ ସମ୍ବଲପୁରୀ ବୋଲି କୁହାଯାଏଂ । ଦଣ୍ଡକାରଣ୍ୟ ଅଂଚଳ ପଶ୍ଚିମ ଓଡ଼ିଶା ପରି ବା ତାଠାରୁ ଅନୁନ୍ନତ । ସେଥିପାଇଁ କ'ଣ ପୁଣି ଏକ ବିଚ୍ଛନ୍ନତାର ସ୍ୱର ଉଠାଯିବ ଯେ ଦଣ୍ଡକାରଣ୍ୟ ଏକ ପୃଥକ ଅଂଚଳ ହେବ ବୋଲି ? ପୁଣ୍ୟଶ୍ଳୋକ କବି ଗଂଗାଧର ଉଚ୍ଚଶିକ୍ଷା ନପାଇ ତାଂକର କାବ୍ୟ ଓ କବିତାରେ ଯେଉଁ ଅନ୍ତଃସ୍ୱର

ପ୍ରକାଶ କରିଥିଲେ ଏବଂ ନିରକ୍ଷର ଥାଇ ଅଂଧ ଋଷି ଭୀମ ଭୋଇ ଯେଉଁ ମାନବ ଦାର୍ଶନିକ ଭକ୍ତି ସଂଗୀତ ଲେଖିଥିଲେ ତାହାତ ପ୍ରତ୍ୟେକ ଓଡ଼ିଆର ପ୍ରାଣସ୍ୱର ଓ ସବୁ ପିଢ଼ି ପାଇଁ ତାହା ହେବ ମହାକାବ୍ୟ ।

ପ୍ରତ୍ୟେକ ଅଂଚଳର କଥିତ ଭାଷା ଭିନ୍ନଭିନ୍ନ ଅଟେ । ଗୋଟିଏ ଅଂଚଳରେ ବି ଉଚ୍ଚଶିକ୍ଷିତମାନେ ଯେଉଁ କଥାର ସ୍ୱର କହିପାରନ୍ତି ସେହି ଅଂଚଳର ଅନ୍ୟ ଲୋକମାନଂକର 'ବୋଲି' ଭିନ୍ନ ପ୍ରକାର ହୋଇଥାଏ । ନୂଆପଡ଼ା ଜିଲ୍ଲାର ଗ୍ରାମାଂଚଳରେ ଲୋକମାନେ ଲରିଆ ଯୁକ୍ତ ସମ୍ବଲପୁରୀ ଭାଷାରେ ଯାହା କହିବେ ରେଢ଼ାଖୋଲର ସାଧାରଣ ଓଡ଼ିଆ ହୁଏତ ତାକୁ ବୁଝି ନପାରନ୍ତି । ବଣ୍ଡା ପାହାଡ଼ ଉପରେ ବିଦାୟୀ ଯେଉଁ ଦେଶିଆ ଓଡ଼ିଆ କହିବେ କଲ୍ୟାଣସିଂହପୁରର ସଉରା ତାଠାରୁ ଭିନ୍ନ ପ୍ରକାରର ଭାଷା କହିବେ । ହେଲେବି ତ ଭାଷା ଓଡ଼ିଆ, ସ୍ୱର ବି ଓଡ଼ିଆ ଓ ପ୍ରାଣର ଆବେଗ ହେଉଛି ଉତ୍କଳୀୟ ।

ଏ ଉଦାହରଣ କେବଳ ଓଡ଼ିଆ ଭାଷା ପାଇଁ ପ୍ରଯୁଜ୍ୟ ନୁହେଁ । ହିଂଦୀ ଭାଷାଭାଷୀ ବିଭିନ୍ନ ଅଂଚଳରେ ବିଭିନ୍ନ ପ୍ରକାରର 'ବୋଲି'ଥାଏ, ଯଥା : ଛତିଶଗଡ଼ରେ ଲରିଆ ମିଶ୍ରା ହିଂଦୀ, ଝାଡ଼ଖଣ୍ଡରେ ସାନ୍ତାଳୀ ମିଶା ହିଂଦୀ, ବିହାରର ପୂର୍ବ ଓ ଉତ୍ତର ପ୍ରଦେଶରେ ଭୋଜପୁରୀ, ବ୍ରଜବୋଲି, ମୈଥିଳୀ ଇତ୍ୟାଦି, ରାଜସ୍ଥାନରେ ରାଜସ୍ଥାନୀ ହିଂଦୀ, ହିମାଚଳ ପ୍ରଦେଶରେ ପାହାଡ଼ି ହିଂଦି ଇତ୍ୟାଦି । କିନ୍ତୁ ପ୍ରତ୍ୟେକ ନିଜର ମାତୃଭାଷା ହିଂଦି ବୋଲି କହିଥାନ୍ତି, ଭୋଜପୁରୀ ବା ଲରିଆ ବୋଲି କହନ୍ତି ନାହିଁ । ଭୋଜପୁରୀ ଭାଷାରେ ଅନେକ ଗ୍ରନ୍ଥ ରହିଛି ଓ ଅନେକ କାବ୍ୟ ବି ରହିଛି । ସେହିପରି ରାଜସ୍ଥାନୀ ହିଂଦୀରେ ଓ ମୈଥିଳୀରେ ରହିଛି ଅନେକ ପୁସ୍ତକ, ସେ ସମସ୍ତ ଗ୍ରନ୍ଥ ହିଂଦୀ ସାହିତ୍ୟର ଅମୂଲ୍ୟ ବିଭବ । ତେଣୁ ରୂପାନ୍ତରିତ ଓଡ଼ିଆର ଅସରନ୍ତି ଭାଷା ଭଣ୍ଡାର ସୃଷ୍ଟି ହେଉ ଯାହାକି ଓଡ଼ିଆ ସାହିତ୍ୟକୁ ଆହୁରି ସମୃଦ୍ଧ କରିବ ଓ ଭାଷାର ସମୃଦ୍ଧି ସାଧିତ ହେବ । ଓଡ଼ିଶାର ବିଭିନ୍ନ ପ୍ରାନ୍ତର ଓଡ଼ିଆଭାଷୀମାନେ ପରସ୍ପରର ନିକଟତର ହେବେ । ସମସ୍ତେ ସବୁ ଓଡ଼ିଆଭାଷୀଙ୍କୁ ବୁଝି ପାରିବେ ।

ବର୍ତ୍ତମାନ ଓଡ଼ିଆ ସଂସ୍କୃତିରେ ଏକ ଭିନ୍ନ ପ୍ରକାରର ଅପମିଶ୍ରଣ ଆରମ୍ଭ ହୋଇଛି ଏବଂ ଓଡ଼ିଆମାନେ ତାହାକୁ କ୍ରମାଗତ ଆଦରି ନେବାରେ ଲାଗିଛନ୍ତି । ପ୍ରତ୍ୟେକ ଓଡ଼ିଆ ଗୃହସ୍ଥର ଘରେ ରହିଥିଲା ଜଗନ୍ନାଥ ଦାସଂକ କୃତ ଭାଗବତର ବାରଟି ସ୍କନ୍ଧ । ତା ଛଡ଼ା ରହିଥିଲା ମଧ୍ୟଯୁଗୀୟ ବୈଷ୍ଣବ କବିମାନଂକର ଅନେକ ପଦାବଳୀ ଯେଉଁଗୁଡ଼ିକରେ ନିଗୂଢ଼ ଭାବରେ ରାଗ ଓ ପଦ ମାଧ୍ୟମରେ ବର୍ଣ୍ଣିତ ହୋଇଥାଏ ଆତ୍ମା ଓ ପରମାତ୍ମା ତଥା ଦେହୀ ଓ ବିଦେହୀର ସଂପର୍କ । ବିଶେଷତଃ ସଂଧ୍ୟା ସମୟରେ ଓଡ଼ିଶାର ପୁରପଲ୍ଲୀରେ ମଧୁର କଂଠରେ ଏହି ଗୀତଗୁଡ଼ିକ ଶୁଣାଯାଏ ଦୂରରେ ଯାଉଥିବା ଆଉ ଜଣେ ପଥିକଂକ କାନରେ । ଓଡ଼ିଶାର ଧାର୍ମିକ ସଂସ୍କୃତିର ଏହା ଏକ ନିଚ୍ଛକ ଛବି ଥିଲା, ଯାହାକି ଏବେ ଦୁର୍ଲଭ ହେଲାଣି । ବରଂ ତା ବଦଳରେ ବର୍ତ୍ତମାନ ପ୍ରଚାରିତ ହେଉଛି ରାମଚରିତ ମାନସ ଆଉ ହନୁମାନ ଚାଳିଶା । 'ମାନସ' ପ୍ରେମ କ୍ରମାଗତ ଭାବରେ ଆବୋରିବାକୁ ଯାଉଛି ଓଡ଼ିଆମାନଙ୍କୁ, ସେମାନେ ଯାଉଛନ୍ତି ଦୂରେଇ 'ଭାଗବତ' ତଥା ଭୀମଭୋଇଙ୍କର ଭକ୍ତି ଜଣାଣରୁ ।

ଊନବିଂଶ ଶତାବ୍ଦୀରେ ଓଡ଼ିଶାର ନଗର ଓ ପଲ୍ଲୀରେ ଦେବୀପୀଠମାନଂକରେ ଷୋଳଦିନ ବ୍ୟାପୀ ଶାରଦୀୟ ଦେବୀପୂଜା ପାଳିତ ହେଉଥିଲା ଓ ଉଦ୍‌ଯାପିତ ହେଉଥିଲା ଦଶହରା ଦିନ ଦେବୀଂକର ବିଜୟ ଯାତ୍ରାରେ । ଏବେବି ତାହା ରହିଛି । କିନ୍ତୁ ଏହା ଗୌଣ ହୋଇଗଲାଣି । ମୁଖ୍ୟ ହୋଇଯାଇଛି ମୃଣ୍ମୟ ମୂର୍ତ୍ତିର ଶାରଦୀୟ ପୂଜା, ଯାହାକି ପଡ଼ୋଶୀ ବଂଗୀୟ ସଂସ୍କୃତିରୁ ଆସି ଶେଷରେ ଆମକୁ ଗ୍ରାସ କରିଛି । ଏବେ କେଇବର୍ଷ ହେଲାଣି ପୁଣି ଦେଖାଦେଇଛି ଉତ୍ତର ଭାରତର ସଂସ୍କୃତି 'ରାବଣ ପୋଡ଼ି' । ଏହା କ'ଣ ଓଡ଼ିଶାର ସଂସ୍କୃତି ପ୍ରତି ଏକ ଆହ୍ୱାନ ନୁହେଁ କି ?

ମୌଳିବାଦୀ ହେବାପାଇଁ କେହି କହୁନାହାନ୍ତି ବା କହିବା ଉଚିତ ନୁହେଁ । କିନ୍ତୁ ମୂଳ ସଂସ୍କୃତିର ଉତ୍ତମ ପରିଚୟ ସଂଧାନ କରିବା ପାଇଁ କହିବା ତ ଅବାଂଛିତ ନୁହେଁ । ମହାଜନମାନେ ଏକଥାକୁ ଆଜି ବିଚାର କରନ୍ତୁ । ସଂସ୍କୃତିର କର୍ମଧାର୍‌ମାନେ ଟିକେ ତଳେଇକରି ଦେଖନ୍ତୁ । ଆଜି ଏତିକି ଥାଉ ।

# ନିର୍ବାଚନ କମିଶନର, ଓଡ଼ିଶା, ଭୁବନେଶ୍ୱର

# "ଉପେକ୍ଷିତ ଓଡ଼ିଶା ଓ ନିକ୍ଷେପିତ ଓଡ଼ିଆ"

## ଅଧ୍ୟାପକ ପ୍ରଦୀପ କୁମାର ମହାନ୍ତି

**କ**ଳାରେ ଉତ୍କର୍ଷ ଲାଭ କରିଥିବାରୁ ଆମ ଓଡ଼ିଶାକୁ କୁହାଯାଏ 'ଉତ୍କଳ' । ପ୍ରାକୃତିକ ସୌନ୍ଦର୍ଯ୍ୟରେ ଭରା ଏହାର ସବୁଜ ବନାନୀ, ଦୂର ପାହାଡ଼ର ଘୁମନ୍ତ ଅବସ୍ଥା, ସରଳ, ନିଷ୍ପାପ ଆଦିବାସୀଜୀବନ, ପାହାଡ଼ି ଝରଣାର ଅବାରିତ ପ୍ରବହମାନ ଧାରା, ଗୋଧୂଳିର ରକ୍ତିମ ଆଭା, ଓଡ଼ିଶାକୁ ପରିଣତ କରେ ଏକ ତପୋବନ ଭୂମି । ଏହାର ଦକ୍ଷିଣରେ ପରିବ୍ୟାପ୍ତ ରହିଛି ବଙ୍ଗୋପ ସାଗର, ଉତ୍ତରରେ ଝାଡ଼ଖଣ୍ଡ ରାଜ୍ୟ, ପଶ୍ଚିମରେ ଆନ୍ଧ୍ରପ୍ରଦେଶ ଓ ପୂର୍ବରେ ପଶ୍ଚିମବଙ୍ଗ ରାଜ୍ୟ ।

ଓଡ଼ିଶାର କଳା, ସ୍ଥାପତ୍ୟ, ବିଜ୍ଞାନ, ଦର୍ଶନ ପର୍ବପର୍ବାଣୀ, ଧର୍ମଧାରା ଓ କର୍ମଜୀବୀ ମଣିଷର ଚିନ୍ତା ଚେତନା ନିଶ୍ଚିତ ଭାବରେ ଥିଲା ସ୍ୱତନ୍ତ୍ର ଯାହାର ଜ୍ୱଳନ୍ତ ପ୍ରମାଣ ମିଳେ ବିଭିନ୍ନ ମନ୍ଦିରରୁ ପ୍ରାଚୀନ ଲେଖକ ମାଙ୍କର ତାଳପତ୍ର ପୋଥିରୁ , ବିଭିନ୍ନ ସ୍ଥାନରେ ପାଳିତ ପର୍ବପର୍ବାଣୀରୁ ଏବଂ ସର୍ବୋପରି ସରଳ , ଗ୍ରାମୀଣ ଜୀବନର ଛନ୍ଦରୁ ।

ସମୟ ବଦଳି ଯାଇଛି । ତତ୍କାଳୀନ ଓଡ଼ିଶାର ବରପୁତ୍ର ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତି , ଉତ୍କଳମଣି ଗୋପବନ୍ଧୁ ଦାସ, କବିବର ରାଧାନାଥ, ଫକୀର ମୋହନ ସେନାପତି, ଉତ୍କଳ ଗୌରବ ମଧୁସୂଦନ ଦାସ, ଗୋଦାବରୀଶ ମିଶ୍ର, ମନମୋହନ ଚୌଧୁରୀ , ରାଧାନାଥ ରଥ ମାଳତୀ ଦେବୀ ଚୌଧୁରୀ, ରମାଦେବୀ ଇତ୍ୟାଦିଙ୍କ ପ୍ରାଣ ପ୍ରଚେଷ୍ଟାରେ ଏକ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ହୋଇ ପାରିଛି । ଅନ୍ୟାନ୍ୟ ରାଜ୍ୟ ମାନଙ୍କ ଭଳି ଓଡ଼ିଶାର କୃଷି, ଶିକ୍ଷା, ସ୍ୱାସ୍ଥ୍ୟ, ଜଳସେଚନ ବ୍ୟବସ୍ଥା , ନାରୀ ଜାଗରଣ, ଉତ୍ତମ ସାମାଜିକ ଜୀବନ , କଳା-ସଂସ୍କୃତି ସୁରକ୍ଷା ଇତ୍ୟାଦି ଦିଗରେ ସମଗ୍ର ଓଡ଼ିଶାବାସୀ ସର୍ବଦା ଚେଷ୍ଟିତ ଏବଂ ତତ୍କାଳୀନ ଜନନାୟକଙ୍କ ପ୍ରେରଣାରେ ଅନୁପ୍ରେରିତ । ମାତ୍ର ସ୍ୱତନ୍ତ୍ର ଓଡ଼ିଶା ଗଠନ ପରଠାରୁ ଓଡ଼ିଶା ସବୁଦିନେ ଅଣଓଡ଼ିଆ ମାନଙ୍କର ଆକ୍ରୋଶର ଶିକାର ହୋଇ ନିକ୍ଷେପିତ , ଲାଞ୍ଛିତ ତଥା ଭୂଲୁଣ୍ଠିତ ହୋଇଛି । ବିଗତ ଏକଶତ ବର୍ଷପରେ ମଧ ଓଡ଼ିଶାରେ ଆର୍ଥିକ, ସାମାଜିକ , ଶିକ୍ଷା, ସ୍ୱାସ୍ଥ୍ୟ ଇତ୍ୟାଦିରେ ବିଶେଷ ପ୍ରଗତି ପରିଲକ୍ଷିତ ନହେବା ଆମ ଭାଗ୍ୟର ବିଡ଼ମ୍ବନା ନିଶ୍ଚିତ ।

ଦୀର୍ଘ ୯୧ ବର୍ଷର ବ୍ୟବଧାନରେ ଅନୁଷ୍ଠିତ ହେବାକୁ ଯାଉଥିବା ଉତ୍କଳ ସମ୍ମିଳନୀ ଅବସରରେ ଓଡ଼ିଶାର ନାନାବିଧ ସମସ୍ୟା ଓ ତାହାର ସମାଧାନ ଦିଗରେ ଆଲୋକପାତ କରିବାର ଆବଶ୍ୟକତା ମନେକରି ଉପସ୍ଥାପନ କରୁଛି ।

୧. ଓଡ଼ିଶାର ଭୂଖଣ୍ଡ ଅନ୍ୟାନ୍ୟ ରାଜ୍ୟ ମାନଙ୍କ ତୁଳନାରେ ଛୋଟ ହେଲେ ମଧ ଏହା ପ୍ରାକୃତିକ ସମ୍ପଦରେ ଭରପୁର । ଅତୀତରେ ଏହାର ଏକ ତୃତୀୟାଂଶ ଜଙ୍ଗଲ , ପାହାଡ଼ ଇତ୍ୟାଦିରେ ପରିପୂର୍ଣ୍ଣ ଥିଲା ; ମାତ୍ର ଜନ ବିସ୍ଫୋରଣ ଓ ବାସୋପଯୋଗୀ ଜମି ସୃଷ୍ଟି ହେତୁ ଅନେକ ଜଙ୍ଗଲ ଧ୍ୱଂସ କରାଯାଇଛି ଓ ଅଦ୍ୟାବଧି ଏହା ଚାଲୁ ରହିଛି । ଏହାବ୍ୟତୀତ ସୀମା ବିବାଦ ଓଡ଼ିଶାର ଏକ ମୁଖ୍ୟ ସମସ୍ୟା ହିସାବରେ ମୁଣ୍ଡ ଟେକିଛି । ବିଗତ ପଚାଶ ଦଶକରେ ଓ ଓଡ଼ିଶାର ଉପାନ୍ତ ଅଞ୍ଚଳ ବାଲେଶ୍ୱର ଜିଲ୍ଲାରେ ଓଡ଼ିଆ 'ମଧୁବର୍ଣ୍ଣ ବୋଧ' ର ଆଦୃତି ଥିଲା କାନ୍ଥି (ବର୍ତ୍ତମାନ ପଶ୍ଚିମ ବଙ୍ଗରେ) ପର୍ଯ୍ୟନ୍ତ । କ୍ରମଶଃ , ଈଶ୍ୱର ଚନ୍ଦ୍ର ବିଦ୍ୟାସାଗରଙ୍କ ଲିଖିତ 'ବର୍ଣ୍ଣପରିଚୟ' ଏହି ସୀମାରେ ପ୍ରଚଳନ କରାଯିବାରୁ ଚନ୍ଦନେଶ୍ୱର ଓ

ତାହାର ପାର୍ଶ୍ୱବର୍ତ୍ତୀ ଅଞ୍ଚଳ ଦୀଘା, ବାଡ଼ି ସରିଷା, କଖଡ଼ା, ତଲାଡ଼ି, ପୁରୁଷୋତ୍ତମପୁର, ମିରଗୁଦା, ବହ୍ଲର ପୁର, ଶଂଖମେଦୀ ଠାରୁ ସୁନା କଣିଆ , ଲକ୍ଷ୍ମଣ ନାଥ ପର୍ଯ୍ୟନ୍ତ ଜନସାଧାରଣ ମଧୁବର୍ଣ୍ଣବୋଧକୁ ଆପଣେଇ ନେଲେ । ଦୀଘା ଏବେ ପଶ୍ଚିମବଙ୍ଗ ସରକାରଙ୍କର ଅଧିନରେ ରହିଥିଲେ ମଧ ସେଠାକାର ଜନସାଧାରଣ ଓଡ଼ିଆ ଭାଷା, ସାହିତ୍ୟ ଅଧ୍ୟୟନ ଦିଗରେ ଭୋଗରାଇ, ଜଳେଶ୍ୱରରେ ଥିବା ଶିକ୍ଷାନୁଷ୍ଠାନ ଉପରେ ନିର୍ଭର କରିଥାଆନ୍ତି, ଏଠାକାର ସୀମାରେ ଥିବା ଉଦୟପୁର ବଙ୍ଗଳା ନିକଟରେ ଓଡ଼ିଶା ସରକାରଙ୍କ ପକ୍ଷରୁ ଦୁଇଶହ ମିଟର ପାଚେରୀ ନିର୍ମିତ ହୋଇଥିଲା ଓ ତାହାକୁ ପଶ୍ଚିମ ବଙ୍ଗର ଅଧିବାସୀ ମାନେ ଭାଙ୍ଗିଦେଇଛନ୍ତି ।

ପରିତାପର ବିଷୟ ହେଉଛି, ଦେଉଳାହାଟଠାରୁ ମାତ୍ର ତିନି/ଚାରି କିଲୋମିଟର ଦୂରରେ ଅବସ୍ଥିତ 'ଶଂଖମେଦୀ' ଗ୍ରାମକୁ ବର୍ତ୍ତମାନ ପଶ୍ଚିମବଙ୍ଗ ସରକାର ନିଜ କବ୍‌ଜାରେ ରଖିଛନ୍ତି । ୧୯୧୨ ମସିହାରେ ବଙ୍ଗଳା ଶାସନରୁ ଓଡ଼ିଶା ଡିଭିଜନ୍ର ବାଲେଶ୍ୱର , ପୁରୀ, କଟକ ଓ ସମ୍ବଲପୁର ଜିଲ୍ଲାକୁ ବିହାର ପ୍ରଦେଶ ଶାସନାଧିନ ରଖି ଏହାକୁ ବିହାର-ଓଡ଼ିଶା ପ୍ରଦେଶ ଭାବେ ନାମିତ କରାଯାଇଥିଲା । ପରବର୍ତ୍ତୀ ସମୟରେ ୧୯୩୧ ମସିହାରେ ଓଡ଼ିଶା ଗଠନ ବେଳେ ଏହା ସୀମା, ଶାସନ ଓ ରାଜସ୍ୱକୁ ଦୃଷ୍ଟିରେ ରଖି ବାଲେଶ୍ୱର ଜିଲ୍ଲାର ବାଲିଆ ପାଳ ଥାନାର ଶଙ୍ଖମେଦି, ନାରଦଣ୍ଡି, ଗଣେଶ୍ୱରପୁର ଛକ, ଚନ୍ଦନପୁର, ବାଲିସାହି ପାଟଣା ଏବଂ ଛଳପାହି ପ୍ରଭୃତି ଗ୍ରାମକୁ ଲିଖିତ ଚୁକ୍ତି ନାମାରେ ପାଶ୍ଚିମ ବଙ୍ଗକୁ ଦିଆଯାଇଥିବା ବେଳେ ପ୍ରତିବଦଳରେ ପଶ୍ଚିମବଙ୍ଗ ଅନ୍ତର୍ଗତ ୨୭୦୪ ଫେଜି ଅଧିନସ୍ଥ ଉଦୟପୁର, ଗମ୍ଭରିଆ, ସାହାପୁର, ଟୁକୁରି ହାଜିରା, କାନ୍ଥିଭଉଁରୀ, କନ୍ୟା ଭଉଁରୀ, କନ୍ୟାନଗରୀ ଓ ଫୁଲବଣୀ ଖାସ, ଗ୍ରାମ ଓଡ଼ିଶାକୁ ମିଳିଥିଲା ।

ଶଙ୍ଖମେଦୀ ଗ୍ରାମର ଆୟତନ ୪୪ ଏକର ୭୧ ଡିସିମିଲ । ୧୯୨୭ ବନ୍ଦୋବସ୍ତରେ ଏହି ଗ୍ରାମ ଓଡ଼ିଶାରେ ଥିଲା । ୧୯୩୧ ମସିହା ଫେବୃଆରୀ ମାସରେ ଉକ୍ତ ଗ୍ରାମଟି ପଶ୍ଚିମବଙ୍ଗରେ ସାମିଲ ହୋଇଥିଲେ ମଧ ୧୯୫୫-୫୬ ମସିହା ପର୍ଯ୍ୟନ୍ତ ଓଡ଼ିଶା ସରକାର ଏହି ଗ୍ରାମରୁ ଖଜଣା ଆଦାୟ କରୁଥିଲେ । ତେବେ ୧୯୫୬ ରୁ ଅଦ୍ୟାବଧି ବଙ୍ଗର ରାମନଗର ସ୍ଥିତ କନିଷ୍ଠ ଭୂସଂସ୍କାର ଅଧିକାରୀ ଖଜଣା ଆଦାୟ କରୁଛନ୍ତି । ୬୦ ଦଶକରେ ଏହି ଗ୍ରାମରେ ଏକମାତ୍ର ଓଡ଼ିଆ ପ୍ରାଥମିକ ବିଦ୍ୟାଳୟ ସ୍ଥାପିତ ହୋଇଥିଲା । ୧୯୯୦ ମସିହାରୁ ଓଡ଼ିଶା ସରକାରୀଙ୍କ ଦ୍ୱାରା ଏହି ବିଦ୍ୟାଳୟର ଉନ୍ନତି କରାଯାଇ ଦୁଇଜଣ ଶିକ୍ଷକଙ୍କୁ ନିଯୁକ୍ତି ଦିଆଯାଇଛି । ସେହିପରି ଓଡ଼ିଶା କୃଷି, ଶିଳ୍ପନିଗମ ସହାୟତାରେ ହରିଜନ ମାନଙ୍କୁ ସେଲୋ ଦିଆଯାଇଛି । ଏଠାକାର ଲୋକମାନେ ଭୋଗରାଇ ବ୍ଲକ ଜରିଆରେ କଣ୍ଟ୍ରୋଲ ସାମଗ୍ରୀ, ଇନ୍ଦିରା ଆବାସ, ସ୍ୱାସ୍ଥ୍ୟ ସେବା ଇତ୍ୟାଦି ପାଇଥାନ୍ତି । ଏହି ଗ୍ରାମଟି ମଧ ଭୋଗରାଇ ନିର୍ବାଚନମଣ୍ଡଳୀ ଭୋଟର ତାଲିକାରେ ସାମିଲ୍‌ହୋଇ ରହିଛି । ଏଠାରେ ଶତକଡ଼ା ୯୦ ଭାଗ ଓଡ଼ିଆ ବାସ କରୁଥିବା ହେତୁ ସେମାନଙ୍କର ଘରେ ଓଡ଼ିଆ ତାଳପତ୍ର ପୋଥି, ପଞ୍ଜିକା, ମାଣବସା ଗୁରୁବାର ତଥା ଓଡ଼ିଆ ଆଧ୍ୟାତ୍ମିକ ପୁସ୍ତକ ରହିଛି ।

୧୯୯୨ -୯୩ ମସିହାରେ ବିଜୁପଟ୍ଟନାୟକଙ୍କ ମୁଖ୍ୟମନ୍ତ୍ରୀ ଥିବା ସମୟରେ ତତ୍କାଳୀନ ରାଜସ୍ୱ ମନ୍ତ୍ରୀ ଏବଂ ପଞ୍ଚାୟତିରାଜ ମନ୍ତ୍ରୀ ଏହି ଗ୍ରାମ ପରିଦର୍ଶନରେ ଆସିଥିବା ବେବେଳ ୨୦୦୧ ମସିହାରେ ରାଜସ୍ୱମନ୍ତ୍ରୀ ବିଶ୍ୱଭୂଷଣ ହରିଚନ୍ଦନ ଆସି ସମସ୍ତ ବିବରଣୀ ନେଇଥିଲେ । ତେବେ ସରକାରଙ୍କର ଆନ୍ତରିକତାର ଅଭାବରୁ ଏହାର ଆଶୁସମାଧାନ କରାଯାଇ ପାରିନାହିଁ । ଅପରପକ୍ଷରେ ପଶ୍ଚିମବଙ୍ଗ ସରକାର ରମଧ ପୋଲିସ ମାଧ୍ୟମରେ ଶଙ୍ଖମେଦୀ ଗ୍ରାମର ଲୋକମାନଙ୍କ ଠାରୁ ଅଚାନକ ସେମାନଙ୍କର ଜମିପଟ୍ଟା, ପାଉତି ଇତ୍ୟାଦି ଅନେକ ଜିନିଷ ଜବତ କରିନେଇଛନ୍ତି ଯାହାକି ଭବିଷ୍ୟତରେ ସେହି ନିରକ୍ଷର ଲୋକମାନେ ଓଡ଼ିଶାର ବାସିନ୍ଦା ବୋଲି ପ୍ରମାଣିତ କରିବା କଷ୍ଟକର ବ୍ୟାପାର ।

୨.  ସେହିପରି ମୟୂରଭଞ୍ଜ ଜିଲ୍ଲାର ଉପାନ୍ତ ଅଞ୍ଚଳକୁ ଲାଗିରହିଛି ଝାଡ଼ଖଣ୍ଡ ରାଜ୍ୟ ଓ ପଶ୍ଚିମ ବଙ୍ଗର ସୀମା ଅଞ୍ଚଳରେ ଅବସ୍ଥିତ ରହିଛି ଓଡ଼ିଶାର ଜାମଶୋଳା ତନଖି ଫାଟକ ଏହା ନିକଟରେ ପାଞ୍ଚନମ୍ବର ଓ ଛଅ ନମ୍ବର ଜାତୀୟ ରାଜପଥ ସଂଯୋଗୀକରଣର ସ୍ଥଳ ଝାରପୋଖରୀଆ (ବମ୍ବେଛକ) ଅବସ୍ଥିତ । ପ୍ରତିବର୍ଷ ରାଜ୍ୟସରକାର ଏହି ଫାଟକରୁ ଅନ୍ୟୂନ ୨୦୦ କୋଟି ଟଙ୍କା ରାଜସ୍ୱ ପାଇଥାଆନ୍ତି । ଏହି ତନଖି ଫାଟକର ଖୁବ୍ ନିକଟରେ ସୁବର୍ଣ୍ଣରେଖା ନାଦ ପ୍ରବାହିତ ହେଉଥିବାରୁ ଏହାର ପୂର୍ବ ଇଲାକା ଝାଡ଼ଖଣ୍ଡ ଅଧୀନରେ ରହିଛି । ଅନୁସନ୍ଧାନରୁ ଜଣାଯାଏଯେ ଜାମଶୋଳାଠାରୁ ପଶ୍ଚିମ ବଙ୍ଗରେ ଗୋପୀବଲ୍ଲବପୁର ପର୍ଯ୍ୟନ୍ତ ଗ୍ରାମ ଗୁଡ଼ିକ ଅଧୀନରେ ଓଡ଼ିଶା ଅଧିନରେ ଥିଲା । ଏଠାକାର ଲୋକମାନେ ମଧ ଓଡ଼ିଆ ସାହିତ୍ୟ, ସଂସ୍କୃତିକୁ ଭଲ ପାଆନ୍ତି ଓ ଗ୍ରହଣ କରନ୍ତି । ସବୁଠାରୁ ବିସ୍ମୟକର କଥାହେଲା ଜାମଶୋଳା ଘାଟ ଓ ତାହାର ଆଖପାଖ ଅଞ୍ଚଳ ଗୁଡ଼ିକ ପଶ୍ଚିମବଙ୍ଗ ସରକାରଙ୍କ ମାନଚିତ୍ରରେ ସ୍ଥାନ ପାଇଛି । ଏଥିପ୍ରତି ଓଡ଼ିଶା ସରକାରଙ୍କର ପ୍ରତିବାଦ ନାହିଁ । ଭବିଷ୍ୟତରେ ଏଥିପାଇଁ ଯେ ସମସ୍ୟା ସୃଷ୍ଟି ନହେବ, ଏକଥା କିଏ କହିପାରିବ ?

୩.  ଓଡ଼ିଶାର ସୀମାକୁ ଲାଗି ରହିଛି ପୂର୍ବ ଓ ପଶ୍ଚିମ ସିଂହଭୂମ ଜିଲ୍ଲା ଯାହା ଅଧୁନା ଝାଡ଼ଖଣ୍ଡ ରାଜ୍ୟରେ ଅବସ୍ଥିତ । ଅତୀତରେ ଏହି ଜିଲ୍ଲା ଗୁଡ଼ିକୁର ଉତ୍କଳମଣି ଗୋପବନ୍ଧୁ, ମଧୁସୂଦନ ଦାସ, ପଣ୍ଡିତ ଗୋଦାବରୀଶ ମିଶ୍ର ଇତ୍ୟାଦି ଜନନାୟକ ମାନେ ଆସି ଓଡ଼ିଆ ସ୍କୁଲ, ପାଠାଗାର ନିର୍ମାଣ କରିଥିଲେ । ସେତେବେଳ ମଧ ବିଭିନ୍ନ ଅଞ୍ଚଳରେ ସାହିତ୍ୟ ସଭା, ପାଠାଗାର ଆଲୋଚନା ଇତ୍ୟାଦି ହେଉଥିଲା । ଅଦ୍ୟାବଧି ଏହି ସବୁ ଅନୁଷ୍ଠାନ ଏଠାରେ ରହିଛି । ମାତ୍ର ଝାଡ଼ଖଣ୍ଡ ରାଜ୍ୟ ସୃଷ୍ଟି ହେବା ପରେ ଏଠାରେ ଓଡ଼ିଆ ଶିକ୍ଷା ବଦଳରେ ହିନ୍ଦି ପାଠ୍ୟକ୍ରମ ଚାଲୁ କରିବା ପାଇଁ ଝାଡ଼ଖଣ୍ଡ ସରକାର ଉଦ୍ୟମ ଜାରି ରଖିଛନ୍ତି । ୨୦୦୨ ମସିହାରେ ବାଚସ୍ପତି ଶରତ କରଙ୍କର ପ୍ରତିନିଧିତ୍ୱରେ ଏକ ବିଶେଷଜ୍ଞ କମିଟି ଗଠନ କରାଯାଇ ଝାଡ଼ଖଣ୍ଡ ଅଧୀନସ୍ଥ ସଢ଼େଇକଳା ଓ ଖରସୁଆଁ ସ୍ଥାନକୁ ଓଡ଼ିଶାକୁ ଫେରାଇ ଦିଆଯିବାପାଇଁ ପ୍ରଧାନମନ୍ତ୍ରୀଙ୍କ ଦପ୍ତରରେ ଦାବି ଉପସ୍ଥାପନ କରାଯାଇଥିଲା । ମାତ୍ର ଏହା ପାଣିଫୋଟକା ପରି କିଛି ଦିନରେ ମିଳେଇ ଗଲା । ଏଠାକାର ଜନସାଧାରଣ ଉପାନ୍ତ ଅଞ୍ଚଳରେ ଥିବା ଓଡ଼ିଆ ସ୍କୁଲ, କଲେଜକୁ ଅଧୟନ ପାଇଁ ଆସୁଥିବାବେଳେ ଓ ଓଡ଼ିଆ ପର୍ବପର୍ବାଣୀ ପାଳନ କରୁଥିବା ବେଳେ ଆମ ସରକାରଙ୍କର ଏଥିପ୍ରତି ଆନ୍ତରିକତାର ଅଭାବ ପରିଲକ୍ଷିତ ହେଉଛି ।

ପୁଣି ଏଥର ସମସ୍ୟା ହେଲା ସୀମାନ୍ତ ରାଇରଙ୍ଗପୁର ଠାରୁ ସାରସକଣା ବ୍ଲକ ପର୍ଯ୍ୟନ୍ତ ସମସ୍ତ ଅଞ୍ଚଳର ଅଧିବାସୀ ଆମ ରାଜ୍ୟ ସରକାରଙ୍କଠାରୁ ବିଶେଷ ସୁବିଧା ପାଆନ୍ତି ନାହିଁ । ତେଣୁ କିଛି ଶିକ୍ଷିତ ବ୍ୟକ୍ତ ବିଶେଷଙ୍କ କହିବା ଅନୁସାରେ – "ଅସ୍ତାଚଳ ସୂର୍ଯ୍ୟଙ୍କୁ ନମସ୍କାର କରିବା ପରିବର୍ତ୍ତେ ଉଦିତ ସୂର୍ଯ୍ୟଙ୍କୁ ସ୍ୱାଗତ କରିବା ଶ୍ରେୟସ୍କର" । ରାଜ୍ୟ ସରକାରଙ୍କର ଚରମ ଉଦାସୀନତା ହେତୁ ଏଠାକାର ଆଦିବାସୀ ଓ ହରିଜନ ସମ୍ପ୍ରଦାୟ ମଧ୍ୟରେ ନକ୍ସାଲ ମାନଙ୍କୁ ସହଯୋଗ କରିବାର ମନୋବଳ ବୃଦ୍ଧି ପାଉଛି । ଏହି ଅଞ୍ଚଳ ଗୁଡ଼ିକ ନକ୍ସାଲ ଉପଦ୍ରୂତ ବୋଲି ଜାଣି ମଧ ସରକାର କିପରି ଚେଇଁ ଶୋଇଛନ୍ତି ଓ ଜନସାଧାରଣଙ୍କ ମଧ୍ୟରେ ସଚେତନତା ସୃଷ୍ଟି ଦିଗରେ ସ୍ୱତନ୍ତ୍ର କାର୍ଯ୍ୟକ୍ରମ ହାତକୁ ନେଉନାହାନ୍ତି, ତାହା ଆମର ପ୍ରଶ୍ନ । ମୁଁ ଏହି ଅଞ୍ଚଳରେ ଦୀର୍ଘ ବାରବର୍ଷ ଧରି ଅଧ୍ୟାପନା କାଳରେ ଅନୁଭବ କରିଛିଯେ, ସରକାରଙ୍କର ଏହି ଅଞ୍ଚଳ ପ୍ରତି ଟିକିଏ ଦୃଷ୍ଟି ନାହିଁ ଏବଂ ସେଥିପାଇଁ ଲୋକମାନେ ନିଷ୍ପେଷିତ ହେଉଛନ୍ତି । ଉପକୂଳବର୍ତ୍ତୀ ଜିଲ୍ଲା ମାନଙ୍କର ସାମାନ୍ୟ ସମସ୍ୟାରେ ପରମାଣୁ ବୋମା ଭଳି ପ୍ରତିବାଦର ସ୍ୱର ଶୁଣାଯାଉଥିବା ସ୍ଥଳେ ଆଦିବାସୀ ଅଧୁସିତ ଅଞ୍ଚଳ ମାନଙ୍କରେ ଏହାର ଲେସମାତ୍ର ଚିହ୍ନନାହିଁ । ତେଣୁ ଜନସାଧାରଣଙ୍କର ମୌଳିକ ସମସ୍ୟା

ପ୍ରତି ସ୍ୱତନ୍ତ୍ର ଧ୍ୟାନ ନଦେଲେ ଭବିଷ୍ୟତରେ ଏହି ସବୁ ଅଞ୍ଚଳ ଝାଡ଼ଖଣ୍ଡ ରାଜ୍ୟରେ ମିଶ୍ରଣ ହେବା କିଛି ବିଚିତ୍ର ନୁହେଁ ।

୪. ଅତୀତରେ ଆମର ରାଜ୍ୟରେ ଅନେକ ଲୋକ ପ୍ରତିନିଧି, ମନ୍ତ୍ରୀମାନେ ଭାଷା, ସାହିତ୍ୟ, ସଂସ୍କୃତି ପ୍ରତି ଯତ୍ନବାନ ଥିଲେ ଏବଂ ସେମାନଙ୍କର ଆନ୍ତରିକ ଉଦ୍ୟମ ଫଳରେ ଓଡ଼ିଶାରେ ଅନେକ ସ୍ୱତନ୍ତ୍ର କାର୍ଯ୍ୟକ୍ରମ ହାତକୁ ନିଆଯାଉଥିଲା ।

୫. ଓଡ଼ିଶାର ପ୍ରାଚୀନ କବି ଦୀନକୃଷ୍ଣ ଦାସଙ୍କର ଜନ୍ମ ଜଳେଶ୍ୱର ଠାରେ ଥିବା ସୁନା କଣିଆଁ ଗ୍ରାମରେ । ମାତ୍ର ଏହା ଅଧୁନା ପଶ୍ଚିମ ବଙ୍ଗରେ ଅବସ୍ଥିତ । ଯଦି ସରକାରୀ ଉଦ୍ୟମରେ କବିଙ୍କର ଜନ୍ମ ସ୍ଥଳୀରେ ଉନ୍ନତି କରାଯାଇ ପାରନ୍ତା ତେବେ ଦିବଙ୍ଗତ ଏହି ବ୍ୟକ୍ତିତ୍ୱ ପ୍ରତି ଉତ୍ତମ ସମ୍ମାନର ପରିଚୟ ମିଳନ୍ତା । ସେହିପରି ପ୍ରସିଦ୍ଧ ଗୀତଗୋବିନ୍ଦର ଲେଖକ ଜୟଦେବଙ୍କ ଜନ୍ମ ଓଡିଶାର କେନ୍ଦୁବିଲ୍ ହୋଇଥିବା ସ୍ଥଳେ ପଶ୍ଚିମ ବଙ୍ଗର ଅଧିବାସୀମାନେ ଏହି ଅଞ୍ଚଳଟି ପଶ୍ଚିମବଙ୍ଗରେ ଅବସ୍ଥିତ ବୋଲି ଦାବି କଲେଣି । ଏହା ଆମ ରାଜ୍ୟ ପ୍ରତି ଅପମାନ ନହେଁକି ?

୬. ପ୍ରାକୃତିକ ସମ୍ପଦରେ ଭରା ଆମ ରାଜ୍ୟରେ କିନ୍ତୁ ଶଠତା ବ୍ୟଭିଚାର, ଅସାମାଜିକତା ଇତ୍ୟାଦି ବଢ଼ିବାରେ ଲାଗିଛି । କେତେବେଳେ ଖଣି ଦୁର୍ନୀତିର ସ୍ୱର ଶୁଭୁଛିତ କେତେବେଳେ ବଙ୍ଗାଳୀ ଶରଣାର୍ଥୀମାନେ ଓଡ଼ିଶାର ଚାରିଆଡ଼େ ଆସ୍ଥାନ ଜମାଇବା କଥା ସମ୍ବାଦପତ୍ରରେ ଆଲୋଚନା ହେଉଛି । ମାନ୍ୟବର ଓଡ଼ିଶା ହାଇକୋର୍ଟ ତାଙ୍କ ରାୟରେ ୪୯୮ ବଙ୍ଗଳାଦେଶୀ ଶରଣାର୍ଥୀ ମାନଙ୍କୁ ନିଜ ଦେଶକୁ ଫେରି ଯିବାକୁ ନିର୍ଦ୍ଦେଶ ଦେଇଥିବା କଥା ଗତ ୧୯.୦୧.୦୫ ରିଖ 'ଧରିତ୍ରୀ' ରେ ପ୍ରକାଶିତ ହୋଇଛି । କିନ୍ତୁ କିଛି ରାଜନେତା ଭୋଟବ୍ୟାଙ୍କ ସୃଷ୍ଟି ଉଦ୍ଦେଶ୍ୟରେ ସେହି ଶରଣାର୍ଥୀ ମାନଙ୍କୁ ସ୍ଥାନ ନ ଛାଡ଼ିବା ପାଇଁ ଇନ୍ଧନ ଯୋଗାଉଛନ୍ତି । ଏହାଦ୍ୱାରା ଓଡ଼ିଶାଯେ କିପରି ଭୂଲୁଣ୍ଠିତ ହେଉଛି, ତାହା ବିଚାର୍ଯ୍ୟ ।

୭. କେନ୍ଦ୍ରରେ ମଧ୍ୟ ଓଡ଼ିଶାର ସ୍ୱରକ୍ଷୀଣ ହେତୁ ଯଥେଷ୍ଟ ଅନୁଦାନ ମିଳୁନାହିଁ ଏବଂ କତିପୟ କେନ୍ଦ୍ରୀୟ ରାଜନେତାଙ୍କ ହୀନ ଚକ୍ରାନ୍ତ ଫଳରେ ଓଡ଼ିଶା ସବୁଦିନ ପାଇଁ ଏକ ପଛୁଆରାଜ୍ୟ ହୋଇ ରହିଛି ।

ଉପରୋକ୍ତ ଆଲୋଚନାରୁ ଆମକୁ ମନେରଖିବାକୁ ହେବ ଯେ, ଯେତେ ଦିନ ପର୍ଯ୍ୟନ୍ତ ଆମେ ଓଡ଼ିଶାବାସୀ ନିଜ ଜନ୍ମ ମାଟିର ସ୍ୱାର୍ଥରକ୍ଷା କରିବାପାଇଁ ସମ୍ମିଳିତ ଉଦ୍ୟମ ନକରିବା ଏବଂ ସମସ୍ତ ପ୍ରତିକୂଳ ପରିସ୍ଥିତିର ଉପଯୁକ୍ତ ମୁକାବିଲା କରିବା ପାଇଁ ଏକ ନହେବା, ସେତେଦିନ ପର୍ଯ୍ୟନ୍ତ ଓଡ଼ିଶା ଅବହେଳିତ ଓ ଉପେକ୍ଷିତ ହୋଇରହିଥିବ ଆମର ଭାଷା, ସାହିତ୍ୟ, ସଂସ୍କୃତି , ପରମ୍ପରା, ସମୃଦ୍ଧ ହୋଇରହିଛି ଏବଂ ଏହାକୁ ଚିରିଦିନ ବଜାୟ ରଖିବା ପାଇଁ ଆମେ ସଦାସର୍ବଦା ଚେଷ୍ଟାକରିବା ଆବଶ୍ୟକ । ନୂତନ ଶତାବ୍ଦୀର ପ୍ରାରମ୍ଭରେ ଓଡ଼ିଶାକୁ ଏକ ଶାନ୍ତିମୟ, ପ୍ରଗତିଶୀଳ ରାଷ୍ଟ୍ର ହିସାବରେ ସୃଷ୍ଟି କରିବାର ପ୍ରୟାସ ଜାରିରହୁ, ଏତିକି କମନା । ଉତ୍କଳ ମଣିଗୋପବନ୍ଧୁ ଦାସଙ୍କ ଭାଷାରେ :-

"ଜୀବନ କି ଖାଲି ନିରାଶାର ବାଲି
ମରୁ ମରୀଚିକା ସେନେହ ପ୍ରୀତି,
ତେବେକି ଆଶାରେ କହଏ ସଂସାରେ
ପରଲାଗି ନର ମରୁଛି ନିତି ।"

# ଶରତପାଳ ମହାବିଦ୍ୟାଳୟ, ସାରସକଣା,
ଜି: ମୟୂରଭଞ୍ଜ-୭୫୭୦୫୫

# ଓଡ଼ିଶା : ତା'ର ମାଟି, ପାଣି ଓ ପବନ

## ପ୍ରଫେସର ଡଃ ଦେବେନ୍ଦ୍ର ନାଥ ରାଉତ

ବିଂଶ ଶତାବ୍ଦୀ ଖୁବ୍ ସନ୍ତର୍ପଣରେ ଅତିକ୍ରାନ୍ତ ହେଲା । ଏକବିଂଶ ଶତାବ୍ଦୀ ଖୁବ୍ ଜାକ୍‌ଜମକରେ ପଦାର୍ପଣ କଲା । ସାରା ବିଶ୍ୱ ଉନ୍ମାଦରେ ଆତ୍ମହରା ହେଲା । ଓଡ଼ିଶା ସେଥିରୁ ବାଦ ପଡ଼ିନାହିଁ । ବିଗତ ଶତାବ୍ଦୀରେ ଓଡ଼ିଶା ଏକ ସ୍ୱତନ୍ତ୍ର ପ୍ରଦେଶର ମାନ୍ୟତା ପାଇଲା । ଓଡ଼ିଆ ଭାଷାକୁ ନେଇ ଓଡ଼ିଆ ନିଜର ପରିଚୟ ଜାହିର କଲା । ଓଡ଼ିଆ ପୁଏ ନୂତନ ଶତାବ୍ଦୀର ନୂତନ ସକାଳର ନୂତନ ସୂର୍ଯ୍ୟକୁ ସ୍ୱାଗତ ଜଣାଇ କଳକଳ ଛନ୍ଦରେ ଗାଇ ଉଠିଲେ :

''ପୁରାତନ ତନୁ ପାଦତଳେ ଦଳି
ଆସିଛ ନୂତନ ତୁମେ,
ଓଡ଼ିଶା ତୁମକୁ ଅଭିଷିକ୍ତ କରେ,
ଗଉରବ ସିଂହାସନେ ।''

ବିଗତ ଶତାବ୍ଦୀରେ ଏ ଜାତିପାଇଁ ଆମେ କି ଗୌରବ ଆଣି ଦେଇ ପାରିଛୁ, ତାହାକୁ ଆଜି ଏହି ନୂତନ ଶତାବ୍ଦୀର ପଛକୁ ଫେରିଚାହିଁ ଦେଖିବାର ସୁଯୋଗ ମିଳିଛି । ଏହି ଅବକାଶରେ ଆସନ୍ତୁ, ଆମେ ସମସ୍ତେ ଆମ ଓଡ଼ିଶାର ମାଟି, ପାଣି ଓ ପବନକୁ ପଚାରିବା, ସେମାନଙ୍କ ଠାରୁ ସେ ପ୍ରଶ୍ନର ଉତ୍ତର ଖୋଜିବା, ଆମେ ଏ ଜାତିପାଇଁ କ'ଣ କରିଛୁ, କ'ଣ ପାଇଛୁ, ଓ କ'ଣ ହରାଇଛୁ ।

ଏ ନୂତନ ଶତାବ୍ଦୀର ପ୍ରଥମ ସକାଳର ପ୍ରଥମ ସୂର୍ଯ୍ୟ କିରଣ ଯେତେବେଳେ ଆମ ଓଡ଼ିଶା ମାଟିର ପାଣି ପବନରେ ବିଚ୍ଛୁରିତ ହୋଇଗଲା, ସେତେବେଳେ ଆମେ ସତରେ କ'ଣ ଦେଖିଥିଲେ—

-ଘାସ ଉପରେ କେହି ପ୍ରଥମ ସକାଳର କାକରବିନ୍ଦୁର
କ'ଣ ଅଭିମାନ ଥିଲା ?
-ଧାନକିଆରୀରେ ଧାନଫୁଲର ବାସ୍ନା କ'ଣ ସତରେ
ବାରି ହେଉଥିଲା ?
- ନଈ ପାଣି ସତରେ କ'ଣ ନାଚିନାଚି ଥକି ପଡୁଥିଲା ?
- ଗଭୀର ଜଂଗଲ ଭିତରେ ଗଛପତ୍ରର ଚୁପ୍-ଚାପ୍ କଥା
କ'ଣ ଶୁଣି ପାରୁଥିଲେ ?
- ବଗିଚାରେ ଫୁଲମାନଙ୍କର ସଜଳ ଆଖି କ'ଣ
ଦେଖି ପାରୁଥିଲେ ?

ଏଠାର ଏହା କହିବାର ଅର୍ଥ ହେଉଛି, କିଛି ଅସଜଡ଼ା ଲାଗୁଥିଲା ଏ ମାଟି, ପାଣି ଆଉ ପବନରେ । ତେଣୁ ନୂତନ ଶତାବ୍ଦୀର ନୂତନ ସୂର୍ଯ୍ୟର ପ୍ରଥମ କିରଣ ଆଖିର ଭୁଲତାରେ କ୍ଳାନ୍ତି ଭରି ଦେଇଥିଲା । ଏହି ନୂତନ ସକାଳକୁ ଅନୁଭବ କରିବାର ପରିସୀମା ଅବରୁଦ୍ଧ ହେଇଯାଉଥିଲା ଆଜିର ସନ୍ଦେହ ଓ ହତାଶାର ଅନୁଚିନ୍ତା ମଧ୍ୟରେ । ଆମେରିକାର ପୂର୍ବତନ ରାଷ୍ଟ୍ରପତି ଫ୍ରାଙ୍କ୍‌ଲିନ୍ ଡି. ରୁଜ୍‌ଭେଲ୍‌ଟ୍‌ଙ୍କ ଭାଷାରେ -

''ଆଜିର ସନ୍ଦିଗ୍ଧ ଚିନ୍ତାହିଁ କାଲିର ପ୍ରଭାତକୁ
ଅନୁଭବ କରିବାର ଏକମାତ୍ର ଅନ୍ତରାୟ ।''

ଏଠାରେ ଏସବୁ ଅବତାରଣା କରିବାର ଅନ୍ୟ ଏକ ଉଦ୍ଦେଶ୍ୟ ଲୁଚି ରହିଛି । ତାହା ହେଲା, ଆମ ଓଡ଼ିଶାର ମାଟି, ପାଣି ଓ ପବନରେ ଆମେ ଯାହା ଖୋଜୁଛୁ ତାହା ପାଇନାହୁଁ ଓ ଯାହା ପାଇଛୁ ତାହା ଚାହିଁ ନଥିଲୁ ।

ଆମ ଓଡ଼ିଶାରେ ଭରି ରହିଛି ଛୋଟ ବଡ଼ କାହିଁ କେତେ ପଲ୍ଲୀ ଗାଁ । ବିଗତ ଶତାବ୍ଦୀରେ ଆମେ ଦେଖିଛୁ, ଓଡ଼ିଆମାନେ ଗାଁ ମାଟି ଛାଡ଼ି ଆସାମର ଚା' ବଗିଚା ଓ କଲିକତାର ଚଟକଳର କୁଲିକାମ କରିବାକୁ ଯାଉଥିଲେ । କିନ୍ତୁ ଆଜିର ଗ୍ରାମୀଣ ଚିତ୍ର ଆହୁରି ନିର୍ମମ ହୋଇ ଉଠୁଛି । ଆଜି ଆମ ଓଡ଼ିଆ ଭାଇ ଦୂରଦେଶରେ ଦାଦନ ଶ୍ରମିକ ସାଜିଛି । ଆସନ୍ତୁ, ଏହି ଦୁଇଟି ଚିତ୍ରକୁ ଆଖି ଆଗରେ ତୋଳି ଧରିବା ।

ବିଂଶ ଶତାବ୍ଦୀରେ ଓଡ଼ିଶାର ଚଷୀପୁଅ ଚାଷକାମ ଛାଡ଼ି ଦୂରମୁଲକରେ କୁଲିକାମ କରି ବର୍ଷ ବର୍ଷ ଧରି ଗାଁକୁ ଫେରୁନଥିଲେ । ଗାଁର ଭିଟାମାଟି ଘର ଉଜୁଡ଼ି ପଡୁଥିଲା । ସେଥିପାଇଁ 'ଛୋଟ ମୋର ଗାଁଟି'ରେ ସ୍ୱର୍ଗତ କବି ସଚ୍ଚି ରାଉତରାୟ ଗାଇ ଉଠିଥିଲେ -

''ଖଣ୍ଡିଆ କାନ୍ଥ ଗାଁଟା ହେଲା
ଡିହରେ ନାଚେ ବିଲୁଆପିଲା
ଆସାମ ଗଲେ ଉଚ୍ଛନ୍ନ ହେଲେ
ଘରେତ ଚାଷୀ ନାହାନ୍ତି,
ଛୋଟ ମୋର ଗାଁଟି ।''

କିନ୍ତୁ ତା'ର ପରମୁହୂର୍ତ୍ତରେ ଗାଁର ସରଳ, ତରଳ, ରସ ଢଳଢଳ ପ୍ରକୃତିରେ ଭରା ଶୋଭା-ପସରାକୁ ଆଖି ଆଗରେ ଥୋଇ ଓଡ଼ିଆ ପ୍ରାଣରେ ପୁଲକ ସୃଷ୍ଟି କରି ସେ ପୁଣି ଗାଇ ଉଠିଥିଲେ -

''ତା'ରି ଜଳ ରକତ ହୋଇ,
ଶିରାରେ ବହେ ଯେସନ ନଈ
ତା'ରି ବାୟୁ ନିଃଶ୍ୱାସେ ମୋ,
ଚଳାଏ ପ୍ରାଣ-ନାଆଟି,
ଛୋଟ ମୋର ଗାଁଟି ।''

ଆଜି ଗାଁର ଏହି ରୂପ ଆହୁରି ବିକଟାଳ ହୋଇ ପଡ଼ିଛି । ଗାଁ ମାଟିରେ ସେ ଅପାସୋରା ରୂପ ଲାବଣ୍ୟ ନାହିଁ, ଯାହା ଦୂରଦେଶରେ ରହିଥିବା ଓଡ଼ିଆ ପ୍ରାଣରେ ଝଙ୍କୃତ ହୋଇ ଉଠିବ । ଗାଁରେ ବିଲୁଆ, ଶିଆଳ ଇତ୍ୟାଦିର ଡାକ, ପକ୍ଷୀର କାକଳି, ମାଟିର ବାସ୍ନା, ଘାସ ପଡ଼ିଆରେ ଝିଣ୍ଟିକା, ନାଲି ଟୁକୁଟୁକୁ ସାଧବବୋହୂ ପୋକ, କଙ୍କି ଏବଂ ଛୋଟଛୋଟ ଚଢ଼େଇମାନଙ୍କର କିଚିରି ମିଚିରି ଶବ୍ଦ, ବୃକ୍ଷରାଜି ଘେରା ଗାଁର ସୌନ୍ଦର୍ଯ୍ୟ ଆଜି ସ୍ୱପ୍ନ ହୋଇ ଉଠିଛି । ପ୍ରକୃତିକୋଳରେ ଆମେ ବଢ଼ିଥିଲେ, ନିରାପତ୍ତା ପାଇଁ ଆଶଙ୍କା ନଥିଲା । ଆଜି କିନ୍ତୁ ଆମେ ଆମ ପିଲାର ଭବିଷ୍ୟତ ପାଇଁ ଚିନ୍ତିତ । ସେ ବର୍ଷାରେ ଭିଜୁନାହିଁ । ସେ ଆଜି କଂକ୍ରିଟ ଜଂଗଲରେ ବଢୁଛି । ତା' ମନରେ ସବୁଜିମାର କୋମଳତା ନାହିଁ । କେବଳ ଭରି ରହିଛି କଂକ୍ରିଟ୍‌ର କଠୋରତା । ତା'ରି ଗାଁର ପରିବେଶ କେତେ ଦୂଷିତ ତାହା ତା'ର ନାକ ଉପରେ ଥିବା ରୁମାଲରୁ ଜଣାପଡୁଛି । ତା'ର ଚାରିପାଖରେ ଖାଲି ଦୂଷିତ ଜଳ ଓ ଦୂଷିତ ପବନ । ଏହି ପରିବେଶରେ ଦୂରଦେଶରେ ଥିବା ଦାଦନ ଶ୍ରମିକର ମନରେ ନିଜ ଗାଁର କେଉଁ ପ୍ରତିଛବି ଉଙ୍କି ମାରି ଉଠିବ ତାହା ସହଜରେ ଅନୁମେୟ । ସେହି ଦାଦନ ଶ୍ରମିକର ପିଲା 'ଛୋଟ ମୋର ଗାଁଟି' କବିତାର ସଂଶୋଧନ କରି ଗାଇବ-

''ତାହାରି ଜଳ ରକତେ ମିଶି,
ଶିରାରେ ବହେ ଜହର ସାଜି
ତା'ରି ବାୟୁ ନିଃଶ୍ୱାସେ ଆଜି
ଗଳାକୁ ଚିପି ଧରେଟି
ଛୋଟ ମୋର ଗାଁଟି ।''

ବିକାଶ ପାଇଁ ଆଜି ଏ ରାଜ୍ୟରେ ସବୁଜିମା ଘେରା ପାହାଡ଼ ପର୍ବତମାନଙ୍କରେ ଡିନାମାଇଟ୍‌ର ପ୍ରହାର ହେଉଛି । ଏହାର ମୂଲ୍ୟ ସେଠାକାର ସାଧାରଣ ଲୋକ ଦଉଛନ୍ତି । ଉପକୂଳ ଅଂଚଳର ବିକାଶ ପାଇଁ ହେନ୍ତାଳ ବଣକୁ ଧ୍ୱଂସ କରାଯାଉଛି, ଏହାଦ୍ୱାରା ସାମୁଦ୍ରିକ ପ୍ରଦୂଷଣ ବଢ଼ିବାରେ ଲାଗିଛି । ନିଜର ବିଳାସ ପାଇଁ ସମୁଦ୍ର ବେଳାଭୂମିରେ ଗଢ଼ି ଉଠୁଛି ବହୁତଳ ବିଶିଷ୍ଟ ହୋଟେଲ । ପ୍ରଚୁର ଅର୍ଥ ଉପାର୍ଜନ ପାଇଁ ଚିଙ୍ଗୁଡ଼ି ଚାଷ ହେଉଛି । ଯାହାଫଳରେ ଭିତରକନିକା ଓ ଚିଲିକା ଆଦି ଲୁଣ୍ଠନକାରୀଙ୍କର ଲୋଲୁପ ଦୃଷ୍ଟିର ଶିକାର ହୋଇଛି । ଏହା ଉପରେ ଜୀବିକା ପାଇଁ ନିର୍ଭର କରୁଥିବା ଲୋକେ ହାହାକାର କରୁଛନ୍ତି । ଅନେକ ସମୟରେ ପ୍ରଶ୍ନ ଉଠେ ଏ ଚିଙ୍ଗୁଡ଼ି ଚାଷ କାହାପାଇଁ ? ବିଦେଶ ବଜାରକୁ ଏହା ରପ୍ତାନୀ ହେବ, ଏହା ବିନିମୟରେ ବୈଦେଶିକ ମୁଦ୍ରା ଅର୍ଜନ ହେବ । କିନ୍ତୁ ଯେଉଁମାନଙ୍କ ମାଟିରେ ଏହା ଗଢ଼ି ଉଠିଛି, ସେଇ ମାଟିର ଲୋକମାନେ ଅର୍ଦ୍ଧଉଲଗ୍ନ ଏବଂ ଉପବାସରେ ଦିନ କାଟୁଛନ୍ତି । ବିକାଶର ବସନ୍ତ ପବନ ସ୍ପର୍ଶ ପାଇବାରୁ ସେମାନେ ବଂଚିତ । ବିକାଶ ନାମରେ ନଦୀକୂଳ ମାନଙ୍କରେ ଗଢ଼ିଉଠୁଛି ବଡ଼ବଡ଼ ସହର ଓ କଳ କାରଖାନା । ଆଜି ସେଇ ନଈର ଛଇଳ ଚପଳ ରୂପ ନାହିଁ । ତା'ର ପାଣିରେ ଆଜି ଖାଲି ବିଷ ଭରି ଯାଉଛି । ମାଛ ଜାତୀୟ ଜଳଚର ପ୍ରାଣୀ ନଦୀଜଳରେ ବଂଚିବା ସମ୍ଭବ ହେଉନାହିଁ । ନଈ କ୍ରମେ ପାଲଟି ଯାଉଛି 'ମଲାନଈ' । ପଲ୍ଲୀଗାଁ ପାଖଦେଇ ବହି ଯାଉଥିବା ନଈର ଦୃଶ୍ୟରେ ଆତ୍ମହରା ହୋଇ କବି 'ଗଡ଼ନାୟକ' ଯେଉଁ ଚିତ୍ରପଟ ପ୍ରବାସୀ ଓଡ଼ିଆଙ୍କ ମାନସପଟରେ ଆଙ୍କି ପାରିଲେ, ତାଙ୍କର ସେହି 'ମାଟିର ମଣିଷ' କବିତାର ଗୋଟିଏ ପଙ୍‌କ୍ତି ଉପରେ ଦୃଷ୍ଟିପଡ଼େ—

''ମନେ ପଡୁନାହିଁ ତୋ'ରି ଗାଁଆର
ଛଇଳ ଚପଳ ନଈ
ପଲ୍ଲୀବଧୂର ସ୍ନିଗ୍ଧ ମଧୁର
ପାଣି ବୋହିବାର ଛଇ ?''

ଏକବିଂଶ ଶତାବ୍ଦୀର ଓଡ଼ିଆ ଦାଦାନ ଶ୍ରମିକ ନିଜ ପଲ୍ଲୀଗାଁ ଧାର ଦେଇ ବହି ଯାଉଥିବା 'ବିଷନଈ' କୂଳରେ ବସି କି ସ୍ୱପ୍ନ ଦେଖିବ ? ଉକ୍ତ ପଙ୍‌କ୍ତି ଅସଜଡ଼ା ଭଳି ଲାଗିବ । ସେ କବିତାକୁ ସଂଶୋଧନ କରି ନୂତନ ସଂସ୍କରଣର ରୂପଦେଇ ଗାଇ ଉଠିବ -

''ମନେ ପଡୁନାହିଁ ତୋ'ରି ଗାଁଆର
ବିଷଭରା ମଲାନଈ
ପଲ୍ଲୀବଧୂର ଦେହ ଜଳିଯାଏ
ସେ ପାଣିକୁ ଦେଲେ ଛୁଇଁ ।''

କେଉଁ ଆବହମାନ କାଳରୁ ଏ ମାଟିତଳେ ସଂଚିତ ରହିଥିବା ଖଣିଜ ସଂପଦ ଉପରେ କ'ଣ କେବଳ ଆମରହିଁ ଅଧିକାର ରହିଛି ? ଏ ସଂପଦ ଉପରେ ଆମ ପୁଅ, ନାତି ଓ ଅଣନାତିମାନଙ୍କର କ'ଣ ଅଧିକାର ନାହିଁ ? ଏ ଦୃଷ୍ଟିରୁ ବିଚାର କଲେ ଆମ ରାଜ୍ୟର ଖଣିଜ ସଂପଦର ସୁବିନିଯୋଗ ପାଇଁ ଏକ ପ୍ରକୃଷ୍ଟ ପନ୍ଥା ନିରୂପଣ କରିବାର ବେଳ ଆସିଲାଣି ।

ଆମ ଓଡ଼ିଶା ଖୁବ୍ ସୁନ୍ଦର । ଏହା କେବଳ ଆମରି ନୁହେଁ, ଆମର ଆଗାମୀ ପିଢ଼ିର ଦାୟାଦ ମାନଙ୍କର । ଆମେ କେଉଁ ଅଧିକାରରେ ଆଜି ତାକୁ ଉଜାଡ଼ି ଦେବା ? ଆମେ ଆମ ପୂର୍ବ ପିଢ଼ିଙ୍କ ଠାରୁ ଓଡ଼ିଶାକୁ ଯେଉଁଭଳି ପାଇଛୁ, ତାର ସୁଧମୂଳ ସହ ଆମେ ପୁଣି ଛାଡ଼ି ଚାଲିଯିବା ଏକ ସୁନ୍ଦର ଓ ମନୋରମ ଓଡ଼ିଶା ଆମ ବଂଶଧରଙ୍କ ପାଇଁ ।

ଆମର ଜୀବନ ଧାରଣ ପାଇଁ ଯେତିକି ପ୍ରୟୋଜନ, ସେତିକି ଏ ମାଟି, ପାଣି ଓ ପବନରୁ ନେଇ ଆମେ ଗ୍ରହଣ କରିବା, ଆଉ ଅଧିକ ଲୋଭ କରିବା ନାହିଁ । ତେବେ ଯାଇ ଏକବିଂଶ ଶତାବ୍ଦୀର ନୂତନ ଓଡ଼ିଶା ଗଢ଼ିବାକୁ ସକ୍ଷମ ହେବା ।

# ପ୍ରାକ୍ତନ ଅଧକ୍ଷ, ଫକୀରମୋହନ ସ୍ୱୟଂଶାସିତ ମହାବିଦ୍ୟାଳୟ, ବାଲେଶ୍ୱର

# ସାଧୁ ସାବଧାନ

## ଇଂ ଅମରେନ୍ଦ୍ର କୁମାର ଦାସ

ଓଡ଼ିଶା ପ୍ରଦେଶ ଗଠନ ହେବା ପୂର୍ବରୁ ଓଡ଼ିଆମାନେ କିପରି ଅବହେଳିତ ଅବସ୍ଥାରେ ଥିଲେ ତାହା ଆମେ ଅଙ୍ଗେ ଲିଭାଇ ନଥିଲେ ମଧ ଇତିହାସ ପୃଷ୍ଠରେ ଏହା ଲପିବଦ୍ଧ ହୋଇ ରହିଛି । ସ୍ୱଜାତିର ଏ ଦୟନୀୟ ଅବସ୍ଥା ଦେଖି ଉତ୍କଳ ମାତାର ଯୋଗଜନ୍ମା ସନ୍ତାନଗଣ ଇଂରେଜ ଶାସକ ନିକଟରେ ବଳିଷ୍ଠ ଯୁକ୍ତି ଉପସ୍ଥାପନ କରି, ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଏକାଠି କରି ଏକ ସ୍ୱତନ୍ତ୍ର ରାଜ୍ୟ ଗଠନ କରାଇ ପାରିଥିଲେ ସତ କିନ୍ତୁ ଓଡ଼ିଶା ମଧରେ ଓ ବାହାରେ କେତେକ ଓଡ଼ିଆଭାଷୀ ଅଞ୍ଚଳ ଓଡ଼ିଶା ସହିତ ସାମିଲ ହୋଇ ପାରି ନଥିଲା । ଏହି ବିଖଣ୍ଡିତ ରାଜ୍ୟକୁ ପୂର୍ଣ୍ଣାଙ୍ଗ କରିବାର ନୈତିକ ଦାୟିତ୍ୱ ପୂର୍ବସୂରୀମାନେ ବଂଶଧରମାନଙ୍କ ଉପରେ ନ୍ୟସ୍ତ କରିଦେଇଗଲେ । ୧୯୪୮ ମସିହାରେ କେତେଗୁଡ଼ିଏ ଦେଶୀୟ ରାଜ୍ୟ ଓଡ଼ିଶା ସହିତ ମିଶି ବୃହତ୍ତର ଓଡ଼ିଶା ଆଖ୍ୟା ପାଇଲା । ମାତ୍ର କେତେକ କୁଚକ୍ରୀ ରାଜନୈତିକ ତୁଙ୍ଗ ନେତାଙ୍କ ଇଙ୍ଗିତରେ ଆମର କେତେ ଗୁଡ଼ିଏ ଓଡ଼ିଆଭାଷୀ ଅଞ୍ଚଳକୁ ଅନ୍ୟ ରାଜ୍ୟକୁ ଟେକି ଦିଅଗଲା । ଏହି ଓଡ଼ିଆଭାଷୀ ବିଛିନ୍ନାଞ୍ଚଳ ଗୁଡ଼ିକୁ ଓଡ଼ିଶା ଶାସନାଧୀନ କରିବା ପାଇଁ ବହୁ ଆନ୍ଦୋଳନ ହୋଇଯାଇଛି । ମାତ୍ର ଗଣତନ୍ତ୍ରର ଲୋକପ୍ରତିନିଧି, ଶାସକ କିମ୍ବା ସୀମା କମିଶନ ଆମକୁ ଆମର ନ୍ୟାଯ୍ୟ ଦାବି ଦେଇ ପାରିଲେ ନାହିଁ । ଆମେ ପାଇଥିଲୁ କଣ ଆଉ ହରାଇଲୁ କଣ ? ସ୍ୱାଧୀନ ହେବାର ଅର୍ଦ୍ଧ ଶତାବ୍ଦୀରୁ ଊର୍ଦ୍ଧ୍ୱ ସମୟ ଅତିବାହିତ ହୋଇ ଯାଇଥିଲେ ମଧ ଆମର ସୀମା ଆଜି ପର୍ଯ୍ୟନ୍ତ ଧାର୍ଯ୍ୟ ହୋଇ ପାରିଲା ନାହିଁ । ଯାହାର ବିଷମୟ ପରିଣାମ ସେହି ଉପାନ୍ତ ଲୋକେ ଭୋଗୁଛନ୍ତି । ଆମେ ଖାଲି ନୀରବ ଦ୍ରଷ୍ଟା ମାତ୍ର ।

ବ୍ରିଟିଶମାନେ ପ୍ରଥମେ ବଙ୍ଗକୁ ଓ ତାର ବହୁ ବର୍ଷପରେ ଓଡ଼ିଶାକୁ ଶାସନ କଲେ । ତାଙ୍କ ଶାସନ କାଳରେ ଆମର ଇଂରାଜୀ ଭାଷା ପ୍ରୀତି ଯାହା ଥିଲା, ସେମାନେ ଦେଶଛାଡ଼ି ଗଲାପରେ ଅର୍ଥାତ୍ ଆମେ ସ୍ୱାଧୀନ ହେଲାପରେ ତାଙ୍କ ଭାଷା ପ୍ରତି ଅହେତୁକ ପ୍ରୀତି ଆମର ବଢ଼ି ଯାଇଛି । କିନ୍ତୁ ପଡ଼ିଶା ପଶ୍ଚିମ ବଙ୍ଗରେ ତାଙ୍କର ମାତୃଭାଷା ପ୍ରତି ଆଦର ସେପରି ଅତୁଟ ରହିଛି । ଇଂରାଜୀ କିମ୍ବା ଅନ୍ୟ ଭାଷା ଶିକ୍ଷା କରିବା କିଛି ଦୋଷାବହ ନୁହେଁ, ବରଂ ଏହା ପାଣ୍ଡିତ୍ୟର ଲକ୍ଷଣ । କିନ୍ତୁ ମାତୃଭାଷାକୁ ଉପେକ୍ଷା କରି ଅନ୍ୟ ଭାଷାକୁ ବ୍ୟବହାର କରିବାର ଉଦ୍ଦେଶ୍ୟ କଣ ଥାଇପାରେ ? ନିଜ ଭାଷାକୁ ପରିପୁଷ୍ଟ କରିବା ପାଇଁ ଅନ୍ୟ ଭାଷାର ସାହାଯ୍ୟ ଦରକାର ହୋଇପାରେ କିନ୍ତୁ ସବୁ କ୍ଷେତ୍ରରେ ନୁହେଁ , ଆଜିକାଲି ବିବାହ ନିମନ୍ତ୍ରଣ ପତ୍ର ଇଂରାଜୀରେ ଲେଖିବା ସାଙ୍ଗକୁ ଲଫାପା ଉପରେ Rajendra Weds Rashmi ଲେଖିବାର ଆବଶ୍ୟକତା ଓ ଅଭିପ୍ରାୟ କଣ ? ଅନ୍ୟ ରାଜ୍ୟ ପରି ଓଡ଼ିଶାରେ ଓଡ଼ିଆକୁ ରାଜଭାଷା କିମ୍ବା ସରକାରୀ ଭାଷାର ମାନ୍ୟତା ଦିଆଯାଇଛି ସତ, କିନ୍ତୁ ତାର ବ୍ୟବହାର ସରକାରୀ ସ୍ତରରେ ଉପରୁ ତଳ ଦପ୍ତର ପର୍ଯ୍ୟନ୍ତ କେତେଦୂର ପାଳନ କରାଯାଉଛି ତାହା ଊଣା ଅଧିକେ ସମସ୍ତଙ୍କୁ ଜଣା । ଦୁଇଜଣ ମୁଖ୍ୟ ମନ୍ତ୍ରୀ ଏ ଦିଗରେ ଚେଷ୍ଟା କରିଥିଲେ ମଧ ଅମଲାତନ୍ତ୍ର ତାକୁ ପାଳନ କଲା ନାହିଁ । ଲୋକପ୍ରତିନିଧିମାନଙ୍କର ଶପଥ ପାଠରୁ ଆରମ୍ଭ କରି ବିଧାନ ସଭା ଆଲୋଚନାରେ ନିଜ ମାତୃଭାଷା ବ୍ୟବହାର ନ କରିବା କି ପ୍ରକାର ନଜିର ସୃଷ୍ଟି କରୁଛି ? ଶିକ୍ଷାନୁଷ୍ଠାନମାନଙ୍କରେ ମାନ ଧୀରେ ଧୀରେ କମିଯାଉଛି । ବ୍ୟବସାୟ ପ୍ରତିଷ୍ଠାନ ମାନଙ୍କରେ ତ୍ରିଭାଷୀ ନିୟମକୁ ନ ମାନି କେବଳ ଇଂରାଜୀରେ ନାମ ଫଳକ ଲେଖା ଯାଉଛି । କେତେକ ସ୍ଥଳରେ ଅନ୍ୟ ପ୍ରାଦେଶିକ ଭାଷାରେ ଲେଖା ଯିବାର ଦୃଷ୍ଟାନ୍ତ ମଧ ଦେଖିବାକୁ ମିଳୁଛି । ଆମେ ସମସ୍ତେ ନିରବ ଦ୍ରଷ୍ଟା । ପ୍ରତିବାଦ କିମ୍ବା ପ୍ରତିକାର ନାହିଁ ।

ଉତ୍କଳୀୟ ସଂସ୍କୃତି ଓ ପରମ୍ପରା ଅତି ପୁରାତନ । ଏହା ଦ୍ୱାରା ଆମର ସ୍ୱତନ୍ତ୍ରତା ଜଣାପଡ଼େ । ବର୍ତ୍ତମାନ ଦେଖାଯାଉଛି । ଉଚ୍ଚ ଶିକ୍ଷିତ ଓ ଉଚ୍ଚ ପଦାଧିକାରୀ ମାନେ ଏହାକୁ ମରହଟ୍ଟୀ ଓ ଅପସଂସ୍କୃତି କହି ପାଶ୍ଚାତ୍ୟ କିମ୍ବା ଅନ୍ୟ ସଂସ୍କୃତିକୁ ଅନୁକରଣ କରୁଛନ୍ତି , ଜନ୍ମ ଦିନରେ ପାଲା, ପୂଜା ପରିବର୍ତ୍ତେ କେକ୍ କଟାଯାଇ Happy Birth day to you ଛନ୍ଦ ପକା ଗଳାରେ କହୁଛୁ । ପୂଜା ମଣ୍ଡପରେ ଭକ୍ତି ସଂଗୀତ ବଦଳରେ ମେଲୋଡ଼ି ପରିବେଶଣ କରାଯାଉଛି । ଏପରିକି ଦେବଦେବୀଙ୍କୁ ଆଧାର କରି ଶସ୍ତା ଗୀତ ମାନ କାନଫଟା ମାଇକ୍‌ରେ ବାଜୁଛି । ବରଯାତ୍ରୀଙ୍କ ଅଗ୍ରଭାଗରେ ଯୁବକମାନେ ପାଗଳପରି ନୃତ୍ୟକରି ନିଜକୁ ଗର୍ବିତ ମନେ କରୁଛନ୍ତି । ରଜ, କୁମାର ପୂର୍ଣ୍ଣିମା, ଗୁରୁବାର ଓଷା ଇତ୍ୟାଦିରେ ବାଗୁଡ଼ି ଖେଳ, କଇଁଫୁଲ ଘର କିମ୍ବା ଓଡ଼ିଆ ଘର ପିଠାପଣା ନ ହୋଇ ଭିଡିଓ ହେଉଛି, ବିବାହ ବ୍ରତ ଇତ୍ୟାଦି ସାମାଜିକ ଭୋଜିଭାତରେ ଓଡ଼ିଆ ଖାଦ୍ୟ ବଦଳରେ ଅନ୍ୟ ଜାତିର ଖାଦ୍ୟ ପରଷା ଯାଉଛି । ସାଂସ୍କୃତିକ କାର୍ଯ୍ୟକ୍ରମରେ ଆମ ଲୋକନୃତ୍ୟ ବଦଳରେ ରେକର୍ଡ କିମ୍ବା ବ୍ରେକ ଡେନ୍ସ ପରିବେଶଣ କରାଯାଉଛି । ସର୍ବୋପରି ଯାତ୍ରା, ଅଭିନୟ , ଚଳଚିତ୍ରରେ ଆମର ନୀତି, ରୁଚିକୁ ଭୁଲି ଅର୍ଦ୍ଧ ନଗ୍ନ ଯୁବତୀମାନଙ୍କର ଅଙ୍ଗଭଙ୍ଗୀ ପ୍ରଦର୍ଶିତ ହେଉଛି । ବ୍ୟବସାୟ ଦୃଷ୍ଟିକୋଣରୁ ଆମ ସଭ୍ୟତାକୁ ଆମେ ଭୁଲି ଯାଉଛୁ ।

ଦିନଥିଲା ଉତ୍କଳମାତାର ବରପୁତ୍ରମାନେ ଆମକୁ ଭାଷାସୂତ୍ରରେ ଗୋଟିଏ ସ୍ୱତନ୍ତ୍ର ପ୍ରଦେଶର ମାନ୍ୟତା ଦେଇ ବିଶ୍ୱ ଦରବାରରେ ପରିଚିତ କରାଇ ଦେଇ ଯାଇଥିଲେ । କିନ୍ତୁ ବର୍ତ୍ତମାନ କେତେକ ନ୍ୟର୍ଥସ୍ୱାର୍ଥ ଲୋକ ନିଜର ବ୍ୟକ୍ତିଗତ ଫାଇଦା ପାଇଁ ଆଞ୍ଚଳିକ ବୈଷମ୍ୟର ଦ୍ୱାହି ଦେଇ ଓଡ଼ିଶାକୁ ପୁନଃ ଭାଗ କରିବାର ଚକ୍ରାନ୍ତ ଚଳାଇଛନ୍ତି । ପଡ଼ୋଶୀ ରାଜ୍ୟର ଅଧିବାସୀମାନେ ଦକ୍ଷିଣାଞ୍ଚଳ ଓ ପଶ୍ଚିମାଞ୍ଚଳରେ , ବାଣିଜ୍ୟ ବ୍ୟବସାୟରେ , ଚାକିରୀ ବାକିରି କରି ନିଜର ଆସ୍ଥାନ ମଜଭୁତ କରିବା ସଂଗେ ସଂଗେ ଆମ ଭାଷା, ଶାସନ ଓ ସଂସ୍କୃତି ଉପରେ ସେମାନଙ୍କର ପ୍ରଭାବ ବିସ୍ତାର କରି ଚାଲିଛନ୍ତି । ଦିନ ଆସିବ ସେ ଅଞ୍ଚଳରେ ଆମକୁ ସେମାନଙ୍କର ବଶତା ସ୍ୱୀକାର କରିବାକୁ ପଡ଼ିବ । ଅନୁପ୍ରବେଶକାରୀ ହେଅନ୍ତୁ କିମ୍ବା ଶରଣାର୍ଥୀ ହୁଅନ୍ତୁ ସେମାନେ ନାନା ଅସାମାଜିକ କାର୍ଯ୍ୟ ଓ ଗୁପ୍ତ ଚର କାର୍ଯ୍ୟ ଇତ୍ୟାଦି କରୁଥିବା ପ୍ରମାଣ ମିଳି ଲାଣି । ଭାଷା ଓ ସଂସ୍କୃତି ହେଲା ଗୋଟେ ଜାତିର ପ୍ରକୃତ ପରିଚୟ । ଭାଷା ବଞ୍ଚିଲେ ଜାତି ପରିଚିତ ହେବ ଏବଂ ଜାତି ବଞ୍ଚିଲେ ପ୍ରଦେଶ ସମୃଦ୍ଧ ହେବ । ଆମ ଭାଷା ଓ ସଂସ୍କୃତି କୌଣସି କାରଣରୁ ଦୁର୍ବଳ କିମ୍ବା ଅବନତି ଆଡ଼କୁ ଗତି କଲେ ଆମର ଭବିଷ୍ୟତ କଣ ହେବ ! ଆମକୁ ହିଁ ଆମର ମାତୃଭାଷା ସୁରକ୍ଷା କରିବା ସଂଗେ ସଂଗେ ନିଜ ପ୍ରଦେଶ ସମୃଦ୍ଧ କରିବାକୁ ପଡ଼ିବ । ଅନ୍ୟ କେହି ଏଥିପାଇଁ ଦାୟୀ ହେବେନି । କିଛି କାର୍ଯ୍ୟ ସାଧାରଣ ଜନତା କରିବେ ଓ ଆଉ କେତେକ ସରକାରୀ ସ୍ତରରେ ହେବ । ଯେଉଁଠି ଜନତା ଯେତେ ସଚେତନ ଏବଂ ଜାଗ୍ରତ ସେଠାରେ ସରକାର ନିଶ୍ଚିତଭାବେ ସକ୍ରୀୟ ହେବେ । ଆମକୁ ନିଷ୍କ୍ରିୟ ହୋଇ ପର ଉପରେ ଦୋଷ ଲଦି ଦେଲେ ଚଳିବ ନାହିଁ । ଆମେ ସମସ୍ତେ ହୀନ ମନ୍ୟତା, ସଙ୍କୀର୍ଣ୍ଣ ଚିନ୍ତାଧାରା ଓ ବ୍ୟକ୍ତିଗତ ସ୍ୱାର୍ଥକୁ ପରିତ୍ୟାଗ କରି ସମ୍ମିଳିତ ଭାବେ ମାତୃଭାଷା ଓ ମାତୃଭୂମିର ସମୃଦ୍ଧି ପାଇଁ କାର୍ଯ୍ୟ କଲେ ଆମର ଆରାଧ୍ୟ ଦେବତା ଶ୍ରୀ ଶ୍ରୀ ଜଗନ୍ନାଥଙ୍କର ଶୁଭାଶିଷ ଆମ ପ୍ରତି ରହିବ ଏଥିରେ ସନ୍ଦେହ ନାହିଁ ।

"ବନ୍ଦେ ଉତ୍କଳ ଜନନୀ"

# ସାଧାରଣ ସମ୍ପାଦକ, ଉତ୍କଳ ସମ୍ମିଳନୀ

# ସ୍ୱାଭିମାନ

## ଶ୍ରୀ ଅଭୟ ସାମନ୍ତରାୟ

'ସ୍ୱାଭିମାନ' ଶବ୍ଦଟି ପ୍ରତି ଅନେକଙ୍କର ପ୍ରାୟ ଦୃଷ୍ଟି ନଥାଏ । ତାହା କିନ୍ତୁ ଆମ ସହିତ ଛାୟା ପରି ଲାଗି ରହିଥାଏ । ପବନ ବା ଆଲୋକ ଆମର ଅଲକ୍ଷ୍ୟରେ ଆମ ଜୀବନ ରକ୍ଷାକରି ଚାଲିଛନ୍ତି । ଆମ ସହିତ ସର୍ବଦା ସେବାକାରୀ ଭାବେ ରହି ଆମ ଅଲକ୍ଷ୍ୟରେ ଅକାତର ଭାବେ ଆମ ପ୍ରାଣ ଓ ଶରୀରକୁ ଜୀବନ୍ତ ରଖିଛନ୍ତି । ଆମେ ମୋହାଚ୍ଛନ୍ନ ହୋଇ ସେମାନଙ୍କ ଅବଦାନ ଓ ଗୁରତ୍ୱ ବୁଝିପାପାରୁନାହୁଁ । ପ୍ରତ୍ୟେକଙ୍କର ସ୍ୱାଭିମାନ ରହିଛି । ସ୍ଥାନ ଓ ସମୟ ଭେଦରେ ତାହା ଭିନ୍ନ ଭିନ୍ନ ରୂପରେ ପ୍ରକାଶ ପାଇଥାଏ । ଗୋଟିଏ ଉଦାହରଣ ଦେଲେ କଥାଟି ପରିଷ୍କାର ହୋଇଯିବ । ଦୁଇଟି ଗାଁର ପିଲା ଏକ ସର୍ବସାଧାରଣ ସ୍ଥାନରେ ଖେଳ ପ୍ରତିଯୋଗିତାରେ ଭାଗ ନେଇଛନ୍ତି । ଉଭୟ ଗ୍ରାମର ଜନସାଧାରଣ ନିଜ ନିଜ ପିଲାଙ୍କ ଖେଳ ଦେଖିବାକୁ ରୁଣ୍ଡ ହୋଇଛନ୍ତି । ସେହିପରି ଦୁଇଟି ଦେଶର ଖେଳାଳୀଙ୍କ ମଧ୍ୟରେ କ୍ରିକେଟ୍ ମ୍ୟାଚ ହେଉଛି । ଦୁଇ ଦେଶରୁ ବହୁ ବ୍ୟକ୍ତି ବହୁଅର୍ଥ ବ୍ୟୟକରି ଦୂର ଦୂରାନ୍ତରୁ ରେଳ ବା ଉଡ଼ାଜାହାଜରେ ନିଜ ଦେଶପିଲାଙ୍କ ଖେଳ ଦେଖିବାକୁ ପହଞ୍ଚିଥାନ୍ତି । ଖେଳ ଆରମ୍ଭ ହେଲା । ନିଜ ଗାଁ ବା ଦେଶର ଲୋକମାନେ ପତାକା ହଲାଇ ବା ପାଟିକରି ଖେଳାଳୀମାନଙ୍କୁ ଉତ୍ସାହିତ କରୁଥିବା ଦେଖାଯାଏ । ଏହି ଭାବକୁ କଣ କୁହାଯିବ ? ଖେଳାଳୀମାନେ ମଧ୍ୟ ଉତ୍ସାହିତ ହୋଇ ନିଜ ଗାଁଭୂଇଁ ବା ଦେଶର ନାଁ ଟେକ ରଖିବାକୁ ପ୍ରାଣପଣ କରି ଖେଳି ବିଜୟ ହାସଲପାଇଁ ଉଦ୍ୟମ କରିଥାନ୍ତି । ଏହି ମାନସିକତାକୁ ସ୍ୱାଭିମାନ କୁହାଯାଏ ।

ଓଡ଼ିଶାର ମୁକୁଟବିହୀନ ସମ୍ରାଟ, ଶତାବ୍ଦୀର ସୂର୍ଯ୍ୟ କୁଳବୃଦ୍ଧ ଉତ୍କଳ ଗୌରବ ମଧୁସୂଦନ ଉତ୍କଳ ସମ୍ମିଳନୀର ପ୍ରତ୍ୟେକ ବାର୍ଷିକ ଅଧିବେଶନରେ ଏହି ସ୍ୱାଭିମାନକୁ ବିଭିନ୍ନ ଉଦାହରଣ ଦେଇ ନାନା ବାଗରେ ନାନା ବାଟରେ ଉପସ୍ଥିତ ସଭ୍ୟମାନଙ୍କୁ ବୁଝାଉଥିଲେ । ଓଡ଼ିଆ ଜାତିକୁ ବିଶ୍ୱ ଦରବାରରେ ସ୍ୱତନ୍ତ୍ର ମାନ୍ୟତା ଦେବାକୁ ସେ ଅର୍ଦ୍ଧଶତାବ୍ଦୀ ଧରି ଅକ୍ଳାନ୍ତ ଉଦ୍ୟମ କରିଥିଲେ । ଓଡ଼ିଶାର ବହୁ ରାଜା ମହାରାଜା ଓ ଜମିଦାରଙ୍କ ଓକିଲଭାବେ ମଧୁବାବୁ ନିଜର ତୀକ୍ଷ୍ଣ ମେଧା ଦ୍ୱାରା ବହୁ ମୋକଦ୍ଦମା ଜିତି ଦୈନିକ ପ୍ରଚୁର ଆୟକରୁଥିଲେ ହେଁ ଓଡ଼ିଆ ଜାତିର ସ୍ୱାଭିମାନ ବୃଦ୍ଧି ଏବଂ ଓଡ଼ିଶାର ଉନ୍ନତି ସାଧନ ପାଇଁ ସେହି ଧନକୁ ଅକୁଣ୍ଠିତ ଭାବେ ବିନିଯୋଗ କରି ଶେଷକୁ ଫକୀର ହୋଇ ନିଜକୁ ଦେବାଳିଆ ଘୋଷଣା କରିଥିଲେ ।

'ସ୍ୱାଭିମାନ' ଶବ୍ଦର ବ୍ୟାପକ ଅର୍ଥ ରହିଛି । ଆତ୍ମନିର୍ଭରଶୀଳ ହେବା, ଅନ୍ୟର ଦୟା, ସାହାଯ୍ୟ, ସହଯୋଗ, ଚାଟୁକାରିତା, ତୋଷାମଦ, ପ୍ରଶଂସା ଆଦିଠାରୁ ଦୂରରେ ରହି ନିଜର ଉତ୍ତମ ଚରିତ୍ର, ସ୍ୱଭାବ, ସାହସ, କର୍ତ୍ତବ୍ୟନିଷ୍ଠା, ଶ୍ରମ, ଭଦ୍ରତା ଓ ମଧୁର ବ୍ୟବହାର ଦ୍ୱାରା ବ୍ୟକ୍ତିତ୍ୱ ପରିପ୍ରକାଶକୁ ସ୍ୱାଭିମାନ ଯଦି କୁହାଯାଏ ତଥାପି ତାହା ସଂପୂର୍ଣ୍ଣ ବୋଲି କୁହାଯିବ ନାହିଁ । ଏକ ସୁସ୍ଥ ଓ ଆଦର୍ଶବାଦୀ ବ୍ୟକ୍ତିପାଇଁ ମୁଖ୍ୟତଃ ତାଙ୍କର ସ୍ୱାଭିମାନ କାର୍ଯ୍ୟ କରିଥାଏ । ଯେତେବେଳେ ଓଡ଼ିଶା ଭାରତର ଅନ୍ୟରାଜ୍ୟ ତୁଳନାରେ ସବୁ କ୍ଷେତ୍ରରେ ଅତ୍ୟନ୍ତ ନ୍ୟୂନ ବୋଲି ସମସ୍ତେ ମନେକରୁଥିଲେ, ଓଡ଼ିଆ ଭାଷାଭାଷୀ ଅଂଚଳଗୁଡ଼ିକ ଚତୁଃପାଶ୍ୱର ବଙ୍ଗ, ବିହାର, ମଧ୍ୟପ୍ରଦେଶ ଓ ମାଦ୍ରାଜ ପ୍ରଦେଶ ସହିତ ଲାଞ୍ଜଭଳି ଯୋଡ଼ି ହୋଇ ରହି ନିଜର ଆତ୍ମମର୍ଯ୍ୟାଦା ହରାଇ ବସିଥିଲା; ସେତେବେଳେ ଏକମାତ୍ର ଓଡ଼ିଆ ଭାବେ ମଧୁସୂଦନ ସାରା ଭାରତରେ, ଏପରିକି ବ୍ରିଟିଶ୍ ପାର୍ଲାମେଣ୍ଟ ହାଉସ ଅଫକମନ୍ସରେ ପ୍ରଭାବଶାଳୀ ସଭ୍ୟମାନଙ୍କର ଜଣେ ସମ୍ମାନାସ୍ପଦ ବ୍ୟକ୍ତିଭାବେ ସମ୍ମାନର ଅଧିକାରୀ ହୋଇପାରିଥିଲେ । ସ୍ୱତନ୍ତ୍ର ଓଡ଼ିଶା ଗଠନ ପାଇଁ ସେ ଯେଉଁକଳ୍ପନା କରିଥିଲେ,

ତାହାକୁ ରୂପଦେବା ପାଇଁ ମୃତ୍ୟୁ ପର୍ଯ୍ୟନ୍ତ ନିଜର ଧନ, ମନ ଓ ତନୁ କ୍ଷୟକଲେ, ସେ ଯେଉଁ ଏକନିଷ୍ଠ ଉଦ୍ୟମ କରିଥିଲେ, ତାହା ଏ ଜାତି ଯଦି ଭୁଲିଯାଏ, ତେବେ ଈଶ୍ୱର ଏ ଜାତିକୁ କ୍ଷମା ଦେବେନାହିଁ । ସାରା ଜୀବନ ସଭାସମିତି, ସଂଗଠନ ଆଦି କାର୍ଯ୍ୟରେ ବ୍ୟସ୍ତ ରହିବା ଫଳରେ ଓଡ଼ିଶାର ତତ୍କାଳୀନ ବରପୁତ୍ରମାନଙ୍କ ପରି ସେ ପୁସ୍ତକ ରଚନା କରିବାକୁ ଅବଶ୍ୟ ସମୟ ପାଇ ନଥିଲେ । ତାଙ୍କ ଜୀବନକାଳ ମଧ୍ୟରେ ଅସଂଖ୍ୟ ବକ୍ତୃତା ଦେଇ ଏ ଦୁର୍ବଳ ଜାତିକୁ ଉଠାଇବାକୁ ଚେଷ୍ଟା କରିବା ସହିତ ସର୍ବମୋଟ ଛଅଟି ଗୀତ ମଧୁବାବୁ ରଚନା କରିଛନ୍ତି । ୧. ଜାତି ଇତିହାସ ୨. ଉତ୍କଳ ସନ୍ତାନ ୩. ସମ୍ମିଳନୀ, ୪. ଜନନୀର ଉକ୍ତି ୫. ସନ୍ତାନର ଉକ୍ତି ଏବଂ ୬. ଏ ଭବେ ପାଇବ କାହିଁ । ଏହି ଗୀତ ଗୁଡ଼ିକର ଭାଷା ଅତ୍ୟନ୍ତ ସରଳ କିନ୍ତୁ ଏଥିରେ ପ୍ରଚଣ୍ଡ ସ୍ୱାଭିମାନ ପୂରି ରହିଛି । ଭକ୍ତକବି ମଧୁସୂଦନ ରାଓଙ୍କର ରଚିତ ଅଧିକାଂଶ ଗୀତରେ ଜୀବନଦର୍ଶନ ଭରି ରହିଥିବା ବେଳେ ଉତ୍କଳ ଗୌରବ ମଧୁସୂଦନ ଦାସଙ୍କର ଏହି ଛଅଟି ଗୀତ ସମଗ୍ର ନିଷ୍ପ୍ରାଣ ଓଡ଼ିଆ ଜାତି ମଧ୍ୟରେ ନବଚେତନା ସୃଷ୍ଟି କରିଛି ।

ଏଥିରେ ସନ୍ଦେହ ନାହିଁ ଯେ ୧୫୬୮ରୁ ୧୯୪୭ ମସିହା ପର୍ଯ୍ୟନ୍ତ ଓଡ଼ିଆମାନେ ସେମାନଙ୍କ ସ୍ୱାଧୀନତା ହରାଇବା ଫଳରେ ଓଡ଼ିଆ ଜାତି ଶୋଷଣ, ଅତ୍ୟାଚାର, ନିର୍ଯାତନା, ପ୍ରତାରଣାର ଶିକାର ହୋଇ ତାର ମୌଳିକ ମାନ ହରାଇ ବସିଲା । କଥିତ ଚାରିଶତ ବର୍ଷଧରି ଆଫଗାନ୍, ମୋଗଲ, ମରହଟ୍ଟା ଓ ଇଂରେଜ ଶାସନରେ ରାଜା, ମହାରାଜା, ଜମିଦାର, ମକଦ୍ଦମ ଓ ସାହୁକାରମାନେ ଶାସକମାନଙ୍କ ହାତବାରିଶି ହୋଇ ଓଡ଼ିଶାର ସାମାଜିକ, ପାରିବାରିକ ଏବଂ ବ୍ୟକ୍ତିଗତ ଜୀବନକୁ ଧ୍ୱଂସ କରିଦେଲେ । ଓଡ଼ିଆମାନେ ସେମାନଙ୍କର ସ୍ୱାଭିମାନ ହରାଇ ସଂପୂର୍ଣ୍ଣ ହୀନବୀର୍ଯ୍ୟ ହୋଇଗଲେ । ଉଚ୍ଚ ଚିନ୍ତା, ଅଧ୍ୟବସାୟ, ଜାତୀୟତାବୋଧ ଛାଡ଼ି ସେମାନେ ପରସ୍ପର ଭିତରେ ନାନା ବାଦବିସମ୍ବାଦ ଭିତରେ ବୁଡ଼ିରହି ଅଧିକରୁ ଅଧିକ ଦୁର୍ବଳ ହୋଇଗଲେ । ଏସବୁକୁ ଲକ୍ଷ୍ୟକରି ମଧୁସୂଦନ ଓଡ଼ିଶାର ସମସ୍ତ ବରପୁତ୍ର, ଜାତୀୟ ଚେତନାଦୀପ୍ତ ରାଜା ମହାରାଜା ଓ ଜମିଦାର, ଓଡ଼ିଶାର ଜ୍ଞାନୀ ଗୁଣୀ ଓ ବୁଦ୍ଧିଜୀବୀମାନଙ୍କୁ ୧୯୦୩ ଡିସେମ୍ବର ୩୦ ଓ ୩୧ ଦୁଇଦିନଧରି କଟକରେ ଏକତ୍ର କରି ଜାତୀୟ ସ୍ୱାଭିମାନ ଯଜ୍ଞର ଯଉଁ ଆଦିପୀଠ ନିର୍ମାଣ କଲେ, ତାର ନାମ ହେଉଛି 'ଉତ୍କଳ ସମ୍ମିଳନୀ' । ଓଡ଼ିଆ ଭାଷାଭାଷୀ ସମସ୍ତ ଅଂଚଳକୁ ନେଇ ଏକ ସ୍ୱତନ୍ତ୍ର ଓଡ଼ିଶା ରାଜ୍ୟ ଗଠନ କରିବା, ଓଡ଼ିଆଙ୍କ ଭିତରେ ସ୍ୱାଭିମାନ ଓ ଆତ୍ମନିର୍ଭରଶୀଳତା ସୃଷ୍ଟି ପାଇଁ ସାହିତ୍ୟ ସୃଷ୍ଟିକରିବା ଥିଲା ଏହି ଐତିହାସିକ ସମ୍ମିଳନୀର ଉଦ୍ଦେଶ୍ୟ । ବାସ୍ତବରେ ସେହି ଉତ୍କଳ ସମ୍ମିଳନୀ ଗଠନ ପରେ ଓଡ଼ିଆଙ୍କ ମଧ୍ୟରେ ଏକ ନବଚେତନା ଜାଗ୍ରତ ହେଲା ମଧୁବାବୁ ସ୍ୱାଭିମାନ ସୃଷ୍ଟି ପାଇଁ ଅନେକ ବକ୍ତୃତାରେ ଜାତୀୟ ଜୀବନ ଓ ବ୍ୟକ୍ତିଗତ ଜୀବନର ମୂଲ୍ୟ ଓ ପ୍ରଭେଦ ସମ୍ପର୍କରେ ପ୍ରାଞ୍ଜଳ ବ୍ୟାଖ୍ୟା କରି ଆମର ଜାତୀୟତାବୋଧ ଜାଗ୍ରତ ହେଲେ ଯେଉଁ ସ୍ୱାଭିମାନ ସୃଷ୍ଟିହେବ, ତାହାଦ୍ୱାରା ସମାଜର କି ଉନ୍ନତି ହେବ, ତାହା ବରାବର ବୁଝାଉଥିଲେ ।

ଦୀର୍ଘ ୭୧ବର୍ଷ ହେଲା ସେ ଆମଠାରୁ ବିଦାୟ ନେଲେଣି । ୧୯୩୪ ମସିହା ଫେବୃଆରୀ ୪ ତାରିଖରେ ସେ ତାଙ୍କର ପ୍ରିୟ ଓଡ଼ିଶା ଭୂଇଁରେ ଶେଷ ନିଃଶ୍ୱାସ ଛାଡ଼ିଥିଲେ । ଜୀବନବ୍ୟାପୀ ସ୍ୱାଭିମାନ ସୃଷ୍ଟି ପାଇଁ ସେ ଯେଉଁ ଆନ୍ତରିକ ଉଦ୍ୟମ କରିଥିଲେ ଆମେ ତାହାଦ୍ୱାରା ଅନୁପ୍ରାଣିତ ହୋଇ କେତେଦୂର ଅଗ୍ରଗତି କରିଛୁ, ତାହା ବିଶ୍ଳେଷଣ କଲେ ମନରେ କଷ୍ଟ ଜାତ ହୁଏ । ପ୍ରଭୁ ଶ୍ରୀଜଗନ୍ନାଥ ଏ ଜାତିର ଆରାଧ୍ୟ ଦେବତା ରୂପେ ଏ ଜାତିକୁ ଦିଗ୍‌ଦର୍ଶନ ଦେଇ ସ୍ୱାଭିମାନୀ କରାନ୍ତୁ । ଆଜିର ଏ ଶୁଭଅବସରରେ ଏହି କାମନା କରୁଛି ।

# ସୂର୍ଯ୍ୟବିହାର, ଲିଙ୍କରୋଡ୍, କଟକ-୧୨

# ସ୍ମୃତି ଓ ବିସ୍ମୃତିର ଓଡ଼ିଶା

ଶ୍ରୀ ବାଣିକଣ୍ଠ ପତି

ବହୁ ଆବର୍ତ୍ତନ, ବିବର୍ତ୍ତନ ଏବଂ ପରିବର୍ତ୍ତନ ମଧ୍ୟରେ ତିଷ୍ଠି ରହିଛି ସାମ୍ପ୍ରତିକ ଓଡ଼ିଶା । ଅଗ୍ରଗତିର ଶୀର୍ଷ ସୀମାରୁ ଅଧୋଗତିର ଅତଳ ଗହ୍ୱରରେ ପତିତ ଆମ ଓଡ଼ିଶାର ଭାଗ୍ୟ । ଓଡ଼ିଶାର ବିଜୟ ବୈଜୟନ୍ତୀ ଆଜି ବିକ୍ଷିପ୍ତ । ବହୁ ବିପତ୍ତି ଓ ପଶ୍ଚାତ୍ ଗତି ଦେଇ ଭାରତ ସହ ଓଡ଼ିଶା ସ୍ୱାଧୀନ । ତଥାପି ଓଡ଼ିଶାର ଦୁଃଖ ଯାଇନି, କାରଣ ଅରି ଫେରି ନାହିଁ କି ସଂଗ୍ରାମ ସରିନାହିଁ । ଓଡ଼ିଶାର ଜନ୍ମ ଜାତକ ଅନ୍ତରାଳରେ ଲୁକ୍କାୟିତ ଆଜି ଓଡ଼ିଆଙ୍କ ଭାଗ୍ୟ । ତଥାପି ଓଡ଼ିଆଙ୍କୁ ବଂଚିବାକୁ ହେବ । ସଂଗ୍ରାମୀ ମନ ନେଇ ଉଜ୍ଜ୍ୱଳ ପରିଚୟ ସାବ୍ୟସ୍ତ କରିବାକୁ ହେବ । ଜାତିକୁ ଅଙ୍ଗୀକାରବଦ୍ଧତା ସହିତ ଓଡ଼ିଆ ପ୍ରାଣରେ ଜାତୀୟତା ଭାବ ଉଦ୍ରେକ କରିବାକୁ ପଡ଼ିବ । ସ୍ୱଜାତି, ସ୍ୱ ସଭ୍ୟତା, ସ୍ୱ ସଂସ୍କୃତି, ସ୍ୱ ଇତିହାସକୁ ସ୍ମରଣ କରି ପ୍ରତ୍ୟକ ଓଡ଼ିଆଙ୍କୁ ବିଶ୍ୱ ଦରବାରରେ ପରିଚିତ ହେବାକୁ ପଡ଼ିବ । କାରଣ, ଓଡ଼ିଶୀ ଚେତନା ହିଁ ଆମ ଧର୍ମ, କର୍ମ, ଦୀକ୍ଷା, ଆମ ଭାବ, ଭାଷା ଏବଂ ସର୍ବୋପରି ଆମ ଜାତୀୟତା - ଏଥିରେ ସନ୍ଦେହ ନାହିଁ ।

ଅତୀତରୁ ବର୍ତ୍ତମାନ- ବହୁ ପରିସ୍ଥିତି ମଧ୍ୟରେ ଭାରତ ମାନଚିତ୍ରରେ ଓଡ଼ିଶାର ଭୌଗୋଳିକ ତଥା ରାଜନୈତିକ ସ୍ଥିତି ଐତିହାସିକ ଦୃଷ୍ଟିରୁ ପରିଲକ୍ଷିତ ହୁଏ । ସାମ୍ପ୍ରତିକ ଓଡ଼ିଶା ଅତୀତରେ ବହୁ ନାମରେ ନାମିତ ହୋଇ ସୁଦ୍ଧା ଏହାର ସ୍ୱାତନ୍ତ୍ର୍ୟ ବଜାୟ ରଖିଛି ।

ମହାଭାରତୀୟ ଯୁଗରୁ ସମଗ୍ର ଓଡ଼ିଶାର ବିଭିନ୍ନ ଅଞ୍ଚଳର ବିଭିନ୍ନ ନାମ ଥିଲା ଏହା ନିଃସନ୍ଦେହ । ତନ୍ମଧ୍ୟରୁ କଳିଙ୍ଗର ବିଶାଳ ସୀମା ଆଗଙ୍ଗା ଗୋଦାବରୀ ବିସ୍ତୃତ ଥିଲା । ମହାଭାରତ ବନପର୍ବରେ ବୈତରଣୀ ନଦୀ କଳିଙ୍ଗ ଅନ୍ତର୍ଭୁକ୍ତ ବୋଲି ଉଲ୍ଲେଖ ଅଛି । ପାଣିନୀ, କୌଟିଲ୍ୟଙ୍କ ବ୍ୟତୀତ ଗ୍ରୀକ୍ ରାଜଦୂତ ମେଘାସ୍ଥିନିସ୍ ମଧ "ଗଙ୍ଗରିଡ଼ମ୍ କଳିଙ୍ଗାରମ୍ ରେଜିଆ" ନାମଧେୟ ଅଞ୍ଚଳର ଅବସ୍ଥିତି ଉଲ୍ଲେଖ କରିଛନ୍ତି ଏବଂ ଉତ୍ତରରେ ଗଙ୍ଗାନଦୀ ପ୍ରବାହିତ ବୋଲି ବର୍ଣ୍ଣନା କରିଛନ୍ତି । ମହାଭାରତ ଏବଂ ପ୍ଲିନିଙ୍କ ବର୍ଣ୍ଣନାନୁସାରେ "ଦନ୍ତପୁର (ଋଷିକୁଲ୍ୟ ନଦୀ ମୁହାଣରେ ଅଧୁନା ପାଲୁର ଗ୍ରାମ) ଏହାର ରାଜଧାନୀ ଥିଲା । କିନ୍ତୁ ମୌର୍ଯ୍ୟ ସମ୍ରାଟ ଅଶୋକ "ତୋଷାଳୀ" (ଅଧୁନା ଭୁବନେଶ୍ୱର) ବୋଲି ବର୍ଣ୍ଣନା କରିଛନ୍ତି ।

ଖ୍ରୀଷ୍ଟପୂର୍ବ ଚତୁର୍ଥ ଶତାବ୍ଦୀ ବେଳକୁ ମାଠର ରାଜବଂଶଗଣ ମହାନଦୀ ଏବଂ ଗଙ୍ଗାନଦୀ ମଧ୍ୟରେ ଏକ ସଂକୁଚିତ କଳିଙ୍ଗର ଶାସକ ଥିଲେ ବୋଲି ଜଣାଯାଏ । ଏହା ମହାକବି "କାଳିଦାସ"ଙ୍କ "ରଘୁବଂଶ" ମହାକାବ୍ୟରୁ "ଉତ୍କଳ" ରାଜ୍ୟ ବୋଲି ପରିଚିତ ହୁଏ ।

ଚୀନ ପରିବ୍ରାଜକ ହୁଏନ୍ ସାଂଙ୍କ ଭ୍ରମଣ ବୃତ୍ତାନ୍ତରୁ କଙ୍ଗୋଦ ରାଜ୍ୟର ଦକ୍ଷିଣ-ପଶ୍ଚିମରେ "କଳିଙ୍ଗ" ବିଦ୍ୟମାନ ଥିଲା । ଅଧୁନା ପୁରୀ ଜିଲ୍ଲା, ଗଞ୍ଜାମ ଜିଲ୍ଲାର ଉତ୍ତର ଅଂଶ ଏବଂ ବୌଦ୍ଧ ଜିଲ୍ଲା ତତ୍କାଳୀନ କଙ୍ଗୋଦ ରାଜ୍ୟରେ ଅନ୍ତର୍ଭୁକ୍ତ ଥିଲା ବୋଲି ଜଣାଯାଏ ।

ଖ୍ରୀଷ୍ଟୀୟ ଏକାଦଶ ଶତାବ୍ଦୀ ପର୍ଯ୍ୟନ୍ତ ଗଙ୍ଗବଂଶୀ ରାଜାମାନେ ଦକ୍ଷିଣ ଓଡ଼ିଶା ଓ ପୂର୍ବ ଆନ୍ଧ୍ରପ୍ରଦେଶର ଅଂଶକୁ ନେଇ ସୀମିତ କଳିଙ୍ଗ ରାଜ୍ୟରେ ରାଜୁତି କରୁଥିଲେ । କିନ୍ତୁ ଶକ୍ତିଶାଳୀ ଗଙ୍ଗସମ୍ରାଟ ଚୋଡ଼ଗଙ୍ଗଦେବ ସମଗ୍ର ଓଡ଼ିଶାକୁ ଅଧିକାର କରି ସକଳୋତ୍କଳ ନାମରେ ରାଜତ୍ୱ କରୁଥିଲେ । ତତ୍କାଳୀନ ସୀମିତ କଳିଙ୍ଗ ଗଙ୍ଗ ଏବଂ ପରବର୍ତ୍ତୀ ସୂର୍ଯ୍ୟବଂଶୀ ସାମ୍ରାଜ୍ୟର ଏକ ଦଣ୍ଡପାଟ (ପ୍ରଦେଶ) ରୂପେ ପରିଚିତ ହେଉଥିଲା ।

ପୂର୍ବ ଗଙ୍ଗବଂଶୀ ଏବଂ ସୁବର୍ଣ୍ଣପୁର (ସୋନପୁର) ର ଶାସକ ସୋମବଂଶୀମାନେ "ତ୍ରିକଳିଙ୍ଗାଧିପତି" ଉପାଧି ଧାରଣ କରୁଥିଲେ । କିନ୍ତୁ ଚାଲୁକ୍ୟବଂଶୀ ରାଜାମାନଙ୍କର ତାମ୍ରଫଳକରୁ କଳିଙ୍ଗ ଏବଂ ତ୍ରିକଳିଙ୍ଗ ନାମରେ ଦୁଇଟି ସ୍ୱତନ୍ତ୍ର ରାଜ୍ୟର ଅବସ୍ଥିତି ପରିଲକ୍ଷିତ ହୁଏ । ଐତିହାସିକ ପ୍ରବୋଧ କୁମାର ମିଶ୍ରଙ୍କ ମତରେ ଅବିଭକ୍ତ ସମ୍ବଲପୁର, କଳାହାଣ୍ଡି, ବଲାଙ୍ଗୀର ଏବଂ କୋରାପୁଟ ଜିଲ୍ଲାକୁ ନେଇ ତତ୍‌କାଳୀନ ତ୍ରିକଳିଙ୍ଗ ରାଜ୍ୟ ଗଠିତ ହୋଇଥିଲା ।

ସାମ୍ପ୍ରତିକ ଓଡ଼ିଶାର ପ୍ରାଚୀନ ନାମ ଉତ୍କଳ ବୋଲି ଆମେ ଗର୍ବକରୁ । ରାମାୟଣ, ମହାଭାରତ, ବିନୟ ପିଟକ, ବୁଦ୍ଧ ଜାତକ, ମତ୍ସ୍ୟ ପୁରାଣ ଏବଂ ବାୟୁ ପୁରାଣରେ ଏହା ବର୍ଣ୍ଣିତ । ସମ୍ଭବତଃ ଏହାର ସୀମା ବର୍ତ୍ତମାନ ମେଦିନୀପୁର ଜିଲ୍ଲାଠାରୁ ପୁରୀ ଜିଲ୍ଲା ପର୍ଯ୍ୟନ୍ତ ବିସ୍ତୃତ ଥିଲା । ଏହାର ଅନ୍ୟନାମ ତୋଷାଳୀ ଯାହାକି ମୌର୍ଯ୍ୟ ସମ୍ରାଟ ଅଶୋକଙ୍କ ରାଜତ୍ୱ ସମୟରେ ବିଦ୍ୟମାନ । ମାତ୍ର ଖ୍ରୀଷ୍ଟୀୟ ଷଷ୍ଠ ଶତାବ୍ଦୀରେ ପଶ୍ଚିମବଂଗର ମେଦିନୀପୁର ଜିଲ୍ଲାଠାରୁ ଓଡ଼ିଶାର ଗଞ୍ଜାମ ଜିଲ୍ଲାପର୍ଯ୍ୟନ୍ତ ତୋଷାଳୀର ସୀମା ପରିବ୍ୟାପ୍ତ ଥିଲା । ସୋରୋ ତାମ୍ରଫଳକ ଅନୁଯାୟୀ ମୁଦ୍‌ଗଳ ରାଜା ଶମ୍ଭୁଯଶ ମହାନଦୀର ଉତ୍ତରକୁ ଥିବା ଉତ୍ତର ତୋଷାଳୀ ଏବଂ ଦକ୍ଷିଣକୁ ଥିବା ଦକ୍ଷିଣ ତୋଷାଳୀକୁ ଷଷ୍ଠ ଶତାବ୍ଦୀର ଶେଷଭାଗରେ ତୋଷାଳୀ ନାମରେ ରାଜତ୍ୱ କରୁଥିଲେ । ଅଷ୍ଟମ, ନବମ ଓ ଦଶମ ଶତାବ୍ଦୀରେ ଭୌମବଂଶୀ ରାଜାମାନେ ଏହା ଉପରେ ଐକ୍ୟ - କେନ୍ଦ୍ରୀୟ ଶାସନ ଜାରି ରଖିଥିଲେ ।

ସାମ୍ପ୍ରତିକ ଓଡ଼ିଶାରେ ତତ୍‌କାଳୀନ କୋଶଳରାଜ୍ୟର କିଛି ଅଂଶ ଅନ୍ତର୍ଭୁକ୍ତ ବୋଲି ମନେକରାଯାଏ । ହୁଏନ୍‌ସାଂ କଳିଙ୍ଗର ରାଜଧାନୀ ଠାରୁ ୩୦୦ ମାଇଲ୍ ଦୂରରେ କୋଶଳ ରାଜ୍ୟ ଅବସ୍ଥିତ ଥିଲାବୋଲି ତାଙ୍କ ଭ୍ରମଣ ବୃତ୍ତାନ୍ତରେ ଉଲ୍ଲେଖ କରିଛନ୍ତି । ଅଷ୍ଟମ ଓ ନବମ ଶତାବ୍ଦୀରେ ସୋମବଂଶୀ ରାଜାମାନଙ୍କର ସାମ୍ପ୍ରତିକ ଛତିଶ ଗଡ଼ ରାଜ୍ୟର ରାଇପୁର ଜିଲ୍ଲାର ଶ୍ରୀପୁର (ଶିରପୁର) ଠାରେ ସେ ସମୟରେ ରାଜଧାନୀ ଥିଲା । କିନ୍ତୁ ସମୟ କ୍ରମେ କାଲାଚୁରୀ ମାନଙ୍କର ପଶ୍ଚିମ ପଟୁ ଆକ୍ରମଣ ଫଳରେ ସୋମବଂଶୀମାନେ ସେ ସବୁ ଅଞ୍ଚଳ ହରାଇଥିଲେ । ସମ୍ବଲପୁର, ସୁନ୍ଦରଗଡ଼, ବଲାଙ୍ଗୀର ପ୍ରଭୃତି ଏଥିରେ ଅନ୍ତର୍ଭୁକ୍ତ ଥିଲା ବୋଲି କୁହାଯାଏ ।

ଓଡ୍ର ହେଉଛି ଓଡ଼ିଶାର ପୌରାଣିକ ନାମ । ଖ୍ରୀ.ପୂ. ୨୦୦ ରେ ଲିଖିତ ମନୁସଂହିତାରେ ଏହାର ଉଲ୍ଲେଖ ଅଛି । ବ୍ରହ୍ମ ପୁରାଣ ବର୍ଣ୍ଣନାନୁସାରେ ଓଡ୍ର ଦେଶରେ ବୈତରଣୀ ନଦୀ ବିଦ୍ୟମାନ ଏବଂ ଏଥିରେ ଅର୍କକ୍ଷେତ୍ର, ପୁରୁଷୋତ୍ତମ କ୍ଷେତ୍ର ଓ ବିରଜା କ୍ଷେତ୍ର ଭଳି ତିନୋଟି ତୀର୍ଥକ୍ଷେତ୍ର ଅବସ୍ଥିତ । ମାତ୍ର ସପ୍ତମ ଶତାବ୍ଦୀ ବେଳକୁ ଏହାର କଳେବର ସୀମିତ ହୋଇଗଲା, ଯାହାକି ହୁଏନ୍ ସାଂ ମେଦିନୀପୁର ଜିଲ୍ଲାଠାରୁ ମହାନଦୀ ପର୍ଯ୍ୟନ୍ତ ଅଞ୍ଚଳକୁ "ଉ-ଚ" (ଓଡ୍ର) ଦେଶ ବୋଲି ବର୍ଣ୍ଣନା କରିଛନ୍ତି । ସରୋରେ ମିଳିଥିବା ସପ୍ତମ ଶତାବ୍ଦୀର ରାଜା ସୋମଦତ୍ତଙ୍କ ତାମ୍ରଫଳକ ଅନୁଯାୟୀ ଉପକୂଳବର୍ତ୍ତୀ ଓଡ଼ିଶାର ଉତ୍ତର ଭାଗ ହର୍ଷବର୍ଦ୍ଧନଙ୍କ ଶାସନାଧୀନ ଥିଲା ଏବଂ ଏହାକୁ "ଓଡ୍ର ବିଷୟ ବୁହାଯାଉଥିଲା । ଶଶାଙ୍କଙ୍କ ମୃତ୍ୟୁପରେ ଅଧିନସ୍ଥ ସୋମଦତ୍ତ ହର୍ଷବର୍ଦ୍ଧନଙ୍କ ବଶ୍ୟତା ସ୍ୱୀକାର କରିଥିଲେ ଏବଂ "ଓଡ୍ର ବିଷୟ"ର ସାମନ୍ତ ରାଜା ରୂପେ ବିବେଚିତ ହେଲେ । ନବମ ଓ ଦଶମ ଶତାବ୍ଦୀର ଆରବୀୟ ଏବଂ ପାରସିକମାନେ ଭୌମ ଶାସିତ ରାଜ୍ୟକୁ "ଉର୍ସିନ୍" ଏବଂ "ଉର୍ଷଫିନ୍" ନାମରେ ଉଲ୍ଲେଖ କରିଛନ୍ତି । ସୋମବଂଶୀ ରାଜା ପ୍ରଥମ ଜନ୍ମେଜୟ ଏବଂ ଉଦ୍ୟୋତ କେଶରୀଙ୍କ ଶାସନ କାଳରେ "ଓଡ୍ର" ର ଉଲ୍ଲେଖ ପରିଲକ୍ଷିତ ହୁଏ ।

ମଧ୍ୟଯୁଗୀୟ ଇତିହାସରେ ମଧ ଓଡ଼ିଶାର ସ୍ୱତନ୍ତ୍ର ଭୌଗୋଳିକ ସ୍ଥିତି ଦେଖିବାକୁ ମିଳେ । ଏକାଦଶ ଶତାବ୍ଦୀର ମୁସଲମାନ ଐତିହାସିକ ଆଲ୍‌ବେରୁଣୀ ଓଡ଼ିଶାକୁ "ଉର୍ଦ୍ଧବିସାର" ନାମରେ ପରିଚିତ କରିଥିବା

ବେଳେ ତିବତୀୟ ଐତିହାସିକ ଲାମା ତାରନାଥ "ଓଡ଼ିବିସା" ନାମରେ ଏକ ଅଞ୍ଚଳ କଥା ଉଲ୍ଲେଖ କରିଛନ୍ତି । ଖ୍ରୀ. ଅ. ୧୩୫୨ ଗଙ୍ଗ ଶିଳାଲେଖରେ ଗଙ୍ଗରାଜ୍ୟକୁ "ଓଡ଼ିଶା ଦେଶ" ବୋଲି ଉଲ୍ଲେଖ କରାଯାଇଅଛି । ଚତୁର୍ଦ୍ଦଶ ଶତାବ୍ଦୀର ପ୍ରାନ୍ତଭାଗରେ ମୁସଲମାନ ଲେଖକ ଶାମ୍‌ସିରାଜ ଅଫିପ୍ ଗଙ୍ଗରାଜ୍ୟକୁ "ଯାଜନଗର ଉଡ଼ିଆ" ବୋଲି ବର୍ଣ୍ଣନା କରିଥିବା ସ୍ଥଳେ ସୂର୍ଯ୍ୟ ବଂଶୀୟ ରାଜତ୍ୱରେ "ଓଡ଼ିଶା" ନାମ ସର୍ବାଙ୍ଗୀନ ବ୍ୟବହାର ହୋଇଥିଲା ବୋଲି ମନେକରାଯାଏ ; କାରଣ ସୂର୍ଯ୍ୟବଂଶ ପ୍ରତିଷ୍ଠାତା କପିଳେନ୍ଦ୍ର ଦେବ ଖ୍ରୀ.ଅ. ୧୪୩୬ ରେ ନିଜକୁ ଓଡ଼ିଶାର ରାଜା ବୋଲି ଘୋଷଣା କରିଥିଲେ । ସାରଳା ମହାଭାରତରେ "ଓଡ଼ିଶା ରାଷ୍ଟ୍ର" ଉଲ୍ଲେଖ ଥିବାର ଜଣାଯାଏ ।

ଆଜିର ଓଡ଼ିଶା ଅତୀତରେ ବିଶାଳ ଓଡ଼ିଶା ଠାରୁ କ୍ଷୁଦ୍ର । ଗଙ୍ଗ ଓ ସୂର୍ଯ୍ୟବଂଶୀ ରାଜାମାନେ ଆଗଙ୍ଗା ଗୋଦାବରୀ ଅଞ୍ଚଳକୁ ଓଡ଼ିଶା ରାଜ୍ୟରେ ଅନ୍ତର୍ଭୁକ୍ତ କରି ଐକ୍ୟ, ସଂସ୍କୃତ. ପରଂପରା, ଐତିହ୍ୟ ଓ ବୈଶିଷ୍ଟ୍ୟ ରକ୍ଷା କରିଥିଲେ, କିନ୍ତୁ ଭାଗ୍ୟର ବିଡ଼ମ୍ବନା ହେତୁ ବଂଗର ଆଫଗାନ ସୁଲତାନ ସୁଲେଇମାନ କରଷ୍ୟାନୀଙ୍କ ସୈନ୍ୟବାହିନୀ କଳାପାହାଡ଼ଙ୍କ ନେତୃତ୍ୱରେ ଖ୍ରୀ.ଅ ୧୫୬୮ରେ ଓଡ଼ିଶାର ଶେଷ ସ୍ୱାଧୀନ ରାଜା ମୁକୁନ୍ଦ ଦେବଙ୍କୁ ପରାସ୍ତ କରି ଓଡ଼ିଶାକୁ ଆଫଗାନ ସୁଲତାନଙ୍କ ଐତିହାସିକ ବିଜୟରେ ପରିଣତ କଲେ । ସେଇଠୁ ବହୁ ଆବର୍ତ୍ତନ, ବିବର୍ତ୍ତନରେ ଗଢ଼ିଉଠିଥିବା ବିଶାଳ ଓଡ଼ିଶାର କ୍ରମବର୍ଦ୍ଧିଷ୍ଣୁ ବିଲୟ ଆରମ୍ଭ ହେଲା । ବିଖଣ୍ଡୀକରଣ ପ୍ରକ୍ରିୟାର ଶୁଭାରମ୍ଭ ଘଟିଲା । ଏହାର ସ୍ୱାତନ୍ତ୍ର୍ୟ ଲୋପ ପାଇଲା । ଗୋଟିଏ ଅବଦମିତ ଜାତି ତାର ଐତିହ୍ୟପୂର୍ଣ୍ଣ ଗୌରବ ପରିଚୟ ହରାଇ ବସିଲା । ସଂଗ୍ରାମୀ ହୃଦୟରେ ପରାଧୀନତା ପାଇଁ ସ୍ତୈଣ ଭାବ ପ୍ରକାଶ ପାଇଲା । ଅନ୍ୟ ନିକଟରେ ମୁଣ୍ଡକୁ ତଳ କରି ତାର ଭୀରୁତା ପ୍ରକାଶ କଲା । ପରିସ୍ଥିତି ଚକ୍ରରେ ଅନ୍ୟର ଦାସତ୍ୱ ସ୍ୱୀକାର କଲା । ଓଡ଼ିଆଙ୍କ ପରିଚୟ ସଂକ୍ଷିପ୍ତ ହୋଇଗଲା । ଫଳରେ ସଂଘାତରେ ସଂହତି, ଐକ୍ୟରେ ଅନୈକ୍ୟ ଓଡ଼ିଆମାନେ ମାନିବାକୁ ବାଧ୍ୟହେଲେ ।

ଏହାପରେ ମୋଗଲ ଓ ମରହଟ୍ଟା ମାନଙ୍କ ଦ୍ୱାରା ଓଡ଼ିଶା ବିକୃତ ଭାବେ ଅଧିକୃତ ହେଲା । ସ୍ୱାଭିମାନୀ ଓଡ଼ିଶା ପରବର୍ତ୍ତୀ ସମୟରେ ଯେତେବେଳେ ଇଂରେଜ ମାନଙ୍କ ଦ୍ୱାରା ଅଧିକୃତ ହେଲା, ସେତେବେଳେ ଅର୍ଥାତ୍ ସେମାନଙ୍କ ଶାସନ କାଳରେ ଏହି ମାନ୍ଦ୍ରାଜ ଓ କେନ୍ଦ୍ରୀୟ ପ୍ରଦେଶରେ ବିଭକ୍ତ ହୋଇ ରହିଲା । ଫଳରେ ବିକ୍ଷିପ୍ତ ଓଡ଼ିଆ ପ୍ରତ୍ୟେକ ପ୍ରଦେଶର ଏକ ସଂଖ୍ୟାଲଘୁ ଗୋଷ୍ଠୀ ହୋଇ ଥିବାରୁ ଭାଷା, ସଂସ୍କୃତି, ଐକ୍ୟ ଓ ସର୍ବୋପରି ସ୍ୱାର୍ଥରକ୍ଷା ଉପରେ ପ୍ରଚଣ୍ଡ ଆଘାତ ସୃଷ୍ଟି ହେଲା ଶାସନର ସମତା ରକ୍ଷାପାଇଁ ସବୁ ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ତତ୍‌କାଳୀନ ଭାରତ ସଚିବ ସାର ଷ୍ଟାଫୋର୍ଡ୍ର ନଥ କୋଟ ୧୮୬୮ ମସିହାରେ ପ୍ରଶାସନିକ ଏକକ ପ୍ରତଷ୍ଠା ପାଇଁ ମତଦେଲେ । ଏଇଠୁ ଆରମ୍ଭ ହେଲା ଓଡ଼ିଶାର ଜାତୀୟ ଭାବଧାରାର ବୀଜବପନ ।

ମୁକୁନ୍ଦଦେବଙ୍କ ପତନ ଏବଂ ନ"ଅଙ୍କ ଦୁର୍ଭିକ୍ଷ ପରେ ଓଡ଼ିଶାର ଭାଷା ବିବାଦ ସହିତ ଊନବିଂଶ ଶତାବ୍ଦୀର ଜାତୀୟ ଜାଗରଣ ର ଅଭ୍ୟୁଦୟ ହେଲା । ସୀମାନ୍ତ ପ୍ରହରୀ ଭାବେ କଥାସମ୍ରାଟ ଫକୀରମୋହନ ସେନାପତି ବାଲେଶ୍ୱରରେ, କବିସମ୍ରାଟ ଉପେନ୍ଦ୍ର ଭଞ୍ଜ, ଗଞ୍ଜାମରେ ଏବଂ ଗଙ୍ଗାଧର ମେହେର ସମ୍ବଲପୁରରେ ଓଡ଼ିଆ ସାହିତ୍ୟ ମାଧ୍ୟମରେ ଭାଷା ସୁରକ୍ଷା ସହିତ ଓଡ଼ିଆ ପ୍ରାଣରେ ଜାତୀୟତା ବୋଧ ପାଇଁ ଆଜୀବନ ସଂଗ୍ରାମ ଜାରି ରଖିଥିଲେ । ବହୁ କ୍ଷେତ୍ରରେ ନିର୍ଯ୍ୟାତିତ ଓଡ଼ିଆମାନେ ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଏକତ୍ରୀକରଣ ପାଇଁ ଆହ୍ୱାନ ଦେଲେ ।

ସଂଗ୍ରାମ ସ୍ୱତଃସ୍ଫୁର୍ତ୍ତ, ଏଥିରେ ସନ୍ଦେହ ନାହିଁ ଏବଂ ଏହା ନିଶ୍ଚିତ ଯେ ଏହା ବହୁଦିନରୁ ପ୍ରତୀକ୍ଷିତ ଅବଦମିତ ହୃଦୟର ଆର୍ତ୍ତଚିତ୍କାର । ଯେତେବେଳେ ଏହା ଅଣାୟତ୍ତ ହୁଏ ସେତେବେଳେ ଏହାର ବହିଃପ୍ରକାଶ ହୁଏ । ଏହା କେତେବେଳେ ପାଶବିକ ନ୍ୟାୟ ପାଇଁ ଉଦ୍ଦିଷ୍ଟ ଏବଂ କେତେବେଳେ ଏକ ସମ୍ବେଦନଶୀଳ

ହୃଦୟର ମାନବିକ ଅଧିକାର ସମ୍ପର୍କୀୟ ଦାବି ହିସାବରେ ଉପସ୍ଥାପିତ ହୋଇଥାଏ । ତେଣୁ ଏହି ପରିପ୍ରେକ୍ଷୀରେ ତେଲୁଗୁ ଅତ୍ୟାଚାରିତ ଓଡ଼ିଆଙ୍କ ଭାଷାଭିତ୍ତିକ ଏକତ୍ରୀକରଣ ପାଇଁ ୧୮୭୦ ମସିହା ସେପ୍ଟେମ୍ବର ମାସରେ ଗଞ୍ଜାମ ଜିଲ୍ଲାର ରସେଲକୁଣ୍ଡା (ଭଞ୍ଜନଗର) ଠାରେ ସମ୍ମେଳନ - ସ୍ୱତନ୍ତ୍ର ଓଡ଼ିଶା ଗଠନ ପାଇଁ ଏକ ଶକ୍ତ ଆହ୍ୱାନ ଏବଂ ଏହା ଅନିବାର୍ଯ୍ୟ ମୁକ୍ତି ସଂଗ୍ରାମ ଥିଲା ବୋଲି ମନେହୁଏ ।

ସ୍ମରଣ ଯୋଗ୍ୟ ଯେ ୧୯୦୨ ମସିହାରେ ସ୍ୱତନ୍ତ୍ର ଓଡ଼ିଶା ଗଠନ ଲକ୍ଷ୍ୟ ନେଇ ଉତ୍କଳ ସମ୍ମିଳନୀ ପ୍ରତିଷ୍ଠା କରାଗଲା । ଉତ୍କଳ ଗୌରବ ମଧୁସୂଦନ ଦାସ, ଫକୀର ମୋହନ ସେନାପତି, ରାଜା ବୈକୁଣ୍ଠନାଥ ଦେବ, ଶ୍ୟାମସୁନ୍ଦର ରାଜଗୁରୁ, ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓ, ଶ୍ରୀରାମ ଚନ୍ଦ୍ର ଭଞ୍ଜଦେଓ ସହିତ ସଂଗ୍ରାମୀ ଓଡ଼ିଆ ମାନଙ୍କ ନେତୃତ୍ୱରେ ଉତ୍କଳ ସମ୍ମିଳନୀର ଆଶା, ଆକାଂକ୍ଷାକୁ ପୂରଣ କରି ୧୯୩୬ ମସିହା ଅପ୍ରେଲ ପହିଲା ତାରିଖରେ ବହୁ ଘଟଣା ଓ ଦୁର୍ଘଟଣା ଦେଇ ସ୍ୱତନ୍ତ୍ର ଓଡ଼ିଶା ଆତ୍ମ ପ୍ରକାଶ କଲା । ୧୯୪୯ ମସିହା ଜାନୁଆରୀ ପହିଲାରେ ଏହାର ରାଜନୈତିକ ମାନଚିତ୍ର ସମ୍ପୂର୍ଣ୍ଣ ହେଲା।

ଆଧୁନିକ ଓଡ଼ିଶା ପୃଥିବୀର ଭୌଗୋଳିକ ସୀମାରେଖାର ପୂର୍ବ ଭାରତର ୧୭°୪୯' ଏବଂ ୨୦°୩୪' ଉତ୍ତର ଅକ୍ଷାଂଶ ମଧ୍ୟରେ ୮୧°୨୯' ଏବଂ ୮୭°୨୯' ପୂର୍ବ ଦ୍ରାଘିମାରେଖା ମଧ୍ୟରେ ଅବସ୍ଥିତ । ଏହାର ଉତ୍ତର-ପୂର୍ବରେ ପଶ୍ଚିମବଂଗ, ଉତ୍ତରରେ ଝାଡ଼ଖଣ୍ଡ, ପଶ୍ଚିମରେ ଛତିଶଗଡ଼, ଦକ୍ଷିଣରେ ଆନ୍ଧ୍ରପ୍ରଦେଶ ଓ ଦକ୍ଷିଣ- ପୂର୍ବରେ ବଙ୍ଗୋପସାଗର ଅବସ୍ଥିତ । ବୃହତ୍ତର ଓଡ଼ିଶାର ସିଂହଭୂମ ଜିଲ୍ଲା ଝାଡ଼ଖଣ୍ଡ ପ୍ରଦେଶରେ, ମେଦିନୀପୁର ଜିଲ୍ଲା ପଶ୍ଚିମବଂଗରେ, ଫୁଲଝର, ନୂଆଗଡ଼, ବସ୍ତର ରାଇଗଡ଼, ସାରଙ୍ଗଗଡ଼ ଛତିଶ ଗଡ଼ ରାଜ୍ୟରେ ଏବଂ ତରଳା, ଟିକାଲି, ମଞ୍ଜୁଷା, ଜଳନ୍ତର,ବୁଡାରସିଂହ ପ୍ରଭୃତି ସ୍ଥାନ ଆନ୍ଧ୍ର ରାଜ୍ୟରେ ଅନ୍ତର୍ଭୁକ୍ତ । ଏବେ ମଧ୍ୟ ଏହିସବୁ ସ୍ଥାନରେ ଓଡ଼ିଆ ଭାଷାର ଆଦର ରହିଛି, ଓଡ଼ିଆ ସଂସ୍କୃତି ମଧ୍ୟ ବଂଚିଛି ।

ସଭ୍ୟତାର ଆଦ୍ୟ ଝଲକରେ ଉଦ୍ଭାସିତ ଏହି ପୁଣ୍ୟ ଭୂଖଣ୍ଡରେ କେତେ ମହାନ ବ୍ୟକ୍ତିଙ୍କର ବହିରାଗମନ ହୋଇଛି । ଏଠାକାର ଅଧିବସୀ, ସଂସ୍କୃତି, ଭାଷା, ପରଂପରା ସମସ୍ତଙ୍କୁ ଆକର୍ଷଣ କରିଛି । ଓଡ଼ିଶା କାହାର ପ୍ରଶଂସନୀୟ ହୋଇଛି ତ କାହା ଅନୁକମ୍ପାର ଶିକାର ହୋଇଛି । କାହା ଦୃଷ୍ଟିରେ ଏହା ଅନ୍ଧ ବିଶ୍ୱାସର ଗନ୍ତାଘର, ପୁଣି କାହା ମତରେ ଏହା ସଭ୍ୟତାର ଆଦ୍ୟ ପୂର୍ଣ୍ଣଭୂଖଣ୍ଡ । ବ୍ରିଟିଶ ସାମ୍ରାଜ୍ୟ କାଳରେ ଓଡ଼ିଶାର ଭୌଗୋଳିକ ଅବସ୍ଥିତିକୁ ଲକ୍ଷ୍ୟ କଲେ ଜଣାଯାଏ ଯେ ଏହା ହେଉଛି ନଦୀବହୁଳ ରାଜ୍ୟ । ତେଣୁ ନଦୀ ଅବବାହିକା ଅଞ୍ଚଳରେ ଉର୍ବର ପଟୁମାଟି ତଥା ନଦୀରୁ ଜଳସେଚନର ସୁବିଧା ଥିବାରୁ ସମ୍ଭବତଃ ଓଡ଼ିଆ ଚାଷୀମାନେ ଧାନକୁ କୃଷି ଉତ୍ପାଦନର ମୁଖ୍ୟ ବୋଲି ବିଚାର କରିଥାଇ ପାରନ୍ତି । ବହୁଳ ଧାନ ଉତ୍ପାଦନ ହେତୁ ଭାତ ସେମାନଙ୍କର ମୁଖ୍ୟ ଖାଦ୍ୟ । ଏହି ପରିପ୍ରେକ୍ଷୀରେ ଓଡ଼ିଆଙ୍କ ମର୍ଯ୍ୟାଦା କ୍ଷୁଣ୍ଣ ହେବାର ଯଥାର୍ଥତା ନାହିଁ ।

ଐତିହାସିକ ଓମାଲି କହନ୍ତି, "ଦିନକର ଆହାର ପାଇଁ ଖାଦ୍ୟ ଥିଲେ ଓଡ଼ିଆମାନେ ଉପାର୍ଜନ କରିବାକୁ କିମ୍ବା ଦୁଃସମୟ ପାଇଁ ସଞ୍ଚୟ କରିବାକୁ ଚାହାନ୍ତି ନାହଁ । ଏହି ଗୁଣ ହିଁ ସେମାନଙ୍କ ଦୈନ୍ୟ, ବ୍ୟାଧି ଓ ଅନାହାର ପାଇଁ ଦାୟୀ" ।

ବାସ୍ତବରେ ପ୍ରାକୃତିକ ବିପର୍ଯ୍ୟୟ ଓଡ଼ିଆମାନଙ୍କ ଅନଗ୍ରସରତାର ମୁଖ୍ୟ କାରଣ ଥିଲା । ବାରଂବାର ବନ୍ୟା ଓ ବାତ୍ୟା ଫଳରେ ଓଡ଼ିଶାର ଜନ ସାଧାରଣ ସାଂଘାତିକ ଦାରିଦ୍ର୍ୟ ଓ ଅନଟନ ମଧ୍ୟରେ କାଳାତିପାତ କରୁଥିଲେ । ଲଗାତର କ୍ଷତିଗ୍ରସ୍ତ ହୋଇ ସେମାନେ ଦରିଦ୍ରରେ ପରିଣତ ହେଲେ । ଫଳରେ ସେମାନଙ୍କ ଭିତରେ ଏକ ସୁସ୍ଥ ଜାତୀୟ ଚରିତ୍ରର ବିକାଶ ଅନିଶ୍ଚିତ ଥିଲା ।

"ଓଡ଼ିଶାର ଅଧିବାସୀ ଏକ ଜାତି ଭାବରେ ସ୍ତ୍ରୈ ଏବଂ ସେମାନଙ୍କ ଠାରେ ପୌରୁଷର ଘୋର ଅଭାବ" ବୋଲି ଆବୁଲଫାଜଲଙ୍କ ବର୍ଣ୍ଣନାକୁ ବ୍ରିଟିଶ ଐତିହାସିକ ଷ୍ଟାର୍ଲିଂ ଖଣ୍ଡନ କରି କହିଛନ୍ତି ଯେ ଉକ୍ତ ଜନସମୁଦାୟ ସାହସିକ ଏବଂ ଘୃଣ୍ୟ ଅପରାଧ ପ୍ରବର୍ତ୍ତକ ନୁହଁନ୍ତି । ବରଂ ସେମାନଙ୍କ ଏତାଦୃଶ ଚରିତ୍ର ନାରୀ ସୁଲଭ ଗୁଣ ଯୋଗୁଁ ଅନୁମାନ କରାଯାଏ ।" ଏଥିରେ ରାଜନୈତିକ କାରଣ ସଂପୂର୍ଣ୍ଣ ଦାୟୀ ବୋଲି ବିବେଚିତ ହୁଏ । ଓଡ଼ିଶାର ଶେଷ ସ୍ୱାଧୀନ ରାଜା ମୁକୁନ୍ଦଦେବଙ୍କ ପତନ ପରଠୁ ଉତ୍କଳୀୟ ସାମ୍ରାଜ୍ୟ ଅନେକ ଶତାବ୍ଦୀ ବ୍ୟାପୀ କୁଶାସନର ଶିକାର ହେଲା । ବହିରାକ୍ରମଣ ଫଳରେ ଲୁଣ୍ଠନ ଓ ଅତ୍ୟାଚାରରେ ଅଦମନୀୟ ବୀରଜାତି ତାର ଭୀରୁତା ପାଇଁ ଖ୍ୟାତି ଲାଭ କଲା । ଓମାଲିଙ୍କ ପ୍ରସଂଶନୀୟ ଉକ୍ତି ହେଲା ଯେ "ଓଡ଼ିଆମାନେ ସାଧାରଣତଃ ଦୟାଳୁ, ହାସ୍ୟପ୍ରିୟ ଓ ଆଇନମାନି ଚଳୁଥିବା ଏକ ଜାତି । ଜଘନ୍ୟ ଅପରାଧଠାରୁ ଦୂରେଇ ଥିବା ସେମାନେ ଏକଶାନ୍ତିପୂର୍ଣ୍ଣ ଜନ ସମୁଦାୟ । ବିଶ୍ୱସନୀୟତା ଏବଂ ସାଧୁତା ପାଇଁ ଓଡ଼ିଆମାନେ ପ୍ରଥମ ଶ୍ରେଣୀର ଦେଶୀୟ ପ୍ରଜା ଅଟନ୍ତି ।

ଓଡ଼ିଆ ସାହିତ୍ୟ ଓ ଭାଷା ସମ୍ପର୍କରେ ତାଙ୍କର ମତ ପ୍ରଣିଧାନ ଯୋଗ୍ୟ । ବଙ୍ଗଳା ଓ ଓଡିଆ ଭାଷାର ଏକ ତୁଳନାତ୍ମକ ସଂକ୍ଷିପ୍ତ ଟିପ୍ପଣି ଦେଇ ଓମାଲି କହନ୍ତି ଯେ ବଙ୍ଗଳା ଭାଷାରେ ଅସ୍ପଷ୍ଟ ବ୍ୟଞ୍ଜନବର୍ଣ୍ଣ ଓ ଭଗ୍ନ ସ୍ୱରବର୍ଣ୍ଣ ହେତୁ ବିଦେଶୀ ମାନଙ୍କୁ ବଙ୍ଗଳା ବୁଝିବା କଷ୍ଟହୁଏ, କିନ୍ତୁ ସେ ଦୃଷ୍ଟିରୁ ଓଡ଼ିଆ ଭାଷା ବ୍ୟାପକ ଏବଂ କାବ୍ୟିକ । ଓଡ଼ିଆ ଭାଷା କଥିତ ବିଭିନ୍ନତାରୁ ମୁକ୍ତ ବୋଲି ସେ ଯଦିଚ ଉଲ୍ଲେଖ କରିଛନ୍ତି । (Oriya is remarkably free from dilective Variation.) ବାଲେଶ୍ୱରଏବଂ ମେଦିନୀପୁର ରେ ମିଶ୍ରିତ ଭାଷା କଥିତ ହୁଏ, ତଥାପି ତାହା ଉପଭାଷା କିମ୍ବା ସ୍ଥାନୀୟ ଭାଷା ନୁହେଁ ବୋଲି ସେ କହିଛନ୍ତି ।

ଅତୀତକୁ ରୋମନ୍ଥନ କଲେ କିଛି ସ୍ମୃତି ଏବଂ କିଛି ଅନୁଭୂତି ମିଳେ । ସେଇ ସ୍ମୃତି ଏବଂ ଅନୁଭୂତି ଗୋଟାଏ ଜାତିକୁ ସ୍ୱପ୍ନ ପ୍ରବଣ କରିଥାଏ । ସ୍ୱପ୍ନ ବିନା ଜାତିର ଗତି କେବେହେଲେ ଠିକ୍ ହୋଇ ନ ପାରେ ।

ଓଡ଼ିଶା ଭୌଗୋଳିକ ସ୍ୱାତନ୍ତ୍ର୍ୟ ପାଇଛି । ଉତ୍କଳ ସମ୍ମିଳନୀ ତଥାପି ବଂଚିଛି କେବଳ ଆଜିର ଓଡ଼ିଆଙ୍କୁ ତାର ପୂର୍ବ ପୁରୁଷମାନଙ୍କ ଅତୀତ ଗୌରବକୁ ସ୍ମରଣ କରେଇବା ପାଇଁ, ଓଡ଼ିଆ ପ୍ରାଣରେ ସୁସ୍ଥ ଜାତୀୟତା ଭାବ ବିକାଶ ବଳରେ ଏକ ସମୃଦ୍ଧ ଓଡ଼ିଶା ଗଠନର ସ୍ୱପ୍ନ ନେଇ, ଏହାର ସଂସ୍କୃତି ଓ ଐତିହ୍ୟକୁ ସଜାଡି ରଖିବାର ଲକ୍ଷ୍ୟ ନେଇ, ଜାତି ଇତିହାସରୁ ଜାତି କର୍ମବୀର ସୃଷ୍ଟି କରିବା ପାଇଁ ।

ବନ୍ଦେ ଉତ୍କଳ ଜନନୀ.. !

# ଅଧକ୍ଷ, ଚନ୍ଦନେଶ୍ୱର ମହାବିଦ୍ୟାଳୟ,
ସାହାବାଜିପୁର, ବାଲେଶ୍ୱର

# ସିଂହାବଲୋକନ : ଏକ ଭିନ୍ନଦୃଷ୍ଟି

ଶ୍ରୀ ସୁଶାନ୍ତ କୁମାର ଚାନ୍ଦ

ଭାରତବର୍ଷର ପ୍ରାଗୈତିହାସିକ ସିନ୍ଧୁସଭ୍ୟତା ଓ ବୈଦିକ ସଭ୍ୟତା ସମଗ୍ର ବିଶ୍ୱରେ ସର୍ବପ୍ରାଚୀନ ଓ ସର୍ବୋତ୍କୃଷ୍ଟ ଅଟେ । ବିଶ୍ୱର ଭାଷା-ଇତିହାସରେ ସଂସ୍କୃତ ଭାଷା ସର୍ବ ପୁରାତନ ଓ ସର୍ବଶ୍ରେଷ୍ଠ ଅଟେ । ପାଲି, ପ୍ରାକୃତ ଓ ସଂସ୍କୃତ ଭାଷାର ଅବ୍ୟବହିତ ପରବର୍ତ୍ତୀ ଆଂଚଳିକ ଭାଷା ମଧ୍ୟରେ ଓଡ଼ିଆ ଭାଷା ସର୍ବ-ପ୍ରାଚୀନ ଅଟେ । ଭାଷାତତ୍ତ୍ୱ ଦୃଷ୍ଟିରୁ ଓଡ଼ିଆ ଭାଷା ବିଶ୍ୱର ଯେ କୌଣସି ସର୍ବାଧୁନିକ ସମୃଦ୍ଧ ଭାଷାର ସମକକ୍ଷ ଅଟେ । ପ୍ରାଚୀନ ଭାରତବର୍ଷର ଇତିହାସରେ କଳିଙ୍ଗ ଏକ ସମୃଦ୍ଧିଶାଳୀ ଐତିହ୍ୟବାହୀ ସାମ୍ରାଜ୍ୟ ଥିଲା । ଏହି ମହାନ କଳିଙ୍ଗ ସାମ୍ରାଜ୍ୟ ଭାରତବର୍ଷର ସୀମା ଅତିକ୍ରମ କରି ଜାଭା, ସୁମାତ୍ରା, ବାଲି, ବର୍ଣିଓ, ଇଣ୍ଡୋନେସିଆ, ମାଳଏସିଆ ପ୍ରଭୃତି ସୁଦୂର ଦକ୍ଷିଣ ଏସିଆ ଭୂଖଣ୍ଡ ଯାଏଁ ବ୍ୟାପ୍ତ ଥିଲା । କଳିଙ୍ଗର ନୌବାଣିଜ୍ୟ ବିଶ୍ୱପ୍ରସିଦ୍ଧି ଲାଭ କରିଥିଲା । ସମ୍ରାଟ ମହାମେଘବାହନ ଐର ଖାରବେଳଙ୍କ ରାଜତ୍ୱ ଅବଧି କଳିଙ୍ଗ ସାମ୍ରାଜ୍ୟ ଯଶଖ୍ୟାତିର ତୁଙ୍ଗ ଶିଖରରେ ପହଞ୍ଚି ଥିଲା ।

ଏତାଦୃଶ ମହାନ ଓଡ଼ିଆ ଜାତିର ସାହିତ୍ୟ, କଳା, ସ୍ଥାପତ୍ୟ ଓ ସର୍ବୋପରି ତାର ବୀରତ୍ୱ ବିଜୟ ବୈଜୟନ୍ତୀ ଉଡ଼ାଇ ପ୍ରାୟ ପଞ୍ଚଦଶ ଶତାବ୍ଦୀର ଶେଷଭାଗ ଯାଏଁ ବୀରଦର୍ପରେ ଅଗ୍ରଗତି ଲାଭ କରିଥିଲା । କିନ୍ତୁ ଓଡ଼ିଶାର ଶେଷ ସ୍ୱାଧୀନ ରାଜା ମୁକୁନ୍ଦଦେବଙ୍କ କରୁଣ ପରାଜୟ ଠାରୁ ଆରମ୍ଭ ହେଲା ଏହି ବୀର ଓଡ଼ିଆ ଜାତିର ଗୌରବ, ଗାରିମାର ବିଲୟ ପ୍ରକ୍ରିୟା; ଆରମ୍ଭ ହେଲା ଆମ ପରାଭବର ଗ୍ଲାନି ଓ ଗାଥା । ମହାକାଳର କରାଳ ଗତିରେ ମ୍ଳାନ ହୋଇଗଲା ଆମର ସମସ୍ତ ଶୌର୍ଯ୍ୟ, ବୀର୍ଯ୍ୟ, କୀର୍ତ୍ତି ଓ କୃତିତ୍ୱ । ସମୃଦ୍ଧି ଓ ସାଫଲ୍ୟର ଉତ୍ତୁଙ୍ଗ ଗିରିଶୃଙ୍ଗରୁ ଝାସଦେଲୁଁ ଆମେ ପରାଜୟ ଓ ପରାଭବର ମହାସାଗରକୁ । ଏକ ହୃଦୟ ବିଦାରକ ବିପର୍ଯ୍ୟୟ ଗ୍ରାସ କଲା ଆମର ସମଗ୍ର ମାନସିକତାକୁ ।

ତଥାପି ଏହି ଦ୍ରୁତ ପତନୋନ୍ମୁଖ ଓଡ଼ିଆ ଜାତି ତାର ହୃଦୟର ଗୋପନ ଗହନ କନ୍ଦରରେ ସାଇତି ରଖିଥିବା ଶୌର୍ଯ୍ୟର ଶେଷ ଝଲକ ପ୍ରକଟିତ ହେଲା ୧୮୧୭ ମସିହା ମହାପ୍ରତାପୀ ସ୍ୱାଭିମାନୀ ପାଇକବୀର ବକ୍ସିଜଗବନ୍ଧୁଙ୍କ ନେତୃତ୍ୱରେ ପରିଚାଳିତ ପାଇକ ବିଦ୍ରୋହରେ । ମହା ପରାକ୍ରମୀ ବୀର ଓଡ଼ିଆ ପାଇକର ଏହାଥିଲା ଅନ୍ତିମ ସଂଗ୍ରାମ । କିନ୍ତୁ ଏହା ମଧ୍ୟ ସତ୍ୟ ଯେ ୧୮୫୭ ମସିହାରେ ସିପାହୀ ବିଦ୍ରୋହ -ଯାହାକୁ ଭ୍ରମ ବଶତଃ ଭାରତର ପ୍ରଥମ ସ୍ୱାଧୀନତା ସଂଗ୍ରାମ ବୋଲି କୁହାଯାଉଛି; ତାର ୪୦ ବର୍ଷ ପୂର୍ବରୁ ଭାରତର ସ୍ୱାଧୀନତା ସଂଗ୍ରାମର ଇତିହାସରେ ଓଡ଼ିଶାର ଏହି ପାଇକ ବିଦ୍ରୋହ ହିଁ ବାସ୍ତବରେ ପ୍ରଥମ ସ୍ୱାଧୀନତା ସଂଗ୍ରାମ । ଏହା ମଧ୍ୟ ଭୁଲି ଯିବା ସମ୍ଭବ ନୁହେଁ ଯେ- ୧୮୫୭ର ସିପାହୀ ବିଦ୍ରୋହରେ ସମଗ୍ର ଭାରତବର୍ଷର ମହାନାୟକମାନଙ୍କ ମଧ୍ୟରୁ ଓଡ଼ିଶାର ବୀର ସୁରେନ୍ଦ୍ର ସାଏ, ଜୟୀ ରାଜଗୁରୁ ଓ ଚାଖି ଖୁଣ୍ଟିଆ ଅଗ୍ରଗଣ୍ୟ ଅଟନ୍ତି ।

୧୮୦୩ ମସିହାରେ ଉତ୍କଳ ଭୂଖଣ୍ଡ ବ୍ରିଟିଶ ସାମ୍ରାଜ୍ୟାଧୀନ ହେଲା । ସମଗ୍ର ଭାରତବର୍ଷକୁ କବଳିତ କରି ସାରିଲା ପରେ ବ୍ରିଟିଶ ସରକାର ସର୍ବଶେଷରେ ଓଡ଼ିଶାକୁ କବଳିତ କରିବାକୁ କ୍ଷମ ହୋଇଥିଲେ । ଏହି ଅପରାଜେୟ ଓଡ଼ିଆ ଜାତିର ଦୁର୍ଦ୍ଦମନୀୟ ବୀରତ୍ୱର ପରିଚୟ ପାଇଲା ପରେ ବ୍ରିଟିଶ ସାମ୍ରାଜ୍ୟବାଦ ଭୟ ଓ ଆତଙ୍କରେ ଶଙ୍କିତ ଓ ଭୀତତ୍ରସ୍ତ ହୋଇଥିଲା । ଏଣୁ ଛଳେ, ବଳେ, କୌଶଳେ ଦୁର୍ଜୟ ଓ ଦୁର୍ଦ୍ଧର୍ଷ ଓଡ଼ିଆ ଜାତିକୁ ଧ୍ୱସ୍ତବିଧ୍ୱସ୍ତ କରିଦେବାର ଏକ ସୁପରିକଳ୍ପିତ ଚକ୍ରାନ୍ତ ରଚିତ ହେଲା । ପରିଣାମ

ସ୍ୱରୂପ ସମଗ୍ର ଉତ୍କଳ ଭୂଖଣ୍ଡକୁ ଖଣ୍ଡଖଣ୍ଡ କରି ପ୍ରାନ୍ତୀୟ ପ୍ରଦେଶମାନଙ୍କ ସହ ଯୋଡ଼ି ଦିଆଗଲା । ସମୃଦ୍ଧ ଓଡ଼ିଆ ଭାଷାକୁ ଓ ତାର ସଂସ୍କୃତିକୁ ଅବକ୍ଷୟ ଓ ଅବହେଳାର ଅତଳ ଗହ୍ୱରକୁ ନିକ୍ଷେପ କରାଗଲା । ରଣକ୍ଳାନ୍ତ, ଶ୍ରାନ୍ତ ଓ ଅବସନ୍ନ ଓଡ଼ିଆଜାତି ଭାଗ୍ୟକୁ ଆଦରି ମହାଗ୍ଳାନିରେ ନିମଜ୍ଜିତ ହୋଇ ଶୋଇ ପଡ଼ିଲା ମହାନିଦ୍ରାରେ ।

ଠିକ ଏକ ଶତ ବର୍ଷପରେ ଘୁମନ୍ତ ଓଡ଼ିଆ ଜାତିର ମହାନିଦ୍ର ଭଂଗ ହେଲା । ୧୯୦୩ ମସିହାରେ ଆରମ୍ଭ ହେଲା 'ଉତ୍କଳ ସମ୍ମିଳନୀ' । ପ୍ରଥମ ଅଧିବେଶନ ହେଲା କଟକର ଇଦ୍‌ଗା ପଡ଼ିଆରେ । ଓଡ଼ିଆ ଭାଷାର ସୁରକ୍ଷା ଓ ଖଣ୍ଡବିଖଣ୍ଡିତ ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଏକତ୍ର କରିବା ପାଇଁ ଆରମ୍ଭ ହେଲା ମହାସଂଗ୍ରାମ । ଏହାର ନେତୃତ୍ୱ ନେଲେ ଜାତୀୟ ଗୌରବ ମଧୁସୂଦନ ଦାସ, ମୟୂରଭଂଜ ମହାରାଜା ଶ୍ରୀରାମଚନ୍ଦ୍ର ଭଂଜଦେଓ, ଗଜପତି କୃଷ୍ଣଚନ୍ଦ୍ର ଦେବ, ବ୍ୟାସକବି ଫକୀର ମୋହନ ସେନାପତି, ବାଲେଶ୍ୱରର ରାଜା ବୈକୁଣ୍ଠ ନାଥ ଦେ, କବିବର ରାଧାନାଥ ରାୟ, କର୍ମବୀର ଗୌରୀଶଂକର ରାୟ, ଗୋପାଳ ଚନ୍ଦ୍ର ପ୍ରହରାଜ, ସ୍ୱଭାବ କବି ଗଙ୍ଗାଧର ମେହେର, ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ, ବାଗ୍ମୀ ବିଶ୍ୱନାଥ କର, ପଲ୍ଲିକବି ନନ୍ଦକିଶୋର ବଳ, ଗୋପାଳ ବଲ୍ଲଭ ଦାସ ପ୍ରମୁଖ ଏ ଜାତିର ନମସ୍ୟ ମହାନାୟକମାନେ ।

ଏଠାରେ ବିଶେଷ ଉଲ୍ଲେଖନୀୟ ବିଷୟ ଏହି ଯେ-ସାଧାରଣତଃ ମହାକାଳର ଏକ ନିର୍ଦ୍ଦିଷ୍ଟ କାଳଖଣ୍ଡରେ କୌଣସି ଏକ ନିର୍ଦ୍ଦିଷ୍ଟ ଭୂଖଣ୍ଡରେ ସଂଘଟିତ ହୋଇଥାଏ ଗୋଟିଏ ଏକକ ସଂଗ୍ରାମ । କିନ୍ତୁ ଊନବିଂଶ ଶତାବ୍ଦୀର ଆଦ୍ୟଭାଗରେ ଉତ୍କଳ ଭୂଖଣ୍ଡରେ ସମାନ୍ତରାଳ ଭାବେ ସଂଚାଳିତ ହେଲା ତିନୋଟି ମହାସଂଗ୍ରାମ । ପ୍ରଥମଟି ହେଲା -ଓଡ଼ିଆ ଭାଷା ସୁରକ୍ଷା ସଂଗ୍ରାମ । ଦ୍ୱିତୀୟଟି ହେଲା -ଭାଷା ଭିତ୍ତିରେ 'ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ' ଗଠନ ପାଇଁ ସଂଗ୍ରାମ ଏବଂ ତୃତୀୟଟି ହେଲା ଭାରତବର୍ଷର ସ୍ୱାଧୀନତା ସଂଗ୍ରାମରେ ଓଡ଼ିଶାର ବଳିଷ୍ଠ ଯୋଗଦାନ । ତହିଁ ପରେପରେ ଆରମ୍ଭ ହେଲା ୪ର୍ଥ ସଂଗ୍ରାମ -ସାମନ୍ତବାଦର ବିଲୋପ ପାଇଁ ଗଡ଼ଜାତ ପ୍ରଜା ଆନ୍ଦୋଳନ । ଓଡ଼ିଶା ପକ୍ଷରେ ଏହା ଏକ ଅନନ୍ୟ ଐତିହାସିକ ଦୃଷ୍ଟାନ୍ତ ।

ଭାଷା ସୁରକ୍ଷା ଏବଂ ସ୍ୱତନ୍ତ୍ର ପ୍ରଦେଶ ଗଠନ ଆନ୍ଦୋଳନ ଗୋଟିଏ ଅନ୍ୟର ପରିପୂରକ ଭାବେ କାର୍ଯ୍ୟ କରୁଥିଲା । ଏହି ମହାନ, ଐତିହାସିକ ଆନ୍ଦୋଳନର ସାଂଗଠନିକ ଆୟୁଧ ଥିଲା-'ଉତ୍କଳ ସମ୍ମିଳନୀ' । ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ସମଗ୍ର ଓଡ଼ିଆ ଜାତି ପାଇଁ 'ଉତ୍କଳ ସମ୍ମିଳନୀ' ଥିଲା ମହାମିଳନର ଐକାନ୍ତିକ ସାଧନାର ଫଳଶ୍ରୁତି ସ୍ୱରୂପ କେବଳ ଯେ ଆମ ଓଡ଼ିଆ ଭାଷା ସୁରକ୍ଷିତ ହେଲା ତାହା ନୁହେଁ, ଓଡ଼ିଆ ଭାଷାସାହିତ୍ୟର ଅଭିନବ ବିକାଶ ମଧ୍ୟ ସାଧିତ ହେଲା । ନୂତନ ଓଡ଼ିଆ ଗଦ୍ୟ ସାହିତ୍ୟ ସାଂଗକୁ ଆମ ଭାଷା ସାହିତ୍ୟର ବହୁବିଧ ବିଭାଗ ନୂତନ ବିଭବରେ ବିମଣ୍ଡିତ ହେଲା ।

'ଉତ୍କଳ ସମ୍ମିଳନୀ'ର କର୍ଣ୍ଣଧାର ନେତୃମଣ୍ଡଳଙ୍କ ତ୍ୟାଗ, ତିତିକ୍ଷା ଓ ଦୀର୍ଘସ୍ଥାୟୀ ଲଢ଼େଇ ଫଳରେ ସର୍ବ ପ୍ରଥମେ ୧୯୦୫ ମସିହା ଅକ୍ଟୋବର ୧୬ ତାରିଖରେ କଳାହାଣ୍ଡି, ବଲାଙ୍ଗିର (ପାଟଣା), ସୋନପୁର, ବାମଣ୍ଡା, ରେଢ଼ାଖୋଲ, ସୁନ୍ଦରଗଡ଼ (ଗାଂଗପୁର) ସମେତ ସମ୍ବଲପୁର ଜିଲ୍ଲାକୁ ଓଡ଼ିଶା ସହିତ ମିଶାଇ ଦିଆଗଲା । ଏହାହିଁ ହେଉଛି ନୂତନ ଓଡ଼ିଶାର ଆଦ୍ୟ ସ୍ୱନକ୍ଷତ୍ର ଦିବସ । ପରିଶେଷରେ ସମଗ୍ର ଓଡ଼ିଆ ଜାତିର ପ୍ରାଣରେ ଉଚ୍ଛ୍ୱସିତ ପୁଲକ ସଞ୍ଚାର କରି ୧୯୩୬ ମସିହା ଏପ୍ରିଲ ପହିଲାରେ ଗଠିତ ହେଲା ଆମର ବହୁ ଆକାଂକ୍ଷିତ 'ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ' । ଏହା ଥିଲା ତତ୍‌କାଳୀନ ଭାରତବର୍ଷର ନବମ ପ୍ରଦେଶ ।

କିନ୍ତୁ ଐତିହାସିକ ବିଡ଼ମ୍ବନା ଏହି ଯେ-ତତ୍‌କାଳୀନ ବିହାର ପ୍ରଦେଶର ଷଢ଼େଇକଳା ଓ ଖରସୁଆଁ, ପଶ୍ଚିମବଂଗର ମେଦିନିପୁର, ତତ୍କାଳିନ ମଧ୍ୟପ୍ରଦେଶର ବସ୍ତର, ଆନ୍ଧ୍ର ପ୍ରଦେଶର ମଞ୍ଜୁଷା ଓ ଟିକାଲି ପ୍ରଭୃତି ଅଞ୍ଚଳର ବିଶୁଦ୍ଧ ଓଡ଼ିଆ ଭାଷୀ ଶହଶହ ଗ୍ରାମ ଓଡ଼ିଶା ଠାରୁ ବିଚ୍ଛିନ୍ନ ହୋଇ ରହିଗଲା । 'ଉତ୍କଳ ସମ୍ମିଳନୀ' ଚଳାଇ ରଖିଲା ଆପୋଷହୀନ ସଂଗ୍ରାମ । ଆଶା ଥିଲା ସ୍ୱାଧୀନତା ପ୍ରାପ୍ତି ପରେ ଭାରତ

ସରକାରଙ୍କ ଠାରୁ ଆମେ ନ୍ୟାୟ ପାଇବୁଁ । ତାହା ମଧ୍ୟ ବିଫଳ ହେଲା । ଏଣୁ ୧୯୫୬ ମସିହାରେ ପୁଣି ଥରେ ଆରମ୍ଭ ହେଲା ଐତିହାସିକ ସୀମା ଆନ୍ଦୋଳନ । ଛାତ୍ରନେତା ସୁନୀଲ (କଟକ) ଓ ବେଂଗପାଣିଆ (ପୁରୀ) ଶହୀଦ ହେଲେ, ତଥାପି ମଧ୍ୟ ଭାରତ ସରକାର ଆମ ନ୍ୟାଯ୍ୟ ଦାବି ଗ୍ରହଣ କଲେନାହିଁ । ଅଦ୍ୟାବଧି ବିଚ୍ଛିନ୍ନାଞ୍ଚଳର ଲକ୍ଷଲକ୍ଷ ଓଡ଼ିଆ ଭାଇଭଉଣୀ ହୃଦୟରେ କୋହ ଓ ଆଖିରେ ଲୁହ ଭରି ଦ୍ୱିତୀୟ ଶ୍ରେଣୀର ନାଗରିକ ଭାବେ ହୀନମାନିଆ ଜୀବନ ବିତାଉଛନ୍ତି । ସେମାନଙ୍କର ବ୍ୟଥା ଓ ବେଦନା କିଏ ବୁଝୁଛି ? ଏବେ ବି ଓଡ଼ିଶାର ବହୁ ସୀମାନ୍ତ ଗ୍ରାମ ବିବାଦର ଘେରରେ ରହିଥିବାରୁ ସେହି ଗ୍ରାମର ଅଧିବାସୀମାନେ ଅକଥନୀୟ ଜ୍ୱାଳା ଓ ଯନ୍ତ୍ରଣା ଭୋଗ କରୁଛନ୍ତି । କିଏ ଶୁଣୁଛି ସେମାନଙ୍କର କାତର ନିବେଦନ ? ଏ ସବୁ କେବଳ ଅରଣ୍ୟରୋଦନ । ଆମ ଓଡ଼ିଆ ଭାଷା ଓ ସଂସ୍କୃତି ଆଜି ନାନାଦିଗରୁ ବିପନ୍ନ ।

ସୁଖର କଥା 'ଉତ୍କଳ ସମ୍ମିଳନୀ' ଏହି ଐତିହାସିକ ଅହ୍ୱାନକୁ ଗ୍ରହଣ କରି ନିରବଚ୍ଛିନ୍ନଭାବେ ତାର କର୍ତ୍ତବ୍ୟ ପାଳନ କରିବାକୁ ଐକାନ୍ତିକ ଉଦ୍ୟମ ଚଳାଇ ରଖିଛି । ଉତ୍କଳ ଜନନୀର ସୀମାନ୍ତ-ପୁତ୍ରୀ ଭୋଗରାଇର ଚନ୍ଦନେଶ୍ୱର ନିକଟସ୍ଥ ସୀମାନ୍ତ ଗ୍ରାମ ଶାହାବାଜିପୁରଠାରେ ଅନୁଷ୍ଠିତ ହେଉଛି ଉତ୍କଳ ସମ୍ମିଳନୀର ୧୦୧ତମ ରାଜ୍ୟ ସମ୍ମଳନୀ । ଏହି ସମ୍ମିଳନୀ ୪ କୋଟି ଓଡ଼ିଆଙ୍କର ଆଶା ଓ ଭରସାର କେନ୍ଦ୍ରବିନ୍ଦୁ । ଆସନ୍ତୁ ଆମେ ସମସ୍ତେ ସମ୍ମିଳିତ ଭାବେ କଣ୍ଠରେ ମଧୁବାବଙ୍କୁ କଣ୍ଠ ମିଳାଇ ଆବୃତ୍ତି କରିବା -

''ଏହି ସମ୍ମିଳନୀ ଜାତି ପ୍ରାଣସିନ୍ଧୁ-କୋଟି ପ୍ରାଣବିନ୍ଦୁ ଧରେ;
ତୋର ପ୍ରାଣବିନ୍ଦୁ ମିଶାଇ ଦେ ଭାଇ-ଡେଇଁପଡ଼ି ସିନ୍ଧୁ ନୀରେ ।''

#. ପୂର୍ବତନ ବିଧାୟକ, ଭୋଗରାଇ
ଫୁଲବଣି, ବାଲେଶ୍ୱର

''ଡକାଡକି ହୋଇ ଉଠରେ ଓଡ଼ିଆ
ଗଭୀର ନିଦ୍ରା-ଭୋଳ !
ସମ୍ବଲପୁର ଡାକୁ ଗଞ୍ଜାମେ
ସେ ଡାକ ଉଠୁରେ ସିଂଭୂମ୍ ଧାମେ
ଜୟପୁର ଥରୁ ଜନନୀର ନାମେ
ସାରା ଦେଶେ ଉଠୁ ରୋଳ,
ହାତ ଧରାଧରି ଠିଆ ହୋଇ ଥରେ
'ଜୟ ଉତ୍କଳ' ବୋଲ ।''
('ଉତ୍ତିଷ୍ଠ ଉତ୍କଳ')-**ମାୟାଧର ମାନସିଂହ**

# ପୌରାଣିକ କିମ୍ବଦନ୍ତୀରେ ଉତ୍କଳ : ଏକ ଆଲୋଚନା

ଶ୍ରୀ ଗୌରୀଶଙ୍କର ତ୍ରିପାଠୀ ଶର୍ମା

"ଉତ୍କଳସ୍ୟ ସମଂ ଦେଶଃ, ଦେଶଃ, ନାସ୍ତି ମହୀତଳେ" ଏହା ଏକ ଶାସ୍ତ୍ରୀୟ ଉକ୍ତି । ଏହା ଆମ ଉତ୍କଳ ପ୍ରଶସ୍ତି ଗାନର ଆର୍ଷବାକ୍ୟ ପୁଣ୍ୟାତ୍ମା ଉତ୍କଳମଣି ଗୋପବଂଧୁଙ୍କ ଭାଷାରେ ଅନ୍ୟ ଏକ ଉତ୍କଳ ପ୍ରଶସ୍ତି ଗାନ କରାଯାଇଛି -

"ଜଗତ ସରସେ ଭାରତ କମଳ ।
ତା' ମଧ୍ୟେ କେଶର ପୁଣ୍ୟ ନୀଳାଚଳ ।।"

"ପୂତ ପୟୋଧିବିଧୌତ ଶରୀରା/ତାଳ ତମାଳ ସୁଶୋଭିତ ତୀରା" ଆମ ଉତ୍କଳ ସମ୍ବନ୍ଧରେ ବିଭିନ୍ନ ପୌରାଣିକ ମତବାଦ ଦେଖାଯାଏ । ଭାଗବତ, ମହାଭାରତ, ମତ୍ସ୍ୟପୁରାଣ, ହରିବଂଶ, ସ୍କନ୍ଧ ପୁରାଣ ଇତ୍ୟାଦିରେ ଉତ୍କଳ ସମ୍ବନ୍ଧୀୟ ବିଭିନ୍ନ ପ୍ରମାଣ ରହିଅଛି । ଆଲୋଚ୍ୟ ପ୍ରବନ୍ଧରେ ଏହାର କିୟତ୍ ଯୁକ୍ତି ଯଥାଜ୍ଞାନ ଆଲୋଚନା କରିବାକୁ ଉଚିତ ମଣୁଅଛି ।

"ପୁଣ୍ୟ ତଟିନୀକୂଳ ସିକର ସମୀରା" ଉତ୍କଳର ଜନ୍ମ ବିଷୟରେ ଏକ ପୌରାଣିକ କିମ୍ବଦନ୍ତୀମୂଳକ କଥା ଦେଖିବାକୁ ମିଳେ । ପ୍ରାୟତଃ ଭାରତବର୍ଷ ତଥା ଏହାର ରାଜ୍ୟଗୁଡ଼ିକର ନାମ କରଣର ମୂଳ ଭାଗରେ କିଛି ନା କିଛି ପୌରାଣିକ ଆଖ୍ୟାୟିକା ରହିଅଛି ।

ପୌରାଣିକ କିମ୍ବଦନ୍ତୀ ଅନୁଯାୟୀ ସୂର୍ଯ୍ୟପୁତ୍ର ସପ୍ତମ ମନୁ ଶ୍ରାଦ୍ଧଦେବଙ୍କଠାରୁ 'ଇଳ' ନାମରେ ଗୋଟିଏ ପୁତ୍ର ଏବଂ 'ଇଳା' ନାମରେ ଗୋଟିଏ କନ୍ୟା ଜନ୍ମ ଗ୍ରହଣ କରିଥିଲେ । କାଳକ୍ରମେ 'ଇଳ' ପାରିଧିରେ ଯାଇ ଶିବପାର୍ବତୀଙ୍କ ଦ୍ୱାରା ନିଷେଧିତ ହୋଇଥିବା ଅରଣ୍ୟ ମଧ୍ୟରେ ପ୍ରବେଶ କରନ୍ତେ 'ଇଳ'ଙ୍କର ସ୍ତ୍ରୀତ୍ୱ ପ୍ରାପ୍ତି ହୋଇଥିଲା । ଶିବଙ୍କୁ ପ୍ରାର୍ଥନା କରନ୍ତେ ଶିବଙ୍କ ବରାନୁଯାୟୀ 'ଇଳ' ପୁଣି ପର୍ଯ୍ୟାୟ କ୍ରମେ ପୁରୁଷତ୍ୱ ପ୍ରାପ୍ତ ହୋଇଥିଲେ । ଘଟଣା ପ୍ରବାହରେ ଉକ୍ତ 'ଇଳ' ରାଜ୍ୟ ପରିଚାଳନାରେ ଅକ୍ଷମ ହେବାରୁ, ପିତା ତାଙ୍କୁ ଏକ ଅନୁନ୍ନତ ଭୂଖଣ୍ଡରେ ରାଜତ୍ୱ କରିବାର ଆଦେଶ ଦିଅନ୍ତେ, ସେ ସେଠାକାର ଅଶିକ୍ଷିତ ଲୋକଙ୍କୁ ଶିକ୍ଷିତ କରାଇ ପ୍ରଚୁର ଅର୍ଥ ଉପାର୍ଜ୍ଜନ କରି 'ସୁଦ୍ୟୁମ୍ନ' ନାମରେ ଖ୍ୟାତ ହେଲେ । ସୁଦ୍ୟୁମ୍ନର ଅର୍ଥ ହେଲା, ସୁ (ସୁନ୍ଦର) ଦ୍ୟୁମ୍ନ (ସ୍ୱର୍ଣ୍ଣମୁଦ୍ରା) ଯାହାଙ୍କର । ଏହି ବହୁବ୍ରିହୀ ସମାସ ଦ୍ୱାରା ସୁଦ୍ୟୁମ୍ନ ପଦଟି ସିଦ୍ଧ ହୋଇଅଛି । ଏଣୁ ସୁଦ୍ୟୁମ୍ନ ଯେ ଧନଶାଳୀ ନୃପତି ଥିଲେ ଏଥିରୁ ପ୍ରମାଣ ମିଳେ ।

"ଇଳଃ ଲିଂ ପୁରୁଷତ୍ୱେଚ ସୁଦ୍ୟୁମ୍ନ ଇତି ଚୋଚ୍ୟତେ" (ମତ୍ସ୍ୟ ପୁରାଣ) । ଏହି ସୁଦ୍ୟୁମ୍ନଙ୍କ ଠାରୁ ତିନି ପୁତ୍ର ଜନ୍ମ ହୋଇଥିଲେ । ସେମାନେ ହେଲେ, ୧-ଉତ୍କଳ, ୨-ଗୟ, ୩-ବିମଳ । ସେତେବେଳେ ଭାରତବର୍ଷ ଉତ୍ତରାଞ୍ଚଳ ଏବଂ ଦକ୍ଷିଣାଞ୍ଚଳ ଦୁଇଭାଗରେ ବିଭକ୍ତ ଥିଲା । ଉତ୍ତରାଞ୍ଚଳ ଥିଲା ଉନ୍ନତ ଏବଂ ଦକ୍ଷିଣାଞ୍ଚଳ ଥିଲା ଅନୁନ୍ନତ । ଏହି ଅନୁନ୍ନତ ଅଞ୍ଚଳରେ ତିନି ଭାଇ ରାଜୁତି କରିଥିଲେ । ଭାଗବତର ନବମ ସ୍କନ୍ଧ ୧ମ ଅଧ୍ୟାୟ ୪୧ ଶ୍ଳୋକରେ ଦେଖିବାକୁ ମିଳେ, ଯଥା -

"ତସ୍ୟୋତ୍କଳୋ ଗୟରାଜନ୍ ବିମଳଶ୍ଚ ତ୍ରୟଃସୁତାଃ,
ଦକ୍ଷିଣାପଥ ରାଜାନୋ ବଭୂବ ଧର୍ମବତ୍ସଳାଃ ।।"

ଏହି ଭାଇଙ୍କ ଦ୍ୱାରା ତିନୋଟି ରାଜ୍ୟ ଅଧିକୃତ ହୋଇଥିଲା । ଉତ୍କଳଙ୍କ ଦ୍ୱାରା ଶାସିତ ରାଜ୍ୟ ଉତ୍କଳ । ଗୟଙ୍କ ଦ୍ୱାରା ଶାସିତ ରାଜ୍ୟ ବିହାରର ଗୟାପୁରୀ; ଏବଂ ବିମଳଙ୍କର ନାମ ହରିତାଶ୍ୱ, ବିନାତାଶ୍ୱ ଇତ୍ୟାଦି ନାମରେ

ବିଭିନ୍ନ ପୁରାଣ ପ୍ରମାଣ ଦେଉଥିବାରୁ ପ୍ରମାଣାନୁସାରେ ସେ କୁରୁ ରାଜ୍ୟର ଅଧିପତି ଥିଲେ । ମତ୍ସ୍ୟ ପୁରାଣର ୧୨ ଅଧ୍ୟାୟରେ ଏହି ତିନିଜଣଙ୍କ ନାମରେ ଲେଖାଅଛି -

''ଉତ୍କଳସ୍ୟୋତ୍କଳୋ ନାମ ଗୟସ୍ୟତୁ ଗୟାମତା,
ହରିତାଶ୍ୱ ଦିକ୍‌ପୂର୍ବା ପ୍ରଥିତା କୁରୁଭିଃସହ ।''

ଏଣୁ ଏହି ପ୍ରମାଣାନୁଯାୟୀ ପ୍ରଥମତଃ ଏହି ଉତ୍କଳ ରାଜ୍ୟ ସୂର୍ଯ୍ୟବଂଶୀୟ 'ଉତ୍କଳ' ମହାରାଜାଙ୍କ ନାମାନୁସାରେ ଉତ୍କଳ ବୋଲି ବିଖ୍ୟାତ ହୋଇଅଛି ।

ପୁଣି ଅନ୍ୟ ଏକ କଥା ଭାଗବତରେ ଦେଖିବାକୁ ମିଳେ । ଇତିହାସ କହେ ଗୋଟିଏ ରାଜ୍ୟ ଭିନ୍ନଭିନ୍ନ ସମୟରେ ଭିନ୍ନଭିନ୍ନ ନରପତିଙ୍କ ଦ୍ୱାରା ଶାସିତ ହୋଇଥାଏ । ଉତ୍କଳଙ୍କ ପରେ ଗଣନାନୁଯାୟୀ ୫୦୦ ବର୍ଷ ପରେ ଚନ୍ଦ୍ରବଂଶୀୟ 'ଓଡ୍ର' ମହାରାଜାଙ୍କ ଦ୍ୱାରା ଏହି ଦେଶ ଶାସିତ ହୋଇଥିଲା । ଯଥା-'ଅଙ୍ଗ, ବଙ୍ଗ, କଳିଙ୍ଗାଖ୍ୟା ସୁହ୍ମ ପୁଂପୌତ୍ର ସଂଜ୍ଞିତାଃ'' (୯ମ ସ୍କନ୍ଧ ୨୩ ଅ:) । ପୁଣି ଅନ୍ୟ ଏକ ପ୍ରମାଣ ମହାଭାରତରେ ଦେଖିବାକୁ ମିଳେ । ଦ୍ରୋଣପର୍ବର ୪ର୍ଥ ଅଧ୍ୟାୟରେ ଶରଶଯ୍ୟାଶାୟୀ ଭୀଷ୍ମଦେବ କର୍ଣ୍ଣଙ୍କୁ କହୁଛନ୍ତି -

''ଉତ୍କଳାମେକଳାଃ ପୌଣ୍ଡ୍ରାଃ କଳିଙ୍ଗାନ୍ଧ୍ରାଶ୍ଚ ସଂଯୁଗେ ।
ନିଷାଦାଶ୍ଚତ୍ରିଗର୍ତ୍ତାଶ୍ଚ ବାହ୍ଲିକଶ୍ଚ ଜିତାସ୍ତ୍ୱୟା ।।''

ଅର୍ଥାତ୍ ହେ କର୍ଣ୍ଣ ! ତୁମେ ତୁମର ବାହୁବଳରେ କୌରବ ପାଇଁ ଉତ୍କଳ, ପୌଣ୍ଡ୍ର, କଳିଙ୍ଗ ପ୍ରଭୃତି ରାଜ୍ୟ ଜୟ କରାଇ ଅଛ । ପୁଣି କର୍ଣ୍ଣ ପର୍ବର ୨୨ ଅଧ୍ୟାୟରେ ଯୁଦ୍ଧ ବର୍ଣ୍ଣନାରେ ଉତ୍କଳ କଥା ଉଲ୍ଲେଖ ଅଛି ।

''ମେକଳୋତ୍କଳଃ କଳିଙ୍ଗାଃ ନିଷଧସ୍ତାମ୍ରଲିପ୍ତକାଃ ।।''

ମହାରାଜ ଯୁଧିଷ୍ଠିରଙ୍କ ରାଜସଭାରେ ଉତ୍କଳାଧିପତିଙ୍କର ଆସନ ପାଇବାର ଥିବା କଥା ସଭାପର୍ବର ୪ର୍ଥ ଅଧ୍ୟାୟରେ ବର୍ଣ୍ଣିତ ହୋଇଅଛି । ପୁଣି ଉତ୍କଳାଧିପଗଣ ମିଳିତ ହୋଇ ପରିବେଷଣ କାର୍ଯ୍ୟରେ ନିଯୁକ୍ତ ଥିବା ବନପର୍ବର ୫୧ ଅଧ୍ୟାୟରେ ବର୍ଣ୍ଣନା କରାଯାଇଅଛି । ଏଥିରୁ ପ୍ରମାଣ ମିଳେ ଛୋଟଛୋଟ ବହୁରାଜ୍ୟ ମିଶ୍ରଣରେ ବିଶାଳ ଉତ୍କଳରାଜ୍ୟ ଗଠିତ ହୋଇଅଛି । ବନପର୍ବର ୧୧୫ ଅଧ୍ୟାୟରେ କଳିଙ୍ଗ ରାଜ୍ୟର ବର୍ଣ୍ଣନା ରହିଅଛି - ''ଏତେ କଳିଙ୍ଗାଃ କୌନ୍ତେୟ ! ଯତ୍ରବୈତରଣୀ ନଦୀ ।''

ପୁଣି ସ୍କନ୍ଧ ପୁରାଣରେ ଉତ୍କଳ ଦେଶ ବିଷୟରେ କୁହାଯାଇଛି -

''ସ ଏଷ ଦେଶପ୍ରବର ଉତ୍କଳାଖ୍ୟୋ ଦ୍ୱିଜୋତ୍ତମାଃ
ଋଷିକୁଲ୍ୟାଂ ସମାସଦ୍ୟ ଦକ୍ଷିଣୋଦଧିଗାମିନୀଂ
ସ୍ୱର୍ଣ୍ଣରେଖା ମହାନଦ୍ୟୋ ର୍ମଧ୍ୟେ ଦେଶଃ ପ୍ରତିଷ୍ଠିତଃ ।''

ଏଣୁ ଦକ୍ଷିଣରେ ଋଷିକୁଲ୍ୟାଠାରୁ, ସୁବର୍ଣ୍ଣରେଖା ଅବଧି ରାଜ୍ୟ ସମୂହ ଉତ୍କଳ ବୋଲି ଥିଲା ।

ଏଣୁ ଶ୍ରାଦ୍ଧଦେବଙ୍କ ପୌତ୍ର ଇଳ ମହାରାଜଙ୍କ ପୁତ୍ର ଉତ୍କଳ ମହାରାଜଙ୍କ ଦ୍ୱାରା ପ୍ରତିଷ୍ଠାପିତ ଉତ୍କଳ ଦେଶ ଯେପରି ବିଶାଳ ସେହିପରି ସୁପ୍ରସିଦ୍ଧ ଅଟେ । ପୁଣି ଆମ ବିବାହ ମହାବାକ୍ୟରେ ଉତ୍କଳ ଭୂଖଣ୍ଡର ନାମୋଚ୍ଚାରଣ କରାଯାଏ ।

''ଇହପୃଥିବ୍ୟାଂ ଜମ୍ବୁଦ୍ୱୀପେ ଭାରତବର୍ଷେ ଭରତଖଣ୍ଡେ ଉତ୍କଳ ପ୍ରଦେଶେ'' ଇତ୍ୟାଦି ।

ହରିବଂଶର ୧୦ମ ଅଧ୍ୟାୟରେ ଉତ୍କଳ ରାଜାଙ୍କ ପୁତ୍ରମାନଙ୍କ ନାମ ମଧ ଉଲ୍ଲେଖ ଅଛି -

''ଉତ୍କଳସ୍ୟା ତ୍ରୟଃ ପୁତ୍ରାଃ ତ୍ରିଷୁଲୋକେଷୁବିଶ୍ରୁତାଃ''

ଅତଏବ ଉତ୍କଳ ବହୁପ୍ରାଚୀନ । ଏହାର ପ୍ରମାଣ ବିଭିନ୍ନ ପୁରାଣଗ୍ରନ୍ଥରୁ ମିଳୁଅଛି । ଏହାର ସଂସ୍କୃତି, ଆଚାର, ବ୍ୟବହାର ମାର୍ଜ୍ଜିତ ଏବଂ ଉନ୍ନତ । ଏଣୁ ଯଥାର୍ଥରେ କୁହାଯାଏ,

''ଉତ୍କଳସ୍ୟ ସମଂ ଦେଶଃ, ଦେଶଃ ନାସ୍ତି ମହୀତଳେ ।''

(ଜୟତୁ ଉତ୍କଳ)

# ସଂସ୍କୃତ ଶିକ୍ଷକ, ସର୍ବେଶ୍ୱର ଉଚ୍ଚବିଦ୍ୟାଳୟ, ବାହାର୍ଦ୍ଧା, କମର୍ଦ୍ଧା, ବାଲେଶ୍ୱର

# ଭାଷା ଉପରେ ଜଗତୀକରଣର ପ୍ରଭାବ

## ମହାମେଘବାହନ ଐର ଖାରବେଳ ସ୍ୱାଇଁ

ସାଂପ୍ରତିକ ଜଗତୀକରଣ ଯୁଗରେ ଓଡ଼ିଆ ଭାଷା ଆକ୍ରାନ୍ତ ହେଉଛି ବୋଲି ଏକ ବଦ୍ଧମୂଳ ଧାରଣା ପ୍ରଚାରିତ ହେବାରେ ଲାଗିଛି । ଜଗତୀକରଣର ପ୍ରକ୍ରିୟା ଯୋଗୁଁ ଭାଷା ପ୍ରଦୂଷିତ ହେଉଛି, ଓଡ଼ିଆ ଭାଷାରେ କଥାବାର୍ତ୍ତା କରୁଥିବା ଜନତାର ସଂଖ୍ୟା ହ୍ରାସ ହେଉଛି, ଭାଷାର ପ୍ରଭାବ ଓ ପ୍ରତିଷ୍ଠା ମଧ୍ୟ ଏହା ଦ୍ୱାରା ପ୍ରଭାବିତ ହେଉଛି । କେବଳ ଓଡ଼ିଆ ନୁହେଁ, ଅନ୍ୟାନ୍ୟ ସମସାମୟିକ ଆଞ୍ଚଳିକ ଭାଷାମାନେ ମଧ୍ୟ ଏହି ପ୍ରକ୍ରିୟା ଦ୍ୱାରା ବ୍ୟାପକ ଭାବରେ ପ୍ରଭାବିତ ହେଉଥିବାର ଅଭିଯୋଗ କରୁଛନ୍ତି । ମାଲାୟାଲମ ଭାଷାର ସଂସ୍କୃତି ରକ୍ଷା ପାଇଁ ଏହି ଭାଷାର ପ୍ରବକ୍ତାମାନେ ସବୁ ପୁରୁଣା ଚଳଚ୍ଚିତ୍ର ମାନଙ୍କର ପ୍ରଦର୍ଶନ, ପୁରୁଣା ସାହିତ୍ୟର ପୁନଃମୁଦ୍ରଣ ଆଦି ପଦକ୍ଷେପମାନ ନେଉଛନ୍ତି ।

ଜଗତୀକରଣ ପ୍ରକ୍ରିୟା ଦ୍ୱାରା ଭାଷା ଆକ୍ରାନ୍ତ ହେଉଛି କହିଲେ ଅନ୍ୟ କେଉଁ ଭାଷା ନୁହେଁ, ବରଂ କେବଳ ଇଂରାଜୀ ଭାଷାର ଆକ୍ରମଣକୁ ବୁଝାଇଥାଏ । ଏହି ଭାଷାକୁ ଅସଲ ଖଳନାୟକ ହିସାବରେ ଗଣନା କରାଯାଇଥାଏ । କାରଣ , ଇଂରାଜୀ ହେଉଛି ବିଶ୍ୱ ବାଣିଜ୍ୟ ସଂଗଠନ ବା ଡବଲ୍ୟୁ .ଟି.ଓ.ର ଭାଷା । ଏହା ହେଉଛି ବର୍ତ୍ତମାନ ଏକମାତ୍ର ବିଶ୍ୱଶକ୍ତି, ଆମେରିକାର ଭାଷା । ଏହା ହେଉଛି ଅର୍ଥ ଓ କ୍ଷମତାର ଭାଷା । ବିଶ୍ୱର ୩୦ କୋଟି ଲୋକ ଏହି ଭାଷାରେ କଥା କୁହନ୍ତି । ଆଉ ବାକି ସମସ୍ତେ ଏହି ଭାଷାରେ କଥା କହିବା କୁ ଚାହାନ୍ତି । ଉପରେ ଉପରେ ସେମାନେ ଏହି ଭାଷାର ପ୍ରସାରକୁ ବିରୋଧ କରୁଥିଲେ ମଧ୍ୟ ସେମାନେ ଏହି ଭାଷାର ଆକ୍ରମଣକୁ ଏଡ଼ାଇ ପାରନ୍ତି ନାହିଁ ।

ସମସ୍ତଙ୍କ ପାଇଁ ଏହା ହେଉଛି ଲାଇଫ୍ ଷ୍ଟାଇଲର ଭାଷା, କିନ୍ତୁ ଏ ଭାଷା ଆମର ଶ୍ୱାସରୁଦ୍ଧ କରିଦେବ ବୋଲି ଆମ ଆଶଂକା, ଯେମିତି କୋକା କୋଲା ଓ ପେପ୍ସିକୋଲା ପରି ଆମେରିକାନ କମ୍ପାନୀମାନେ ଭାରତକୁ ଆସିବାପରେ ଭାରତର ଅନ୍ୟ ମୃଦୁପାନୀୟ କମ୍ପାନୀ ପ୍ରତିଯୋଗୀ ମାନଙ୍କୁ ବଜାରରୁ ହଟାଇ ଦେଲେ, ସେମିତି ଇଂରାଜୀ ଭାଷା ଆମ ମାତୃଭାଷାକୁ ହଟାଇ ଦେବ ବୋଲିଆମର ଆଶଂକା ।

କିନ୍ତୁ ଅତି ନିକଟ ଅତୀତରେ ଭାରତୀୟ ଭାଷାମାନେ ୨୦୦ ବର୍ଷର ଇଂରାଜୀ ସାମ୍ରାଜ୍ୟ-ବାଦକୁ ମୁକାବିଲା କରିପାରିଥିଲା ବେଳେ ଏବେ କାହିଁକି କରିପାରିବ ନାହିଁ ? ସେମାନେ ଜଗତୀକରଣ ପ୍ରକ୍ରିୟାକୁ ମଧ୍ୟ ମୁକାବିଲା କରିପାରିବେ । ଷୋଡ଼ଶ ଶତାବ୍ଦୀରେ ପ୍ରତାପରୁଦ୍ର ଦେବଙ୍କ ପତନ ପରେ ପଠାଣ, ମୋଗଲ, ମରହଟ୍ଟା, ଇଂରେଜ ସମସ୍ତଙ୍କର ଆକ୍ରମଣ ପରେ ମଧ୍ୟ ଓଡ଼ିଆ ଭାଷା ମୁଣ୍ଡ ଟେକି ବଞ୍ଚିପାରିଥିବାରୁ ଏବେ ତାର ପତନର ବାସ୍ତବ ଆଶଂକା ନାହିଁ ।

ଯେତେବେଳେ ଗୋଟିଏ ଭାଷାରେ କଥା କହୁଥିବା ଲୋକଙ୍କ ସଂଖ୍ୟା କମିଯାଏ , ସେତେବେଳେ ଭାଷା ରୋଗଗ୍ରସ୍ତ ହେଲା ବୋଲି ମନେହୁଏ । ଯେତେବେଳେ ଗୋଟିଏ ଭାଷାରେ କଥା କହୁଥିବା ଶେଷ ବ୍ୟକ୍ତିଟିର ମୃତ୍ୟୁହୁଏ ସେତେବେଳେ ସେ ଭାଷା ଲୋପ ପାଇଗଲା ବୋଲି କୁହାଯାଇପାରେ, କିନ୍ତୁ ଗିନିଜ ବୁକ୍ ଅଫ ରେକର୍ଡସ୍ ଅନୁସାରେ ଏବେ ବିଶ୍ୱରେ ୬୦୦୦ କଥିତ ଭାଷା ପ୍ରଚଳିତ । ସେମାନଙ୍କ ମଧ୍ୟରୁ ଭାରତରେ କଥିତ ଭାଷା ହେଲା ୭୬୫, ଅର୍ଥାତ୍ ବିଶ୍ୱଭାଷାମାନଙ୍କର ମୋଟାମୋଟି ଏକ ଷଷ୍ଠାଂଶ, ଭାରତର ଜନ ସଂଖ୍ୟା ମଧ୍ୟ ବିଶ୍ୱ ଜନ ସଂଖ୍ୟାର ଏକ ଷଷ୍ଠାଂଶ ।

ଦକ୍ଷିଣ ଏସିଆର ସଭ୍ୟତାରେ ଗୋଟିଏ ବହୁଜାତୀୟତା ରହିଛି , ଯାହା ଉଦ୍‌ଭବ ହେବା ପାଇଁ ୩୦୦୦ ବର୍ଷ ଲାଗିଛି । ଭାରତବର୍ଷରେ ସାରା ବିଶ୍ୱର ମୋଟ ୨୩ଟି ଲିପିରୁ ୧୨ ଟି ରହିଛି । ଏଠାରେ ଏକ ସୁଦୃଢ଼ ଭାଷା ଭିତ୍ତିକ ରାଜ୍ୟ ପରମ୍ପରା ମଧ୍ୟ ରହିଛି । ଦେଶରେ ପ୍ରଚଳିତ ଭାଷାମାନଙ୍କର ଏକ ଦୀର୍ଘ କାଳର ସାହିତ୍ୟିକ ଓ କଥିତ ସୃଜନଶୀଳତାର ପରମ୍ପରା ରହିଛି । ଭାରତୀୟ ଭାଷା ଗୁଡ଼ିକ ନମନଶୀଳ, ସେମାନେ ଅବରୁଦ୍ଧ ନୁହନ୍ତି, ଭିନ୍ନ ଭିନ୍ନ ଭାଷା ମାନଙ୍କ ମଧ୍ୟରେ ଏଠାରେ ଶବ୍ଦର ଆଦାନ ପ୍ରଦାନ ସଦାସର୍ବଦା ଚାଲୁରହିଛି । ଏହା ହେଉଛି ସେମାନଙ୍କର ବଞ୍ଚିରହିବାର ଗୁପ୍ତ କଥା ।

ପ୍ରାକ୍ତନ ସୋଭିଏଟ ୟୁନିୟନ ଛୋଟଛୋଟ ଭାଷାଭିତ୍ତିକ ରାଜ୍ୟମାନଙ୍କୁ ଜବରଦସ୍ତ ଏକ କରିନେଇଥିଲା ଓ ଗୋଟିଏ ଭାଷାକୁ ବାସ୍ତବ ଉପରେ ଲଦି ଦେବାର ପ୍ରଚେଷ୍ଟା କରିଥିଲା । ୭୦ ବର୍ଷ ଧରି ଏହି ପ୍ରକ୍ରିୟା ଲାଗି ରହିବା ପରେ ଯେତେବେଳେ ସୋଭିଏତ ୟୁନିୟନ ଦୁର୍ବଳ ହୋଇପଡ଼ିଲା, ସେତେବେଳେ ଭିନ୍ନ ଭିନ୍ନ ଅଞ୍ଚଳ ଏହି ଭାଷା ଭିତ୍ତିରେ ହିଁ ସ୍ୱତନ୍ତ୍ର ହୋଇଗଲେ । କେବେହେଲେ ବିଭିନ୍ନ ମାତୃଭାଷାକୁ ଦମନ କରି କେହି ସଂଖ୍ୟା ଗରିଷ୍ଠତା ହାସଲ କରିପାରେନା ।

ସେହି କ୍ରମରେ ଆମେରିକାନ୍ ଇଂଲିଶକୁ ଲକ୍ଷ୍ୟ କଲେ ଜଣାଯିବ ଯେ, ଏହା ବ୍ରିଟିଶ ଇଂଲିଶ ଆପେକ୍ଷା ଅନେକ ବାଟରେ ସ୍ୱତନ୍ତ୍ର, ସାରା ୟୁରୋପ ଓ ଅନ୍ୟାନ୍ୟ ଦେଶମାନଙ୍କରୁ ଆମେରିକା ଯାଇରୁଣ୍ଡ ହୋଇଥିବା ଦେଶାନ୍ତରୀମାନଙ୍କର କେତେକ ବିଶେଷ ଶବ୍ଦ ଓ ପ୍ରକାଶଭଂଗୀକୁ ଉତ୍ତର ଆମେରିକା ଗ୍ରହଣ କରିନେବାରୁ ଏହା ଗୋଟିଏ ଦେଶ ହୋଇ ତିଷ୍ଠି ରହିଲା । ଏହା ମଧ୍ୟରେ ଏକ ବହୁଜାତୀୟ ସୁବାସ ରହିଲା, ବ୍ରିଟିଶ୍ ଇଂରାଜୀ ଶବ୍ଦ ଓ ଆମେରିକାନ୍ ଇଂରାଜୀ ବନାନ ଓ ଉଚ୍ଚାରଣ ମଧ୍ୟରେ ମଧ୍ୟ ପ୍ରଭେଦ ରହିଲା ।

କେବଳ ଆମେରିକାନ୍ ଇଂଲିଶ ନୁହେଁ , ବ୍ରିଟିଶ ଇଂଲିଶ ମଧ୍ୟ ଏବେ ତାର କଳେବର ପରିବର୍ତ୍ତନ କରିବାରେ ଲାଗିଛି । ଭାରତୀୟ ମୂଳର ଲେଖକ ସାଲମାନ ରୁସ୍‌ଦି ମୁଖ୍ୟତଃ ଭାରତୀୟ ଶୈଳୀ ଓ ପରମ୍ପରାରେ ଇଂରାଜୀରେ ଲେଖୁଛନ୍ତି, ଭାରତର ଅସଂଖ୍ୟ ଶବ୍ଦକୁ ମଧ୍ୟ ସେ ତାଙ୍କର ଇଂରାଜୀ ଉପନ୍ୟାସ ମାନଙ୍କରେ ପ୍ରୟୋଗ କଲେଣି ଯାହା ବ୍ରିଟେନରେ ଜନତାଙ୍କ ନିକଟରେ ଗୃହୀତ ହୋଇସାରିଛି । , ରୁସ୍‌ଦିଙ୍କର ଏହି ନୂତନ ଗଦ୍ୟଶୈଳୀକୁ ବ୍ରିଟେନରେ ସୃଜନାତ୍ମକ ଇଂରାଜୀ ଗଦ୍ୟର ତୀକ୍ଷ୍ଣଧାର ବୋଲି ବର୍ଣ୍ଣନା କରାଯାଇଛି ।

ଆଗାମୀ ୫ ବର୍ଷ ମଧ୍ୟରେ ଭାରତରର ମୁମ୍ବାଇଠାରୁ ଚୀନର ସାଂହାଇ ପର୍ଯ୍ୟନ୍ତ ଇଂରାଜୀ ଭାଷା କହୁଥିବା ଲୋକଙ୍କ ସଂଖ୍ୟା ଯେତିକ ହେବ, ତାହା ଆମରିକାର ଇଂରାଜୀଭାଷୀଙ୍କ ସଂଖ୍ୟାଠାରୁ ଅଧିକ ହେବ, କିନ୍ତୁ ଏହି ଇଂରାଜୀ, ଏସୀୟ ଭାଷାମାନଙ୍କ ଦ୍ୱାରା ବ୍ୟାପକ ଭାବେ ପ୍ରଭାବିତ ହେବ, ଏସିଆ ଇଂରାଜୀ ଭାଷାକୁ ବଦଳାଇବ, ଅନ୍ୟ ୟୁରୋପୀୟ ଭାଷାମାନଙ୍କୁ ନୁହେଁ । ସବୁବେଳେ ପ୍ରଥମ ଭାଷା ଦ୍ୱିତୀୟ ଭାଷା ପାଇଁ ଭିତ୍ତିଭୂମି ପକାଇଥାଏ , ଦ୍ୱିତୀୟ ଭାଷାକୁ ନିଜର ସଂବୃଦ୍ଧି ପାଇଁ ମଧ୍ୟ ବ୍ୟବହାର କରିଥାଏ ।

ସେଥିପାଇଁ ଆଜି ଓଡ଼ିଆ ବା ଅନ୍ୟ ଭାରତୀୟ ଭାଷାମାନେ ଯଦି ଇଂରାଜୀ ଦ୍ୱାରା କିଛିଟା ପ୍ରଭାବିତ ହେଉଥାନ୍ତି, ତେବେ ତାହା ଅତି ସ୍ୱାଭାବିକ କଥା । ଇଂରାଜୀ ମଧ୍ୟ ଆମ ଭାଷାମାନଙ୍କ ଦ୍ୱାରା ପ୍ରଭାବିତ ହେଉଛି । ଓଡ଼ିଆ, ଇଂରାଜୀ ଦ୍ୱାରା ପ୍ରଭାବିତ ହେବାଦ୍ୱାରା ଅବଲୁପ୍ତ ହେଉନାହିଁ , ଚମଡ଼ା ବଦଳାଉଛି ମାତ୍ର । ଅତୀତରେ ଓଡ଼ିଆ, ଉର୍ଦ୍ଦୁ, ପାର୍ଶୀ, ଆଦି ଭାଷାମାନଙ୍କ ଦ୍ୱାରା ପ୍ରଭାବିତ ହୋଇସାରିଛି । ବଇଆର; ମତଲବ, ବଜାର,

ରଫାନାମା, ଆଦି ଶବ୍ଦମାନଙ୍କୁ ଉଧାର କରିସାରିଥିବା ଓଡ଼ିଆ ଭାଷା ଏବେ କିଛି ଇଂରାଜୀ ଶବ୍ଦ ଗ୍ରହଣ କରି ଲୁପ୍ତ ହେବାକୁ ଯାଉନାହିଁ । ଏବେ ଓଡ଼ିଆ ଖବର କାଗଜ ମାନଙ୍କୁ ଦେଖିଲେ ହିନ୍ଦୀ , ଟି.ଭି. ଚେନାଲମାନଙ୍କ କେତେକ ଶବ୍ଦକୁ ସେମାନେ ସିଧାସଳଖ ଉଠାଇ ନେଇ ପ୍ରୟୋଗ କରୁଛନ୍ତି ତାହା ଜଣା ପଡ଼ିଯିବ ।

ଭାଷା ଲୁପ୍ତ ହେବାର ଭୟ କେବଳ ଆମ ମନର ଭୟକୁ ପ୍ରତିଫଳିତ କରୁଛି, ଏହା ଆମର ଦାୟିତ୍ୱହୀନତା ଓ ହୀନମନ୍ୟତା କାରଣରୁ ଘଟୁଛି । ଭାଷା ହେଉଛି ଆତ୍ମପରିଚୟ ; ଆତ୍ମ ପରିଚୟ ବିନା ଆମର ବଞ୍ଚିବା ଆସୁଛି କୁଆଡ଼ୁ?

ବିଶ୍ୱର ମୋଟ ୨୦୨ ଟି ଦେଶ ମଧ୍ୟରୁ ୧୭୨ ଟି ଦେଶର ଲୋକସଂଖ୍ୟା ଓଡ଼ିଶା ଅପେକ୍ଷା କମ୍ । ୩ କୋଟି ୭୦ ଲକ୍ଷ ଲୋକସଂଖ୍ୟାର ଦେଶ ପୃଥିବୀର ମାତ୍ର ୩୦ ଟି ଅଛି ; ତେଣୁ ନିଜର ଭାଷା ଉପରେ ଆତ୍ମ ବିଶ୍ୱାସ ରଖି ତାର ପ୍ରଚଳନ କଲେ, କୌଣସି ବିଦେଶୀ ପ୍ରଭାବ ବା ଭାଷା ଆମର କ୍ଷତି କରିପାରିବ ନାହିଁ ।

ଭାଷାର କ୍ଷତି ହେଲେ ସେଥିପାଇଁ ଆମେ ଦାୟୀ, ଜଗତୀକରଣ ପ୍ରକ୍ରିୟା ନୁହେଁ ।

# ସାଂସଦ, ବାଲେଶ୍ୱର

*ଜୟ ଗୋ ଉତ୍କଳ— ଲକ୍ଷ୍ମୀ ଏକମାତ୍ର*
*ସୁନ୍ଦରୀ ତୁ ବସୁଧାରେ*
*ପ୍ରାକୃତିକ ଶୋଭା- ରାଶି ରହିଛନ୍ତି*
*ତୋ ଅଙ୍ଗରେ ଏକାଧାରେ*
*ତୋହୋ ବାସ ପାଇଁ ଅଛି କେତେ ତୁଙ୍ଗ*
*ସୁନ୍ଦର ଶୈଳ ଶିବିର*
*ଦୃଶ୍ୟଚୟ ଯାର ବର୍ଣ୍ଣନା କରଣେ*
*ଶକତି ନାହିଁ କବିର*

**'ଉତ୍କଳ ଲକ୍ଷ୍ମୀ'**

**– ଗଙ୍ଗାଧର ମେହେର**

# ଓଡ଼ିଆ ଭାଷା ଓ ସାହିତ୍ୟର ସଂକଟ : ଚିରକାଳ

ଡକ୍ଟର ହେମନ୍ତ କୁମାର ଦାସ

ଓଡ଼ିଆ ଭାଷା ଓ ସାହିତ୍ୟ ପାଇଁ ସଂକଟ ସୃଷ୍ଟି ହୋଇଥିବା ପ୍ରସଙ୍ଗ ଶୁଣା ଯାଉଛି । ଭବିଷ୍ୟତରେ ଏହି ସଂକଟ ଆହୁରି ଅଧିକ ଘନୀଭୂତ ହୋଇ ଭାଷା ତଥା ସାହିତ୍ୟର ସ୍ଥିତି ବିପନ୍ନ କରିବ ବୋଲି ମଧ୍ୟ ଆଶଙ୍କା କରାଯାଉଛି । ଏହି ଚିନ୍ତାରେ କିଛି ଅତିରଞ୍ଜନ ରହିଥିଲେ ମଧ୍ୟ ଆଶଙ୍କାକୁ ସମ୍ପୂର୍ଣ୍ଣ ଅମୂଳକ କହି ହେଉନାହିଁ । ଭାଷା ପ୍ରତି ଯେଉଁ ମମତା ଏକଦା ଲୋକ ଚିତ୍ତରେ ରହିଥିଲା, ଯାହା ଏଦେଶର କବିଲେଖକ ଭାବୁକମାନେ ଲୋକମାନଙ୍କ ମଧ୍ୟରେ ସଂଚାରିତ କରି ଦେଉଥିଲେ, ବର୍ତ୍ତମାନ ସେ ଭଳି ପରିସ୍ଥିତି ଆଉ ନାହିଁ । ଉଚ୍ଚ ହେବାର ସ୍ୱପ୍ନଦେଖିବା ପୂର୍ବରୁ ନିଜ ମାତୃଭାଷାକୁ ପ୍ରଥମେ ଉନ୍ନତ କରିବା କିମ୍ବା ମାତୃଭାଷା ପ୍ରତି ମମତା ହୀନ ବ୍ୟକ୍ତିକୁ ଅଜ୍ଞାନୀ ବୋଲି ସାବ୍ୟସ୍ତ କରିବା ଭଳି ଆବେଗକୁ ସମ୍ମାନ ଦେବା ଭଳି ମାନସିକତା ସୁଦ୍ଧା ଅନେକ ଦିନରୁ ବିଦାୟ ନେଲାଣି । ଏ ସବୁ ଭିତରେ ଏକମାତ୍ର ସାନ୍ତ୍ୱନା ହେଉଛି ଯେ, ଭାଷା ପାଇଁ ଏ ଯେଉଁ ସଂକଟ ତାହା କେବଳ ଓଡ଼ିଆ ଭାଷା ପାଇଁ ନୁହେଁ, ଭାରତର ଅନ୍ୟାନ୍ୟ ପ୍ରାଦେଶିକ ଭାଷା କ୍ଷେତ୍ରରେ ମଧ୍ୟ ପ୍ରାୟ ଊଣା ଅଧିକେ ସେହିଭଳି ସ୍ଥିତି ସୃଷ୍ଟି ହୋଇଛି । ଏହାରି ଭିତରେ ଶୁଣାଯାଉଛି, ବିଚ୍ଛିନ୍ନତାର ସ୍ୱର । ତିରିଶ ଜିଲ୍ଲା ବିଶିଷ୍ଟ ଏହି ପ୍ରଦେଶରେ ଓଡ଼ିଆ ଆଉ ସର୍ବତ୍ର ମାତୃଭାଷା ହୋଇ ରହୁନାହିଁ । କୋଶଳୀ ଭାଷା ମାନକ ଓଡ଼ିଆ ଭାଷାଠାରୁ ସମସ୍ତ ସମ୍ପର୍କ ଛିନ୍ନ କରିବା ନିମନ୍ତେ ସମ୍ପୂର୍ଣ୍ଣ ରୂପେ ପ୍ରସ୍ତୁତ । ଏ ପ୍ରସ୍ତୁତି ଏତେ ବଳିଷ୍ଠ ଯେ, ସେମାନେ ଉଡ଼ିଆ ଲିପିକୁ ମଧ୍ୟ କୋଶଳୀ ଭାଷା ପାଇଁ ଗ୍ରହଣ କରିନେବା ନିମନ୍ତେ ପ୍ରସ୍ତୁତ ନୁହନ୍ତି । ହୁଏତ ସେମାନେ ଦେବନାଗରୀ ଲିପିକୁ ଗ୍ରହଣ କରିନେବେ କିମ୍ବା ରୋମାନ୍ ଲିପିକୁ ଆପଣାର କରିବେ, ମାତ୍ର ଓଡ଼ିଆ ଲିପି କଦାପି ନୁହେଁ । ଖଡ଼ିଆଳରୁ ଏହି ବିଚ୍ଛିନ୍ନତାର ସ୍ୱର ଶୁଣା ଯାଉଛି, କିଂଚିତ୍ ଭିନ୍ନ ପ୍ରକାରେ । ସେମାନେ ହିନ୍ଦୀ-ଭାଷା ପ୍ରତି ଅଧିକ ପକ୍ଷପାତୀ । ଆଦିବାସୀମାନଙ୍କ ମଧ୍ୟରେ ସାନ୍ତାଳୀ ଭାଇମାନେ ଇତିମଧ୍ୟରେ ସେମାନଙ୍କର ନିଜସ୍ୱ ଭାଷାକୁ ସରକାରୀ ସ୍ୱୀକୃତି ଦିଆଇ ପାରିଛନ୍ତି ଏବଂ କୋଶଳୀ ଭାଷାର ଯାହା ନାହିଁ, ଅର୍ଥାତ୍ ଲିପି-ତାହା ସେମାନଙ୍କର ଅଛି । ଉଭୟ କ୍ଷେତ୍ରରେ ସେଇ ସବୁ ଭାଷାରେ ସାହିତ୍ୟ ସୃଷ୍ଟି ଚାଲିଛି ଯୁଦ୍ଧକାଳୀନ ଭିତ୍ତିରେ ।

ଏହିଭଳି ସ୍ଥିତିରେ ଆମେ ଭାଷା ଓ ସାହିତ୍ୟର ଉନ୍ନତି କଥା ଚିନ୍ତା କରିବା । ମେଦିନୀପୁର, ଟାଟା, ଚାଇବସା, ଧଳଭୂମି, ଷଢ଼େଇ କଳା, ଖରସୁଆଁ, ରାଞ୍ଚି ରାୟପୁର, ଇଚ୍ଛାପୁର, ଶ୍ରୀକାକୁଲମ୍, ସୋମପେଟା - ପ୍ରଭୃତି ବିଚ୍ଛିନ୍ନାଞ୍ଚଳରେ ଓଡ଼ିଆ ଭାଷା ଶିକ୍ଷାର ବିସ୍ତାର ନିମନ୍ତେ ପଦକ୍ଷେପ ଗ୍ରହଣ କରିବା । ସାମ୍ପ୍ରତିକ ସ୍ଥିତି ହେଉଛି ଏହିଭଳି । ଓଡ଼ିଆ ଭାଷାଭାଷୀ ଅଂଚଳମାନ ବର୍ତ୍ତମାନ ପଶ୍ଚିମବଙ୍ଗ, ଝାଡ଼ଖଣ୍ଡ, ବିହାର, ଆନ୍ଧ୍ର,ମଧ୍ୟପ୍ରଦେଶ, ଛତିଶଗଡ଼ ସହିତ ମିଶି ରହିଛି । ସେଠାରେ ଓଡ଼ିଆଭାଷାର ଶିକ୍ଷା ବସ୍ତୁତଃ ଅବହେଳିତ ଯଦିଓ ସରକାରୀ ସ୍ତରରେ ଏହାର ଉନ୍ନତି ନିମନ୍ତେ ଶ୍ରୁତିମଧୁର, ପ୍ରତିଶ୍ରୁତିର ଅଭାବ ନାହିଁ । ଝଡ଼ଖଣ୍ଡ ସରକାର ଓଡ଼ିଆ ଭାଷାକୁ ରାଜ୍ୟର ଦ୍ୱିତୀୟ ପ୍ରଧାନ ଭାଷାର ମର୍ଯ୍ୟାଦା ହେବା ସହିତ ଶୀଘ୍ର ରାଞ୍ଚି ବିଶ୍ୱବିଦ୍ୟାଳୟ ସ୍ତରରେ ଏକ ସାହିତ୍ୟ ଏକାଡେମୀ ସ୍ଥାପନ୍ କରିବେ ବୋଲି ଘୋଷଣା କରିଥିବାର ଖବର ପଢ଼ିବାକୁ ମିଳିଲା । ଏହି ଭଳି କଥା ଅନେକ ଶୁଣିବାକୁ ବା ପଢ଼ିବାକୁ ମିଳିଛି ଏବଂ ଭବିଷ୍ୟତ୍‌ରେ ମଧ୍ୟ ମିଳିବ । ଲଜ୍ଜାହୀନ ଅନନ୍ତ ପ୍ରତିଶ୍ରୁତିର ନାମ ରାଜନୀତି ।

ଅଦୂର ଭବିଷ୍ୟତ୍‌ରେ ପଶ୍ଚିମ ଓଡ଼ିଶା ଓଡ଼ିଆ ଭାଷାର ଛାୟାରୁ ନିଜକୁ ଅପସୃତ କରିବ । ନେତାମାନଙ୍କ ଭାଷାରେ ଉପକୂଳବର୍ତ୍ତୀ ଅଞ୍ଚଳର ବଡ଼ଭାଇ ପଣିଆର ଦାଉରୁ ନିଜକୁ ମୁକ୍ତ କରିବା ଏହାଦ୍ୱାରା ସେ ଅଞ୍ଚଳର ଭାଷାର ପ୍ରକୃତ କେତେ ଉନ୍ନତି ହେବ, ତାହା କହିହେଉ ନାହିଁ । ତେବେ ସ୍ୱତନ୍ତ୍ର ଭାଷାର ପତାକା-ବାହୀ କିଛି ଲୋକଙ୍କର ନିଶ୍ଚୟ ବୈଷୟିକ ଶ୍ରୀବୃଦ୍ଧି ଘଟିବ । ବିଚ୍ଛିନ୍ନତାବାଦୀ ରାଜନୀତିର ଏହାହିଁ ପ୍ରତ୍ୟକ୍ଷ ଫଳ । ଏହାଦ୍ୱାରା ଆମେ ବିଶାଳ ଏଇ ଉପମହାଦେଶକୁ ଖଣ୍ଡ ବିଖଣ୍ଡିତ କରିଛୁ । କାଶ୍ମୀର ଭଳି ଏକ ଆଗ୍ନେୟଗିରି ଉପରେ ଦେଶକୁ ଗତ ୫୮ ବର୍ଷ ଧରି ଥୋଇଦେଇ ଇତିହାସ ପଷ୍ଠାରେ ନିଜ ନାମକୁ ଅମରାକ୍ଷରରେ ଲିପିବଦ୍ଧ କରାଇଛୁ । ଏତେ ଦୂରକୁ ବା ଯିବା କ'ଣ ପ୍ରୟୋଜନ ? କଥା ମାତ୍ର ଏଇ ସେଦିନର । ମେଦିନୀପୁରର ଜଣେ ପ୍ରଭାବଶାଳୀ ଓଡ଼ିଆ ନେତା ଓଡ଼ିଶା ପ୍ରଦେଶ କଂଗ୍ରେସ କମିଟିର ଚେୟାରମାନ୍ ହେବାକୁ ଚାହିଁଲେ । ବଦଳରେ ମେଦିନୀପୁର ଓଡ଼ିଶାରେ ମିଶିବାର ପ୍ରତିଶ୍ରୁତି ମଧ୍ୟ ତାଙ୍କଠାରୁ ମିଳିଲା । ମହାତ୍ମା ଗାନ୍ଧିଙ୍କର ପ୍ରସ୍ତାବ କାର୍ଯ୍ୟକାରୀ ହୋଇଥିଲେ ଭାରତ ଅଖଣ୍ଡ ରହିପାରିଥାଆନ୍ତା, ମାତ୍ର ଭାରତବର୍ଷର କେତେକ ତୁଙ୍ଗ ନେତାଙ୍କର ରାଜନୀତିକ ଉପଭାଷା ଚିରକାଳ ନିମନ୍ତେ ଦେଶବିଭାଜନ ସହିତ କାଶ୍ମୀର ଭଳି ଏକ ସ୍ଥାୟୀ ସମସ୍ୟା କାଳକାଳକୁ ଉତ୍ତର ପୀଢ଼ି କାନ୍ଧରେ ଲଦା ହୋଇ ରହିଗଲା । ସେହିଭଳି ଓଡ଼ିଶାର ତତ୍କାଳୀନ ନେତୃତ୍ୱ ମେନିନୀପୁରିଆ ନେତାଙ୍କ ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରି ଦେଲେ । ଫଳରେ ମେଦିନୀପୁର ଚିରକାଳ ନିମନ୍ତେ ଓଡ଼ିଶାରୁ ବିଚ୍ଛିନ୍ନ ହୋଇ ରହିଗଲା । ମେଦିନୀପୁରର ନେତା କହିଲେ, ଓଡ଼ିଶାରେ ମିଶିଲେ, ସେମାନେ ହାଓ୍ୱଡ଼ା ବ୍ରିଜ୍ ଏବଂ ଭିକ୍ଟୋରିଆ ସ୍ମାରକୀ କେଉଁଠୁ ପାଇବେ ? ସାର କଥା ହେଉଛି, ଯୁଗଯୁଗ ଧରି ବ୍ୟକ୍ତିସ୍ୱାର୍ଥର ଉଚ୍ଚାକାଂକ୍ଷା ନିକଟରେ ସାଧାରଣ ସ୍ୱାର୍ଥ ବଳିପଡୁଥାଏ ଏବଂ ସେଇକଥା ପରିବର୍ତ୍ତିତ ରୂପରେ ଇତିହାସରେ ଲେଖା ଯାଉଥାଏ । ଜନତା – ସବୁବେଳେ ଉପେକ୍ଷିତ ଅବସ୍ଥାରେ ରହିଥାଆନ୍ତି । ସେଠାରେ ପୂର୍ବ-ପଶ୍ଚିମ-ଉତ୍ତର-ଦକ୍ଷିଣ ମଧ୍ୟରେ କୌଣସି ପାର୍ଥକ୍ୟ ନଥାଏ । କ୍ଷମତା ଲିପ୍‌ସା ବ୍ୟକ୍ତିର ଭୂଷଣ । ଯେଉଁ କ୍ଷେତ୍ରରେ ଥିଲେ ମଧ୍ୟ ତାହା ସମାନ ଭାବରେ କରନ୍ତି ବିଶ୍ୱଜୟ ଅଥବା ତାହାର ଧ୍ୱଂସ ସାଧନ କରିବାକୁ । ମରିଷର ଶବ ଉପରେ ସଗର୍ବ ପଦକ୍ଷେପ କରି ହିଟ୍‌ଲର୍‌ମାନେ ଯୁଗେ ଯୁଗେ ଆଗକୁ ବଢ଼ିବାର ପ୍ରୟାସ କରୁଥାଆନ୍ତି । ଇତିହାସ ଏହାର ସାକ୍ଷୀ, ଏ ପ୍ରସଙ୍ଗ ଏଇଠି ଥାଉ ।

ଓଡ଼ିଆ ଭାଷାରେ ସାମ୍ପ୍ରତିକ ସଂକଟ କିନ୍ତୁ କିଛି ନୂଆ କଥା ନୁହେଁ । ଇଂରେଜମାନେ ଏ ରାଜ୍ୟ ଅଧିକାର କରିନେଲା ଦିନୁ ଏହା ଭିନ୍ନଭିନ୍ନ ପ୍ରାନ୍ତରେ ବିଭିନ୍ନ ସମୟରେ ଆତ୍ମପ୍ରକାଶ କରିଛି । ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେବା (ଏପ୍ରିଲ ପହିଲା, ୧୯୩୬) ପୂର୍ବରୁ ସମସ୍ୟା ଥିଲା, ମାତ୍ର ସେ ସମ୍ପର୍କରେ କୌଣସି ଚିନ୍ତା ନଥିଲା । ୧୮୯୫ ମସିହାରେ ସରକାରୀ ନିର୍ଦ୍ଦେଶରେ ସମ୍ବଲପୁରରୁ ଓଡ଼ିଆ ଭାଷାକୁ ବିଦାୟ କରି ଦିଆଗଲା । ଏଥିପାଇଁ ପ୍ରତିବାଦ ହେଲା ସେଇ ସମ୍ବଲପୁରରୁ । ହରେକୃଷ୍ଣ ମହତାବଙ୍କ ଭଳି ଐତିହାସିକ ସ୍ୱୀକାର କରିଛନ୍ତି ଯେ, ସମ୍ବଲପୁରେ ଓଡ଼ିଆ ଭାଷାର ପୁନରୁଦ୍ଧାର ନିମନ୍ତେ ସମ୍ବଲପୁର ନିବାସୀମାନେ ନିଜେ ଉଦ୍ୟମ କରିଥିଲେ । ଏଭଳିକି ଏଥିନିମନ୍ତେ ସେମାନଙ୍କ ମଧ୍ୟରୁ ଚାରିବନ୍ଧୁ ସୁଦୂର ସିମଳା ପର୍ଯ୍ୟନ୍ତ ଧାଇଁ ଯାଇ ବଡ଼ଲାଟଙ୍କୁ ଭେଟି ପ୍ରଭାବିତ କରିବାକୁ ଚେଷ୍ଟା କରିଥିଲେ । (ଯଦିଓ ସେମାନେ ପ୍ରମୋଦ ଭ୍ରମଣରେ ସିମଳା ଯାଇଥିଲେ ବୋଲି ପ୍ରକାଶ କରି ଜଣେ ଗବେଷକ ଏ ମଧ୍ୟରେ ଏକ ନୂତନ ବିତର୍କର ସୂତ୍ରପାତ ଘଟାଇଛନ୍ତି) ଯାହାହେଉ, ଦୃଢ଼ବାଦୀ ଫଳରେ ସେଠାରେ ୧୯୦୩ ମସିହାରୁ ଓଡ଼ିଆ ଭାଷାର ପୁନଃପ୍ରଚଳନର ଆଦେଶ ପ୍ରଚାରିତ ହୋଇଥିଲା । କଟକ-ପୁରୀ-ବାଲେଶ୍ୱରରୁ ଓଡ଼ିଆ ଭାଷାର ବିଲୋପ କରିବାର ଏକ ଯୋଜନାବଦ୍ଧ ଉଦ୍ୟମ ହୋଇ ଶେଷରେ ଓଡ଼ିଆ ଭାଷା ଲୋପ ପାଉ ପାଉ ବଂଚିରହି ଯାଇଥିଲା । ଓଡ଼ିଆ ଭାଷା ବିରୋଧରେ କାନ୍ତିଚନ୍ଦ୍ରଙ୍କର ପୁସ୍ତକ ରଚନା ସତ୍ତ୍ୱେ

ବୀମସ୍ ଓ ରେଭେନ୍ସା ସାହେବଙ୍କର ଓଡ଼ିଆ ଭାଷାକୁ ଦୃଢ଼ ସମର୍ଥନ, ଗୌରୀଶଙ୍କର, ଫକୀରମୋହନ, ରଙ୍ଗଲାଲ ବନ୍ଦ୍ୟୋପାଧ୍ୟାୟ ପ୍ରମୁଖଙ୍କର ଓଡ଼ିଆଭାଷାର ବୈଶିଷ୍ଟ୍ୟ ସମ୍ପର୍କରେ ବଳିଷ୍ଠ ପ୍ରମାଣମାନ ଉପସ୍ଥାପନ ପ୍ରଭୃତି ଘଟଣାମାନ ଭାଷାଇତିହାସର ପୃଷ୍ଠାରେ ଉଜ୍ଜ୍ୱଳ ଅକ୍ଷରରେ ଲିପିବଦ୍ଧ ହୋଇରହିଛି । ୧୯୦୨ ମସିହାରେ ଖଲ୍ଲିକୋଟର ତତ୍କାଳୀନ ରାଜା ହରିହର ସିଂହ ମର୍ଦ୍ଦରାଜ ରମ୍ଭା ପ୍ରାସାଦରୁ ସବୁ ଅଞ୍ଚଳର ଓଡ଼ିଆମାନଙ୍କୁ ନେଇ ଏକ ସଂଗଠନ ଗଢ଼ିବା ନିମନ୍ତେ ଚିନ୍ତା କରିଥିଲେ । ଏହାର ସର୍ବଶେଷ ପରିଣତି ହେଉଛି ଉତ୍କଳ ସମ୍ମିଳନୀ ଏବଂ ଉତ୍କଳ ସାହିତ୍ୟ ସମାଜ । ମଧୁସୂଦନ ଦାସ ଏହାରି ମାଧ୍ୟମରେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନର ଦାବି ସେକାଳର କଂଗ୍ରେସ ନେତା ମାନଙ୍କ ଠାରେ କରିଥିଲେ ଏବଂ ଇଂରେଜ ସରକାରଙ୍କ ଉପରେ ମଧ୍ୟ ବିଭିନ୍ନ ଦିଗରୁ ଏଥି ନିମନ୍ତେ ଚାପ ପକାଇଥିଲେ । କଂଗ୍ରେସ ମାଧ୍ୟମରେ ସ୍ୱତନ୍ତ୍ର ପ୍ରଦେଶ ଗଠନର ଚିନ୍ତା ଫଳପ୍ରସୂ ହେବାର ସମ୍ଭାବନା ନ ଦେଖି ସେ ସେହି ସଂଗଠନ ଛାଡି ବାହାରକୁ ବାହାରି ଆସିଥିଲେ । ସମଗ୍ର ଭାରତରେ କଂଗ୍ରେସ ନେତୃତ୍ୱରେ ସାଇମନ୍‌କମିଶନ୍‌ଙ୍କୁ ବର୍ଜନ କରା ଯାଇଥିଲେ ମଧ୍ୟ ମଧୁସୂଦନଙ୍କ ପରାମର୍ଶରେ କେବଳ ସ୍ୱତନ୍ତ୍ର ପ୍ରଦେଶ ଗଠନ ଦାବି ଜଣାଇବା ନିମନ୍ତେ କମିଶନ୍‌ଙ୍କୁ ସ୍ୱାଗତ କରାଯାଇ ଏଥିନିମନ୍ତେ ସ୍ମାରକ ପତ୍ର ଦିଆଯାଇଥିଲା । ୧୯୩୬ ରେ ସ୍ୱତନ୍ତ୍ର ଉତ୍କଳ ହେଉଛି, ଏହି ସବୁ ଉଦ୍ୟମର ଫଳ । ପାରଳାଗଜପତି କୃଷ୍ଣଚନ୍ଦ୍ରଙ୍କର ଉଦ୍ୟମ ପ୍ରସଙ୍ଗ ମଧ୍ୟ ଏସମ୍ପର୍କରେ ସ୍ମରଣ କରାଯାଇପାରେ । ସ୍ୱବ୍ୟୟରେ ସେ ବିଲାତ ଯାଇ ସେଠାରେ ଏଥିନିମନ୍ତେ ଚାପ ପକାଇଥିଲେ । ମୋଟ ଉପରେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ନିମନ୍ତେ ପୂର୍ବ-ପଶ୍ଚିମ-ଉତ୍ତର- ଦକ୍ଷିଣ ଚାରିଆଡୁ ଉଦ୍ୟମ ହୋଇଥିଲା ଏବଂ ତାସହିତ ଓଡ଼ିଆଭାଷାର ସୁରକ୍ଷା ନିମନ୍ତେ ମଧ୍ୟ ଏହିଭଳି ସାମୂହିକ ପ୍ରଯତ୍ନ କରା ଯାଇଥିଲା । ସେତେବେଳେ ଯଦି ଏହିଭଳି ବିଚ୍ଛିନ୍ନତାର ସ୍ୱର ଶୁଣାଯାଇଥାଆନ୍ତା, ତେବେ ଓଡ଼ିଆ ଭାଷାକୁ ବଂଚାଇ ରଖିବା ସମ୍ଭବ ହୋଇ ନ ଥାନ୍ତା ।

ଆଜି ଏତେଦିନପରେ ଭାଷା କ୍ଷେତ୍ରରେ ସ୍ୱତନ୍ତ୍ରତାର ସ୍ୱର ଶୁଣାଯାଉଛି, ଆବେଗ କୌଣସି କାଳେ ଯୁକ୍ତି - ନିର୍ଭର ହୋଇ ନଥାଏ । ଚତୁର ରାଜନୀତିଜ୍ଞମାନେ ଏହାକୁ ବଡ ଚମତ୍କାର ଭାବରେ ସାଧାରଣ ଜନତା ମଧ୍ୟରେ ସଂଚାରିତ କରି ଦେଇ ପାରନ୍ତି ଏବଂ ଏକ ମହତ୍ତ୍ୱପୂର୍ଣ୍ଣ କର୍ମ ସମ୍ପାଦନର ଗୌରବରେ ସମୁଦ୍‌ଭାସିତ ହୋଇ କିଛି ବ୍ୟକ୍ତିଗତ ଫାଇଦା ହାସଲ କରିବା ସହିତ ଇତିହାସର ପୃଷ୍ଠା ମଣ୍ଡନ କରିବାକୁ ଚାଲି ଯାଆନ୍ତି । ଇତିହାସରୁ ଏହାର ଯଥେଷ୍ଟ ପ୍ରମାଣ ମିଳିବ । ଓଡ଼ିଆ ଭାଷା ପାଇଁ ବର୍ତ୍ତମାନ ଏହା ହେଉଛି ସବୁଠାରୁ ଅଧିକ ଗୁରୁତ୍ୱପୂର୍ଣ୍ଣ ସଂକଟ । ଦୁଃଖର ସହିତ କହିବାକୁ ପଡୁଛି ଯେ, ଭାରତର ଅନ୍ୟାନ୍ୟ ପ୍ରଦେଶ ତୁଳନାରେ ଓଡ଼ିଆ ମାନଙ୍କର ଜାତୀୟତା ଚିରକାଳ ସଂଶୟଜନକ ହୋଇ ଆସିଛି । ଆଧୁନିକ ସାହିତ୍ୟ ସୃଷ୍ଟି ହେବା ଦିନୁ ଏହିଭଳି ପରିସ୍ଥିତି ସୃଷ୍ଟି ହୋଇଛି ଏବଂ ଲେଖକକୁଳ ବାରମ୍ବାର ଏଥିପାଇଁ ଶିକ୍ଷିତ ଗୋଷ୍ଠୀର ଦୃଷ୍ଟି ଆକର୍ଷଣ କରି ଆସିଛନ୍ତି । ତେବେ ଓଡ଼ିଆ ସାହିତ୍ୟ ଏକ ମହାନ୍ ଐତିହ୍ୟର ଧାରକ ହୋଇ ସୁଦ୍ଧା ଏଭଳି ଦୟନୀୟ ଅବସ୍ଥାରେ ନଥାନ୍ତା । ସେ ଯୁଗରେ ରାଧାନାଥ, ଫକୀରମୋହନ, ଗଙ୍ଗାଧର ଏବଂ ଭଳିକି କୁନ୍ତଳାକୁମାରୀ ପ୍ରଭୃତି ମହାନ୍ ଲେଖକମାନେ ହୁଏତ ନିଜଖର୍ଚ୍ଚରୁ ବହି ଛାପାଉଥିଲେ କିମ୍ବା କୌଣସି ରାଜପରିବାରର ଅନୁକମ୍ପାକୁ ଏଥି ନିମନ୍ତେ ଅପେକ୍ଷା କରି ବସୁଥିଲେ । ବର୍ତ୍ତମାନ ରାଜାରାଣୀ ନାହାନ୍ତି । ବ୍ୟବସାୟିକ ସ୍ୱାର୍ଥ ବିନା ପ୍ରକାଶକ ମାନେ ମଧ୍ୟ ପୁସ୍ତକ ପ୍ରକାଶନ ନିମନ୍ତେ ଆଗ୍ରହୀ ନୁହନ୍ତି । ତେଣୁ ବର୍ତ୍ତମାନ ଅଧିକାଂଶ ପୁସ୍ତକ ଛପାଯାଉଛି ବ୍ୟକ୍ତିଗତ ଉଦ୍ୟମରେ । ଏହା ଅତୀତ ଇତିହାସର ପୁନରାବର୍ତ୍ତନମାତ୍ର ଏହାକୁ ନେଇ ଓଡ଼ିଆଭାଷା ସାହିତ୍ୟ ଅତୀତରେ ବଂଚିଥିଲା, ବର୍ତ୍ତମାନ ବଂଚିଛି ଏବଂ ଭବିଷ୍ୟତ୍‌ରେ ମଧ୍ୟରେ ବଂଚିବ, ଏଥିପାଇଁ ବ୍ୟସ୍ତ ହେବାର କୌଣସି କାରଣ ନାହିଁ ।

ବହିପାଇଁ ପାଠକ ନାହାନ୍ତି । ମାତୃଭାଷା ପୋଥି ହାତରେ ଧରିବା ପାଇଁ ସେ ଯୁଗର ଶିକ୍ଷିତ ଓଡ଼ିଆମାନେ ଲଜ୍ଜାବୋଧ କରୁଥିଲେ ବୋଲି ଫକୀରମୋହନ, ଗଙ୍ଗାଧର ପ୍ରଭୃତି ଲେଖକମାନେ ଅନୁଯୋଗ ଜଣାଇ ଥିଲେ ଏବଂ ଏହି ମାର୍ଗରେ ଶିକ୍ଷିତ ବର୍ଗମଧ୍ୟରେ ଏକ ଆବେଗ ସୃଷ୍ଟି କରିବାରେ ସଫଳ ହୋଇଥିଲେ । ଆଧୁନିକ ଓଡ଼ିଆ ସାହିତ୍ୟର ସୃଷ୍ଟିଲଗ୍ନରେ ପ୍ରତ୍ୟେକ ଶିକ୍ଷିତ ଓଡ଼ିଆ ଯେ କିଛି ଲେଖାଲେଖି କରୁଥିଲେ, ସେ ସବୁ ହେଉଛି ଏହାରି ଫଳ । ତେବେ ଭାଷା ସାହିତ୍ୟର ପ୍ରସାର ନିମନ୍ତେ ଶିକ୍ଷିତ ଗୋଷ୍ଠୀର ଅକୁଣ୍ଠ ସହଯୋଗ ମିଳିନଥିଲା । ସେମାନଙ୍କର ମାନସିକତାର ଏକ ସମ୍ପୂର୍ଣ୍ଣ ଚିତ୍ର ଫକୀର ମୋହନଙ୍କ 'ଆତ୍ମଜୀବନ ଚରିତ'ରେ ଦେଖିବାକୁ ମିଳିବ ।

ଓଡ଼ିଆ ସାହିତ୍ୟର ବିଭିନ୍ନ ବିଭାଗ ମାନ ଭାରତର ଅନ୍ୟ ଯେକୌଣସି ପ୍ରାଦେଶିକ ସାହିତ୍ୟ ଠାରୁ ନ୍ୟୁନ ହୋଇ ନଥିଲେ ମଧ୍ୟ କାହିଁକି ସମୃଦ୍ଧ ହୋଇ ପାରୁନାହିଁ, ଏ ପ୍ରଶ୍ନର ଉତ୍ତର ଆମକୁ ପଡୋଶୀ ସାହିତ୍ୟ ଆଡ଼କୁ ଅନାଇଲେ ମିଳିଯିବ । ଭାଷା ଓ ସାହିତ୍ୟକୁ ସେମାନେ ଏକ ସଂସ୍କୃତିବନ୍ତ ଜାତିର ପରିଚୟ ବୋଲି ଗ୍ରହଣ କରିନେଇଛନ୍ତି, ଆମେ ତାହା ପାରିନାହୁଁ । ପାର୍ଥକ୍ୟ ଏଇଠି ରହିଛି । ନିକଟ ଅତୀତରେ ଭାଷାକୁ ବିଶ୍ୱବିଦ୍ୟାଳୟସ୍ତରୀୟ ଶିକ୍ଷାର ମାଧ୍ୟମ ରୂପେ ଗ୍ରହଣ କରିନେବା ପାଇଁ ଏଠାରେ ଯେଉଁ ଅସୁନ୍ଦର ପରିସ୍ଥିତି ସୃଷ୍ଟି ହୋଇଥିଲା, ତାହା ଏବେ ମଧ୍ୟ ଇତିହାସ ହୋଇଯାଇ ନାହିଁ । ଭାଷାପ୍ରତି ଶିକ୍ଷିତ ଗୋଷ୍ଠୀ ମନରେ ଯେଉଁଠି ଏତେ ଘୃଣା, ସେଠାରେ ଏହାର ସର୍ବାଙ୍ଗୀନ ବିକାଶ କିଭଳି ସମ୍ଭବପର ?

ବର୍ତ୍ତମାନ ଓଡ଼ିଆ ସାହିତ୍ୟର ସ୍ଥିତି ପ୍ରତି ଦୃଷ୍ଟି ଦିଆଯାଉ । ପୁସ୍ତକ ପ୍ରକାଶନ ଯଦି ସାହିତ୍ୟର ଉନ୍ନତିର ପରିଚାୟକ ହୁଏ, ତେବେ ବର୍ତ୍ତମାନ ଏହାବେଶ୍ ଉତ୍ସାହଜନକ ଅବସ୍ଥାରେ ରହିଛି ବୋଲି ସ୍ୱୀକାର କରିବାକୁ ହେବ । ବ୍ୟକ୍ତିଗତ ଉଦ୍ୟମରେ ଓଡ଼ିଶାର ବିଭିନ୍ନ ପ୍ରାନ୍ତରୁ ନିତ୍ୟ ନୂତନ ପୁସ୍ତକମାନ ପ୍ରକାଶିତ ହୋଇ ଲୋକାର୍ପିତ ହେଉଥିବାର ସମ୍ବାଦ ଶୁଣିବାକୁ ଓ ପଢ଼ିବାକୁ ମିଳୁଛି । ପ୍ରକାଶକମାନେ ମଧ୍ୟ ହାତବାନ୍ଧି ବସିନାହାନ୍ତି, ବ୍ୟବସାୟିକ ସ୍ୱାର୍ଥ ନିମନ୍ତେ ସେମାନେ ନିୟମିତ ଭାବରେ ପୁସ୍ତକ ପ୍ରକାଶ କରିଚାଲିଛନ୍ତି । ଏହି ଭଳିଭାବରେ ଅନେକ ମୂଲ୍ୟବାନ୍ ପୁସ୍ତକ ପ୍ରକାଶ ପାଇ ଯାଉଛି । ପାଠକସଂଖ୍ୟା ଯେ ପୂର୍ବ ଅପେକ୍ଷା ଅଧିକ ବୃଦ୍ଧି ପାଇଛି, ଏହା ନକହିଲେ ମଧ୍ୟ ଚଳିବ । ସେହି ଅନୁପାତରେ ପୁସ୍ତକ ବିକ୍ରିର ପରିମାଣ ମଧ୍ୟ । ଏବେ ପ୍ରତିଜିଲ୍ଲାରେ ନିୟମିତ ପୁସ୍ତକ ମେଳାର ଆୟୋଜନ ମଧ୍ୟ କରାଯାଉଛି । କୌଣସି କୌଣସି ଜିଲ୍ଲାର ଏକାଧିକ ସ୍ଥାନରେ ମଧ୍ୟ ଏହାର ବ୍ୟବସ୍ଥା କରାଯାଉଛି । ତେବେ ମୁଦ୍ରଣ ସଂଖ୍ୟା ପୂର୍ବ ତୁଳନାରେ ହ୍ରାସ ପାଇଛି । ଆଗେ ଗୋଟିଏ ମୁଦ୍ରଣ ରେ ଏକହଜାର ପୁସ୍ତକ ଛପା ଯାଉଥିଲାବେଳେ ବର୍ତ୍ତମାନ ତାହା ପାଞ୍ଚଶହକୁ କମି ଆସିଛି । ତେବେ ମୁଦ୍ରଣ ଶିଳ୍ପର ଅଭ୍ୟୁନ୍ନତି ହେତୁ ପ୍ରୟୋଜନ ହେଲେ ଅତିଅଳ୍ପ ସମୟ ମଧ୍ୟରେ ଏହାର ପୁନଃମୁଦ୍ରଣ ବ୍ୟବସ୍ଥା କରାଯାଇପାରିବାର ସମ୍ଭାବନାରୁ ଏହି ବ୍ୟବସ୍ଥାର ସୃଷ୍ଟି ହୋଇଛି ବୋଲି ଆମର ବିଶ୍ୱାସ ।

ଶିକ୍ଷାର ପ୍ରସାର ସହିତ ପାଠକ ସଂଖ୍ୟାର ହ୍ରାସବୃଦ୍ଧି ଅନ୍ତରଙ୍ଗଭାବେ ଜଡ଼ିତ । ବର୍ତ୍ତମାନ ଏଠାରେ ଶିକ୍ଷାର ଯଥେଷ୍ଟ ପ୍ରସାର ଘଟିଛି । ତା ସହିତ ପାଠକ ସଂଖ୍ୟା ମଧ୍ୟ ବୃଦ୍ଧି ପାଇଛି । ଏ ସବୁ ସତ୍ତ୍ୱେ ଭାଷା ସାହିତ୍ୟ ପାଇଁ ଗୁରୁତର ସଂକଟ ଆସନ୍ନ ବୋଲି କୁହାଯିବାର କାରଣ କ'ଣ ? ଏହାର ଏକମାତ୍ର କାରଣ ହେଉଛି, ଇଂରାଜୀଶିକ୍ଷାର ପ୍ରଚାର ଓ ପ୍ରସାର ଉପରେ ଗୁରୁତ୍ୱ ଆରୋପ । ବର୍ତ୍ତମାନ ରାଜ୍ୟର ଗାଁ ଗହଳରେ ସୁଦ୍ଧା ଇଂରାଜୀମାଧ୍ୟମରେ ଶିକ୍ଷାଦାନ କରୁଥିବା ବିଦ୍ୟାଳୟ ଗୁଡ଼ିକର ସଂଖ୍ୟା ଦ୍ରୁତଗତିରେ ବଢ଼ିଚାଲିଛି । ମଧ୍ୟବିତ୍ତ ଗୋଷ୍ଠୀଙ୍କ ସହ ନିମ୍ନବିତ୍ତ ଗୋଷ୍ଠୀରେ ମଧ୍ୟ ଏହି ଶିକ୍ଷା ପ୍ରତି ଯଥେଷ୍ଟ ଆଦର ଦେଖାଦେଇଛି । ଏହାର ପ୍ରଧାନ କାରଣ ହେଉଛି, ଏହା ସହିତ ଜଡ଼ିତ ରହୁଛି ଛାତ୍ରର ଜୀବିକା ବା ବୃତ୍ତିର ପ୍ରଶ୍ନ । ଶିକ୍ଷାର

ମୂଳଲକ୍ଷ୍ୟ ହେଉଛି, ଯେ କୌଣସି ଗୋଟିଏ ସମ୍ମାନଜନକ ବୃତ୍ତି ନିମନ୍ତେ ନିଜକୁ ଯୋଗ୍ୟ ସାବ୍ୟସ୍ତ କରିବା । ଆମଶିକ୍ଷା ବ୍ୟବସ୍ଥାରେ ଆତ୍ମନିର୍ଭରଶୀଳତାର ପ୍ରସଙ୍ଗଟି ଅନ୍ତର୍ଭୁକ୍ତ ନୁହେଁ । ଚାକିରିହିଁ ଶିକ୍ଷାର ଶେଷ ଲକ୍ଷ୍ୟବୋଲି ଆମର ଛାତ୍ରମାନେ ଜାଣନ୍ତି ଏବଂ ସେଇ ଲକ୍ଷ୍ୟରେ ନିଜକୁ ପ୍ରସ୍ତୁତ କରନ୍ତି । ରାଜ୍ୟର ସାମ୍ପ୍ରତିକ ଆର୍ଥିକ ଦୁଃସ୍ଥିତିରେ ସେହି ସମ୍ଭାବନାଟି ସମୂଳେ ବିନଷ୍ଟ ହୋଇଛି । ନିକଟଭବିଷ୍ୟତ୍‌ରେ ଯେ, ପରିସ୍ଥିତିର କୌଣସି ପରିବର୍ତ୍ତନ ଘଟିବ, ଏ ଭଳି ସମ୍ଭାବନା ଦେଖା ଯାଉ ନାହିଁ । ଏଭଳି ପରସ୍ଥିତିରେ ଜୀବିକା ପାଇଁ ଓଡ଼ିଆମାନଙ୍କୁ ବାହାରକୁ ଯିବାକୁ ପଡିବ । ବହୁ ପୂର୍ବେ ଭାରତର ଅନ୍ୟାନ୍ୟ ପ୍ରାନ୍ତର ଲୋକେ ଏଇ କଥା କହି ଆସିଛନ୍ତି । ତେଣୁ ଆଜି ସେମାନେ ପୃଥିବୀର ଯେ କୌଣସି ପ୍ରାନ୍ତରେ ପହଞ୍ଚିଯାଇପାରୁଛନ୍ତି । ଉଡ଼ିଆ ଟି ସୁବର୍ଣ୍ଣରେଖା ପାରି ହୋବା ଘଟଣାକୁ ସୁଦ୍ଧା ବିଦେଶ ଯାତ୍ରାରୂପେ ଗ୍ରହଣ କରିନେଇ ଥାଏ । ଜୟପୁର ଯିବାକୁ ହେଲେ କଟକିଆଙ୍କ ପରିବାରରେ କାନ୍ଦବୋବାଳି ପଡ଼ିଯାଏ । ଅନ୍ତତଃ କିଛି ବର୍ଷ ତଳେ ଏହି ଅବସ୍ଥା ଥିଲା । ସାରକଥା ହେଉଛି, ଓଡ଼ିଆ ଶିକ୍ଷା ଆଉ ଆମର ଉତ୍ତର ପିଢ଼ି ନିମନ୍ତେ ସୁରକ୍ଷାର ବଳୟ ସୃଷ୍ଟି କରିପାରୁ ନାହିଁ । ବାହାରକୁ ଗଲେ ଓଡ଼ିଆକୁ ଅନ୍ତତଃ ହିନ୍ଦୀ ଏବଂ ଇଂରାଜୀ ନ ହେଲେ -ଏଥିରୁ ଯେ କୌଣସି ଗୋଟିକରେ ପାରଦର୍ଶୀ ହେବାକୁ ପଡ଼ିବ । ନିକଟରେ ଜଣେ ବରିଷ୍ଠ ନେତା ଦୁଇପଦ ଇଂରାଜୀ କହିବୋଲି ପାରୁଥିବା ଆଇ.ଏ.ଏସ୍ ଅଫିସରମାନେ ନିଜକୁ ସବ୍‌ଜାନ୍ତା ବୋଲି ମନେ କରିବା ଆଦୌ ଉଚିତ ନୁହେଁ ବୋଲି ମନ୍ତବ୍ୟ ଦେଇଛନ୍ତି । ଏହି ଭାଷା-ଜ୍ଞାନର ପ୍ରତିବନ୍ଧକତା ହେତୁ ଆମର ସାଂସଦମାନେ ଯେ ଦିଲ୍ଲୀଦରବାରରେ ମୂକ ହୋଇ ବସିଥାଆନ୍ତି, ଏହାକୁ ଭୁଲିଗଲେ ଚଳିବ ନାହିଁ । ଭାଷା ହେଉଛି ମଣିଷ ମଣିଷ ମଧ୍ୟରେ ସେତୁ ସ୍ୱରୂପ । ବାହାର ସହିତ ଯୋଗାଯୋଗର ସେହି ହେଉଛି ଗବାକ୍ଷ । କେବଳ ଆବେଗର ବଶବର୍ତ୍ତୀ ହୋଇ ତାକୁ ବନ୍ଦ କରି ଦେଲେ ମଣିଷ ଏକୁଟିଆ ହୋଇଯିବ । ଇଂରାଜୀ ଶିକ୍ଷା ପ୍ରତି ଯେଉଁ ଅନୁରାଗ ଓଡ଼ିଶାରେ ସୃଷ୍ଟି ହୋଇଛି, ତାହା କେବଳ ଏଠାର ନୁହେଁ, ବରଂ ଏକ ସର୍ବଭାରତୀୟ ପ୍ରବୃତ୍ତି ରୂପରେ ଆତ୍ମ ପ୍ରକାଶ କରିଛି । ବୃତ୍ତିଗତ ପ୍ରୟୋଜନରେ ଏହା ହୋଇଛି । ଏହି ବାସ୍ତବତାକୁ ଅସ୍ୱୀକାର କରିହେବ ନାହିଁ ଏହାର କୌଣସି ବିକଳ୍ପ ନାହିଁ ।

ଭାଷାର ଦୁଇଟି ରୂପ । ଗୋଟିଏ ହେଉଛି କଥିତ ଏବଂ ଅନ୍ୟଟି ହେଉଛି ଲିଖିତ । କଥିତ ଭାଷା ବର୍ତ୍ତମାନ କେତେ ପର୍ଯ୍ୟନ୍ତ ଶୁଦ୍ଧ ହୋଇ ରହିଛି, ତାହା ଚିନ୍ତା କରିବାକୁ ପଡ଼ିବ । ଟେଲିଭିଜନ୍, ସମ୍ବାଦପତ୍ର ଏବଂ ଅନ୍ୟାନ୍ୟ ଗଣମାଧ୍ୟମର କଲ୍ୟାଣରୁ ଓଡ଼ିଆଭାଷାରେ ବର୍ତ୍ତମାନ ବହୁ ହୀନ୍ଦୀଶବ୍ଦର ଅନୁପ୍ରବେଶ ଘଟୁଛି । ଏସବୁକୁ ଆମେ ସ୍ୱାଭାବିକ ଭାବରେ ଗ୍ରହଣ ମଧ୍ୟ କରିନେଉଛୁ । ପୂର୍ବରୁ ବହୁ ଇଂରାଜୀ ଶବ୍ଦ ମଧ୍ୟ ଆମ ଭାଷାର ଅଙ୍ଗ ରୂପରେ ଗୃହୀତ ହୋଇ ସାରିଛି ଏବଂ ସେସବୁ ସ୍ୱାଭାବିକ ଭାବରେ ବ୍ୟବହୃତ ମଧ୍ୟ ହେଉଛି । ଶିକ୍ଷିତ ଅଶିକ୍ଷିତ ନିର୍ବିଶେଷରେ ସମସ୍ତେ ଏହାକୁ ବ୍ୟବହାର କରୁଛନ୍ତି ଏବଂ ଭାବ ବିନିମୟରେ କୌଣସି ଅସୁବଧା ହେଉନାହିଁ । ଭାଷାମଧ୍ୟକୁ ନୂଆନୂଆ ଶବ୍ଦର ପ୍ରବେଶ ହେଉଛି ଏକ ଜୀବନ୍ତ ଭାଷାର ଧର୍ମ । ଆହୃତ ଶବ୍ଦକୁ ଆପଣାର କରି ନେବା ଦ୍ୱାରା ଭାଷାର ଶବ୍ଦ ଭଣ୍ଡାର ସମୃଦ୍ଧ ହୁଏ । ବିଶ୍ୱର ସମସ୍ତ ଭାଷାର ଏହି ପ୍ରବୃତ୍ତି ରହିଛି । ଇଂରାଜୀ ଭାଷାର ଶବ୍ଦ କୋଷରେ ଅନ୍ତତଃ ଚାଳିଶ ଭାଗ ବିଦେଶୀ ଶବ୍ଦ ରହିଛି ବୋଲି ଭାଷାତତ୍ତ୍ୱବିତ୍ ମାନଙ୍କର ମତ । ଅନ୍ୟ ଭାଷାର ନୂଆନୂଆ ଶବ୍ଦକୁ ନିଜ ଭାଷାରେ ଗ୍ରହଣ କରି ନେବାର ଉଦାରତା ଦେଖାଉଥିବାରୁ ହିଁ ଇଂରାଜୀ ଭାଷା ବିଶ୍ୱର ସମୃଦ୍ଧ ତମ ଭାଷାର ମର୍ଯ୍ୟାଦା ଲାଭ କରିଛି । ଓଡ଼ିଆ ଭାଷା ପାଇଁ ମଧ୍ୟ ଏହି ପ୍ରକ୍ରିୟାକୁ ଗ୍ରହଣ କରି ନେବାକୁ ହେବା ଦ୍ୱାର ଖୋଲା ରଖିବାକୁ ହେବ । ତାହା ଦ୍ୱାରା ହିଁ ଆମର ଭାଷା ଭଣ୍ଡାର ସଂମୃଦ୍ଧ ହୋଇ ପାରିବ ଏବଂ ବିଶ୍ୱର ଅନ୍ୟାନ୍ୟ ସମୃଦ୍ଧ ଭାଷା ସହିତ ସାମିଲ ହୋଇ ପାରିବ ।

କେତୋଟି ଦୃଷ୍ଟାନ୍ତ ସାହାଯ୍ୟରେ ଆମେ ଏହି କଥାଟିକୁ ବ୍ୟାଖ୍ୟା କରିପାରିବା । ଗତ କିଛି ବର୍ଷ ହେଲା ଉଦ୍‌ଘାଟନ-ଉତ୍ସବମାନଙ୍କରେ 'ଲୋକାର୍ପିତ' ଶବ୍ଦଟି ଖୁବ୍ ବ୍ୟବହୃତ ହେଉଛି । ଏ ଶବ୍ଦଟି ଓଡ଼ିଆ ଶବ୍ଦଭଣ୍ଡାରରେ ଏହିଭଳି ଭାବରେ ନ ଥିଲା । ଶବ୍ଦଟି କିନ୍ତୁ ସମ୍ପୂର୍ଣ୍ଣ ରୂପେ ଭାରତୀୟ ଏବଂ ସଂସ୍କୃତ ଶବ୍ଦଭଣ୍ଡାରର ଅନ୍ତର୍ଭୁକ୍ତ । ହିନ୍ଦୀ ଭାଷାରେ ଏହା ପ୍ରଥମେ ବ୍ୟବହୃତ ହେଲା ଏବଂ ଅନ୍ୟ ଅନେକ ଶବ୍ଦ ସହିତ ଓଡ଼ିଆ ଭାଷାକୁ ଆସିଛି । ଏଇଟି ଏକ ଚମତ୍କାର ଶବ୍ଦ ଏବଂ ଯେ କୌଣସି ଭାଷାର ଶବ୍ଦଭଣ୍ଡାର ପାଇଁ ଏକ ମୂଲ୍ୟବାନ୍ ସଂଯୋଗ । ସେହିଭଳି ବର୍ତ୍ତମାନ ଭାରତୀୟ ଭାଷା ମଧ୍ୟକୁ ପ୍ରବେଶ କରୁଥିବା 'ସୁନାମୀ' (Sunami) ଶବ୍ଦ । ନାମରୁ ଏହା ଏକ ଭାରତୀୟ ଶବ୍ଦ ବୋଲି ପ୍ରତୀୟମାନ ହେଉଥିଲେ ମଧ୍ୟ ମୂଳତଃ ଏହା ଏକ ଜାପାନୀ ଶବ୍ଦ । ସେଠାରେ ଏହାର ଅର୍ଥ ହେଉଛି ସାମୁଦ୍ରିକ ତରଙ୍ଗ । ଉଚ୍ଚାରଣ ହେଉଛି ସୁ-ନାହ-ମି (Su-nah-mee) ସୁ (Su) ର ଅର୍ଥ ପୋତାଶ୍ରୟ ଏବଂ ନାମି (Nami) ର ଅର୍ଥ ରତଙ୍ଗ । ଯେହେତୁ ପୋତାଶ୍ରୟ ସମୁଦ୍ରଜୁଆର ଉପରେ ନିର୍ଭରଶୀଳଥିଲା, ଏହି ଜୁଆର ସମୟରେ ସୃଷ୍ଟ ଢ଼େଉ କୁ ସୁନାମି କୁହାଯାଉଥିଲା । ପରେ ଏହାର ଅର୍ଥ ବଦଳି ଭୂକମ୍ପ ଜନିତ ସାମୁଦ୍ରିକ ତରଙ୍ଗକୁ ସୁନାମି କୁହାଗଲା, ଯଦିଚ ଜୁଆରର ଢ଼େଉ ସହିତ ସୁନାମିର ପ୍ରଳୟଙ୍କରୀ ଢ଼େଉର କୌଣସି ସମ୍ପର୍କ ନାହିଁ । ଏହି ଅର୍ଥବହ ଶବ୍ଦଟିକୁ ଭାଷାରେ ଗ୍ରହଣ କରିନେବା ଦ୍ୱାରା ଏହାର ଶବ୍ଦଭଣ୍ଡାର ନିଶ୍ଚୟ ସମୃଦ୍ଧ ହେବ ।

କହିବା କଥା ହେଉଛି ଗ୍ରହଣ ବର୍ଜନ ହେଉଛି ଭାଷା ପାଇଁ ଏକ ପ୍ରାକୃତିକ ନିୟମ । ବ୍ୟାବହାରିକ ପ୍ରୟୋଜନ ଦୃଷ୍ଟିରୁ କେତେ ନୂଆ ଶବ୍ଦ ଭାଷା ଭିତରକୁ ଆସିବ ଏବଂ ପୁରୁଣାଶବ୍ଦ ଏଥିରୁ ବାହାରି ଯିବ ଠିକ୍ ନୂଆପାଣି ପ୍ରବେଶ କଲେ ଜଳାଶୟରୁ ପୁରୁଣା ପାଣି ବାହାରି ଯାଉଥିବା ଭଳି । ଏହି ପ୍ରକ୍ରିୟା ଯୁଗଯୁଗ ଧରି ଚାଲିଥାଏ । ଏହି ଭଳି ଆମେ ଆମ ଭାଷା ଭଣ୍ଡାରୁ କେତେ କେତେ ଚମତ୍କାର ଶବ୍ଦକୁ ବିଦାୟ ଦେଇ ସାରିଛୁ । ବିଶେଷ କରି ପଲ୍ଲୀ-ଅଞ୍ଚଳରେ ବ୍ୟବହୃତ ହେଉଥିବା ବହୁ ଚମତ୍କାର ଅର୍ଥ ବହ ଶବ୍ଦ, ଢଗ୍ ଢ଼ମାଳି, ପ୍ରବାଦ ପ୍ରବଚନ ଇତ୍ୟାଦି ଚିରକାଳ ପାଇଁ ଆମ ଭାଷା ଭଣ୍ଡାରରୁ ଅନ୍ତର୍ହିତ ହୋଇଯାଇଛି ପ୍ରବାଦ ପ୍ରବଚନ ଗୁଡ଼ିକ ଅନୁଭୂତିର ଅନ୍ତରଙ୍ଗ ଇଲାକା ଭିତରୁ ବାହାରକୁ ବାହାରି ଆସିଥାଏ । ତା ସହିତ ପ୍ରକାଶ ପାଏ ଆୟୋଗକର୍ତ୍ତାଙ୍କର ରସିକତା, ବ୍ୟଙ୍ଗ ଧର୍ମିତା - ଏବଂ ଜୀବନକୁ ରସସିକ୍ତ କରିଦେବାର ଏକ ଦୁର୍ମିଳ ଭାବନା । ଜୀବନକୁ ସୁଖ, ଶାନ୍ତି, ଆନନ୍ଦ ଉଲ୍ଲାସ ପୂର୍ଣ୍ଣ କରିବା ସହିତ ସମସ୍ୟାମୁକ୍ତ କରିବାର କାମନା ହେଉଛି ଏସବୁ ବ୍ୟବହାରର ଲକ୍ଷ୍ୟ । ପୁଣି ସେହି ସବୁ ଶବ୍ଦ ମଧ୍ୟରୁ କେତୋଟିରେ ଏଭଳି ସାମ୍ରାଜ୍ୟ, ଗାମ୍ଭୀର୍ଯ୍ୟ ଥିଲା ଯେ, ତାହାର ବ୍ୟବହାର ମନକୁ ମଧ୍ୟ ସେହିଭଳି ବିସ୍ତୃତ ଏବଂ ଉଦାର କରିଦେଉଥିଲା । କହିବା ବାହୁଲ୍ୟ ଯେ ଏସବୁର ବିଲୋପ ଭାଷାକୁ ଏକ ପ୍ରକାର ରିକ୍ତ କରିଦେଇଛି ।

ତେବେ ଏଥିପାଇଁ ମଧ୍ୟ ବିବ୍ରତ ହେବାର କିଛି ନାହିଁ । ଭାଷା ତାହାର ପ୍ରକୃତିଗତ ନିୟମ ହିଁ ପାଳନ କରୁଛି । ନୂଆ ପାଇଁ ପୁରୁଣାକୁ ସ୍ଥାନ କରିଦେବାକୁ ପଡେ, ଏହାହିଁ ହେଉଛି ସୃଷ୍ଟିର ନିୟମ। ସେଥିପାଇଁ ପ୍ରସ୍ତୁତ ରହିବାକୁ ପଡ଼େ । ସିଦ୍ଧାନ୍ତ ହେଉଛି, କଥିତ ଭାଷା ପାଇଁ ବିଶେଷ ଚିନ୍ତା କରିବାର କିମ୍ବା ଅତ୍ୟନ୍ତ ସ୍ପର୍ଶକାତର ହେବାର କୌଣସି ପ୍ରୟୋଜନ ନାହିଁ । କୁହାଯାଉଛି ଯେ, ଇତିମଧ୍ୟରେ ପୃଥିବୀରୁ ସାତଶହ ପର୍ଯ୍ୟନ୍ତ ଭାଷା ସମ୍ପୂର୍ଣ୍ଣ ରୂପେ ଲୋପ ପାଇ ଯାଇଛି ଏବଂ ଓଡ଼ିଆ ଭାଷା ମଧ୍ୟ ସେହିଭଳି ଅବକ୍ଷୟର ଶିକାର ହୋଇ ବିଲୁପ୍ତି ଆଡ଼କୁ ଦ୍ରୁତଗତିରେ ଆଗେଇଯାଉଛି । ଆମ ମତରେ ଏହା ଏକ ଅସମ୍ଭବ କଳ୍ପନା । ଓଡ଼ିଆ ଜାତିର ସ୍ଥିତି ଉପରେ ଏହାର ସ୍ଥାୟିତ୍ୱ ନିର୍ଭରଶୀଳ । ଭବିଷ୍ୟତ୍‌ରେ ଯଦି କୌସି କାରଣରୁ ଏହି ଜାତି ଭୂପୃଷ୍ଠରୁ ନିଶ୍ଚିହ୍ନ ହୋଇଯାଏ, ତେବେ ଯାଇ ସେ ସ୍ଥିତି ସୃଷ୍ଟି ହେବ । ସେତେଦିନ ପର୍ଯ୍ୟନ୍ତ ଆତଙ୍କିତ ହେବାର କୌଣସି କାରଣ ନାହିଁ ।

ସେହିଭଳି ଲିଖିତ ଭାଷା । ଇଂରାଜୀ ଭାଷାର ବହୁଳ ବ୍ୟବହାର ପାରିବାରିକ ଜୀବନ ଠାରୁ ଆରମ୍ଭ କରି ସାମାଜିକ ଜୀବନ ପର୍ଯ୍ୟନ୍ତ ନାମ ଫଳକଠାରୁ ସ୍ମାରକ ଫଳକ ଯାଏ- ଏଠାରେ ଏକ ସାଂସ୍କୃତିକ-ସଂକଟ ସୃଷ୍ଟ କରିଛି । ଭାଷାର ବ୍ୟବହାର ଦ୍ୱାରା ଏହା ଋଦ୍ଧିମନ୍ତ, ଗୁଣବନ୍ତ ଓ ଶ୍ରୀମନ୍ତ ହୁଏ । ତାହାର ବ୍ୟବହାର ହ୍ରାସପାଉଥିବାରୁ ଏବଂ ଇଂରାଜୀ ଭାଷା ତାହା ସ୍ଥାନଗ୍ରହଣ କରୁଥିବାରୁ ସ୍ଥାନୀୟ ସଂସ୍କୃତି ଦୁର୍ବଳ ହୋଇ ପ୍ରାୟ ବିଲୁପ୍ତ ହେବା ଅବସ୍ଥାକୁ ଚାଲି ଆସିଛି । ଏ ସବୁ ହେଉଛି ଜଗତୀକରଣର ପ୍ରଭାବରେ ସରକାରଙ୍କର ବଳିଷ୍ଠ ସମର୍ଥନରେ । ଗଣମାଧ୍ୟମର ସମସ୍ତ ବିଭାଗ-ବିଶେଷ କରି ଟେଲିଭିଜନ୍ ଏଥିପାଇଁ ପୂର୍ଣ୍ଣମାତ୍ରାରେ ନିଜକୁ ଉତ୍ସର୍ଗ କରିଦେଇଛନ୍ତି । ଅପରିଣତ, ଅପରିପୁଟ ଓଡ଼ିଆ ଝିଅ, ପିତାମାତାଙ୍କ ପ୍ରୋତ୍ସାହନ ଏବଂ ଉପସ୍ଥିତିରେ ଟେଲିଭିଜନ୍ ପର୍ଦ୍ଦାରେ ପ୍ରତିଯୋଗିତା ନିମନ୍ତେ ଯେଉଁ ଉଦ୍ଦୀପକ ଅଙ୍ଗଭଙ୍ଗୀମାନ ପ୍ରଦର୍ଶନ କରୁଛନ୍ତି (ତାକୁ ନୃତ୍ୟ କହିବା ଅର୍ଥ ସେହି ଶବ୍ଦର ଅପମାନ), ତାହା ଦ୍ୱାରା ସେମାନଙ୍କ ଭବିଷ୍ୟତ୍ କୁଆଡେ ଯାଇଛି, ତାହା ଅନୁମାନ କରିବା କଷ୍ଟ ନୁହେଁ । କିଛି ବର୍ଷ ପରେ ଏମାନେ ଯେତେବେଳେ ସାଧାରଣ ଜୀବନରେ ପ୍ରବେଶ କରିବେ, ସେମାନଙ୍କ ଚିନ୍ତାରେ ସ୍ଥାନୀୟ-ସଂସ୍କୃତି ପ୍ରତି ଅନୁରାଗ କେତେ ଥିବ, ତାହା ମଧ୍ୟ ସ୍ପଷ୍ଟ ଦେଖାଯାଉଛି । ଭାଷା ହେଉଛି ସଂସ୍କୃତିର ଏକ ବଳିଷ୍ଠ ଅଙ୍ଗ । ସଂସ୍କୃତି ଯେତେବେଳେ ସାପ ଭଳି କାତି ଛାଡ଼ି, ସମ୍ପୂର୍ଣ୍ଣ ନୂଆରୂପରେ ଆତ୍ମପ୍ରକାଶ କରୁଛି, ସେତେବେଳେ ଭାଷା ତ ବିପନ୍ନ ହେବ ନିଶ୍ଚୟ । ତେବେ ପରିବର୍ତ୍ତନର ଏଇ ପ୍ରବଳ ଜଳତରଙ୍ଗକୁ ରୋକି ହେବ ନାହିଁ । ଏହା କେବଳ ରାଜ୍ୟକୁ ନୁହେଁ, ସମଗ୍ର ଦେଶକୁ ସମ୍ପୂର୍ଣ୍ଣ ଗ୍ରାସ କରି ସାରିଛି । ତାହାର ଅଜଗରୀ ଆଲିଙ୍ଗନରୁ ମୁକ୍ତି କଦାପି ସମ୍ଭବନୁହେଁ । ତେବେ ତାହାରି ଭିତରେ ଅନ୍ୟାନ୍ୟ ଜାତି ନିଜସ୍ୱ ପରିଚୟକୁ କିଛିମାତ୍ରାରେ ହେଲେ ମଧ୍ୟ ବଜାୟ ରଖି ପାରିଛନ୍ତି । ଓଡ଼ିଆମାନେ ସେ ବିଷୟରେ ଉଦାସୀନ । ଯେତେବେଳେ ଯେଉଁ ସ୍ରୋତଟି ପ୍ରବେଶ କରେ, ତହିଁରେ ଦେହଭସାଇ ଦେବା ହେଉଛି ଓଡ଼ିଆର ଧର୍ମ । ବିଶେଷକରି ଇଂରେଜମାନେ ଏ ରାଜ୍ୟ ଅଧିକାର କରିନେବା ଦିନରୁ ଓଡ଼ିଆ ତାର ନିଜସ୍ୱ ପରିଚୟକୁ ବିସର୍ଜନ ଦେଇଛି । ଏମାନଙ୍କର ବର୍ତ୍ତମାନ କୌଣସି ସ୍ୱତନ୍ତ୍ର ସଂସ୍କୃତି ନାହିଁ । ଯାହା ଅଛି ତାହା କାଗଜ କଲମରେ । ଜୀବନ ହୋଇଛି ଅନୁକୃତ - ସହଜିଆ ସଂସ୍କୃତିର କୋଷାଗାର । ଯୁଗେ ଯୁଗେ ଉତ୍କଳ ସହଜିଆ ମାର୍ଗକୁ ଗ୍ରହଣ କରି ନେବାରେ ଆଗ୍ରହୀ ହୋଇଛି । ଇନ୍ଦ୍ରଭୂତି ଏବଂ ଲକ୍ଷ୍ମୀଙ୍କରାଙ୍କର ବଜ୍ରଯାନ ତଥା ସହଜଯାନ ହେଉଛି ଏହାର ଦୃଷ୍ଟାନ୍ତ । ଅପସଂସ୍କୃତିର ଏ ଯେଉଁ ମହାପ୍ରବାହ ସିନ୍ଧୁପାରରୁ ବହି ଆସୁଛି, ତାକୁ ରୋକିବାର ଶକ୍ତି କାହାରି ନାହିଁ । ଥରେ ଚୋରାବାଲି ଉପରେ ପାଦପଡ଼ିଗଲେ, ତହିଁରୁ ଆତ୍ମରକ୍ଷାର କୌଣସି ଉପାୟ ନଥାଏ । ଭାରତ ବର୍ତ୍ତମାନ ସେହିଭଳି ନିମ୍ନଗାମୀ ହେବା ଅବସ୍ଥାରେ ବିପଜ୍ଜନକ ସ୍ଥିତିରେ ପହଞ୍ଚିଗଲାଣି ଏବଂ ଏହାକୁ କୁହା ଯାଉଛି ପ୍ରଗତି । ହୁଏତ ଆମେ ଏହି ସ୍ରୋତରେ ଶରୀର ଭସାଇଦେବା କିମ୍ବା କୂଳରେ ଠିଆହୋଇ 'ଗଲାଗଲା, ସବୁ ସଇଲା' ବୋଲି କହି ବୃଥା ପାଟି କରିବା । ଏଦୁଇଟି କଥାକୁ ଛାଡ଼ି ଦେଲେ ନାନ୍ୟ ପନ୍ଥା ବିଦ୍ୟତେ' ।

ସାହିତ୍ୟ ଯେ ଲିଖିତ ଭାଷାର ଏକ ବଳିଷ୍ଠ ସ୍ତମ୍ଭ-ଏହା ସମସ୍ତେ ଜାଣନ୍ତି । ପରିସଂଖ୍ୟାନ ଦୃଷ୍ଟିରୁ ବିଚାର କରିବାକୁ ଗଲେ, ବର୍ତ୍ତମାନ କିମ୍ବା ନିକଟ-ଭବିଷ୍ୟତ୍‌ରେ ଏଥିପାଇଁ କୌଣସି ସଂକଟ ନାହିଁ । ବର୍ତ୍ତମାନ ଯେତେ ବହି ପ୍ରକାଶ ପାଉଛି, ତାହା ପୂର୍ବେ କେବେ ହୋଇ ନଥିଲା । ଯେତେ ଇଂରାଜୀ ଶିକ୍ଷାର ପ୍ରସାର ଘଟିଲେ ମଧ୍ୟ ଓଡ଼ଆଭାଷାର ପାଠକ ସଂଖ୍ୟା ଯେ ବଢ଼ିଛି, ଏହା ସ୍ୱୀକାର କରିବାକୁ ହେବ । ପାଠକ-ସଂକ୍ରାନ୍ତୀୟ ଯେଉଁ ସଂକଟ କଥା କୁହାଯାଉଛି, ତାହା ଚିରକାଳ ଥିଲା । ମାତୃଭାଷା, ମାତୃଭୂମି ପ୍ରତି ଆବେଗିକ ଦୃଷ୍ଟିକୋଣ ଓଡ଼ିଆମାନଙ୍କର ନାହିଁ । କେବେ ଥିଲା, ତାହା କହିବା କଷ୍ଟକର । ତଥାପି ବହିଲେଖାଯାଉଛି, ସେ ଗୁଡ଼ିକ ଲୋକାର୍ପି ହେଉଛି ଏବଂ ପାଠକମାନଙ୍କ ପାଖକୁ ମଧ୍ୟ ଯାଉଛି । ଏ

ସଂକ୍ରାନ୍ତରେ ପ୍ରକାଶକମାନଙ୍କର ମନ୍ତବ୍ୟକୁ ଅକ୍ଷରଶଃ ଗ୍ରହଣ କରିନେବାର କୌଣସି କାରଣ ନାହିଁ । ଗୋଟିଏ ପତ୍ରିକାର ହିସାବରୁ ଜଣାଗଲା ଯେ, ରାଜ୍ୟରେ ବର୍ତ୍ତମାନ ସାଢ଼େଚାରିହଜାରରୁ ଊର୍ଦ୍ଧ୍ୱ ଲେଖକ ରହିଛନ୍ତି । ପାଞ୍ଚବର୍ଷ ପୂର୍ବେ ଏ ଅବସ୍ଥା ନଥିଲା । ପାଞ୍ଚପରେ ମଧ୍ୟ ଅବସ୍ଥା ଆହୁରି ବଦଳି ପାଞ୍ଚହଜାରଟା ଦଶହଜାର ଯେ ପହଞ୍ଚିବା ଅସମ୍ଭବ ନୁହେଁ । କବିଯଶଃ ପ୍ରାର୍ଥୀ ରୂପରେ ବାଣୀଙ୍କ ଦରବାରରେ ଉପସ୍ଥିତ ହେବା ବର୍ତ୍ତମାନ ଅଫିସରଙ୍କ ଠାରୁ ଆରମ୍ଭ କରି ସେମାନଙ୍କ ପର୍ଯ୍ୟନ୍ତ- ସମସ୍ତଙ୍କ ପକ୍ଷରେ ଏକ ମର୍ଯ୍ୟାଦା ଜନକ ବ୍ୟାପାର ହୋଇଛି । କବି ଆଖ୍ୟାସ୍ପୃହଣୀୟ ହୋଇପାରେ, ମାତ୍ର ସୁଲଭ ନୁହେଁ- ଏହି ଚିରକାଳୀନ ମନ୍ତବ୍ୟର ସାର ଗ୍ରହଣ କରାଯାଇନଥିବାରୁ ହିଁ ଏ ଅବସ୍ଥା ହେଉଛି । ସେ ଯାହା ହେଉ, ଲେଖକ ଓ ପାଠକ ଏ ଉଭୟ ଗୋଷ୍ଠୀଙ୍କର ସ୍ଥିତି ଯେତେବେଳେ ଏହିଭଳି ଯେତେବେଳେ ଲିଖିତ ଭାଷା ନିମନ୍ତେ ବର୍ତ୍ତମାନ ହେଉ କିମ୍ବା ଅଦୂର ଭବିଷ୍ୟତ୍‌ରେ ହେଉ- କୌଣସି ସଂକଟ ସୃଷ୍ଟି ହେବାର ଆଶଙ୍କା ରହିଛି ବୋଲି କହିବା ଠିକ୍ ହେଉନାହିଁ ।

**ଉପସଂହାର :**

ସାଧାରଣ ଜନତାର ପଢ଼ିବା ସଭ୍ୟାସ ଦ୍ରୁତଗତିରେ ହ୍ରାସ ପାଉଥିବା କଥାଠିକ୍ । ଗଣମାଧ୍ୟମ ବିଶେଷକରି ଟେଲିଭିଜନ୍‌ର ଲୋକପ୍ରିୟତାକୁ ଏହାର କାରଣ ବୋଲି କୁହାଯାଉଛି । ଏଣେ କମ୍ପ୍ୟୁଟର ସଂସ୍କୃତିର କ୍ଷିପ୍ର ପ୍ରସାର ଜ୍ଞାନବିଜ୍ଞାନକୁ ସହଜରେ ଆମହାତପାଖରେ ପହଞ୍ଚାଇ ଦେବା ଫଳରେ, ଧୀରେ ଧୀରେ ଇଣ୍ଟରନେଟ୍ ଉପରେ ଆମ ନିର୍ଭରତା ବଢ଼ିବାରେ ଲାଗିଛି । ପ୍ରକାଶନ ବିଭାଗ ପାଇଁ ଏହା ଅବଶ୍ୟ ଚିନ୍ତା ସୃଷ୍ଟି କରୁଛି । ତେବେ ଏହା କେବଳ ଅମ ଭାଷା ଓ ସାହିତର ସମସ୍ୟା ହୋଇନଥିବାରୁ ଏଥିପାଇଁ ବିବ୍ରତ ହୋଇ କିଛି ଲାଭ ନାହିଁ । ସ୍ଥିତି ଯେତେବେଳେ ଯାହା ହେବ, ତାକୁ ସେହିଭଳି ଭାବରେ ଗ୍ରହଣ କରିନେବାହିଁ ଠିକ୍ ହେବ । ଭାଷା ଓ ସଂସ୍କୃତି ପରସ୍ପର ସହିତ ଅଙ୍ଗାଙ୍ଗୀଭାବରେ ଜଡ଼ିତ । ଏହାକୁ ଗୋଟିଏ ମୁଦ୍ରାର ଦୁଇପଟ ବୋଲି କୁହାଯାଇପାରେ । ସଂସ୍କୃତି ରାହୁଗ୍ରସ୍ତ ହୋଇ ସାରିଛି ଏବଂ ଏଥିରୁ ତାହାର ପ୍ରାୟ ମୁକ୍ତିନାହିଁ । ଏଥିରୁ ଭାଷାର ସ୍ୱରୂପ ବଦଳିଯିବାର ଆଶଙ୍କା ଅମୂଳକ ନୁହେଁ । ଖୁବ୍ ଶୀଘ୍ର ଭାଷାର ଏକ ସଙ୍କଟ ରୂପକୁ ନେଇ ଆମକୁ ଯେ କାରବାର କରିବାକୁ ପଡ଼ିବ, ଏଥିରେ ସନ୍ଦେହ ନାହିଁ । ଏହି ପ୍ରକ୍ରିୟାକୁ ମଧ୍ୟ ରୋକି ହେବ ନାହିଁ । ତାକୁ ସେହିଭଳି ଭାବରେ ଗ୍ରହଣ କରିନେବା ପାଇଁ ମାନସିକ ସ୍ତରରେ ଆମକୁ ପ୍ରସ୍ତୁତ ରହିବାକୁ ପଡ଼ିବ ।

ପରିବର୍ତ୍ତନ ହେଉଛି ସୃଷ୍ଟିର ନିୟମ । ବହି ଆସୁଥିବା ପ୍ରଖର ଜଳ ସ୍ରୋତକୁ କୌଣସି ପ୍ରକାର ପ୍ରତିବନ୍ଧକ ସୃଷ୍ଟି କରି ନିୟନ୍ତ୍ରଣ କରାଯାଏ ନାହିଁ । ତାହା ଦ୍ୱାରା ଅଧିକ ବିଭ୍ରାଟ ସୃଷ୍ଟି ହୁଏ । ବରଂ ତାହା ସହିତ ପାଦମିଳାଇ ଚାଲିଲେହିଁ ତହିରୁ କିଛି ସୁଫଳ ମିଳିବାର ଆଶା ଥାଏ । ବର୍ତ୍ତମାନ ଆମ ଆଗରେ ସେହି ଭଳି ଏକ ପରିସ୍ଥିତି ସୃଷ୍ଟି ହୋଇଛି । ପ୍ରତିବାଦରେ ନିଜର ସମସ୍ତ ଶକ୍ତି ଖର୍ଚ୍ଚ କରି ନଦେଇ ପ୍ରତିବୋଧନ ଦ୍ୱାରା ଏହା ସହିତ ଏକ ବୁଝାମଣା କରିନେବା ଏବଂ ବସ୍ତୁସ୍ଥିତକୁ ମାନିନେବା ହିଁ ହେଉଛି ବର୍ତ୍ତମାନ ସମୟର ଦାବୀ । ବାହାରେ ଯେଉଁ ଓଡ଼ିଆ ଭାଷାଭାଷୀ ଗୋଷ୍ଠୀ ରହିଗଲେ, ବାହାରର ଅନୁଦାନ ଦ୍ୱାରା ସେମାନଙ୍କ ସମସ୍ୟାର ସମାଧାନ କରିହେବନାହିଁ । ମେଦିନୀପୁରର ବର୍ତ୍ତମାନ ଅବସ୍ଥା ହିଁ ହେଉଛି ଏହାର ଏକ ଦୃଷ୍ଟାନ୍ତ । ଏଥିରୁ ଶିକ୍ଷା ଗ୍ରହଣ କରିବାକୁ ହେବ । ଯଦି ସେମାନଙ୍କର ଆନ୍ତରିକ କାମନା ଥିବା । ତେବେ ସେମାନେ ନିଜଚେଷ୍ଟାରେହିଁ ନିଜର ଭାଷାକୁ ବଂଚାଇ ରଖିବେ । ନ ହେଲେ ମେଦିନୀପୁରରେ ଯାହା ହେଲା ତାହା ହେବ । ବରଂ ଏହା ଅବଧାରିତ । ଏହାକୁ ସେଇଦୃଷ୍ଟିରୁ ବିଚାର୍ କରିବାକୁ ହେବ । ଶୋଚନା କରି ଲାଭ ନାହିଁ ।

# ଭାଷା ବଂଚିଲେ ଜାତି ବଂଚିବ

## ରଘୁନାଥ ମହାପାତ୍ର

ଊନବିଂଶ ଶତାବ୍ଦୀରେ ଅଣଓଡ଼ିଆ ଲୋକମାନେ ଓଡ଼ିଆ ଭାଷାକୁ ଲୋପ କରିବାରୁ ଚେଷ୍ଟା କରିଥିଲେ । ସେତେବେଳେ ଓଡ଼ିଶାରେ ଶିକ୍ଷାର ପ୍ରସାର ଘଟିନଥିଲା । କିନ୍ତୁ କେତେଜଣ ଜାତିପ୍ରେମୀ ମନିଷୀ ଓଡ଼ିଆ ଭାଷାର ଅସ୍ତିତ୍ୱ ବଜାୟ ରଖିବା ପାଇଁ ସଂଗ୍ରାମ ଆରମ୍ଭ କରି ଦେଇଥିଲେ । ସେମାନଙ୍କର ନିରନ୍ତର ଚେଷ୍ଟାଫଳରେ ଓଡ଼ିଆ ଭଷା ନିଜର ସ୍ୱତନ୍ତ୍ର ମର୍ଯ୍ୟାଦା ରକ୍ଷା କରି ପାରିଲା । ଏହି ଭାଷାହିଁ ପ୍ରଦେଶ ଗଠନର ମୂଳଭିତ୍ତି ହେଲା । ୧୯୩୬ ମସିହାରେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନବେଳେ ଓଡ଼ିଶାର ଜନ ସଂଖ୍ୟା ଯାହାଥିଲା ଆଜି ତାହା ବହୁ ଗୁଣରେ ବୃଦ୍ଧି ପାଇଛି । ସ୍କୁଲ, କଲେଜ, ବିଶ୍ୱବିଦ୍ୟାଳୟ ମଧ୍ୟ ବହୁ ସଂଖ୍ୟାରେ ବଢ଼ିଛି ।.ଆମ ଶିକ୍ଷାନୀତିରେ ଏପରି କିଛି ଦୋଷ ରହିଛି ଯାହାଫଳରେ ଓଡ଼ିଆ ପିଲାମାନେ ନିଜ ମାତୃଭାଷା ପ୍ରତି ଅବହେଳା କରୁଛନ୍ତି; ନିଜର ଐତିହ୍ୟ ସଂସ୍କୃତି ପ୍ରତି ସଚେତନ ହେଉନାହାନ୍ତି ।

ଫକୀରମୋହନ, ରାଧାନାଥଙ୍କ ସମୟରେ ଓଡ଼ିଶା ବାହାରର ଲୋକମାନେ ଓଡ଼ିଆ ଭାଷାକୁ ଲୋପ କରିବା ପାଇଁ ଚେଷ୍ଟା କରିଥିଲେ; କିନ୍ତୁ ଆଜି ଏକବିଂଶ ଶତାବ୍ଦୀର ପ୍ରାରମ୍ଭରେ ଓଡ଼ିଶାର ଶିକ୍ଷା ସଂସ୍କୃତିକୁ ସମୀକ୍ଷା କଲେ ଆମେ ଜାଣିପାରିବା ଆମ ଭାଷାକୁ ଲୋପ କରିବା ପାଇଁ ଶିକ୍ଷିତ ଓଡ଼ିଆ ଲୋକହିଁ ଲାଗି ପଡ଼ିଛନ୍ତି । ବିଶେଷ କରି ମଧ୍ୟବିତ୍ତ ଓ ଧନୀଶ୍ରେଣୀର ଲୋକେ ଏହାର ନେତୃତ୍ୱ ନେଇଛନ୍ତି । ମଧ୍ୟବିତ୍ତବର୍ଗର ଲୋକମାନେ ସବୁବେଳେ ସୁବିଧାବାଦୀ । ସେମାନେ ସମାଜରେ ସବୁକ୍ଷେତ୍ରରେ ଆଗୁଆ ହେବା ସହିତ ସରକାରୀ ବେସରକାରୀ କ୍ଷେତ୍ରରୁ ଯେଉଁ ସବୁ ସୁବିଧା ସୁଯୋଗ ମିଳୁଛି ତାକୁ କରଗତ କରିବାକୁ ଚାହାନ୍ତି । ସେହି ଦୃଷ୍ଟିଭଙ୍ଗୀ ନେଇ ପିଲାମାନଙ୍କୁ ଇଂରାଜୀ ମାଧ୍ୟମସ୍କୁଲରେ ଶିକ୍ଷା ଦିଅନ୍ତି ଏବଂ ନିଜ ପାରିବାରିକ ଜୀବନକୁ ମଧ୍ୟ ଓଡ଼ିଆ ସଂସ୍କୃତିଠାରୁ ଭିନ୍ନ ଏବଂ ଉଚ୍ଚତର ବୋଲି ପ୍ରଦର୍ଶନ କରିବାକୁ ଚାହାଁନ୍ତି । ଏହା ଆମ ଜାତୀୟ ଜୀବନର ଏକ ଅବକ୍ଷୟ ବୋଲି କହିବାକୁ ହେବ । ଓଡ଼ିଆ ଲୋକଙ୍କର ନିଜର ମାତୃଭାଷା, ସଂସ୍କୃତି ପ୍ରତି ଶ୍ରଦ୍ଧାର ଅଭାବ ହେଉଛି ଆମ ଜାତୀୟ ଜୀବନର ବିପତ୍ତି । ସହରମାନଙ୍କରେ ଇଂରାଜୀ ମାଧ୍ୟମ ସ୍କୁଲ ବହୁଳ ଭାବରେ ସ୍ଥାପିତ ହୋଇ ବ୍ୟବସାୟିକ ଢାଞ୍ଚାରେ ଚାଲିଛି । ମଧ୍ୟବିତ୍ତ ବର୍ଗର ଶିକ୍ଷିତ ଓଡ଼ିଆମାନେ ନିଜର ପିଲାମାନଙ୍କୁ ସରସ୍ୱତୀ ଶିଶୁ ମନ୍ଦିର, ଓଡ଼ିଆ ମାଧ୍ୟମ ସ୍କୁଲ ମାନଙ୍କରେ ନ ଛାଡ଼ି ଏହି ଇଂରାଜୀ ମାଧ୍ୟମ ସ୍କୁଲରେ ଛାଡୁଛନ୍ତି । ଏହି ପିଲାମାନେ ଇଂରାଜୀ ମାଧ୍ୟମରେ ପଢ଼ିବା ଫଳରେ ସ୍ୱାଭାବିକ ଭାବେ ଇଂରାଜି ଭାଷା ପ୍ରତି ତାଙ୍କର ଶ୍ରଦ୍ଧା ବଢୁଛି ଏବଂ ନିଜର ମାତୃଭାଷା ପ୍ରତି ହେୟଭାବ ଆସୁଛି । ପିଲାଦିନରୁ ଜଣେ ଯଦି ଓଡ଼ିଆ ପଢ଼ିବାରେ ଅଭ୍ୟସ୍ତ ହୁଅନ୍ତା ଭବିଷ୍ୟତରେ ଓଡ଼ିଆ ସାହିତ୍ୟ ଭିତରକୁ ପ୍ରବେଶ କରନ୍ତା । ଫଳରେ ଓଡ଼ିଆ ସାହିତ୍ୟର ପ୍ରସାର ଘଟନ୍ତା । ବର୍ତ୍ତମାନ ଓଡ଼ିଆ ସାହିତ୍ୟର ପ୍ରସାରଣ ଦିନକୁ ଦିନ ସଂକୁଚିତ ହୋଇ ଯାଉଛି । ଦଶବର୍ଷତଳେ ସାଧାରଣ ଗଳ୍ପ, ଉପନ୍ୟାସ, ନାଟକ ବହି ଏକହଜାର ଛାପା ହେଉଥିବା ବେଳେ ବର୍ତ୍ତମାନ ଛାପା ହେଉଛି ପାଞ୍ଚଶହ । ଏହି ପାଞ୍ଚଶହ ବହିକୁ ବିକ୍ରି କରିବାକୁ ପାଞ୍ଚବର୍ଷ ଲାଗୁଛି । ଏହିପରି ଏକ ଜଟିଳ ପରିସ୍ଥିତି ଦେଇ ଆମେ ଗତି କରୁଛେ ।

ଭାଷା ବଂଚିଲେ ଜାତି ବଂଚିବ; ଏହା ଏକ ମୌଳିକ ସତ୍ୟ । ଏହି ସତ୍ୟକୁ ଯଦି ଶିକ୍ଷିତ ଲୋକମାନେ ଉପଲବ୍ଧି ନକରିବେ ତେବେ ଅଳ୍ପ କେତେବର୍ଷ ପରେ ଓଡ଼ିଆଭାଷୀ ଲୋକମାନେ ନିଜ

ପ୍ରଦେଶରେ ପର ହୋଇଯିବ । ଆମ ଭିତରେ ଜାତୀୟ ଭାବନାର ଉଦ୍ରେକ ନହେଲେ ଆମେ ଏକ ମହାନ ଜାତିର ଦାୟାଦ ବୋଲି ନଭାବିଲେ ଆମ ସଂସ୍କୃତି ଆମରି ଦ୍ୱାରା ହିଁ ଲୋପ ପାଇବ ।

ଭାରତ ଭୂଖଣ୍ଡରେ ଅନ୍ୟ ଯେତେ ଭାଷାଭିତ୍ତିକ ପ୍ରଦେଶ ଗଠନ ହୋଇଛି ସେଠାରେ ନିଜ ଭାଷା ସଂସ୍କୃତିର ଏତେ ଅବକ୍ଷୟ ଦେଖାଯାଉନାହିଁ । ସେମାନଙ୍କ ଭିତରେ ସଂସ୍କୃତି ସଚେତନତା, ଭାଷା ଅଭିମାନ, ପୂରାପୂରି ରହିଥିବାବେଳେ ଆମ ଓଡ଼ିଶାରେ ଦ୍ରୁତ ଅବନତି ଦେଖା ଯାଉଛି ।

ଭାରତ ସ୍ୱାଧୀନ ହେବାପରେ ରାଜନୈତିକ ଦଳମାନେ ଓଡ଼ିଶାରେ ଶାସନ ଭାର ଗ୍ରହଣ କଲେ । ଏହି ରାଜନୈତିକ ଦଳମାନଙ୍କର ମୁଖ୍ୟକାର୍ଯ୍ୟହେଲା ଜନସାଧାରଣଙ୍କୁ ନାନାପ୍ରକାର ପ୍ରଲୋଭନ ଦେଖାଇ ସେମାନଙ୍କ ଭିତରେ ବିଭେଦ ସୃଷ୍ଟିକରି ଶାସନ କଳକୁ ଜାବୁଡ଼ି ଧରିବା । ଏହି ରାଜନେତାଗଣ ଉତ୍କଳ ସମ୍ମିଳନୀ କଥା ସଂପୂର୍ଣ୍ଣ ଭାବେ ବିସ୍ମୃତ ହୋଇଗଲେ । ଏକ ସ୍ୱତନ୍ତ୍ର ରାଜ୍ୟ ଗଠନ କରିବାରେ ଉତ୍କଳ ସମ୍ମିଳନୀଯେ ମୁଖ୍ୟ ଭୂମିକା ଗ୍ରହଣ କରିଥିଲା ସେକଥା ସେମାନଙ୍କ ମନକୁ ଆସିଲା ନାହିଁ । ସେମାନେ ଭାଷା ଆଉ ସଂସ୍କୃତି କଥା ବିଚାର ନକରି ନିଜଦଳ କଥା ଆଗ ବିଚାର କଲେ ।

ବର୍ତ୍ତମାନ ସମୟ ଆସିଛି ଓଡ଼ିଆ ଭାଷା ସଂସ୍କୃତିର ପୁର୍ନଃଜାଗରଣ ପାଇଁ ଉତ୍କଳ ସମ୍ମିଳନୀ ନେତୃତ ନେବ । ଓଡ଼ିଶାର ପ୍ରତ୍ୟେକ ଅଂଚଳରେ ଉତ୍କଳ ସମ୍ମିଳନୀର ଶାଖା ଖୋଲାଯାଇ ଭାଷା, ସାହିତ୍ୟ ସଂସ୍କୃତିର ପ୍ରଚାର କରାଯିବ । ପ୍ରତ୍ୟେକ ଶିକ୍ଷିତ ଓଡ଼ିଆଙ୍କ ମନରୁ ନିଜ ମାତୃଭାଷା ପ୍ରତି ହେୟ ଭାବ ଦୂର କରିବାକୁ ପଡ଼ିବ ।

ଉତ୍କଳ ସମ୍ମିଳନୀ ବର୍ତ୍ତମାନ ଜାଗ୍ରତ ପ୍ରହରି ପରି ଓଡ଼ିଶାର ବିକାଶଧାରାକୁ ଲକ୍ଷ୍ୟ କରିବା ସହିତ ଅବହେଳିତ ଅଂଚଳଗୁଡ଼ିକ କିପରି ବିକଶିତ ହେବ ସେ ଦିଗରେ ରାଜ୍ୟସରକାରଙ୍କୁ ନିର୍ଦ୍ଦେଶ ଦେବ ।

ଓଡ଼ିଶାର ଲୋକମାନେ ଆଜି ପଡ଼ୋଶୀ ରାଜ୍ୟମାନଙ୍କରେ ଦାଦନ ଶ୍ରମିକ ହୋଇ କାର୍ଯ୍ୟ କରୁଛନ୍ତି । ସେମାନଙ୍କ ଜୀବନ ଧାରାର ବିକାଶ କିପରି ହୋଇପାରିବ ସେ ଦିଗରେ ମଧ୍ୟ ଉତ୍କଳ ସମ୍ମିଳନୀରେ କିଛି ଦାୟିତ୍ୱ ରହିଛି । ଜାତୀୟ ଜୀବନକୁ ଆମେ ଯଦି ଉନ୍ନତ କରି ପାରିବା ତା ହେଲେ ଆମ ଭିତରେ ଯେଉଁ ଆଂଚଳିକ ବୈଶିଷ୍ୟ ମୁଣ୍ଡ ଟେକୁଛି ତାହା ସମାଧାନ ହୋଇପାରିବ ।

ଉନବିଂଶ ଶତାବ୍ଦୀରେ ଓଡ଼ିଆ ଭାଷା ଯେପରି ସଂକଟର ସମ୍ମୁଖୀନ ହୋଇଥିଲା ଆଜି ଏକବିଂଶ ଶତାବ୍ଦୀରେ ସେହିପରି ସଂକଟର ସମ୍ମୁଖୀନ । ଏହି ସଂକଟକୁ ଦୂର କରିବା ପାଇଁ ଜାତିପ୍ରେମ, ଭାଷାପ୍ରେମୀ ଅନୁଷ୍ଠାନ ଓ ବ୍ୟକ୍ତିବିଶେଷ କାର୍ଯ୍ୟ ନକଲେ ଆମେ ତିଷ୍ଠି ପାରିବା ନାହିଁ ।

# କୋଷାଧ୍ୟକ୍ଷ, ଉତ୍କଳ ସମ୍ମିଳନୀ ,
କଟକ ଜିଲା

# ସମ୍ବଲପୁରର ଭାଷା ଆନ୍ଦୋଳନ

ମୀନକେତନ ପୁରୋହିତ

ସମ୍ବଲପୁର ଜିଲ୍ଲା ୧୮୬୨ ଖ୍ରୀଷ୍ଟାବ୍ଦରୁ ମଧ୍ୟପ୍ରଦେଶ ଅନ୍ତର୍ଭୁକ୍ତ ହୋଇରହିଆସିଥିଲା । ମାତ୍ର ସମ୍ବଲପୁରରେ ଓଡ଼ିଆଭାଷା ପ୍ରଚଳିତ ଥିଲା । ୧୮୯୪ ରେ ସମ୍ବଲପୁରରୁ ଓଡ଼ିଆଭାଷା ବିଲୋପ କରି ହିନ୍ଦୀ ପ୍ରଚଳିତ ପାଇଁ ଚକ୍ରାନ୍ତ ହେଲା । ବୈକୁଣ୍ଠନାଥ ପୂଜାରୀଙ୍କ ମୁହଁରୁ ଏହି ଗୁପ୍ତ ତଥ୍ୟ ଶୁଣି କବି ଗଙ୍ଗାଧର ମେହେର 'ଭାରତୀରୋଦନ' କବିତାରେ ନିମ୍ନୋକ୍ତ ଚେତାବନୀ ଲିପିବଦ୍ଧ କରିଦେଲେ :-

ହିନ୍ଦୀ ସରସ୍ୱତୀ ମୋ ଛାତିରେ ବସି<br>
କରିବ ପରା ରାଜତ୍ୱ<br>
ମୋ ଆଶା - କାନନ ଭସ୍ମରାଶି ହେବ<br>
ତା ନବ ଉଦ୍ୟାନେ ଖତ ।<br>
ଉପମାତା ଆସି ଗର୍ଭଧାରିଣୀର<br>
ମସ୍ତକେ ଚରଣ ଦେବ<br>
ଏ ଦଶା ଦେଖିଲେ କେଉଁ ସନ୍ତାନର<br>
ମନରେ ଦୁଃଖ ନ ହେବ ।

(ସମ୍ବଲପୁର ହିତୈଷିଣୀ,୩.୧୦.୧୮୯୪)

ମଧ୍ୟ ପ୍ରଦେଶର ଚିଫ୍ କମିଶନର ଉଡବର୍ଣ୍ଣ ୧୮୯୫ ଖ୍ରୀଷ୍ଟାବ୍ଦର କେଉଁ ଏକ ଅଶୁଭ ତିଥିରେ ହିନ୍ଦୀକୁ ସମ୍ବଲପୁରର, ସରକାରୀ ଭାଷା ରୂପେ ଘୋଷଣା କଲେ, ପୁଣି କବି ଗଙ୍ଗାଧର 'ଉତ୍କଳ ଭାରତୀଙ୍କ ନିବେଦନ' ଶୀର୍ଷକ କବିତାରେ ଲେଖିଲେ :-

ନିର୍ବାସନ ହେବା ପାଇଁକିଅଛି ଜନନୀ ଭାଳେ<br>
ମାତୃହୀନ ଦଶା ଘଟିବା ଅଛି ଆମ୍ଭ କପାଳେ !<br>
ଭବିତବ୍ୟ ଯାହା ତା' ଘଟୁ ବିଧି ଆୟତ୍ତ ସିନା<br>
ବୋଲି କାପୁରୁଷ ନ ହୁଅ ମୁଳୁଁ ଉଦ୍ୟୋଗ ବିନା

(ସମ୍ବଲପୁର ହିତୈଷିଣୀ ୬.୩.୧୮୯୫ )

ଗଙ୍ଗାଧରଙ୍କ ଏହି ବାଣୀ ସମ୍ବଲପୁରର ସଂଗ୍ରାମୀ ଜନତାର ନିଦ୍ରା ଭଙ୍ଗ କଲା । ବୀର ସୁରେନ୍ଦ୍ର ସାଏଙ୍କ ଉଲଗୁଲାନର ବିଫଳତା ଯୋଗୁଁ ସମ୍ବଲପୁରର ସଂଗ୍ରାମୀ ଜନତା ଗ୍ଲାନି ଓ ମର୍ମବେଦନାରେ ଭାଙ୍ଗି ପଡ଼ିଥିଲେ । ବିଦ୍ରୋହର ବହ୍ନି ନିର୍ବାପିତ ହୋଇଥିଲା । ମାତ୍ର ଅଙ୍ଗାର ଭିତରେ ସ୍ଫୁଲିଙ୍ଗ ଲୁଚି ରହିଥିଲା । ସେହି ସ୍ଫୁଲିଙ୍ଗ ଜଳି ଉଠିଲା, ସେହି ବର୍ଷର ଜୁନ୍ ମାସ ୧୩ ତାରିଖରେ ଜ୍ୟୋଷ୍ଠ ମାସର ପ୍ରଚଣ୍ଡ ରୌଦ୍ରତାପକୁ ଖାତିର ନ କରି ; ହଜାର ହଜାର ସଂଗ୍ରାମୀ ମହାନଦୀ ତଟ ବାଲିବନ୍ଧାରେ ସମବେତ ହେଲେ । ଧରଣୀଧର ମିଶ୍ରଙ୍କ ସଭାପତିତ୍ୱରେ ପ୍ରତିବାଦ ସଭା ଅନୁଷ୍ଠିତ ହେଲା । ବୈକୁଣ୍ଠ ନାଥ ପୂଜାରୀ, ଚନ୍ଦ୍ରଶେଖର ବେହେରା, ବ୍ରଜମୋହନ ପଟ୍ଟନାୟକ, ମହନ୍ତ ବିହାରୀ ଦାସ, ଶ୍ରୀପତି ମିଶ୍ର, ମଦନ ମୋହନ ମିଶ୍ର, ବାଲୁକେଶ୍ୱର ମିଶ୍ର, ବଳଭଦ୍ର ସୂପକାର, ଆଦି ନେତୃସ୍ଥାନୀୟ ବ୍ୟକ୍ତିଗଣ ଅଗ୍ନିବର୍ଷୀ ଭାଷାରେ ଇଂରେଜ ସରକାରଙ୍କ

ଭାଷାନୀତିର ତୀବ୍ର ପ୍ରତିବାଦ ସରିଗଲେ ସଭାରେ ହିନ୍ଦୀଭାଷା ପ୍ରଚଳନ ବିରୁଦ୍ଧରେ ସର୍ବସମ୍ମତି କ୍ରମେ ଏକ ପ୍ରସ୍ତାବ ଗୃହୀତ ହେଲା । ସେହି ପ୍ରସ୍ତାବର ଅବିକଳ ନକଲ ବଡ଼ଲାଟ ଏଲଗିନ୍ ସାହେବଙ୍କ ପାଖକୁ ପଠାଗଲା । ମାତ୍ର ଦୁଃଖର କଥା ବଡ଼ଲାଟ ସମ୍ବଲପୁର ଜନତାର ଏହି ସର୍ବସମ୍ମତ ପ୍ରସ୍ତାବକୁ ଗ୍ରହଣ କଲେ ନାହିଁ, ଫଳରେ ଜନତାର କ୍ଷୋଭ ବିକ୍ଷୋଭରେ ପରିଣତ ହୋଇଗଲା । ସମ୍ବଲପୁର ଜିଲ୍ଲାର ଗ୍ରାମ ଜନପଦରେ ବିଦ୍ରୋହର ବହ୍ନି ପ୍ରଜ୍ୱଳିତ ହୋଇଗଲା । ସମ୍ବଲପୁରରୁ ଆରମ୍ଭ କରି ଚନ୍ଦ୍ରପୁର ପଦ୍ମପୁର ଭିତରେ ଉଟଲି, ଘେସ୍ ବରଗଡ଼, ପଦ୍ମପୁର, ଅମ୍ବାଭୋନା, ରେମଣ୍ଡା ଆଦି ବଡ଼ ବଡ଼ ଗ୍ରାମରେ ଭେଡ଼େନ୍ ପ୍ରତିବାଦ ସଭାମାନ ଅନୁଷ୍ଠିତ ହୋଇଗଲା । ଏହି ଆନ୍ଦୋଳନ ଫୁଲଝର, ବସ୍ତର , ଆଦି ଛତିଶ ଗଡ଼ ଅଞ୍ଚଳକୁ ସଂଚରିଗଲା, ଅନୁରୂପ ଚନ୍ଦ୍ରଶେଖର, ବୈକୁଣ୍ଠନାଥ, ବାଲୁକେଶ୍ୱର, ବାଳମୁକୁନ୍ଦ ଆଦି ନେତାମାନେ ଜ୍ୱାଳାମୟଂ ଭାଷାରେ ଭାଷଣମାନ ଦେଇ ସୁପ୍ତ ସଂଗ୍ରାମୀ ଜନତାକୁ ଉତ୍ୟକ୍ତ କରିଦେଲେ । ଏହି ଆନ୍ଦୋଳନ ପ୍ରଥମେ ବୁଦ୍ଧିଜୀବୀମାନଙ୍କ ଭିତରେ ସୀମିତ ଥିଲା । କାଳକ୍ରମେ ସାଧାରଣ ଜନତା ତଥା ଗ୍ରାମ୍ୟ ଜନତା ଭିତରକୁ ପ୍ରବେଶ କରିଗଲା । ସୁରେନ୍ଦ୍ର ମହାନ୍ତି 'ଶତାବ୍ଦୀର ସୂର୍ଯ୍ୟ' ଉପନ୍ୟାସରେ ସମ୍ବଲପୁରରେ ଓଡ଼ିଆଭାଷାର ବିଲୋପ ଘେନି ଆଲୋଡ଼ନ ବିଲୋଡ଼ନର ଯେଉଁ ତଥ୍ୟ ଲିପିବଦ୍ଧ କରିଯାଇଛନ୍ତି, ତାହା ସମ୍ପୂର୍ଣ୍ଣ ସତ୍ୟ ନୁହେଁ ବୋଲି ଡକ୍ଟର ଶ୍ରଦ୍ଧାଙ୍କର ସୂପକାର ଯୁକ୍ତି ବାଢ଼ିଛନ୍ତି । ଡକ୍ଟର ହରେକୃଷ୍ଣ ମହତାବ "ସମ୍ବଲପୁରରେ ଭାଷା ଆନ୍ଦୋଳନ" ଗ୍ରନ୍ଥର ମୁଖବନ୍ଧରେ ଲେଖିଛନ୍ତି, "ସମ୍ବଲପୁରରେ ଓଡ଼ିଆଭାଷାର ପ୍ରବର୍ତ୍ତନ ପାଇଁ ସମ୍ବଲପୁର ନିଜେହିଁ ନେତୃତ୍ୱ ନେଇଛି । ସେ ନେତୃତ୍ୱ ଅନ୍ୟ କେଉଁଠାରୁ ଆସିନାହିଁ, ଏହାହିଁ ଓଡ଼ିଆ ଜାତିର ଇତିହାସରରେ ସମ୍ବଲପୁରର ଗୌରବମୟଁ ସ୍ଥାନ ।"

୧୯୦୧ ଖ୍ରୀଷ୍ଟାବ୍ଦ ଜୁଲାଇ ମାସର ପ୍ରଥମ ସପ୍ତାହରେ ସମ୍ବଲପୁରର ଗୋଟିଏ ପ୍ରତିନିଧି ଦଳ ନାଗପୁରକୁ ଯାଇ ଚିଫ୍ କମିଶନର ଫ୍ରେଜର ସାହେବଙ୍କ ସହିତ ସାକ୍ଷାତ କଲେ, ପ୍ରତିନିଧି ଦଳରେ ଥିଲେ ବ୍ରଜମୋହନ, ମଦନମୋହନ, ବଳଭଦ୍ର ଓ ବିହାରୀ ଦାସ, କମିଶନର ସହାନୁଭୂତି ଶୀଳ ମନୋବୃତ୍ତି ନେଇ ପ୍ରତିନିଧି ଦଳଂକୁ ସମସ୍ତ ପ୍ରକାର ସାହାଯ୍ୟ ସହଯୋଗର ପ୍ରତିଶ୍ରୁତି ଦେଇଥିଲେ । ପ୍ରତିନିଧି ଦଳ ନାଗପୁରରୁ ଫେରିଆସି ମଧୁସୂଦନ ଦାସଙ୍କୁ ସମସ୍ତ ବିଷୟ ଜଣାଇଦେଲେ, ମଧୁବାବୁ ମଧ ସିମଳାକୁ ଯାଇ ବଡ଼ଲାଟଙ୍କ ସହିତ ଏହି ବିଷୟରେ ଆଲୋଚନା କରିବେ ବୋଲି ପ୍ରତିଶୃତି ଦେଇଥିଲେ । ପରେ ଏହି ପ୍ରତିନିଧି ଦଳରେ ଶ୍ରୀପ୍ରତି ମିଶ୍ର ଯୋଗ ଦେଇଥିଲେ । ବ୍ରଜମୋହନ, ଧରଣୀଧର , ବଳଭଦ୍ର, ବିହାରୀ ଦାସ ଓ ଶ୍ରୀପତି ମିଶ୍ରଙ୍କୁ ସେ କାଳରେ ଲୋକେ ସମ୍ବଲପୁରର ପଞ୍ଚସଖା ବୋଲି କହୁଥିଲେ । ପଞ୍ଚସଖା ବଡ଼ଲାଟଙ୍କୁ ଭେଟିବାପାଇଁ ସିମଳାପଥେ ଯାତ୍ରାରମ୍ଭ କଲେ । ବଡ଼ କୃଷ୍ଟଙ୍କ ଖର୍ଚ୍ଚ ସାପେଧ ,ସମୟସାପେକ୍ଷ ଏବଂ ବିପଜ୍ଜନକ ସେ ଯାତ୍ରା କାଲମ୍ ଠାରୁ ସିମଳା ପର୍ଯ୍ୟନ୍ତ ଘୋଡ଼ା ପିଠିରେ ବସି ଘନ ଅରଣ୍ୟାନୀପୂର୍ଣ୍ଣ ବିପଦ ସଂକୁଳ ପଥ ଅତିକ୍ରମ କରି ଗଣେଶ ଚତୁର୍ଥୀ ଦିନର ପ୍ରଦୋଷରେ ସିମଳାରେ ପହଞ୍ଚିଲେ । ମାତ୍ର ଦୁର୍ଭାଗ୍ୟ ବଶତଃ ବଡ଼ଲାଟଙ୍କ ସହିତ ସାକ୍ଷାତ କରିପାରିଲେ ନାହିଁ । ମଧୁବାବୁ ମଧ ଠିକ୍ ସମୟରେ ସିମଳାରେ ପହଞ୍ଚି ପାରିଲେ ନାହିଁ । ମଧୁବାବୁଙ୍କ ଅନୁପସ୍ଥିତି ବିଷୟରେ ସୁରେନ୍ଦ୍ର ବାବୁ ଯାହା ଲେଖନ୍ତୁ ନା କାହିଁକି, ପ୍ରତିନିଧି ଦଳ ସହିତ ମଧୁବାବୁଙ୍କ ଯୋଗାଯୋଗ ଠିକ୍ ଭାବରେ ହୋଇପାରିଲା ନାହିଁ ; ତେଣୁ ମଧୁବାବୁ ସିମଳାରେ ପହଞ୍ଚି ପାରିଲେ ନାହିଁ । ଶ୍ରୀପତି ମିଶ୍ର ତାଙ୍କ ରଚିତ 'ସିମଳାଯାତ୍ରା' ଗ୍ରନ୍ଥରେ ଏହି ବିଷୟରେ ସଠିକ୍ ସ୍ପଷ୍ଟିକରଣ ଦେଇଛନ୍ତି । 'ଶତାବ୍ଦୀର ସୂର୍ଯ୍ୟ' ରେ ସୁରେନ୍ଦ୍ର ମହାନ୍ତି ଲେଖିଛନ୍ତି 'ଉନ୍ନବିଂଶ ଶତାବ୍ଦୀର ଶେଷରେ ଓ ବିଂଶ ଶତାବ୍ଦୀର ପ୍ରଭାତରେ ସମ୍ବଲପୁରୁ ମାତୃଭାଷା

ବିଲୋପରେ ସମ୍ବଲପୁର ଅଞ୍ଚଳରେ ପ୍ରାଣ ଚାପଲ୍ୟ ନଥିଲା ଓ ଆନ୍ଦୋଳନର ପ୍ରାଣ କେନ୍ଦ୍ର ରହିଲା କଟକରେ,' ତାହାହେଲେ ୧୯୦୨ ମସିହା ଡିସେମ୍ବର ମାସରେ ବିଶ୍ୱନାଥ କର 'ବିବିଧ ପ୍ରସଙ୍ଗରେ' ୧୯୧ ପୃଷ୍ଠରେ କାହିଁକି ଲେଖିଲେ "କଟକର କୌଣସି କୌଣସି ବିଶିଷ୍ଟ ବ୍ୟକ୍ତି ମଧ୍ୟରେ" ଏ ବିଷୟରେ ପରାମର୍ଶ ଚାଲିଥିଲା । ମାତ୍ର ପରାମର୍ଶ ପରାମର୍ଶରେ ଶେଷ ହେଲା । "ବରଂ ଡକ୍ଟର ନଟବର ସାମନ୍ତରାୟ "ଓଡ଼ିଆ ସାହିତ୍ୟର ଇତିହାସରେ ୧୮୭ ପୃଷ୍ଠାରେ ଲେଖିଛନ୍ତି, "ସମ୍ବଲପୁରରେ ଏହି ଭାଷା ଆନ୍ଦୋଳନ ପରେ ଗଞ୍ଜାମର ଲୋକେ ଓଡ଼ିଶା ସହିତ ମିଶ୍ରଣପାଇଁ ଉଦଗ୍ରୀବ ହୋଇଥିଲେ," ଯାହା ହେଉ, ସମ୍ବଲପୁରର ପଞ୍ଚସଖା କ୍ଳାନ୍ତି ଓ ଅବସାଦକୁ ନେଇ ବୈରାଗ୍ୟ ଜର୍ଜରିତ ଚିତ୍ତରେ ପ୍ରତ୍ୟାବର୍ତ୍ତନ କଲେ; ଆନ୍ଦୋଳନ କିଛିକାଳପାଇଁ ଶିଥିଳ ହୋଇଗଲା । ସମ୍ବଲପୁରର ଭାଷା ଆନ୍ଦୋଳନର ଦିଗ୍ ଦର୍ଶକ ତଥା ପଞ୍ଚସଖା ବିବେକରକ୍ଷକ କବି ଗଙ୍ଗାଧର ଧରଣୀ ବାବୁଙ୍କୁ ଉତ୍କଳ ଜନନୀର ସ୍ନେହ, ମହାନୁଭୂତି, ପ୍ରେରଣା ଓ ପ୍ରୋତ୍ସାହନ ଦେଇ ଲେଖିଥିଲେ :-

"ଶୋଇ ପଡ଼ିଲୁ କି ବାପରେ ମୋର ଧରଣୀ ଧର,
ଉଠ ଉଠ ବାପ ଧରଣୀ, ଆଉ ମଠ ନ କର ।"

ଭାଷା ଆନ୍ଦୋଳନ ପୁଣି ତେଜି ଉଠିଲା; ଏଥର ଏହା ବସ୍ତର, ଫୁଲଝର ଅଞ୍ଚଳକୁ ପ୍ରସାରି ଗଲା । ମୋର ପିତାମହ ସତ୍ୟବାଦୀ ପୁରୋହିତ ନେତା ନ ଥିଲେ ମାତ୍ର ପଞ୍ଚସଖାଙ୍କର ସ ସମସାୟିକ ଜଣେ ସଚେତନ ନାଗରିକ ଥିଲେ। ତାଙ୍କ ମୁହଁରୁ ମୁଁ ଏହି ଭାଷା ଆନ୍ଦୋଳନର ପ୍ରତ୍ୟକ୍ଷ କାହାଣୀ ଶୁଣିଛି । ନେତାମାନେ ସାରା ଛତିଶଗଡ଼ ଅଞ୍ଚଳର ଗ୍ରାମେ ଗ୍ରାମେ ପ୍ରତିବାଦ ସଭାମାନ କରିଥିଲେ । ଜ୍ୱାଳାମୟୀ ଭାଷାରେ ସମ୍ବଲପୁରରୁ ଓଡ଼ିଆଭାଷାର ବିଲୋପ ନୀତିର ପ୍ରତିବାଦ କରିଥିଲେ । ସେହି ଭାଷଣ ଭିତରେ ଭାଷାସୂତ୍ରରେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନର ଆଦ୍ୟ ସ୍ୱର ଉତ୍ତୋଳନ କରିଥିଲେ । ମଧୁବାବୁ, ଗୋବନ୍ଧୁ ବାବୁ. ପାରଳା ମହାରାଜା, ସମ୍ବଲପୁର ଅଞ୍ଚଳରେ ଭାଷା ଆନ୍ଦୋଳନର ସାଫଲ୍ୟରୁ ଭାଷାସୂତ୍ରରେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନର ପରିକଳ୍ପନା କରିଥିଲେ ବୋଲି ମୋର ପିତାମହ କହିଥିଲେ ।

୧୯୦୦ ଖ୍ରୀଷ୍ଟାବ୍ଦରେ ଲର୍ଡ କର୍ଜନ ଓଡ଼ିଶା ପରିଦର୍ଶନରେ ଆସିଥିଲେ । ସେତେବେଳେ ମଧ୍ୟ ଓଡ଼ିଶା ଏସୋସିଏସନ୍ ସମ୍ବଲପୁର ଭାଷା - ଆନ୍ଦୋଳନ ବିଷୟରେ ଲର୍ଡ କର୍ଜନଙ୍କୁ କିଛି କହି ନ ଥିଲେ । ଭାଷା ଆନ୍ଦୋଳନର ନେତାମାନଙ୍କୁ କର୍ଜନଙ୍କ ସହିତ ସାକ୍ଷାତ କରିବାକୁ ନିମନ୍ତ୍ରଣ କରି ନଥିଲେ । ଅବଶ୍ୟ ମଧୁବାବୁ ସମ୍ବଲପୁର ଜନତାର ନ୍ୟାର୍ଯ୍ୟ ଦାବି ପ୍ରତି ବଡ଼ଲାଟଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ । ୧୯୦୧ ଖ୍ରୀଷ୍ଟାବ୍ଦରେ ଫ୍ରେଜର ସାହେବ ସମ୍ବଲପୁର ପରିଦର୍ଶନରେ ଆସିଲେ । ସମ୍ବଲପୁର ଜନତା ତାଙ୍କୁ ସହର ମଝିରେ ବ୍ରହ୍ମପୁରା ମନ୍ଦିର ସମ୍ମୁଖରେ ସମ୍ପୂର୍ଣ୍ଣ ବୈଦିକ ରୀତିରେ ଏକ ଭବ୍ୟ ଏବଂ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଦେଇଥିଲେ । ଫ୍ରେଜର ସାହେବ ସମ୍ବଲପୁରବାସୀ ସରଳ ବିଶ୍ୱାସୀ ଜନତାର ସ୍ନେହସିକ୍ତ ବ୍ୟବହାରରେ ମୁଗ୍ଧ ହୋଇଗଲେ । ତାଙ୍କ ସୁପାରିଶ କ୍ରମେ ସମ୍ବଲପୁରରେ ଓଡ଼ିଆ ଭାଷାର ପୁନଃ ପ୍ରଚଳନ ସମ୍ଭବ ହେଲା ।

# ସଭାପତି ଉତ୍କଳ ସମ୍ମିଳନୀ , ଅନୁଗୋଳ ଶାଖା

# ଆମ କଥିତ ଓ ଲିଖିତ ଭାଷା : କେତେ ଛଳନା, କେତେ ବାସ୍ତବତା

ସୁବାସ ଚନ୍ଦ୍ର ପାତ୍ର

କୌଣସି ଭାଷାରେ ଲିଖିତ ଏବଂ କଥିତ ପ୍ରକାଶ ମଧ୍ୟରେ ଏତେ ବ୍ୟବଧାନ ଥାଇପାରେ, ତା' କେବଳ ଆମ ଭାଷାକୁ ଦେଖିଲେ ବା ଶୁଣିଲେ ଜାଣିହେବ । ଅବଶ୍ୟ ଏହା ପଛରେ କ'ଣ ଯୁକ୍ତି ବା କାରଣ ଅଛି, ଜଣାନାହିଁ । କିନ୍ତୁ ସତଟା ହେଲା ଆମେ ଗୋଟିଏ ପ୍ରକାର କହୁଁ ଏବଂ ଅନ୍ୟ ପ୍ରକାର ଲେଖୁଁ । କହିଲା ବେଳେ ସବୁ ଠିକ୍ ଚାଲିଥାଏ, ମାତ୍ର ହାତରେ କଲମଟିଏ ବା ମାଇକ୍‌ଟି ପଡ଼ିଗଲେ ସବୁ ବଦଳିଯାଏ । ବେଳେବେଳେ କିଛି ନିର୍ଦ୍ଦିଷ୍ଟ ଲୋକ ଦର୍ଶକ ଗହଣରେ ବସି ଗୋଟାଏ ପ୍ରକାର ଭାଷା କହୁଥିଲା ବେଳେ ହଠାତ୍ କୌଣସି କାରଣରୁ ମଞ୍ଚକୁ ଯାଇ କିଛି କହିଲା ବେଳେ ତାଙ୍କ ଭାଷାରେ (ଓଡ଼ିଆରେ) ଏମିତି ବିବର୍ତ୍ତନ ଘଟେ ଯେ ସ୍ୱୟଂ ଡାରଉଇନ୍ ଏ ଘଟଣା ଦେଖିଲେ ଲଜ୍ଜିତ ହେବେ ।

ଏହି କଥିତ ଏବଂ ଲିଖିତ ପ୍ରକାଶ ଭିତରେ ଯଦି ଆମେ ଏମିତି ବ୍ୟବଧାନ ରଖିଚାଲୁ ତେବେ ଅନ୍ୟ ଭାଷାଭାଷୀ ଲୋକେ ଆମକୁ ଭାଷା-ଭ'ଣ୍ଡ କହିଲେ ଆମେ ଦୁଃଖିତ ହେବା ଉଚିତ ହବନି । ଏହି ବ୍ୟବଧାନ ଦିନକୁ ଦିନ ଏମିତି ବଢ଼ି ଚାଲିଛି ଯେ ଆଜି ଅନେକ ଶିକ୍ଷିତ ଓଡ଼ିଆପୁଅ ଦି'ପଦ ଓଡ଼ିଆରେ ଲେଖିବାକୁ ସାହସ କରୁନାହାନ୍ତି । କିମିତି ଲାଗୁଚି ଆମେ ଆମ ଭାଷାଠୁ ଦୂରେଇ ଯାଉଚୁ ଏବଂ ପ୍ରକାରନ୍ତରେ ଭାଷାର ବହୁତ କ୍ଷତି କରୁଚୁ । ଆମେ କେତେ ଦୁରେଇଚୁ ତା'ର ଗୋଟିଏ ଜ୍ୱଳନ୍ତ ଏବଂ ହାସ୍ୟାସ୍ପଦ ଉଦାହରଣ ହେଲା ଆକାଶବାଣୀରେ ଖବର ପଢୁଥିବା ଲୋକଟିର ପ୍ରାରମ୍ଭିକ ଘୋଷଣା- ''ଆକାଶବାଣୀ, ଖବର ପଢୁଛନ୍ତି ଅମୂକ...।'' ନିଜେ ଖବର ପଢ଼ି ନିଜ ପାଇଁ ଯଦି 'ପଢୁଛନ୍ତି' ବ୍ୟବହାର କରାଯିବ, ତାହାହେଲେ ଅନ୍ୟ ଜଣେ ପଢୁଥିବା ବେଳେ ତାକୁ ପ୍ରକାଶ କରିବାକୁ ଆମେ କ'ଣ ବ୍ୟବହାର କରିବୁ ? ଅବଶ୍ୟ କହିବା ବାହୁଲ୍ୟ ଯେ ପଡ଼ୋଶୀ ପଶ୍ଚିମ ବଂଗରେ ଏ ସ୍ଥଳରେ ସେମାନେ କହନ୍ତି-''ଖବର ପଢ଼ଛି ଅମୂକ...।'' ଅର୍ଥାତ୍ ଆମ ଭାଷାରେ ତାକୁ ''ଖବର ପଢୁଛି'' କହିଲେ ଠିକ୍ ହୁଅନ୍ତା ।

ଅସଲ କଥା ହେଲା ଆମେ କେତେ ଦିନ ସଂସ୍କୃତର କ୍ରୀତଦାସ ହୋଇ ରହିବା । ଏ ଗୋଲାମି ଏବଂ ତଜ୍ଜନିତ ଭଣ୍ଡାମି ଏବଂ ଆତ୍ମ ପ୍ରତାରଣା କେତେ ଦିନ ଚାଲିବ ? କେତେଦିନ ଆମେ ମଞ୍ଚତଳେ ଗୋଟାଏ ପ୍ରକାରେ ଏବଂ ମଞ୍ଚ ଉପରେ ଅନ୍ୟ ପ୍ରକାରେ କହି ଚାଲିବା ? ଏବେ ଆମ ଭାଷାକୁ ନେଇ ଏକ ଗଣ ଆନ୍ଦୋଳନର 'ଉଦ୍ୟମ ଚାଲିଥିଲାବେଳେ ଆପାତତଃ ଏହି ଦିଗଟିକୁ ଗୁରୁତ୍ୱ ଦିଆଯାଉ, ନହେଲେ ଆମରି ଭାଷା ଆମଠୁ ବହୁତ ଦୂରକୁ ଚାଲିଯିବ, ଖାଲି କେତେକ ମୁଷ୍ଟିମେୟ ପେଶାଦାର ଲେଖକଙ୍କ କଲମ ମୁନରେ କ୍ରୁଶବିଦ୍ଧ ହେବାପାଇଁ । ତାହା ଆଉ ଜନତାର ଭାଷା ହୋଇ ରହିବନି ।

ଅବଶ୍ୟ ଏହାଦ୍ୱାରା ସଂସ୍କୃତଜାତ ବିଶୁଦ୍ଧ ଓଡ଼ିଆ ଭାଷାକୁ ନିର୍ବାସିତ କରାଯାଉ ନାହିଁ । କିନ୍ତୁ ସେ ପ୍ରକାର ଶବ୍ଦଗୁଡ଼ିକର କ୍ଷେତ୍ର ଅଲଗା-ଯେମିତି ସାହିତ୍ୟ ସମାଲୋଚନା, ବିଜ୍ଞାନ-କାରିଗରୀ, ଦାର୍ଶନିକ ଆଲୋଚନା ଇତ୍ୟାଦି । କିନ୍ତୁ ସେ ପ୍ରକାର ଶବ୍ଦ ଆଡ଼ମ୍ବର, ଗଣ ମାଧମକୁ ଓହ୍ଲେଇ ଆଣି ଆମେ ଆମ ଭାଷାକୁ ଜନତାଙ୍କ ପାଖକୁ ନଉଚୁ କି ସେମାନଙ୍କ ଠାରୁ ଦୂରେଇ ଦଉଚୁ ତାହା ବିଚାର କରିବା କଥା । ଏଣେ ଖବର କାଗଜ, ରେଡ଼ିଓ, ଟେଲିଭିଜନ ଇତ୍ୟାଦିକୁ ଗଣମାଧ୍ୟମ କୁହାଯିବ, ତେଣେ ଏମିତି ଭାଷାରେ ସେଗୁଡ଼ିକ ପରିବେଷଣ କରାଯିବ, ଯାହା ଦେଖିଲେ ବା ଶୁଣିଲେ ଜଣାପଡ଼େନି, ସେଗୁଡ଼ିକ 'ଗଣ' ପାଇଁ ପାଇଁ ନା ନିର୍ଦ୍ଦିଷ୍ଟ କିଛି ଉଚ୍ଚଶିକ୍ଷିତ ପାଠକପାଠିକା ବା ଶ୍ରୋତାଗୋଷ୍ଠୀଙ୍କ ଖୋରକ ପାଇଁ । ବେଳେବେଳେ

ଦୂରଦର୍ଶନରୁ ସମ୍ବାଦ ପରିବେଷଣ ବେଳେ ହଠାତ୍ ମଝିରେ ସମ୍ବାଦ ପାଠକ ଯେମିତି ଉପେନ୍ଦ୍ର ଭଞ୍ଜ ପାଲଟିଯାନ୍ତି ବାସ୍ତବିକ ତାହା ଅନେକଙ୍କୁ ଆମୋଦିତ କରେ । ଖବର ମୋଟାମୋଟି ଠିକ୍ ପଢୁଥିବେ, ହଠାତ୍ ପଡ଼ିଗଲା ରଜପର୍ବର ଆଗମନ କଥା । ସମ୍ବାଦ ପାଠକ (ନା ଲେଖକ !) ହଠାତ୍ ଗଦ୍‌ଗଦ୍ ହୋଇ ପଡ଼ନ୍ତି ଏବଂ ପିଲାକାଳେ 'ରଜପର୍ବ' ଲେଖିଥିବା ରଚନାରୁ ଦୁଇ ଚାରି ଧାଡ଼ି ମାଡ଼ି ଆସେ । ସାଂଗେସାଂଗେ 'ଦ୍ୟୋତକ', 'ଧରଣୀ', 'ସମ୍ଭାର', 'ମନୋଜ୍ଞ' ଜାତୀୟ ଶବ୍ଦଗୁଡ଼ିକ ସମ୍ବାଦ ଭିତରକୁ ଅନୁପ୍ରବେଶ କରେ । ନିପଟ ମଫସଲ ଗାଁରେ ଶୁଣୁଥିବା ମାମୁଲି ଚାଷୀଟିଏ ତା'ର ନିଜ ପର୍ବକୁ ହଠାତ୍ ସମ୍ବାଦ ପାଠକ କାହିଁକି ସେହି ସଂସ୍କୃତର କାଠଗଡ଼ା ଭିତରକୁ ଠେଲିଦେଲେ, ବୁଝି ପାରିନଥିବ ବିଚରା ।

ଖବରକାଗଜର ଅବସ୍ଥା ମଧ୍ୟ ସେଇଆ । ଏ ଭଳି ଏକ ଗଣ ମାଧ୍ୟମ ଯାହାର କ୍ଷେତ୍ର ସୁଦୂର ଗାଁର ପାନ ଦୋକାନ ଯାଏଁ ବ୍ୟାପ୍ତ, ସେଥିରେ କିଛିକିଛି ଲେଖା ଯେମିତି ଢଂଗରେ ଲେଖାଯାଉଚି ସେ ପ୍ରକାର ରୂପରେ ନ ଛାପି ବରଂ ସେଗୁଡ଼ିକ କୌଣସି ଏକ ପତ୍ରିକାରେ (ଯାହାର ପାଠକମାନେ ଉଚ୍ଚଶିକ୍ଷିତ ଓ ରୁଚିଶୀଳ) ପ୍ରକାଶ କରିଥିଲେ ଭଲ ହୋଇଥାନ୍ତା । ନିଜ ମାତୃଭାଷାରେ ଲେଖା ଯାଇଥିବା କୌଣସି ଲେଖାକୁ ପଢ଼ିଲା ବେଳେ ଯଦି ଅଭିଧାନ ଆବଶ୍ୟକ ପଡ଼େ,ତେବେ ଆମେ ଆମ ଭାଷାକୁ କଉ ସ୍ତରରେ ରଖିଚୁ ବୁଝିବାକୁ କଷ୍ଟ ହେବନି ।

ଏହିପରି କ୍ଲିଷ୍ଟ ଏବଂ କାନକୁ ଢୋଢୋ ଶୁଭୁଥିବା ଶବ୍ଦ ଏବଂ ତାହାର ଜଟିଳ ପ୍ରକାଶ ପ୍ରତି ଏକଦା ଇଂରାଜୀ ସାହିତ୍ୟରେ ମଧ୍ୟ ବେଶ୍ କିଛି ଲେଖକଙ୍କର ଆସକ୍ତି ଥିଲା । ଏହାର ସନ୍ତକ ଥିଲେ ଡକ୍ଟର ଜନ୍‌ସନ୍ । ଏହି ଧାରା ଅଷ୍ଟାଦଶ, ଊନବିଂଶ ଏବଂ ବିଂଶ ଶତାବ୍ଦୀର ପ୍ରଥମ ଦଶକଯାଏଁ ଚାଲିଲା । ଆସ୍ତେଆସ୍ତେ ଇଂରାଜୀ ଲେଖକମାନେ ଏହି ପ୍ରକାର ଭାଷା ଓ ଶୈଳୀର ଅବାନ୍ତରତା ଅନୁଭବ କଲେ । ଜନ୍ମନେଲା, ସରଳ ଇଂରାଜୀ । ଇଂରାଜୀ ସରଳ ହେଲା, କିନ୍ତୁ ତା' ଭିତରେ ପଶିଲା ବୁଦ୍ଧିମତ୍ତା, ବ୍ୟଙ୍ଗ ଏବଂ ସର୍ଜନଶୀଳତା, ଅର୍ଥାତ୍ ଏକ ନିର୍ଦ୍ଦିଷ୍ଟ ପ୍ରସଙ୍ଗରେ ବାରମ୍ବାର ବ୍ୟବହୃତ ହୋଇ ଘୋଷରା ହୋଇ ଯାଇଥିବା ଶବ୍ଦଗୁଡ଼ିକ ସ୍ଥାନରେ ନୂତନ ଶବ୍ଦ ବା ଗଠନ ବେଶ ଚତୁରତାର ସହିତ ବ୍ୟବହାର କରାଗଲା । ଆମ ପଦ୍ୟ ସାହିତ୍ୟ ଏ ବିଷୟରେ ବେଶ୍ କିଛିଟା ସଚେତନ ହୋଇ ନିଜକୁ ସଜାଡ଼ି ନେଇ ଉପେନ୍ଦ୍ର ଭଞ୍ଜଙ୍କ କବଳରୁ ମୁକ୍ତ ହୋଇଥିଲା ବେଳେ ଗଦ୍ୟ ସାହିତ୍ୟ, ମଞ୍ଚ ଭାଷା ଏବଂ ସାମ୍ବାଦିକତା ସେହି ସ୍ତରରେ ଏବେ ବି ରହିଚି ।

ଆମ ଖବରକାଗଜ ଏବଂ ଗଦ୍ୟ ସାହିତ୍ୟରେ ଯାହା ବି ଲେଖା ପ୍ରକାଶିତ ପାଉଛି ତାହା କୌଣସି ଗୁଣରେ ହେମିଙ୍ଗ୍‌ଓ୍ୱେଙ୍କ ଉପନ୍ୟାସ 'ଓଲ୍‌ଡ ମେନ୍ ଏଣ୍ଡ ଦି ସି'ଠୁ ବଳି ପଡ଼ିବନି । ଶହେଠୁ କମ୍ ପୃଷ୍ଠାରେ ଲେଖା ହୋଇଥିବା ଏହି ନୋବେଲ୍ ପୁରସ୍କାରପ୍ରାପ୍ତ ଉପନ୍ୟାସଟି ପଢ଼ିଲାବେଳେ ଅଭିଧାନ ରୂପକ ପସ୍ତକଟି ଆଦୌ ଦରକାରେ ଆସେ ନାହିଁ । ଏକ ବିଦେଶୀ ଭାଷାରେ ଲେଖା ହୋଇଥିବା ଏକ ଉପନ୍ୟାସ ପଢ଼ିଲା ବେଳେ ଅଭିଧାନ ଦରକାର ହଉ ନଥିଲା ଭେଲ ନିଜ ମାତୃଭାଷାରେ ଲେଖା ହୋଇଥିବା ଏକ ଲେଖା ପଢ଼ିବାକୁ କାହିଁକି ଅଭିଧାନ ଦରକାର ପଡ଼ିବ ? କୁହାଯାଏ ଏହି ଉପନ୍ୟାସର ସରଳତାହିଁ ଏହାର ଗୌରବ । ସରଳ ତଥା ନୂତନ ଭାବରେ ଲେଖିବାର ବି ଏକ ବାହାଦୂରୀ ଅଛି । ମୋର ଧାରଣା ଆମର ତଥାକଥିତ ସାମ୍ବାଦିକ ଏବଂ ଗଦ୍ୟ ଲେଖକମାନେ ସରଳ ତଥା ନୂତନ ଭଙ୍ଗୀରେ ଓଡ଼ିଆ ଭାଷା ଲେଖିବାକୁ ଅସମର୍ଥ ହେଉଥିବାରୁ ଗତାନୁଗତିକ କିନ୍ତୁ କ୍ଲିଷ୍ଟ ଶବ୍ଦମାନଙ୍କର ଆଶ୍ରୟ ନିଅନ୍ତି ।

ଭାଷାର ବଡ଼ ଅକର୍ଷଣ ହେଲା ତା'ର ଅନନୁମେୟତା । ଅର୍ଥାତ୍ ଆପଣ ଗୋଟାଏ ବାକ୍ୟର ଅଧା ଲେଖିଲା ବା କହିଲା ବେଳକୁ ବାକି ଅଧା ଯଦି ପାଠକ ବା ଶ୍ରୋତା କହିଦିଏ ତା'ହେଲେ ଆପଣଙ୍କ କହିବାର ଆଉ ରହିଲା କ'ଣ ? ଓଡ଼ିଆ ଗଦ୍ୟର ଅବସ୍ଥା ଆଜି ସେଇଆ । ଏଥିରେ ନାହିଁ ନୂତନତ୍ୱ, ନାହିଁ 'ସବୁଜତା',

ନାହିଁ ସତେଜତା । ସବୁକିଛି ଯିମିତି ବାସିମଡ଼ା । ଗୋଟାଏ ଉଦାହରଣ ନିଆଯାଉ ଏକ ଅତି ଗୁରୁତ୍ୱପୂର୍ଣ୍ଣ ଜାତୀୟ ବା ଅର୍ନ୍ତଜାତୀୟ ଖବରର ବିଭିନ୍ନ ପ୍ରାଦେଶିକ ଭାଷାରେ ପରିବେଷଣକୁ ଲକ୍ଷ୍ୟ କରାଯାଉ । ବିଶେଷତଃ ବଂଗଳା କିମ୍ବା ହିନ୍ଦୀ ଖବରକାଗଜ ପୃଷ୍ଠାରେ । ଅନ୍ତତଃ ଆମେ ଆମର ଲିଖିତ ଓଡ଼ିଆକୁ କଉ ସ୍ତରରେ ରଖିଚୁ ଧରା ପଡ଼ିଯିବ । ନିତାନ୍ତ ଗାଉଁଲି ଏବଂ କଥିତ ଶବ୍ଦଗୁଡ଼ିକ ଅତି ଗୁରୁତ୍ୱପୂର୍ଣ୍ଣ ସ୍ଥାନମାନଙ୍କରେ ବ୍ୟବହାର କରି ସେମାନେ ଏହି ଅନନୁମେୟତାକୁ ଏତେ ସୁନ୍ଦର ସ୍ୱାଭାବିକ କରି ତୋଳୁଥିବା ବେଳେ ଆମର ଲେଖା କିନ୍ତୁ ଗତାନୁଗତିକତାର ବନ୍ଦୀଶାଳାରେ । କେତେକ ନିର୍ଦ୍ଦିଷ୍ଟ ଖବରର ମୂଳ ଉତ୍ସ ଇଂରାଜୀ ହୋଇଥିବାରୁ, ସେମାନେ କେଉଁ ବାକ୍ୟଗୁଡ଼ିକ କେମିତି ଲେଖିଲେ ଏବଂ ଆମେ କିମିତି ଲେଖିଲୁ-ଫରକଟା ସହଜରେ ଜଣା ପଡ଼ିଯିବ । ଏଇଟା ଗୋଟିଏ ଛୋଟ ତାଲିମ୍‌ର କାମ କରିବ । କିନ୍ତୁ ଆଶଙ୍କା ଏତିକି ଯେ ଆମେ ଏତେ ମାତ୍ରାରେ ଶୁଦ୍ଧ ଶବ୍ଦମାନଙ୍କରେ କ୍ରୀତଦାସ ହୋଇଗଲୁଣି ଯେ ଆମେ ଭାବି ପାରୁନୁ ଯେ ନିତାନ୍ତ କଥିତ ଏବଂ ଗାଉଁଲୀ ଶବ୍ଦମାନଙ୍କୁ ନେଇ ସୁନ୍ଦର ଗଦ୍ୟ ସୃଷ୍ଟି କରିହେବ ।

ଭାଷାକୁ ଯେତେ କଥିତ ସ୍ତରକୁ ଅଣାଯିବ ତାହା ସେତେ ଜୀବନ୍ତ ଏବଂ ସ୍ୱାଭାବିକ ହେବ । ଅବଶ୍ୟ ଆମ ଭାଷାକୁ ଏମିତ କୃତ୍ରିମତାର ରୂପ ଦେବାରେ ଆମ ଓଡ଼ିଆ ଶିକ୍ଷକମାନଙ୍କର ଅବଦାନ ମଧ୍ୟ କିଛି କମ୍ ନୁହେଁ । କ୍ଲାସ୍ ବାହାରେ ସ୍ୱାଭାବିକ ଓଡ଼ିଆ କହୁଥିବା ଲୋକଟିଏ କ୍ଲାସ୍ ଭିତରେ ପଶିଗଲେ ସବୁ ବଦଳିଯାଏ । ଆରମ୍ଭ ହୁଏ ଭାଷାର ଆଡ଼ମ୍ବର । ପିଲାଏ ଭାବନ୍ତି ଓଡ଼ିଆ ଭାଷାରେ ଏମିତି ଲେଖିବାକୁ ବା କହିବାକୁ ପଡ଼େ । ଅନେକ ସମୟରେ ଶିକ୍ଷକମାନେ ପରାମର୍ଶ ଦିଅନ୍ତି କିମିତି ରଚନା ଲେଖିବ, ଦୀର୍ଘ ଉତ୍ତର ଲେଖିବ । ସବୁବେଳେ ଗୁରୁତ୍ୱ ସେହି ସଂସ୍କୃତଜ ଶୁଦ୍ଧ ଶବ୍ଦରାଜି ଉପରେ । ପିଲାମାନଙ୍କ ମନରେ ଧାରଣା ଜନ୍ମେ ଯେ ବୋଧହୁଏ କାଳିଦାସ ଏବଂ ଉପେନ୍ଦ୍ର ଭଞ୍ଜଙ୍କୁ ଆୟତ୍ତ ନକଲା ଯାଏ ନିଜ ମାତୃଭାଷାରେ କିଛି ଲେଖିହେବନି । ପରିଣାମ ସ୍ୱରୂପ ନିଜର ତଥା କଥିତ ମାତୃଭାଷା ପ୍ରତି ଜନ୍ମେ ଡର । ଏହି ଡର ଏବଂ ତତ୍‌ଜନିତ ଅପାରଗତା ଛାତ୍ରମାନଙ୍କୁ ଠେଲିଦିଏ ବଜାରର ମାନେ ବହିମାନଙ୍କ ପାଖକୁ ।

ଲିଖିତ ଭାଷାକୁ କ୍ଲିଷ୍ଟ ଏବଂ କୃତ୍ରିମ ସ୍ତରରେ ରଖିଲେ ପରିଣାମ କେତେ ଭୟାବହ ହୁଏ ତାହର ଜ୍ୱଳନ୍ତ ଉଦାହରଣ ମିଳିବ ଏବର୍ଷ ମ୍ୟାଟ୍ରିକ୍ ଫଳ ସମୀକ୍ଷାରୁ । ସମୀକ୍ଷାରେ କୁହାଯାଇଛି, ଇଂରାଜୀରେ ଅଧିକାଂଶ ପିଲା ଦୁର୍ବଳ ହୋଇଥିଲା ବେଳେ ମାତୃଭାଷାରେ ପଶ୍ଚିମାଞ୍ଚଳ ପିଲାମାନେ ଅଧିକ ଦୁର୍ବଳ । ଏହି ଦୁର୍ବଳତା ପୂର୍ବ ଲିଖିତ କାରଣର ଫଳ ଛଡ଼ା କିଛି ନୁହେଁ । ନିଜର ଆଞ୍ଚଳିକ ଭାଷା ଛାଡ଼ି ସାଧାରଣ ଭାବରେ ଓଡ଼ିଶାର ଶିକ୍ଷିତ ଲୋକମାନେ ଯେଉଁ ଓଡ଼ିଆ କହନ୍ତି, ସେମାନେ ସେହି ଓଡ଼ିଆରେ ଖୁସିରେ ଉତ୍ତର ଗୁଡ଼ିକ ଲେଖିପାରନ୍ତେ । କିନ୍ତୁ ସେମାନଙ୍କର ଆଶଂକା ଏ ଓଡ଼ିଆ, ଖାତାରେ ଲେଖିବା ଉଚିତ୍ ହବତ ? ଦ୍ୱନ୍ଦ୍ୱରେ ପଡ଼ି ପିଲାଏ ଯା'ନ୍ତି ମାନେ ବହି ପାଖକୁ । କିଂତୁ ସ୍ୱାଭିମାନୀ ପଶ୍ଚିମାଞ୍ଚଳ ପିଲାଏଁ ଉପକୂଳବର୍ତ୍ତୀ ଇଲାକାର କୃତ୍ରିମ ଓଡ଼ିଆକୁ କେତେ ବା ଘୋଷନ୍ତେ ? ଫଳ -ନିଜ ମାତୃଭାଷାରେ ଫେଲ । ବୋଧହୁଏ ଇଂରାଜୀ ଭାଷା ଶିକ୍ଷା ପ୍ରତିଷ୍ଠାନ ପରି ଏବେ ଓଡ଼ିଶାରେ ଓଡ଼ିଆ ଭାଷା ଶିକ୍ଷା ପ୍ରତିଷ୍ଠାନଟିଏ ଖୋଲିବାକୁ ପଡ଼ିବ ।

ଗତ ୮୦ ଦଶକରେ ଇଂରାଜୀର ପ୍ରାଦୁର୍ଭାବ ଯୋଗୁଁ କାଳେ ଓଡ଼ିଆରେ ଜ୍ଞାନ ଏବଂ ଓଡ଼ିଶାର ପ୍ରାଧାନ୍ୟ କମି ଯାଉଥିବାରୁ ହାଇସ୍କୁଲ ସ୍ତରରେ ଇଂରାଜୀ ୨୦୦ ନମ୍ବର ସ୍ଥାନରେ ୧୦୦ ନମ୍ବରକୁ କମାଇ ଦିଆଗଲା । ଅର୍ଥାତ୍ ମାତୃଭାଷା ଓଡ଼ିଆ ଏବଂ ଇଂରାଜୀକୁ ସମାନ କରି ଦିଆଗଲା । ଏଣେ କଲେଜ୍‌ରେ +୨ ବାଣିଜ୍ୟ ଏବଂ +୩ ବିଜ୍ଞାନରେ ମଧ୍ୟ ଓଡ଼ିଆ ପ୍ରଚଳନ କରାଗଲା । ଏହା ଭିତରେ ୨୫ ବର୍ଷ ବିତି ଯାଇଛି, କେତେ ଭଞ୍ଜ ସୃଷ୍ଟି ହେଲେଣି ? ଗୋଟିଏ ଭାଷାର ନମ୍ବର କମାଇଲେ ଆଉ ଗୋଟିଏ ଭାଷାର ଜ୍ଞାନ ବଢ଼ିବ ଏହା କି ପ୍ରକାର ଯୁକ୍ତି ବୁଝି ହେଉନାହିଁ । ଗୋଟିଏ ଭାଷାକୁ ଅଛୁଆଁ କଲେ ଅନ୍ୟ ଭାଷାର, ସେ ପୁଣି ମାତୃଭାଷା, ଦକ୍ଷତା ବଢ଼ିବ-ଏ ବିଚାର ସହ ମୁଁ ଏକମତ ନୁହେଁ । ବରଂ ଭାରତୀୟ ପରିବେଶରେ

ଇଂରାଜୀ ଏବଂ ଓଡ଼ିଆ ପରସ୍ପର ପରିପୂରକ ହୋଇପାରିବ । ଆମେ ସିନା ସିଲାବସ୍‌ରୁ, ଅଭିଧାନରୁ, ଲେଖା ଲେଖିରୁ ଇଂରାଜୀ ବାହାର କରିଦେବା, କିନ୍ତୁ ଆମ ବାତାବରଣରୁ ତାକୁ ହଟାଇବା କିପରି ? ଖାଲି ପରା ସାଇକେଲ୍‌ରେ ୬୫ଟି ଇଂରାଜୀ ଶବ୍ଦ ଅଛି, ଯାହା ପିଲାଏ ଇଂରାଜୀ ଶିଖିବା ପୂର୍ବରୁ ଜାଣି ଯାଇଥା'ନ୍ତି । ଯେହେତୁ ଆମ ପରିବେଶରେ ଏତେ ଇଂରାଜୀ ଅଛି, ଆମେ ବରଂ ଆମର ଇଂରାଜୀ ଜ୍ଞାନକୁ ଓଡ଼ିଆ ଭାଷାକୁ ସମୃଦ୍ଧ କରିବାରେ ବ୍ୟବହାର କରିପାର୍‌ନ୍ତୁ । ଇଂରାଜୀରେ ଅନେକ ଗଠନ ଏବଂ ଋଢ଼ିକୁ ଆମେ ଆମ ଭାଷାରେ ପ୍ରଚଳନ କରି ପରବର୍ତ୍ତୀ କାଳରେ ଆମର ନିଜସ୍ୱ ଗଠନ ବୋଲି ଭାବି ପାରିବା । ହିନ୍ଦିରେ ଏକଥା ସେମାନେ କେବେଠୁ କଲେଣି, ଯଥା- to be caught redhanded, it doesn't make any difference, ଇତ୍ୟାଦି, ଯାହାକୁ ସେମାନେ 'ରଙ୍ଗେ ହାତ୍ ପକଡ୍ ଯାନା', 'କୁଛ ଫରକ୍ ନେହିଁ ପଡ଼ତା', ଇତ୍ୟାଦି ରୂପରେ ବ୍ୟବହାର କରୁଛନ୍ତି । ଆଦୌ ଇଂରାଜୀ ଜାଣି ନଥିବା, ହିନ୍ଦି କହୁଥିବା ଲୋକଟିଏ ଭାବୁଚି ଏ ଗଠନ ତା' ଭାଷାର ନିଜସ୍ୱ ।

ଭାଷା ପ୍ରତି ପ୍ରତ୍ୟେକ ଲୋକର ସ୍ୱାଭିମାନ ରହିବା ଖରାପ କଥା ନୁହେଁ, କିନ୍ତୁ ବେଳେବେଳେ ସ୍ୱାଭିମାନ ଜାଣତରେ ବା ଅଜାଣତରେ ଉଗ୍ର ରୂପ ନେଇ ମତାନ୍ଧତାରେ ପରିଣତ ହୁଏ । ଏବଂ ତା' ପରେ ସୃଷ୍ଟି ହୁଏ ଭାଷା-ଅସ୍ପୃଶ୍ୟତା । ଯିମିତି ଆମର କିଛି ଭାଇମାନେ ଅଛନ୍ତି ଯେଉଁମାନେ ଆମ କଥାବାର୍ତ୍ତାରେ ବା ଲେଖାଲେଖିରୁ ଟାଣି ଓଟାରି ସବୁ ଇଂରାଜୀ ଶବ୍ଦ ବାହାର କରିବାରେ ବ୍ୟସ୍ତ । ଖାଲି ସେତିକି ନୁହେଁ ପ୍ରତ୍ୟେକ ଇଂରାଜୀ ଶବ୍ଦର ଓଡ଼ିଆ ପ୍ରତିଶବ୍ଦ ଅଣ୍ଡାଳି ଅଣ୍ଡାଳି ସେମାନେ କେତେ ରାତି ଶୋଇ ନାହାନ୍ତି । କଥା ହେଲା ଯଦି ପ୍ରକୃତରେ ଆମେ ଭାରତୀୟ ସଂସ୍କୃତିର ଉପଯୁକ୍ତ ଦାୟାଦ ବୋଲି ଦାବି କରୁ, ତା'ହେଲେ ଆମ ଭାଷା, ଭାରତୀୟ ସଂସ୍କୃତିର ପ୍ରତିଫଳନ ହେଲେ କ୍ଷତି କ'ଣ ? ଅର୍ଥାତ୍ ବିଭିନ୍ନ ଭାଷାର ଶବ୍ଦକୁ ନେଇ ଆମେ ଆମ ଭାଷାକୁ ସମୃଦ୍ଧ କରିବା । ବିଶେଷତଃ ଯେଉଁ ଶବ୍ଦଗୁଡ଼ିକ କ୍ଷୀରରେ ପାଣି ମିଶି ରହିଲା ପରି ରହିଚି, ତା'ର ଅଯଥା ପ୍ରତିଶବ୍ଦ ଖୋଜି ବାହାର କରି ଲାଭ କ'ଣ ? ଯେମିତି ଟେଲିଭିଜନ୍,ଆଣ୍ଟିନା, ରେଡ଼ିଓ, ଟେବୁଲ, ଚେୟାର ଏବଂ ସାଇକେଲ୍ ଦେହରେ ଥିବା ୬୫ଟି ଇଂରାଜୀ ଶବ୍ଦ । ଖାଲି ବସ୍ତୁବାଚକ ଶବ୍ଦ ନୁହେଁ, ଏମିତି ଆହୁରି ଅନ୍ୟାନ୍ୟ ଶବ୍ଦ ଅଛି ଯାହା ମୋଟାମୋଟି ସମସ୍ତେ ବୁଝି ପାରୁଛନ୍ତି । ବେଳେବେଳେ ଏହି ଅଯଥା ପ୍ରତିଶବ୍ଦ ବାହାର କରିବାର ଚେଷ୍ଟା ଆମୋଦଦାୟକ ପରିସ୍ଥିତି ସୃଷ୍ଟିକରେ- ଯେମିତି ଭୁବନେଶ୍ୱରର ସେହି ରିକ୍ସାବାଲା-''ମହାଲେଖାକାରଙ୍କ କାର୍ଯ୍ୟାଳୟ ଯିବୁ ?'', ''ନାଇଁ'' । ''ଏ.ଜି. ଅଫିସ ଯିବୁ ?'' ''ଚାଲନ୍ତୁ ।''

କେଉଁ ଭାଷାରେ, ଅନ୍ୟ ଭାଷା ନାହିଁ ଯେ ଆମେ ଏତେ ବ୍ୟସ୍ତ ହେବା । ଇଂରାଜୀ କଥା ଦେଖନ୍ତୁ । ଇଂରାଜୀ ଲିପିରେ ଲେଖା ଏବଂ ବହୁଳ ଭାବରେ ପ୍ରଚଳିତ ସବୁ ଶବ୍ଦ ଯଥା - Restaurant, Cafe (French); persona (Latin); harakiriri (Japanese) ଇତ୍ୟାଦି । ସେମିତି persona nongrata, Locus Standi, Suo motto ଇତ୍ୟାଦି । କିନ୍ତୁ କେହି କେବେ ଜଣେ ଇଂରେଜ ଲୋକ ଚିତ୍କାର କରବାର ଶୁଣିଛନ୍ତି କି ଯେ ଏସବୁ ଶବ୍ଦ ବା ପଦକୁ ଇଂରାଜୀ ଭାଷା ଭଣ୍ଡାରରୁ ବାହାର କରି ଦିଆଯାଉ ? କୌଣସି ଇଂରେଜ ଲୋକ ଏହି ଶବ୍ଦମାନଙ୍କର ଇଂରାଜୀ ପ୍ରତିଶବ୍ଦ ବାହାର କରିବାର ଚେଷ୍ଟା କରିଛନ୍ତି କି ? ବରଂ ଏମିତି ଅନେକ ଦେଶର ଅନେକ ଶବ୍ଦ ମାନଙ୍କୁ (ତା' ଭିତରେ ଆମ ଶବ୍ଦମାନ -ଯିମିତି ଜଙ୍ଗଲ, ଘେରାଉ, ବନ୍ଦୋବସ୍ତ) ନେଇ ତାଙ୍କର ଅଭିଧାନ ଏବଂ ଭାଷା ଦିନକୁ ଦିନ ସମୃଦ୍ଧ ହଉଥିଲା ବେଳେ ଆମରି ଏଠି ଚାଲିଚି ନିଷ୍କାସନ ପ୍ରକ୍ରିୟା । ତେବେ ନିଷ୍କାସନ ଯଦି ଅତି ଜରୁରୀ ତା' ହେଲେ ଆମ ଭାଷାରୁ ବହୁ ଶବ୍ଦକୁ (ଆରବୀ, ପାର୍ସୀ ଇତ୍ୟାଦି) ନିଷ୍କାସନ କରିବାକୁ ପଡ଼ିବ, ଯାହା ଆମର ନିଜସ୍ୱ ନୁହେଁ ।

ସାଧାରଣ ବଣ୍ଟନ ବ୍ୟବସ୍ଥା ପାଇଁ ଖାଦ୍ୟଶସ୍ୟ କ୍ଷେତ୍ରରେ ଓଡ଼ିଶାର ଭାଗ କମି ଯାଉଛି ବୋଲି

ଆମେ କେନ୍ଦ୍ରକୁ କହୁଛୁ, ''ଆଜ୍ଞା ଆପଣ ଆମକୁ ଯେତିକି ଗରିବ ଭାବୁଛନ୍ତି, ଆମେ ତା'ଠୁ ଅଧିକ ।'' ସତରେ ଅଧିକ ଗରିବ ବୋଲାଇ ହେବା ପାଇଁ କି ବ୍ୟାକୁଳତା । କିନ୍ତୁ ଆମ ଲିଖିତ ଭାଷାର ରାଜକୀୟ ଆଡ଼ମ୍ବରକୁ ଦେଖିଲେ ଆମକୁ କେହି ଗରିବ ବୋଲି ଭବିବେନି । ସାକ୍ଷରରେ ଆମେ କେରଳଠୁ ବହୁ ପଛରେ ଥାଇପାରୁଁ, ଖାଦ୍ୟଶସ୍ୟ ଉତ୍ପାଦନରେ ଆମେ ପଞ୍ଜାବଠୁ ବହୁ ପଛରେ ଥାଇପାରୁଁ, କିନ୍ତୁ ଆମ ଲିଖିତ ଓଡ଼ିଆର ରାଜକୀୟତା ପାଖରେ ଉଭୟ କେରଳ ଓ ପଞ୍ଜାବ ହାର ମାନିଯିବ । ପ୍ରକୃତରେ ଆମର ଦାରିଦ୍ର୍ୟ ଏବଂ ଆମର ନିରକ୍ଷରତା, ଆମ ଲିଖିତ ଓଡ଼ିଆକୁ ଭରପୂର ଉପହାସ କରୁଛି । ତେଣୁ ଲିଖିତ ଓଡ଼ିଆକୁ କଥିତ ସ୍ତରକୁ ଆଣିବା ପାଇଁ ଅନ୍ତତଃ ଏ ଦୁଇଟି କାରଣ କ'ଣ ଯଥେଷ୍ଟ ନୁହେଁ ?

ଏବେ ସରକାରୀ ସ୍ତରରେ ଓଡ଼ିଆର ବାଧ୍ୟତାମୂଳକ ପ୍ରଚଳନ ପାଇଁ କଡ଼ା ନିର୍ଦ୍ଦେଶ । ହେଲେ କଉ ଓଡ଼ିଆ ? ଏହି ରାଜକୀୟ କୃତ୍ରିମ ସଂସ୍କୃତ ସଂସ୍କୃତ ବାସୁଥିବା ଓଡ଼ିଆ, ଯାହାକୁ ଥଟ୍ଟା କରି ପଶ୍ଚିମାଞ୍ଚଳର ଲୋକେ 'କଟକୀ ଓଡ଼ିଆ' ବା 'ବହିର ଓଡ଼ିଆ' ବୋଲି କହନ୍ତି ? ତା' ଯଦି ହୁଏ ଉପକୂଳବର୍ତ୍ତୀ ଏବଂ ପଶ୍ଚିମାଞ୍ଚଳ ମଧ୍ୟରେ ଯଉ ଭାଷାଗତ ଦୂରତ୍ୱ ରହିଛି, ସେଇଟା ଅଯଥାରେ ଆହୁରି ବଢ଼ିଯିବ ଏବଂ ପଶ୍ଚିମାଞ୍ଚଳ ପିଲା ଯିମିତି ଏବର୍ଷ ମ୍ୟାଟ୍ରିକ୍ ପରୀକ୍ଷାରେ ମାତୃଭାଷାରେ ଅଧିକ ଫେଲ୍ ହୋଇଛନ୍ତି, ସେ ହାର ମଧ୍ୟ ଆହୁରି ଅନେକ ବଢ଼ିଯିବ । ଏକେ ତ ସରକାରୀ ଓଡ଼ିଆ ଏବଂ ତା ସହିତ ଗତି କରୁଥିବା ବିଭିନ୍ନ ପରିଭାଷା ଅପ୍ରାକୃତିକ; ଆଉ ତା' ସହିତ ଯଦି ଏବେକାର ଲିଖିତ ଓଡ଼ିଆର ଶୈଳୀ ମିଶିଯାଏ, ତା'ହେଲେ ସୁଦୂର ଗାଁ ଗହଳିର ଖଟିଖିଆମାନଙ୍କୁ ସରକାରଙ୍କ ବିଭିନ୍ନ ଯୋଜନା ଏବଂ ନିର୍ଦ୍ଦେଶ ସମ୍ବଳିତ ଚିଠି ପତ୍ରକୁ ପଢ଼ି ବୁଝେଇବା ପାଇଁ ପ୍ରତି ଗାଁରେ ବୋଧେ ଜଣେ ଜଣେ ବାଖ୍ୟାକାରୀଙ୍କୁ ନିଯୁକ୍ତି ଦେବାକୁ ପଡ଼ିବ । ଏ ପ୍ରଚଳିତ ଧାରାର ଯଦି କିଛି ପରିବର୍ତ୍ତନ କରାନଯାଏ, ସରକାରୀ ଓଡ଼ିଆ ସରକାରୀ ହୋଇ ରହିଯିବ, ତାହା ଜନତାର ଭାଷା ହୋଇ ରହିବ ନାହିଁ । ଫଳ ଏତିକି ହବ-ସରକାର ଏବଂ ଜନତା ଭିତରେ ବ୍ୟବଧାନ ଦିନକୁ ଦିନ ବଢ଼ିଯିବ ।

ଏ କ୍ଳିଷ୍ଟ ଅପ୍ରାକୃତିକ ଲିଖିତ ଓଡ଼ିଆର ପରମ୍ପରା ବହୁତ ଦୀର୍ଘ ଏବଂ ଏହାର ଚେର ମଧ୍ୟ ବହୁତ ଭିତରକୁ ଯାଇଚି । ତେଣୁ ହଠାତ୍ କିଛି ପରିବର୍ତ୍ତନ ହେବ, ଏ ଆଶା କରିବା ବୃଥା । ମୋର ଜଣେ ପରିପକ୍ୱ ବନ୍ଧୁ କହନ୍ତି-''ସେମାନେ ଏହା କିରବେନି ବା କରେଇ ଦେବେନି । ଲିଖିତ ଓଡ଼ିଆ ଆଜି କିଛି ମାଫିଆଙ୍କ ହାତରେ ।'' ଅତି ବିରକ୍ତ ହୋଇ ସେ କହିଲେ- ''ଏଠି ପରା ସମସ୍ତେ 'ପରିସ୍ରା' କରୁଛନ୍ତି କେହି 'ମୁତୁ' ନାହାନ୍ତି । ହୁଏତ ତାଙ୍କର ପରିପକ୍ୱତା ଏ ଆଶଙ୍କାର ମୂଳ । ତେବେ ଆମେ ସମସ୍ତେ ଯଦି ଆମ ଲିଖିତ ଭାଷାର କୃତ୍ରିମତା ଏବଂ କ୍ଳିଷ୍ଟତା ବିଷୟରେ ସଚେତନ ହୋଇ ଭାଷାକୁ ଆମ କଥିତ ସ୍ତରକୁ ଓହ୍ଲେଇ ଆଣିବାକୁ କିଛିକିଛି ଚେଷ୍ଟାକରୁ, ତେବେ କିଛି ବର୍ଷ ପରେ ଲିଖିତ ଓଡ଼ିଆର ରୂପ ହୁଏତ ବଦଳି ଯିବ । କହି ରଖେଁ, କଥିତ ଓଡ଼ିଆ କହିଲେ ଯେ ଯାହାର ଆଞ୍ଚଳିକ ଉପଭାଷାକୁ ଛାଡ଼ି, ଶିକ୍ଷିତ ଓଡ଼ିଆମାନେ ପରସ୍ପର ମଧ୍ୟରେ ଯେମିତି କଥା ହୁଅନ୍ତି, ସେହି କଥା ହିଁ କୁହାଯାଉଚି । ତଥାକଥିତ ବିଶୁଦ୍ଧ ଓଡ଼ିଆର ଲୋପକଥା କୁହାଯାଉ ନାହିଁ; କିନ୍ତୁ ତା'ର କ୍ଷେତ୍ର ସ୍ୱତନ୍ତ୍ର ।

# ଇଂରାଜୀ ବିଭାଗ,
ଫକୀରମୋହନ ମହାବିଦ୍ୟାଳୟ, ବାଲଶ୍ବର

# ଅନୁଭୂତିରୁ ପଦେ

## ଶ୍ରୀ ଚିନ୍ମୟ କୁମାର ଦାସ

ସୁନାମି ପରେ ହଠାତ୍ ସେଦିନ ପାଗଟି କୋହଲା ହୋଇଥିଲା । ତା ସାଂଗକୁ ସଂଜବେଳର ଝିପ୍ ଝିପ୍ ବର୍ଷା ମନ ଓ ଶରୀରକୁ ମାନ୍ଦା କରିଦେଲା । ଅଳସ ସଂଧ୍ୟାକୁ ଅଯଥାରେ ନ କଟେଇବାକୁ ଭାବି ବୁଲିଯାଇଥିଲି ପଡ଼ିଶା ମହାପାତ୍ର ବାବୁଙ୍କ ଘରକୁ । ମହାପାତ୍ର ବାବୁ ବୃତ୍ତିରେ ଇଂଜିନିୟର । ଅମାୟିକ ଭଦ୍ରଲୋକ । ମାତ୍ରଟିକେ ମିତଭାଷୀ ତେଣୁ କର୍ମବ୍ୟସ୍ତ ଜୀବନରେ ଫୁରସତ ମିଳିଲେ କେବେ କେମିତି ଆସର ଜମେ ତାଙ୍କ ଘରେ । ସହଧର୍ମିଣୀ ଭାଉଜ ଉଚ୍ଚଶିକ୍ଷିତା ବେଶ୍ ମାର୍ଜିତ ଏବଂ ରୁଚି ସମ୍ପନ୍ନ ତାଙ୍କ ବ୍ୟବହାର । ମାତ୍ର ଇଂରାଜୀ ମାଧ୍ୟମରେ ଶିକ୍ଷାଲାଭ କରିଥିବାରୁ ମୋ ସହିତ ଟିକେ ମତାନ୍ତର ଘଟେ । ତେଣୁ ଆମ ଆସରଟି ଜମେ ବିଶେଷତଃ ଭାଷା, ସଂସ୍କୃତି, ଶିକ୍ଷା ଓ ସାମାଜିକ ଚାଲିଚଳନକୁ ନେଇ । ମହାପାତ୍ର ବାବୁ ସ୍ୱାଭାବିକ ଭାବେ ମୋ ମତକୁ ନୀରବ ସମର୍ଥନ ଜଣାଉଥିବାରୁ ଅନେକ ସମୟରେ ଚା'କପରେ ଝଡ଼ ସୃଷ୍ଟି ହୁଏ ଏବଂ ପୁଣି ସରିଯାଏ ଅମିମାଂସିତ ଭାବେ କିଛି ସମୟର ବ୍ୟବଧାନରେ, ଘରୁ ଆମ ଶ୍ରୀମତିଙ୍କ ଡ଼ାକରା ପାଇଲେ । କୋହଲା ପାଗରେ ଝିପି ଝିପି ବର୍ଷା ଯୋଗୁଁ ମହକିଲ୍ ଆସିବାର ସମ୍ଭାବନା ନଥିବାରୁ ଭାବିଲି ଆଜି ସଂଜଟି ବେଶ୍ ଜମିବ । ସ୍ୱାଭାବିକ ଭାବେ ଚା' ପାନରେ ଭାଉଜ ଆପ୍ୟାୟିତ କରୁଥିବାବେଳେ ସଦ୍ୟ ପାଠପଢ଼ା ସାରି ଡ୍ରଇଂରୁମ୍‌କୁ ପଶିଆସିଥିଲା କନ୍‌ଭେଣ୍ଟ ସ୍କୁଲରେ ୯ମ ଶ୍ରେଣୀରେ ପଢୁଥିବା ତାଙ୍କର ପୁଅ ସଂଗ୍ରାମ । ଅଙ୍କଲ ନମସ୍କାର କହି ଅଳ୍ପ ହସିଦେଲା ପିଲାଟି । ଯଦିବା ଏଭଳି ସମ୍ଭାଷଣକୁ ନୀତିଗତ ଭାବେ ମୁଁ ସ୍ୱୀକାର କରିପାରୁନଥିଲି ତଥାପି ପିଲାଟି ପଚାରିଥିଲା- ମମି, ପେରକିଆଲ ମାନେ କ'ଣ ? କିଛି ସଂଶୟ ନକରି କହିଥିଲେ ଭାଉଜ । ଏଇ ଦେଖୁନୁ ତୋ ଅଙ୍କଲକୁ । ସେପରା ସବୁବେଳେ କହୁନାହାଁନ୍ତି ଓଡ଼ିଆ ଭାଷାର କଥା, ଓଡ଼ିଆ ଜାତିର କଥା । ଆଉ ଓଡ଼ିଶାର ସୀମା ବିବାଦର କଥା । ଏମାନେ ସବୁ କୁଆଡ଼େ ବିଚ୍ଛିନ୍ନାଞ୍ଚଳକୁ ଉତ୍କଳ ସମ୍ମିଳନୀ ମାଧ୍ୟମରେ ଓଡ଼ିଶାକୁ ଫେରେଇବେ । ସଂକୀର୍ଣ୍ଣ ମନ ମଧ୍ୟରେ ଭାଷା, ଜାତି ଆଉ ସୀମାକୁ ବୁଝୁଥିବା ଲୋକ ମାନଙ୍କୁ ପେରକିଆଲ କହନ୍ତି । ଅନ୍ୟ କେଉଁଠି ହୋଇଥିଲେ ଏମନ୍ତବ୍ୟକୁ ସହଜରେ ହଜମତ ମୁଁ କରିନଥାନ୍ତି । କିନ୍ତୁ ମୁଁ ଜାଣେ ବୁଦ୍ଧିମତୀ ଭାଉଜ ଆମର ଆଲୋଚନା ଜମେଇବାକୁ ଏକ ପରୋକ୍ଷ ଆହ୍ୱାନ ଦେଇଥିଲେ ମତେ । ଆଉ ମୁଁ ମଧ୍ୟ ଏ ସୁଯୋଗ ହାତଛଡ଼ା ନକରି କୂଳ ଲଂଘିବାକୁ ଆରମ୍ଭ କଲି ଏକ ବନ୍ୟା - ପ୍ଳାବିତ ନଈଭଳି । କାରଣ ଭାବୁଥିଲି ଖାଲି ଭାଉଜ କାହିଁକି ଏ ଜାତିର ଅଗଣିତ ମଣିଷ ମାନଙ୍କ ମଧ୍ୟରେ ଏଭଳି ଅସୁମାରୀ ପ୍ରଶ୍ନ ଅମୀମାଂସିତ ଭାବେ ବସାବାନ୍ଧି ରହିଛି । ଭାବିଲି ପଡ଼ିଶା ଘରର ଉଚ୍ଚ ଶିକ୍ଷିତା ଭଦ୍ରମହିଳାଙ୍କ ମଧ୍ୟରୁ ଯଦି ମୁଁ ଏ ହୀନମନ୍ୟତା ଦୂର କରି ପାରୁନି ତେବେ ମୁଁ କଣ ସୈନ୍ୟ ସାଜି ଉଠାଇବି ଏକ ଅସ୍ଥିକଂକାଳସାର ହୃଦୟହୀନ ଅବିବେକୀ ଜାତିକୁ ।

ମୁଁ କିଛି କହିବାର ଉପକ୍ରମ କଲାବେଳକୁ ଇଂରାଜୀ ସହିତ ଖଣ୍ଡି ଓଡ଼ିଆରେ ଗପି ଚାଲିଥିଲେ ଭାଉଜ । ଯାହାର ସାରାଂଶ ଥିଲା ସମଗ୍ର ଦେଶ ଯେତେବେଳେ ସ୍ୱାଧୀନତା ଆନ୍ଦୋଳନରେ ମଗ୍ନ ଥିଲା ତୁମର ତଥାକଥିତ ଓଡ଼ିଆ ବୀରପୁତ୍ରମାନେ ବ୍ୟସ୍ତଥିଲେ ସ୍ୱତନ୍ତ୍ର ଓଡ଼ିଶା ଗଠନରେ । ଯାହାର ଫଳ ସ୍ୱରୂପ

କୌଣସି ଓଡ଼ିଆ କଣ ସ୍ୱାଧୀନତା ଆନ୍ଦୋଳନର ପୁରୋଧା ହୋଇ ପାରିଛନ୍ତି କି ? ଆହୁରି ମଧ୍ୟ ୧୯୩୬ ମସିହାରେ ଏପ୍ରିଲ ଫୁଲ ଦିନ ତୁମ ମାନଙ୍କୁ ବୋକା ବନେଇ ନଗ୍ନ ଓ ଭଗ୍ନ କଳେବରର ଉତ୍କଳ ରାଜ୍ୟ ତୁମକୁ ଉପହାର ଦେବାରେ ତମ ନେତାମାନେ କ୍ଷମତାର ଲାଳସାରେ ମୁଣ୍ଡରେ ପାଟଶାଢ଼ୀ ପିନ୍ଧିବାକୁ ବ୍ୟଗ୍ର ହେଲେ । ଯଦିବା କତିପୟ ଉତ୍କଳ ସମ୍ମିଳନୀର ଦାୟାଦମାନେ ଏ ଆନ୍ଦୋଳନକୁ ସ୍ୱାଧୀନତା ପରେ ବଂଚାଇ ରଖିଲେ କିନ୍ତୁ ଇଂଚେ ସୀମା କଣ ବିଚ୍ଛିନ୍ନାଞ୍ଚଳରୁ ଅଦ୍ୟାବଧି ଓଡ଼ିଶାରେ ମିଶିଛିକି ?

ବରଂ ସ୍ୱାଧୀନତା ପରେ ଶାଂଖମେଦୀ, ବିଳାସପୁର, ମାଙ୍କିଡ଼ିଆ ଘାଟ ଭଳି ଆମ ଅଞ୍ଚଳରୁ ଯାଇଛି । ସାରା ରାଜ୍ୟକଥା ଚିନ୍ତାକଲେ କେତେ ଯେ ଗ୍ରାମ ଏବେବି ଦ୍ୱୈତ ଶାସନରେ ରହିଯାଇଛି ତାର ଠିକ୍ ହିସାବ ମଧ୍ୟ ନାହିଁ । ଖରସୁଆଁ ଷଢ଼େଇକଳା, ଓ ମେଦିନୀପୁରର ବିକ୍ଷିପ୍ତ ଅଞ୍ଚଳ ଯେ ଆଉ ଓଡ଼ିଶାରେ ମିଶିବ ଏହା ଦିବାସ୍ୱପ୍ନ । ତାହାଲେ ଏଭଳି ଏକ ଅପ୍ରାସଂଗିକ ଅନୁଷ୍ଠାନର ସଭ୍ୟ ହୋଇ ସଭାସମିତିରେ ଭାଷଣ ଦେବା ଛଡ଼ା ଆମର ଆଉ ଭୂମିକା କଣ ବୋଲି ସିଧାସିଧି ଆକ୍ଷେପ କରିଥିଲେ ମତେ ।

ସମାଲୋଚକର ଭାବନାକୁ ସମ୍ମାନ ଦେଇ ବୁଝାଇବାକୁ ଚେଷ୍ଟା କଲି । ଏକଥା ଠିକ୍ ଯେ ଜାତୀୟ କଂଗ୍ରେସରେ ଭାଷାଭିତ୍ତିକ ଓଡ଼ିଶା ରାଜ୍ୟ ଗଠନର ପ୍ରତିଶ୍ରୁତି ନପାଇ ରିକ୍ତ ହସ୍ତରେ ଫେରି ଆସିଥିଲେ ଗୋପବଂଧୁ । ତତ୍କାଳୀନ ଉତ୍କଳ ସମ୍ମିଳନୀର ପ୍ରତିଷ୍ଠାତା ମଧୁବାବୁ ଉତ୍କଳ ସମ୍ମିଳନୀ ଗଠନ କରି ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନକୁ ପ୍ରାଧାନ୍ୟ ଦେଇଥିଲେ । କିନ୍ତୁ ବ୍ରିଟିଶ୍ ରାଜର ବାହକ ଯେଉଁ ଜମିଦାର ଓ ସମ୍ଭ୍ରାନ୍ତ ଶ୍ରେଣୀ ସେତେବେଳେ ନୀରିହ ଓଡ଼ିଆ ମାନଙ୍କୁ ଶାସନ ଓ ଶୋଷଣ ମାଧ୍ୟମରେ ପରାଧୀନ କରି ରଖିଥିଲେ ସେମାନଙ୍କୁ ଜାତୀୟ କଂଗ୍ରେସ୍ ମାଧ୍ୟମରେ ନ ହେଲେବି ଉତ୍କଳ ସମ୍ମିଳନୀ ମାଧ୍ୟମରେ ସଂଗଠିତ କରି ଯେଉଁ ଆନ୍ଦୋଳନ ଗଢ଼ି ତୋଳିଥିଲେ ତାହା ସାମାଜିକ କ୍ରାନ୍ତିର ବାହକ ଥିଲା । ପରୋକ୍ଷରେ କଣ ତାହା ବ୍ରିଟିଶ ରାଜ ବିରୁଦ୍ଧରେ ସଂଗ୍ରାମ ନଥିଲା !

ଖାଲି ସେତିକି ନୁହେଁ ଗୋଟିଏ ଜାତି ଏକ ଭାଷା ବିନା କଣ ବଞ୍ଚିପାରିଥାନ୍ତା । ଆଉ ଥରେ ଚିନ୍ତା କଲ ଦେଖି ଯଦିବା ଏଦେଶ ସ୍ୱାଧୀନ ହୋଇଥାନ୍ତା ମାତ୍ର ଏଜାତି ବିଖଣ୍ଡିତ ହୋଇ ଅନ୍ୟ ପଡ଼ୋଶୀ ପ୍ରଦେଶରେ ଦ୍ୱିତୀୟ ଶ୍ରେଣୀର ନାଗରିକ ଭଳି ବଞ୍ଚିଥାନ୍ତା । ତାହାଲେ କଣ ସ୍ୱାଭିମାନୀ ମଣିଷଟି ଗ୍ରହଣ କରିପାରିଥାନ୍ତା ସ୍ୱାଧୀନତାର ଫଳକୁ । ମାନୁଛି କେତେକ ରାଜନେତାଙ୍କର ଦୂରଦୃଷ୍ଟିର ଅଭାବରୁ ଆଜି ଆମକୁ ଏହି ଲଗ୍ନ ଓ ଭଗ୍ନ ଓଡ଼ିଶା ମିଳିଛି । କିନ୍ତୁ କିଛି ନକରି ମରିଯିବା ଅପେକ୍ଷା କିଛି ପ୍ରଚେଷ୍ଟା କରି ହାରିଯିବା ବରଂ ଶ୍ରେୟସ୍କର ନୁହେଁ କି ? ମାନୁଛି ସ୍ୱାଧୀନତା ପରେ କ୍ଷମତା ଲୋଭୀ ଜହ୍ଲାଦ ମାନେ ଭୁଲିଯାଇଛନ୍ତି ଏମାଟି, ଏଜାତି ଏଭାଷା ପାଇଁ ସେମାନଙ୍କର କର୍ତ୍ତବ୍ୟ । ତେଣୁ ସେମାନଙ୍କ ମଧ୍ୟରେ ଏମାଟି, ଏଜାତି, ଏଭାଷା ପାଇଁ ଶ୍ରଦ୍ଧା ସୃଷ୍ଟି କରିବାରେ ଯେତେବି ଅସଫଳ ଚେଷ୍ଟା ହେଉନା କାହିଁକି ତାହା କଣ ପ୍ରଣିଧାନ ଯୋଗ୍ୟ ନୁହେଁକି ? କିଛି ନ ହେଲେ ବି ଏଜାତି ଆଉ ଏଭାଷାକୁ ଧ୍ୱଂସ କରିବାକୁ ଆଗେଇ ଆସୁଥିବା ସୁନାମିକୁ ପ୍ରତିହତ କରିବାକୁ ଏକ ସଂଗଠିତ ଅନ୍ଦୋଳନର କଣ ଆସ୍ୱୀକାର କରିହେବ । ଆଉ ସେ ସୁନାମି କିଏ ଜାଣିଛ ଭାଉଜ ? ତୁମ ମାନଙ୍କ ଭଳି ଇଂରାଜୀ ଶିକ୍ଷା-ପ୍ରେମୀ ମାନେ । ମୁଁ ସଂକୀର୍ଣ୍ଣ ମନା ପେରିକିଆଲ ନୁହଁ । ପିଲାଟି ପଢୁ ଡ଼େଫୋଡ଼ିଲର କଥା - ପଢୁ ୱାର୍ଡସୱାର୍ଥ, ସେଲି, ବାଇରନ ଓ ଟି.ଏସ.ଇଲିଅଟଙ୍କୁ । କିନ୍ତୁ କ୍ଷତି କଣ ସେ ଯଦି ପଢ଼େ, କବିସମ୍ରାଟ ଉପେନ୍ଦ୍ରଭଞ୍ଜ, ଭକ୍ତକବି ଦୀନକୃଷ୍ଣ ଓ ଭୀମ ଭୋଇଙ୍କୁ । ପଢୁ ସେ ଋଷୀୟ ଲୋକକଥା, ଓଲ୍ଡ଼ ଟେଷ୍ଟାମେଣ୍ଟ ଓ କୋରାନର ବାଣୀ, କିନ୍ତୁ କ୍ଷତି କଣ ସେ ଯଦି ପଢ଼ନ୍ତା ଜଗନ୍ନାଥ ଦାସଙ୍କ ଭାଗବତ, ବଳରାମ ଦାସଙ୍କ ରାମାୟଣ

ଅଥବା ସାରଳା ଦାସଙ୍କ ମହାଭାରତ ସମଗ୍ର ବିଶ୍ୱ ଜେତେବେଳେ ଶ୍ରୀକ୍ଷେତ୍ର ବଡ଼ଦାଣ୍ଡରେ ପତିତପାବନ ନୀଳମାଧବଙ୍କୁ ରଥାରୂଢ଼ ହେବାରେ ଦେଖିବାକୁ ବ୍ୟଗ୍ର, ଆଉ ଜଗନ୍ନାଥ ସଂସ୍କୃତିକୁ ଜାତି, ଧର୍ମ,ବର୍ଣ୍ଣ ନିର୍ବିଶେଷରେ ଆପଣେଇବାକୁ ଆରମ୍ଭ କଲେଣି, ଆମେ କାହିଁକି ମୁହଁ ଫେରେଇ ନେବା ? ନିଜ ଭାଷାରେ ପାଣ୍ଡିତ୍ୟ ଲାଭ କଲେ ଭାବର ପ୍ରକାଶ କଲେ କଣ କେହି ଜାତି ପଛାଇ ଯାଏ ? ତାହେଲେ ଜାପାନ, ଜର୍ମାନ ଓ ରୁଷ ଆଜି କଣ ବିଶ୍ୱର ଉନ୍ନତ ଦେଶମାନଙ୍କ ମଧ୍ୟରେ ଶ୍ରେଷ୍ଠ ପରିଗଣିତ ହେଉ ନାହାଁନ୍ତି ? ତାହେଲେ ଭୁଲ କେଉଁଠି ରହିଗଲା ଯଦି ଗୋଟିଏ ଜାତି ତାର ଭାଷାକୁ ନେଇ ଗର୍ବ କରିବାକୁ ଶିଖେ , ତାର ସଂସ୍କୃତି, ଚାରୁକଳା କାରୁକାର୍ଯ୍ୟ ପୂର୍ଣ୍ଣ ମନ୍ଦିରମାଳିନୀକୁ ବଞ୍ଚାଇ ରଖିବାକୁ ଚେଷ୍ଟା କରେ ; ବିଚ୍ଛିନ୍ନାଞ୍ଚଳକୁ ଫେରେଇ ନପାରିଲେ ମଧ୍ୟ ସେହି ଅଞ୍ଚଳର ମଣିଷମାନଙ୍କ ମଧ୍ୟରେ ଭାଷାକୁ ବଞ୍ଚେଇବାକୁ ଚେଷ୍ଟା କରେ । ସେମାନେ ବରଂ ଓଡ଼ିଶାର ବାସିନ୍ଦା ନ ହୁଅନ୍ତୁ କିନ୍ତୁ ଯଦି ସେମାନେ ଓଡ଼ିଆ ବୋଲି ସ୍ୱୀକାର କରିବାର ମାନସିକତା ତାଙ୍କ ମନରେ ସୃଷ୍ଟି କରାଯାଇ ପାରିବ, ତାହାଲେ କଣ ଏଦିଗରେ କିଛି କାର୍ଯ୍ୟ ହେଲା ବୋଲି ଧରିବାନି ? ତେଣୁ ତୁମ ଘରରନାମ ଫଳକଟି ଓଡ଼ିଆରେ ଲେଖିଦେଲେ, ଦୁଇଜଣ ଓଡ଼ିଆଙ୍କ ଭିତରେ କଥା ହେଲାବେଳେ ଓଡ଼ିଆରେ କଥା ହେବା, ବା ପିଲାଟି ଇଂରାଜୀ ସ୍କୁଲରେ ପଢୁଥିଲେ ମଧ୍ୟ ସ୍ୱଳ୍ପ ପରିଶ୍ରମ କରି ତାକୁ ଶୁଦ୍ଧ ଓଡ଼ିଆରେ ପଠନ ଓ ଲିଖନରେ ଅଭ୍ୟାସ କରାଇବା, କିମ୍ବା ବିବାହ ବ୍ରତ ଆଦିରେ ଅନ୍ୟ ଉପଢୌକନ ପଛେ ଦେବା କିନ୍ତୁ ତା ସଂଗରେ ଓଡ଼ିଆ ବହି ଖଣ୍ଡେ ଉପହାର ଦେବା, ଓଡ଼ିଆ ଭାଷା ବୁଝୁଥିବା ଲୋକକୁ ଓଡ଼ିଆରେ ଖଣ୍ଡେ ଚିଠି ଲେଖିବାକୁ ପ୍ରବର୍ତ୍ତାଉଥିବା ସଂସ୍ଥା ବା ତାର ସଭ୍ୟ କଣ ପେରକିଆଲ ହେବେ ? ତାହାହିଁ ଅନ୍ତତଃ ଉତ୍କଳ ସମ୍ମିଳନୀ କରୁଛି । ଏଥିରେ ଭୁଲ ରହିଲା କେଉଁଠି ?

ଯାହାହେଉ ଶ୍ରମ ମୋର ସାର୍ଥକ ହେଲା । ମହାପାତ୍ର ବାବୁ ଓ ଭାଉଜ ଶେଷରେ ରାଜି ହେଲେ ଉତ୍କଳ ସମ୍ମିଳନୀର ଆଜୀବନ ସଭ୍ୟ ହେବାକୁ , ଆଉ ଜଳେଶ୍ୱର ଶାଖାର ୨ଜଣ ସଭ୍ୟ ସେହିଦିନ ବଢ଼ିଗଲେ ।

# ସମ୍ପାଦକ, ଉତ୍କଳ ସମ୍ମିଳନୀ, ଜଳେଶ୍ୱର ଶାଖା
ନୀଳାଦ୍ରି ବିହାର, ନୂଆ ବଜାର, ଜଳେଶ୍ୱର ।

*"ପଢ଼ିଲି ନା ଦେଶ ଭାଷା*
*କାହିଁରେ ନ ପୂରିଲା ଆଶା ।*
*ହେଉ ପଛକେ ସେ ନିକୃଷ୍ଟ*
*ମୋ ମାତୃଭାଷା ମୋତେ ଶ୍ରେଷ୍ଠ ।।"*

– ବ୍ୟାସକବି ଫକୀରମୋହନ ସେନାପତି

# ମାର୍ଜିତ ଓଡ଼ିଆ ଭାଷା : ଗଣମାଧ୍ୟମର ଭୂମିକା

## ମଧୁସୂଦନ ଦାସ

ସ୍ୱତଂତ୍ର ଓଡ଼ିଶା ଦିବସ, ଉତ୍କଳ ସମ୍ମିଳନୀ ଅଧିବେଶନ, ଫକୀରମୋହନ ଓ ଓଡ଼ିଆ ଭାଷା ସୁରକ୍ଷା ଆଂଦୋଳନର ଅନ୍ୟ ରଥୀମାନଂକ ଜୟଂତୀ ଏବଂ ଶ୍ରାଦ୍ଧ ତିଥି ଇତ୍ୟାଦି ଉତ୍ସବରେ ଓଡ଼ିଆ ଭାଷାର ବଡ଼ପଣ ଓ ଓଡ଼ିଆ ସ୍ୱାଭିମାନ ସଂପର୍କରେ ପ୍ରେରଣାଦାୟକ ଆଲୋଚନା କରାଯାଏ; ମାତୃଭୂମି ଓ ମାତୃଭାଷାରେ ମମତା ସଂଚାରକ ଅମର ଗୀତ ଗାନ କରାଯାଏ; ଏହା ସହିତ ଅଣଓଡ଼ିଆ ସଂପ୍ରସାରଣବାଦୀମାନଂକ ଓଡ଼ିଆ ଭାଷା ବିନାଶକ ଉଦ୍ୟମର ନିଂଦା କରାଯାଏ । ପିଢ଼ି ପରେ ପିଢ଼ି ଓଡ଼ିଆମାନଙ୍କୁ ଇତିହାସ ସଚେତନ ଓ ମାତୃଭାଷା ପ୍ରତି କର୍ତ୍ତବ୍ୟପରାୟଣ କରାଇବା ଉଦ୍ଦେଶ୍ୟରେ ଏ ଉଭୟ, ସ୍ତୁତି ଓ ନିଂଦାଗାନ ଅବଶ୍ୟ କର୍ତ୍ତବ୍ୟ । ତେବେ ଓଡ଼ିଆ ଭାଷାବିରୋଧୀ ଚକ୍ରାଂତ ସ୍ମରଣର ଅପରିହାର୍ଯ୍ୟ ଅନ୍ୟ ଦିଗ ହେବା ଆବଶ୍ୟକ ନିଜର ଦାୟିତ୍ୱ ସଚେତନତା । କାରଣ, ସେ ଚକ୍ରାଂତ ବହିରାଗତମାନଙ୍କ ଦ୍ୱାରା ହୋଇଥିଲା, ଯାହା ଏବେ ଅତୀତର ସ୍ମୃତି । ବିରୋଧୀ ଷଡ଼ଯଂତ୍ରରୁ ଉତ୍ତୀର୍ଣ୍ଣ ଓ ବହୁ ସାରସ୍ୱତ ପ୍ରତିଭାଂକ ଉତ୍ସର୍ଗୀକୃତ ସାଧନାର ଫଳ ରୂପେ ଓଡ଼ିଆ ଭାଷା ସୌକର୍ଯ୍ୟମଂଡିତା ହୋଇଛି । ଏହାର ବକ୍ତାମାନେ -ସାଧକଗଣଂକ ଦାୟାଦମାନେ-ନିଜନିଜ ସ୍ତରରେ ସୌଷ୍ଠବ ରକ୍ଷା ଦିଗରେ ଯତ୍ନଶୀଳ ହେବା ପରିବର୍ତ୍ତେ ଦାୟିତ୍ୱହୀନ, ଅଶୁଦ୍ଧ ଆଚରଣ କଲେ ଉପହାସର ପାତ୍ର ହେବା ସହିତ ମାତୃଭାଷାର ଅପୂରଣୀୟ କ୍ଷତି ଘଟାଇବେ । ପକ୍ଷାଂତରେ, ଓଡ଼ିଆଭାଷୀଂକ ହୃଦୟରେ ମାତୃଭାଷା ପ୍ରତି ମମତା ରହିଲେ ସେମାନଂକ ବଚନ ଶୁଦ୍ଧ ହେବ ଓ ତାହାର ସୌନ୍ଦର୍ଯ୍ୟ ଝଟକିବ ।

ନିରକ୍ଷରଂକଠାରୁ ପାଠୁଆଂକ ପର୍ଯ୍ୟନ୍ତ ସବୁ ଶ୍ରେଣୀ ଓ ବୟସର ଶ୍ରୋତା ଏବଂ ଦର୍ଶକମାନଂକ ପାଇଁ ଆକାଶବାଣୀ ଓ ଦୂରଦର୍ଶନରେ ସଂବାଦ ପରିବେଷଣ ଓ ଅନ୍ୟାନ୍ୟ କାର୍ଯ୍ୟକ୍ରମ ପ୍ରସ୍ତୁତ କରାଯାଏ । ଅଳ୍ପ ଶିକ୍ଷିତରୁ ଅଧିକ ଶିକ୍ଷିତ ଲୋକେ, ସମସ୍ତ ଖବରକାଗଜ ପଢ଼ନ୍ତି । ଶିଶୁ ଶିକ୍ଷାର୍ଥୀମାନେ ଏଥିରୁ ଅଧିକ ଜ୍ଞାନ ଆହରଣ କରନ୍ତି । ନିରକ୍ଷର ଲୋକେ ଖବରକାଗଜ ପାଠ ଶୁଣଂତି । ଯେଉଁ ଅଣଓଡ଼ିଆମାନେ ମାତୃଭାଷା ଭିନ୍ନ ଅନ୍ୟ ଏକ ଭାଷା ଶିକ୍ଷାକ୍ରମରେ ଓଡ଼ିଆକୁ ବାଛିଥାଂତି ସେମାନେ ଦୂରଦର୍ଶନ, ଆକାଶବାଣୀ ଓ ପତ୍ରପତ୍ରିକା ଦେଖିଶୁଣି ପଢ଼ି ନିଜର ପ୍ରାରଂଭିକ ଜ୍ଞାନ ପରଖି ନିଅନ୍ତି । ଯେମିତି ଇଂରାଜୀ ଶବ୍ଦଗୁଡ଼ିକର ଠିକ୍ ଉଚ୍ଚାରଣ ଏବଂ ଯଥାଯଥ ନୂତନ ପ୍ରୟୋଗ ବା ଇଡିଅମ୍ (idiom) ଜାଣିବା ପାଇଁ ଆମେ ନମୁନା ଭାବେ ବି.ବି.ସି. କାର୍ଯ୍ୟକ୍ରମ ଶୁଣୁଁ; ବାଂଲା (ବଂଗଳା) ଜ୍ଞାନ ପରଖିବା ପାଇଁ ଅକାଶବାଣୀ କୋଲକାତା ଓ ଇଟିଭି ବାଂଲା କାର୍ଯ୍ୟକ୍ରମ ଶୁଣୁଁ ଓ ଦେଖୁଁ । ଜୀବନ୍ତ, ଶୁଦ୍ଧ, ସୁଂଦର ଭାଷା କହିବା, ପଢ଼ିବା, ଲେଖିବା ସହିତ ମାତୃଭାଷାଭାଷୀଙ୍କ ଜାତୀୟ ସ୍ୱାଭିମାନ ଓ ମର୍ଯ୍ୟାଦା ଜଡ଼ିତ ।

ରାଜା ତାଂକ ଯାନବାହାକଂକୁ ପଚାରିଲେ ''କିଂ ସ୍କନ୍ଧଂ ବାଧତି ?'' ଅବିବେକୀ ରାଜାଂକ ଦ୍ୱାରା ନିଯୁକ୍ତ, ନିର୍ବାକ ରହୁଥିବା ଜ୍ଞାନୀ ଜଡ଼ଭରତ ଉତ୍ତର ଦେଲେ, ''ସ୍କନ୍ଧଂ ନ ବାଧତେ, ରାଜନ୍; ତବ 'ବାଧତି'ବାଧତେ ।'' ରାଜାଂକ କଥିତ ଭାଷାର ଭୁଲ ଦର୍ଶାଇବାକୁ ମୌନୀ ଭରତ ମୁହଁ ଖୋଲିଲେ । ଜଣେ ଭାରତୀୟ ଭଦ୍ରଲୋକ ବ୍ରିଟେନ୍ (ଇଂଲାଣ୍ଡ)ରେ ଏକ ଡାକଘର କାଉଂଟରରେ ମାଗିଲେ ''Give me a post card'' (ମୋତେ ଗୋଟାଏ ପୋଷ୍ଟକାର୍ଡ଼ ଦିଅନ୍ତୁ ।) କିରାଣି ଜ୍ଞାନ ଦେଲେ ''Please say 'please'

sir'' ('ଦୟା କରି' ମୋତେ ଗୋଟିଏ ପୋଷ୍ଟକାର୍ଡ଼ ଦିଅନ୍ତୁ ବୋଲି କହନ୍ତୁ ।) । ମା ଦୁଧ, ମାତୃଭୂମି ଓ ମାତୃଭାଷାରେ ଆମେ ପୁଷ୍ଟ ହୋଇଥାଉଁ । ସେମାନଂକ ପ୍ରତି କୃତଜ୍ଞ ଓ ସଂଭ୍ରମଶୀଳ ହେବା ଆମର କର୍ତ୍ତବ୍ୟ । କିଂତୁ ଆମେ ଆମ ମାଟିର ପରିବେଶ, ଧ୍ୱନିମଂଡଳ ଓ ଭାଷା ପ୍ରଦୂଷିତ କରି ନିଜକୁ ଦୟନୀୟ ସ୍ତରକୁ ନେଇଗଲୁଣି । ପରିବେଶ ଓ ଶବ୍ଦ ପ୍ରଦୂଷଣ ରୋକିବାରେ ଆମର ଆଂଶିକ ଭୂମିକା ରହିଛି । ମାତ୍ର ଓଡ଼ିଆ ଭାଷା ପ୍ରଦୂଷଣମୁକ୍ତ କରିବା ଦାୟିତ୍ୱ କେବଳ ଓଡ଼ିଆଭାଷୀମାନଂକର । ଗଣମାଧ୍ୟମଗୁଡ଼ିକ ସହିତ ଯୁକ୍ତ ଓଡ଼ିଆମାନଂକ ଦାୟିତ୍ୱ ଅଧିକ । ସେମାନେ ହେଳା କଲେ ସେମାନଂକୁ ଚେତାଇ ଦେବା ଆବଶ୍ୟକ । ସେମାନେ ନିଶ୍ଚୟ ଅଳ୍ପବହୁତ ତାଲିମପ୍ରାପ୍ତ । ତଥାପି ଅଳ୍ପ ସମୟରେ ଅଧିକ କାମରେ ଚାପ, ପ୍ରତିଯୋଗିତାରେ ଆଗେଇ ଯିବାର ଅତିଶୟ ଆଗ୍ରହ, ସର୍ବଦା ମାର୍ଜିତ ହେବା ଓ ସୁପରାମର୍ଶ ଗ୍ରହଣ କରିବାରେ ଅନାଗ୍ରହ, ଖାମଖିଆଲୀ ମନୋଭାବ ଭଳି ଏକ ବା ଏକାଧିକ କାରଣରୁ ସଂକଟ ସୃଷ୍ଟି ହେଉଛି ।

କୋଡ଼ିଏ ବର୍ଷ ଭିତରେ ବିଭିନ୍ନ ମାଧ୍ୟମରୁ ସଂଗୃହୀତ କେତେଗୁଡ଼ିଏ ନମୂନା ବିଶ୍ଳେଷଣ କଲେ ଜଣାଯିବ, କେଉଁଠି କି ପ୍ରକାର ପ୍ରଦୂଷଣ ଘଟୁଛି; ପ୍ରତିକାର କେତେ ଜରୁରୀ !

**ଆକାଶବାଣୀ :**

ପଠନ ଶୈଳୀ ଓ ଉଚ୍ଚାରଣ

ଭାଷାର ଆକର୍ଷଣୀ ଶକ୍ତି କଥନ ଶୈଳୀ ଓ ଉଚ୍ଚାରଣ ଉପରେ ବହୁଳ ଭାବେ ନିର୍ଭର କରେ । ସେ ଦୃଷ୍ଟିରୁ ଯତୀନ୍ ଦାସ, ଝରଣା ଦାସ, ଦେବେନ୍ଦ୍ର ନାଥ ମିଶ୍ରଙ୍କ ଭଳି ସଂବାଦ ପାଠକ ପାଠିକାମାନଂକ କଣ୍ଠରୁ ସଂବାଦ ଶେଷ ପର୍ଯ୍ୟନ୍ତ ଶୁଣିବାକୁ ଆଗ୍ରହ ରହୁଥିଲା । ଅଥଚ କେତେକଂକ ପଠନରୁ ମନେହୁଏ, ସତେ ଅବା ପାଠକ/ପାଠିକା ଅକ୍ଷର ଚିହ୍ନଚିହ୍ନି କଷ୍ଟରେ ପଢ଼ୁଛନ୍ତି; କୌଣସି ମତେ ସେତକ ସାରିଦେଇ ପାରିଲେ ନିଷ୍କୃତି ମିଳିଯିବ । ଗୋଟିଏ ଗୋଟିଏ ବିରାମ ଭିତରେ କେଉଁ କେଉଁ ଶବ୍ଦ ଓ କେତୋଟି ଶବ୍ଦ ଉଚ୍ଚାରିତ ହେବ ପାଠକ/ପାଠିକାଂକର ହୁଏତ ସମ୍ୟକ୍ ଧାରଣା ନଥାଏ । '...ଚେଷ୍ଟା କରିବାକୁ ଉଦ୍ୟମ କରିବା ସକାଶେ....'-ଏପରି ପଠନରୁ ପାଠକ /ପାଠିକାଂକ ଭୟ ତରତର ଭାବ ପ୍ରକାଶ ପାଏ । ଭାଷାର ସୌଷ୍ଠବ ହାନିହୁଏ । କେବଳ ଖବର ଶୁଣିବା ତାଡ଼ନାରେ ଶ୍ରୋତା ବିକଳ ଓଡ଼ିଆ ପଠନକୁ ସହିଯାଆଂତି । ସରିଲେ ଆଶ୍ୱସ୍ତ ହୁଅନ୍ତି । ଟି.ଏସ୍. ଇଲିଅଟଂକ The Waste Land ପଢ଼ିଥିବା ଶ୍ରୋତା କହିପକାନ୍ତି : Glad, it is over [ଯାଃ, ଖୁସି (ଦୈହିକ ସଂପର୍କ) କାମଟା ସରିଗଲା ।]

ଶବ୍ଦଗୁଡ଼ିକୁ ଯିଏ ଯେମିତି ପାରି ଉଚ୍ଚାରଣ କରି ଦେଲେ ଶୁଦ୍ଧ ଓଡ଼ିଆ କୁହାହେଲା ବୋଲି ହୁଏତ କେତେଂକର ଧାରଣା । ତେଣୁ କହଂତି : 'ଆକାଶ୍‌ବାଣୀ କଟକ୍', 'ଦର୍', 'ଉତ୍ତୋଳନ୍' 'ଆମର୍', 'ସମ୍ବାଦ୍' ଇତ୍ୟାଦି । ଏ ଶବ୍ଦଗୁଡ଼ିକରେ ହଳଂତ (୍) ନ ଲାଗିଲେ ହିଁ ଠିକ୍ ଓଡ଼ିଆ ଉଚ୍ଚାରଣ ହୁଏ । ଏଥିରୁ ହିନ୍ଦୀ ଓ ବାଙ୍ଗଳାଂଠାରୁ ଓଡ଼ିଆ ଭାଷାର ସ୍ୱତଂତ୍ରତା ବାରିହୋଇଯାଏ ।

କେହିକେହି ଅଜାଗାରେ ଦ୍ୱିତ୍ୱ କରିଦିଅଂତି ଓ ଆବଶ୍ୟକ ସ୍ଥଳେ ଦ୍ୱିତ୍ୱ କରଂତି ନାହିଁ । ଏହିପରି ହୁଏ ସେମାନଙ୍କ ଉଚ୍ଚାରଣ : ଦ୍ରୁତତ୍ତର, ସମ୍ମୁଖ୍ଖୀନ, ଉଲେଖ୍ଖ, ଶୁଧ, ଅଶୁଧ, ଉଚାରଣ, ବୃଧି, ସମୃଧି, ଅଭିବୃଧି ଇତ୍ୟାଦି । ଠିକ୍ ଉଚ୍ଚାରଣ: ଦ୍ରୁତତର, ସମ୍ମୁଖୀନ, ଉଲ୍ଲେଖ, ଶୁଦ୍ଧ, ଅଶୁଦ୍ଧ, ଉଚ୍ଚାରଣ, ବୃଦ୍ଧି, ସମୃଦ୍ଧି, ଅଭିବୃଦ୍ଧି ଇତ୍ୟାଦି । ଦିନେ ସଂଧ୍ୟା ୬୭.୧୫ମି. ଖବରରେ ଦୁଇଟି ଶବ୍ଦର ଏପରି ଉଚ୍ଚାରଣ ଶୁଣିବାକୁ ମିଳିଲା । ଯେ ସେ ଗୁଡ଼ିକ ଭ୍ରଷ୍ଟ ହୋଇଗଲେ; ତଥାପି ସେ ଗୁଡ଼ିକର ହାରାହାରି ମାତ୍ରା ଠିକ୍ ରହିଗଲା । ଉଚ୍ଚାରିତ ଶବ୍ଦ ଦୁଇଟି: 'ସର୍ବବିଦ୍ଧ' ଓ 'ଶ୍ରଧାଭାଜନ' । 'ବିଧ' ଅର୍ଥ ପ୍ରକାର । 'ବିଦ୍ଧ'କହିଲେ 'ଫୋଡ଼ି ଦିଆଯାଇଥିବା' ଅର୍ଥ ଆସୁଛି । ଅବହେଳିତମାନଂକ ସବୁପ୍ରକାର ଉନ୍ନତି 'ବିଦ୍ଧ' ହେଲେ ବିଚରା

ଅବହେଳିତମାନେ ରକ୍ତାକ୍ତ ହୋଇ ଆହୁରି ହଂତସଂତ ହେବେ । 'ଶ୍ରଧାଭାଜନ' ଶବ୍ଦ ହିଁ ଅବୋଧ୍ୟ । ଉପଯୁକ୍ତ ଅର୍ଥରେ 'ଭାଜନ' ଲାଗେ । ସ୍ନେହ, ପ୍ରୀତିର ପ୍ରତିଶବ୍ଦ 'ଶ୍ରଦ୍ଧା' ଅଛି । ତେଣୁ 'ଶ୍ରଦ୍ଧାଭାଜନ' ହେବା କଥା । ବେଳେବେଳେ 'କଂସବଦ୍ଧ', 'ମହିଷାସୁର ବଦ୍ଧ' ଗୀତିନାଟ୍ୟ କଥା କୁହାଯାଏ । କଂସ ବା ମହିଷାସୁରକୁ କେହି ବଦ୍ଧ ବା ବଂଦୀ କରି ନଥିଲେ । ଶ୍ରୀକୃଷ୍ଣ କଂସକୁ ଓ ଶ୍ରୀଦୁର୍ଗା ମହିଷାସୁରକୁ ବଧ (ନିଧନ) କରିଥିଲେ । ଯଦି 'ସଂକଳ୍ପବଦ୍ଧ' ପରିବର୍ତ୍ତେ 'ସଂକଳ୍ପବଧ' କୁହାଯାଏ, ଭାବ ପୂରା ଓଲଟି ଯିବ । ସଂକଳ୍ପରେ ଦୃଢ଼ ହେବା ବଦଳରେ ସଂକଳ୍ପ ମାରିଦେବା ଭାବ ଆସିବ । 'ଉଚାରଣ' ନୁହେଁ 'ଉଚ୍ଚାରଣ'ର ଏପରି ଗୁରୁତ୍ୱ ।

**ବ୍ୟାକରଣ**

**(କ) ସଂଧିଭ୍ରମ :**

କେବେକେବେ ଶୁଣାଯାଏ 'ଦୁରାବସ୍ଥା' । ପାଠକ ହୁଏତ ଏହାକୁ ସ୍ୱରସଂଧିନିଷ୍ପନ୍ନ ଶବ୍ଦ ବିଚାରଂତି; ଦୂର ବା ଦୁର+ ଅବସ୍ଥା । ମାତ୍ର ଏଥିରେ ଦୂର ବା ନିକଟ ଅବସ୍ଥାର ଧାରଣା ନାହିଁ । ବିସର୍ଗ 'ସଂଧି: ଦୁଃ+ ଅବସ୍ଥା; ବିସର୍ଗ (ଃ) 'ର୍' ହୋଇ 'ଅବସ୍ଥା'ର ଅ ସହିତ ମିଶି 'ର' ହୋଇଛି । ନିଷ୍ପନ୍ନ ଶବ୍ଦ, ଦୁରବସ୍ଥା । ଦୁଃ ଅର୍ଥ ଖରାପ; ତେଣୁ ଖରାପ ଅବସ୍ଥା । ଦୁରାବସ୍ଥା କହିଲେ ଦୁରବସ୍ଥା ଶବ୍ଦର ଅବସ୍ଥା ଖରାପ ହୋଇଯାଏ ।

**(ଖ) ସଂଖ୍ୟା ଓ ପୂରକ ବା ପୂରଣବାଚକ ବିଶେଷଣ :**

ସଂବାଦପାଠକ ଚାରିଦିନିଆ କ୍ରିକେଟ ମ୍ୟାଚ୍ ଖବର ଦେବାକୁ ଯାଇ କହିଲେ 'ଚତୁର୍ଥ ଦିବସୀୟ ମ୍ୟାଚ୍...' । ଏଥିରୁ ଅର୍ଥ ଆସୁଛି, ହେବାକୁ ଥିବା ଚାରିଦିନବ୍ୟାପୀ ମ୍ୟାଚ୍‌ର ପ୍ରଥମ ତିନିଦିନ ଖେଳାଳୀ ମାନେ ବୁଲିବେ ବା ଶୋଇବେ; କେବଳ ଶେଷ ଦିନଟିରେ ଖେଳିବେ । ୪ (ଚାରି) ସଂଖ୍ୟାର ପୂରକ ହେଉଛି ଚତୁର୍ଥ । ଚତୁର୍ଥ କହିଲେ ପ୍ରଥମରୁ ତିନିଟିକୁ ଛାଡ଼ି କେବଳ ଶେଷଟିକୁ ହିଁ ବୁଝାଯାଏ । ଯେପରି 'ଚତୁର୍ଥ ବାଳକ ହାତରେ ବଲ୍ ଅଛି ।' ଅର୍ଥ, ଅନ୍ୟ ତିନିଜଣଂକ ହାତରେ ନାହିଁ । ଆଉ ଗୋଟିଏ ଶବ୍ଦ ବାରଂବାର ଶୁଣାଯାଏ: <u>ଅଷ୍ଟମ</u> ପ୍ରହର । '<u>ଅଷ୍ଟମ</u> ପ୍ରହର ନାମଯଜ୍ଞ' ହେଲେ କୀର୍ତ୍ତନିଆମାନେ ପ୍ରଥମରୁ ସାତ ପ୍ରହର ଗପସପ ସୁଖଦୁଃଖ ହୋଇ କେବଳ ଶେଷ, ଅଷ୍ଟମ ପ୍ରହରରେ ନାମଯଜ୍ଞ କରିନ୍ତି, ଏପରି ସୂଚନା ମିଳେ । କାରଣ ସଂଖ୍ୟା ଆଠ ବା 'ଅଷ୍ଟ'ର ପୂରକ ହେଉଛି 'ଅଷ୍ଟମ' । ଚତୁର୍ଦିବସୀୟ (ଚାରିଦିନିଆ), ଅଷ୍ଟପ୍ରହର (ଆଠପହରୀ) ଇତ୍ୟାଦି ଶବ୍ଦ ଠିକ ।

**(ଗ) ଅସଂଭବ ବିଶେଷ୍ୟ :**

ସଂବାଦ ପଠନ ଓ ଅନ୍ୟ କାର୍ଯ୍ୟକ୍ରମରେ ଏପରି ନଥିବା ଶବ୍ଦଗୁଡ଼ିକ ବ୍ୟବହୃତ ହୁଏ: 'ଅର୍ଥାନୁକୂଲ୍ୟତା', 'ନୈପୁଣ୍ୟତା', 'ଉତ୍କର୍ଷତା' ଇତ୍ୟାଦି । ସରକାର କାହାକୁ 'ଅର୍ଥାନୁକୂଲ୍ୟତା' ଦେବେ ବୋଲି ଘୋଷଣା କରିନ୍ତି । କେହି କନିଷ୍ଠା ଖେଳାଳୀ 'ଷ୍ଟେଫି ଗ୍ରାଫ୍'ଙ୍କୁ ହରାଇ କ୍ରୀଡ଼ା ନୈପୁଣ୍ୟତା ପ୍ରଦର୍ଶନ କରନ୍ତି । ଭକ୍ତକବି ରାମଦାସଙ୍କ 'ଦାଢ଼୍ୟତା ଭକ୍ତି' ଗ୍ରଂଥରେ ଭୁଲ୍ ବିଶେଷ୍ୟ ପଦ 'ଦାଢ଼୍ୟତା' କୁ ଅର୍ଷ ପ୍ରୟୋଗ ଭାବେ ବିଶେଷଣ ପଦ 'ଦୃଢ଼' ଅର୍ଥରେ ସିନା ଗ୍ରହଣ କରାଯାଇଛି, କିନ୍ତୁ ଏପରି ଶବ୍ଦ ହୋଇପାରିବ ନାହିଁ । ବିଶେଷଣ 'ଦୃଢ଼'ରୁ ଗୁଣବାଚକ ବିଶେଷ୍ୟ 'ଦୃଢ଼ତା' ବା 'ଦାର୍ଢ୍ୟ' ତିଆରି ହୁଏ । 'ଅନୁକୂଳ' ଗୋଟିଏ ବିଶେଷଣ ପଦ; ଅର୍ଥ + ଆନୁକୂଲ୍ୟ = ଅର୍ଥାନୁକୂଲ୍ୟ ହୁଏ । କାହା ନୈପୁଣ୍ୟରେ ମୁଗ୍ଧ ହୋଇ ତାଂକୁ ଅଧିକା ସାବାସିସ୍ୱରୂପ 'ତା' ଦେଇ ହେବନାହିଁ । 'ଶ୍ରେଷ୍ଠ' ଅର୍ଥବୋଧକ ବିଶେଷଣ ପଦ 'ଉତ୍କୃଷ୍ଟ'ରେ 'ତା'ଲାଗି ବିଶେଷ୍ୟ ଗଠିତ ହୁଏନାହିଁ । ସେଥିପାଇଁ ବିଶେଷ୍ୟ ପଦ ଅଛି 'ହୃଷ୍ଟି' ଯାହା ଅପ୍ରଚଳିତ । ତେଣୁ 'ହର୍ଷ' ବ୍ୟବହାର କରି ଆମେ ହୃଷ୍ଟ ହେଉଁ । 'ଆମର ସ୍ୱାସ୍ଥ୍ୟ' କାର୍ଯକ୍ରମରେ 'ଅକାଳ ବାର୍ଦ୍ଧକ୍ୟତା' ଆସିବା କଥା କୁହାଯାଇଛି । 'ବାର୍ଧକ୍ୟ'କୁ 'ତା',ଠେସ ଅକର୍ମଣ୍ୟ କରି ଦେଇଛି ।

'ନିରାପଦମୂଳକ', 'ବନ୍ୟା କ୍ଷତିଗ୍ରସ୍ତ ବିଷୟ'ରେ ଇତ୍ୟାଦି ଶବ୍ଦ ଗଠନ ଓ ପ୍ରୟୋଗ ନିୟମ ବହିର୍ଭୂତ ଅଟେ । ବିଶେଷଣ 'ନିରାପଦ' ସହିତ ନୁହେଁ, ବିଶେଷ୍ୟ 'ନିରପତ୍ତା' ସହିତ ବିଶେଷଣ 'ମୂଳକ' ଯୁକ୍ତ ହୋଇ ଅନ୍ୟ ଏକ ବିଶେଷଣ ପଦ 'ନିରାପତ୍ତାମୂଳକ' ନିଷ୍ପନ୍ନ ହେବା ବିଧି । ବିଶେଷଣ ପଦ 'ବନ୍ୟା କ୍ଷତିଗ୍ରସ୍ତ' ବିଷୟରେ ନୁହେଁ, ବିଶେଷ୍ୟ, 'ବନ୍ୟାକ୍ଷତି' ବା 'ବନ୍ୟା କ୍ଷତିଗ୍ରସ୍ତମାନଙ୍କ ବିଷୟରେ' କହିବା ଠିକ୍ ।

(ଘ) ୧-ଖଂଡ ବାକ୍ୟ :

ଜିଲ୍ଲା ସଂବାଦ ପରିକ୍ରମାରେ ପଢ଼ାହେଲା : 'ସ୍ଥାନାନ୍ତରିତ ପାଇଁ...' । 'ସ୍ଥାନାନ୍ତର ପାଇଁ' ବା 'ସ୍ଥାନାଂତରିତ ହେବାପାଇଁ' , ଅବା 'ସ୍ଥାନାଂତର କରିବା ପାଇଁ' ହେବ । ବିଶେଷ୍ୟ ପଦ ପରେ 'ପାଇଁ' ଲାଗିବ । 'ସ୍ଥାନାଂତରିତ' ବିଶେଷଣ ପଦ ହୋଇଥିବାରୁ ତା' ସହିତ 'ପାଇଁ'ର ନିବିଡ଼ ପଡ଼ୋଶୀ ସଂପର୍କ ହେବନାହିଁ ।

(ଘ) ୨-ଜଟିଳ ବାକ୍ୟ :

ଏପରି କୁହାଯାଏ : 'ଏତେ ସଂଖ୍ୟକ ପୁରୁଷ ଭୋଟ୍ ଦେଇଥିଲା ବେଳେ ସେତେ ମହିଳା ମତଦାନ ଅଧିକାର ସାବ୍ୟସ୍ତ କରିଥିଲେ ।' 'ଦୁର୍ଘଟଣାରେ ଏତେ ଜଣ ମୃତ୍ୟୁବରଣ କରିଥିବାବେଳେ ସେତେଜଣ ଆହତ ହୋଇଥିଲେ ।' ଏପରି କହିବା ଢଂଗ 'while' ଯୋଗେ ଗଠିତ ଇଂଲିଶ୍ ବାକ୍ୟର ଅବଚେତନସ୍ତରୀୟ ଅନୁବାଦର କୁପରିଣତି । ଠିକ୍ ଏକା ସମୟରେ ଦୁଇଦୁଇଟି କ୍ରିୟା ସଂପାଦିତ ହୁଏ ନାହିଁ; ମିନିଟ୍ ବା ସେକେଂଡ୍ ହେଉ ପଛକେ ଆଗପଛ ହୁଏ । ତେଣୁ ସ୍ପଷ୍ଟ କଥାଟି ସଂଯୋଗିକ ଶବ୍ଦ ଓ /ଏବଂ ଯୋଗେ ପ୍ରକାଶିତ ହୁଏ : ଏତେ ଜଣ ପୁରୁଷ ଭୋଟ୍ ଦେଇଥିଲେ ଓ ସେତେଜଣ ମହିଳା ମତଦାନ ଅଧିକାର ସାବ୍ୟସ୍ତ କରିଥିଲେ; ଦୁର୍ଘଟଣାରେ ଏତେ ଜଣ ମୃତ୍ୟୁ ବରଣ କରିଛଂତି ଏବଂ ସେତେଜଣ ଆହତ ହୋଇଛଂତି ।

(ଙ) ବଚନ :

ଆଂଚଳିକ ସଂବାଦରେ ଶୁଣିବାକୁ ମିଳିଲା : ''ଆଠ ଜଣ ନାବିକମାନଙ୍କ ସଙ୍ଗରେ ହାମ୍ ରେଡ଼ିଓ ମାଧମରେ ଯୋଗସୂତ୍ର ରଖାଯାଇଥିଲା ।'' ''ଆଠଜଣ ନାବିକଙ୍କ ସଙ୍ଗରେ'' ହେବା ଉଚିତ । ବଚନସୂଚକର ଏପରି ଅପବ୍ୟବହାର ଇଂରାଜୀ ପ୍ରଭାବ ଜନିତ । ଇଂରାଜୀରେ All boys, Ten apples ହୁଏ । ସଂଖ୍ୟବାଚକ ବିଶେଷ୍ୟର ପୂର୍ବରୁ ଓ ପରେ ବହୁବଚନ ଚିହ୍ନ ଲାଗେ । All, Ten ଆଦି ସଂଖ୍ୟାସୂଚକ ଓ ଶେଷ 's' (ଏସ୍) କେବଳ ବହୁବଚନସୂଚକ । ଓଡ଼ିଆରେ ଏ ନିୟମ ଚଳେନାହିଁ । କେବଳ ଗୋଟିଏ ପଟେ ବହୁବଚନସୂଚକ ଲଗାଯାଏ । 'ସବୁ ବାଳକ' ଅବା 'ବାଳକମାନେ', 'ସେବାୟତମାନଙ୍କର', 'ସବୁ ସେବାୟତଙ୍କର', 'ଆଠଜଣ ନାବିକଙ୍କ ସଙ୍ଗରେ' ଇତ୍ୟାଦି ଠିକ୍ ।

ବଚନ ଖେଚେଡ଼ି ଭାଷା ପକ୍ଷେ ଏକାଂତ ଅସ୍ୱାସ୍ଥ୍ୟକର । ମୟୂରଭଂଜ ସଂବାଦ ପରିକ୍ରମାରେ ସେହିପରି ଭାବେ କୁହାହେଲା : 'ପ୍ରତି ବର୍ଷମାନଙ୍କ ପରି ଏ ବର୍ଷ ମଧ୍ୟ ମହିଳାମାନେ ସୁଭଦ୍ରାଙ୍କ ରଥ ଟାଣିଥିଲେ ।'' ଏକ ବଚନ 'ପ୍ରତି' ଓ ବହୁବଚନ 'ମାନଙ୍କ' ଏକାଠି ହୋଇଗଲା । 'ପୂର୍ବ ବର୍ଷମାନଙ୍କ ପରି/ ପ୍ରତିବର୍ଷ ପରି' ହୁଅଂତା । 'ମାନନୀୟେଷୁ' କାର୍ଯ୍ୟକ୍ରମରେ କୁହାଯାଇଛି, 'ପ୍ରତ୍ୟେକ କଳାପ୍ରେମୀମାନେ' । ଗୋଟିଏ ପରିତ୍ୟାଜ୍ୟ ।

(ଚ) ବାଚ୍ୟ ବିଭ୍ରାଟ :

ବାକ୍ୟଟିଏ ବାଟ ହୁଡ଼ିବା ବଡ଼ ଅସ୍ୱାଭାବିକ କଥା । ଗୋଟିଏ ବାକ୍ୟ କର୍ତ୍ତୃବାଚ୍ୟରେ ଆରଂଭ ହୋଇ କର୍ମବାଚ୍ୟରେ ଶେଷ ହୁଏନାହିଁ । ଆଂଚଳିକ ସଂବାଦରେ ପଠିତ ଗୋଟିଏ ବାକ୍ୟ ଏହିପରି ଥିଲା,

''କେମ୍ପରେ ଅନେକ ଡାକ୍ତର ଚିକିତ୍ସା କରି ଔଷଧ ଦିଆଯାଇଥିଲା ।'' ''ଔଷଧ ଦେଇଥିଲେ'' ହୋଇଥାʼନ୍ତା କିଂବା ''ଅନେକ ଡାକ୍ତରଙ୍କ ଦ୍ୱାରା ରୋଗୀ ଚିକିତ୍ସା କରାଯାଇ ଔଷଧ ଦିଆଯାଇଥିଲା ।''- ଏମନ୍ତେ କର୍ମବାଚ୍ୟର ବାକ୍ୟ ସଜଡ଼ା ଯାଇ ଥାଆନ୍ତା । ଅନ୍ୟଥା ପଠିତ ବାକ୍ୟରୁ ଡାକ୍ତରମାନଂକୁ ଔଷଧ ଦିଆଯାଇଥିଲା ବୋଲି ଅର୍ଥ ବାହାରିବା ସଂଭାବନା ରହୁଛି ।

**(ଛ) ବିଭକ୍ତି :**

ନିମ୍ନଲିଖିତ ଦୁଇଟି ବାକ୍ୟ ମଧ୍ୟରୁ କେଉଁଟି ଠିକ୍ ପ୍ରାଥମିକ ବିଦ୍ୟାଳୟର ଛାତ୍ରଟିଏ କହି ପାରିବ :

(୧) ମୁଁ ପୁରୀକୁ ପହଂଚିଲି ।

(୨) ମୁଁ ପୁରୀରେ ପହଂଚିଲି ।

ଦ୍ୱିତୀୟ ବାକ୍ୟହିଁ ଠିକ୍ । 'ମୁଁ ପୁରୀ (କୁ) ଗଲି' ଠିକ୍ ହେବ । ଦ୍ୱିତୀୟା ବିଭକ୍ତି ଗତିର ଶେଷ ପର୍ଯ୍ୟନ୍ତ ସୂଚାଉଛି । ଶେଷରେ, ପହଂଚିବା ଲୋକକୁ ସ୍ଥାନ, ପୁରୀ, ଧାରଣ କଲା ବା ଆଧାର ହୋଇଗଲା । ତେଣୁ 'ପୁରୀ'ରେ ଅଧିକରଣ କାରକ, ସପ୍ତମୀ ବିଭକ୍ତି ହେଲା । 'କୁ' ଦ୍ୱିତୀୟା ବିଭକ୍ତିର ଚିହ୍ନ; କଦାପି ସପ୍ତମୀ ବିକ୍ତିର ଚିହ୍ନ ହୁଏନାହିଁ । ବିଜ୍ଞାପନରେ ନିୟମିତ ଭାବରେ କୁହାଯାଏ : ''ଆକାଶବାଣୀ ଦୂରଦୂରାନ୍ତ ଓ ଅଗମ୍ୟ ସ୍ଥାନକୁ ମଧ୍ୟ ପହଞ୍ଚ ପାରେ ।'' ମାତ୍ର ଠିକ୍ '...ସ୍ଥାନରେ ମଧ୍ୟ ପହଞ୍ଚି ପାରେ ।''

**ପଦବିନ୍ୟାସ :**

ବାକ୍ୟରେ ପଦ ବିନ୍ୟାସ କଲେ, ଅର୍ଥାତ୍ ଶବ୍ଦଗୁଡ଼ିକୁ ଠିକ୍‌ରୂପେ ସଜାଇଲେ ବାକ୍ୟ ସୁନ୍ଦର ହୁଏ ଓ ଅର୍ଥ ସ୍ପଷ୍ଟଭାବେ ପ୍ରକାଶ ପାଏ । ବ୍ୟତିକ୍ରମରେ ଅସ୍ପଷ୍ଟତା ଓ ଅସ୍ୱସ୍ତି ଆସେ, ଏହିପରି ବାକ୍ୟରେ :

''ଭାରତୀୟ କ୍ରିକେଟ ଦଳର ମହମ୍ମଦ ଆଝାରୁଦ୍ଦିନ୍‌ଙ୍କୁ ଏବେ ମଧ୍ୟ ଅଧିନାୟକ ରଖାଯାଇଛି ।''

ଏଥିରୁ ଅର୍ଥ ବାହାରିଲା : ଭାରତୀୟ ଦଳର ମହମ୍ମଦ ଆଝାରୁଦ୍ଦିନଙ୍କୁ ବିଶ୍ୱ ଏକାଦଶ ଭଳି ଦଳର ବା ଆଉ କେଉଁଠିକାର ଅଧିନାୟକ ଭାବେ ଏବେ ମଧ ରଖାଯାଇଛି । ପଦବିନ୍ୟାସ ଏପରି ହୁଅନ୍ତା : 'ଏବେ ମଧ ମହମ୍ମଦ ଆଝାରୁଦ୍ଦିନ୍‌ଙ୍କୁ (ବା ମହମ୍ମଦ ଅଝାରୁଦ୍ଦିନଙ୍କୁ ଏବେ ମଧ୍ୟ) ଭାରତୀୟ କ୍ରିକେଟ ଦଳର ଅଧିନାୟକ ରଖାଯାଇଛି ।''

ଅନ୍ୟ ଏକ ଉଦାହରଣ : ''ଅଢ଼ତିରିଶ ଜଣ ଆହୁରି ଶିଶୁଙ୍କୁ ...।'' ସଂଖ୍ୟାବାଚକ ବିଶେଷଣ 'ଅଢ଼ତିରିଶ' ପୂର୍ବରୁ ବିଶେଷଣର ବିଶେଷଣ 'ଆହୁରି' ବସିବ; ଅନ୍ୟ ବିକଳ୍ପ ସ୍ଥାନରେ ବସିବ ନାହିଁ ।

ଆଉ ଗୋଟିଏ ବାକ୍ୟ : ''ପ୍ରଧାନ ମନ୍ତ୍ରୀ ମଧ୍ୟ ମିତବ୍ୟୟିତା କମିଶନ୍‌ର ଅଧ୍ୟକ୍ଷ....' । ଏଥିରେ ସଂଭାବନା ରହିଲା, ଆଉ କେଉ ଅଧ୍ୟକ୍ଷ ଅଛଂତି; ପ୍ରଧାନମଂତ୍ରୀ ମଧ ଅଧକ୍ଷ ଅଛଂତି । ଗୋଟିଏ କମିଶନରେ ଏକାଧିକ ଅଧକ୍ଷ, ଅସଂଭବ । 'ପ୍ରଧାନମଂତ୍ରୀ ମିତବ୍ୟୟିତା କମିଶନ୍‌ରଗ ମଧ୍ୟ ଅଧକ୍ଷ (ଅଟଂତି)।' କିଂବା 'ମିତବ୍ୟୟିତା କମିଶନ୍‌ର ଅଧକ୍ଷ ମଧ୍ୟ (ଅଟଂତି)', ଏପରି ହୁଅନ୍ତା, ବକ୍ତବ୍ୟ ଅନୁସାରେ । ଆଉ କେଉଁ କମିଶନ୍‌ର ଅଧକ୍ଷ ଅଛଂତି; 'ମିତବ୍ୟୟିତା କମିଶନ୍‌ର ମଧ ଅଧକ୍ଷ' ହେଲେ, ଅବା ନିଜ ଦାୟିତ୍ୱ ସଂପାଦନ ସାଂଗକୁ କମିଶନ୍‌ର 'ଅଧ୍ୟକ୍ଷ ମଧ୍ୟ' ହେଲେ ।

**ଶବ୍ଦ ଅପପ୍ରୟୋଗ :**

''ପ୍ରଧାନ ମନ୍ତ୍ରୀଙ୍କ ଥାଇଲ୍ୟାଣ୍ଡ ଗସ୍ତ... ଦିଗ୍‌ଦର୍ଶନ ପ୍ରଦର୍ଶନ କରିବ ।'' 'ଦର୍ଶନ' ପୁଣି 'ପ୍ରଦର୍ଶନ' ! 'ଦିଗ୍‌ଦର୍ଶନ ଦେବ'-ଏତକ ବକ୍ତବ୍ୟ । 'ପଥ ପ୍ରଦର୍ଶନ କରିବ' ହୋଇ ପାରଂତା ।

"....ବୈଠକରେ ଉଦ୍‌ବୋଧନ କରି କହିଲେ ....", ଏହା ବାରିହେଲା ଭଳି ଏକି ହିଂଦୀ ପ୍ରଭାବିତ ବାକ୍ୟ । ହିଂଦୀରେ କୁହାଯାଏ, "...ଉଦ୍‌ବୋଧିତ୍ କର୍‌ତେ ହୁଏ ବୋଲା...." । ଓଡ଼ିଆରେ ଉଦ୍‌ବୋଧନ କରାଯାଏ ନାହିଁ; ଉଦ୍‌ବୋଧନ ଦିଆଯାଏ ।

ଯାହାର ଭୂମିକା ଯେଉଁଠି ନାହିଁ, ତାକୁ ସେଠାରେ ଓହ୍ଲାଇ ଦେଲେ ଦୃଶ୍ୟ କେମିତି ମାରା ହୋଇଯାଏ ଦେଖଂତୁ : "ଭାରତ-ରୁଷ୍ କ୍ରାୟୋଜେନିକ୍ ଇଞ୍ଜିନ୍ ପ୍ରଦାନ ଚୁକ୍ତି ବାତିଲ୍ ହୋଇ ଯାଇଛି କହିବା ସମ୍ଭବ ନୁହେଁ ।" କହିବା ସଂଭବ ନୁହେଁ ତ ଲୋକେ କହୁଥିଲେ କେମିତି, ଖବର କାଗଜରେ ଛପା ହେଲା କେମିତି ? 'ବାତିଲ୍ ହୋଇଯାଛି କହିବା ଠିକ୍ ନୁହେଁ ବା ଉଚିତ୍ ନୁହେଁ, ଏପରି କହିବାର ଥିଲା ।

**ଅସାମଂଜସ୍ୟ :**

ଅମୁକ ତାରିଖରେ "ଦିନିକିଆ ମ୍ୟାଚ୍ ଆରମ୍ଭ ହେବ" କହିଲେ ପ୍ରଶ୍ନ ଉଠିବ, କ୍ରିକେଟ୍ ମ୍ୟାଚ୍‌ଟି କେତେଦିନ ଚାଲିବ । କେବେ ଶେଷ ହେବ । ଯେହେତୁ ଦିନିକିଆ ମ୍ୟାଚ୍, ଅମୁକ 'ତାରିଖରେ ଅନୁଷ୍ଠିତ ହେବ" କହିଲେ ଖବର ସ୍ପଷ୍ଟ ହେବ । ଯେହେତୁ ଦିନିକିଆ ମ୍ୟାଚ୍, ଅମୁକ "ତାରିଖରେ ଅନୁଷ୍ଠିତ ହେବ" କହିଲେ ଖବର ସ୍ପଷ୍ଟ ହେବ ।

କ୍ରିକେଟ୍‌ରେ ଗୋଟିଏ ଦଳ ଅନ୍ୟ ଦଳର ବିଜୟ ପାଇଁ ଲକ୍ଷ୍ୟ (target) ଧାର୍ଯ୍ୟ କରିଦେଇଥାନ୍ତି । "...ଲକ୍ଷ୍ୟ ଧାର୍ଯ୍ୟ ରଖିଛନ୍ତି"-ଏପରି କହିଲେ ବ୍ୟତିକ୍ରମ ଘଟେ । ଲକ୍ଷ୍ୟ ରଖାଯାଏ ବା ଲକ୍ଷ୍ୟ ଧାର୍ଯ୍ୟ କରାଯାଏ ।

**ଶ୍ରୁତିକଟୁତା :**

ସଂବାଦ ପାଠ ବେଳେ ମୃତ୍ୟୁ ସଂପର୍କରେ ଗୋଟିଏ ବାକ୍ୟ ପରୋକ୍ଷ ଭାଗରେ କୁହାଯାଏ; ମାତ୍ର ପରବର୍ତ୍ତୀ ବାକ୍ୟରେ ତାହାର ଏପରି ବିରୁଦ୍ଧାଚରଣ କରାଯାଏ ଯେ କଥା ଶ୍ରୁତିକଟୁ ହୁଏ ଓ ଦିବଂଗତ ବ୍ୟକ୍ତିଙ୍କ ପ୍ରତି ଆଶଂକା ବ୍ୟଂଜିତ ହୁଏ । 'ମୃତ୍ୟୁ' ଶବ୍ଦର ରୁକ୍ଷତା ଏଡ଼ାଇବା ପାଇଁ କୋମଳ ଭାବରେ କୁହାଯାଏ : ଅମୁକ ବିଶିଷ୍ଟ ବ୍ୟକ୍ତି ସମୁକ ଦିନ ଏତେଟା ବେଳେ 'ଶେଷ ନିଃଶ୍ୱାସ ତ୍ୟାଗକଲେ' ବା ତାଙ୍କର 'ଦେହାଂତ' ହେଲା ।" ଇଂଲିଶ୍‌ରେ ଏପରି କଥନକୁ ଇଉଫେମିଜ୍‌ମ୍ (euphemism) କୁହାଯାଏ । 'ଦେହାଂତ ହେଲା' ପରେ କୁହାଯାଏ : 'ମୃତ୍ୟୁ ବେଳକୁ'ତାଂକୁ ଏତେ ବର୍ଷ ହୋଇଥିଲା । ପ୍ରଥମେ 'ଶେଷ ନିଶ୍ୱାସ ତ୍ୟାଗ'ବା 'ଦେହାଂତ'ର ମୃତ୍ୟୁ ଖବର ଦିଆ ସରିଥିବାରୁ ପୁଣି 'ମୃତ୍ୟ ବେଳକୁ' ନ କହି କେବଳ ବୟସ କେତେ ହୋଇଥିଲା କହିବା ଯଥେଷ୍ଟ ଓ ଶାଳୀନ ।

**ବୃଥା ବୋଝ :**

କେବଳ ଓଡ଼ିଶାର ଆକାଶବାଣୀ କେଂଦ୍ରରୁ ଶୁଣିବାକୁ ମିଳେ ଯେ, କୌଣସି ଦୁର୍ଘଟଣା ପରେ ଆହତମାନଂକୁ ହସ୍‌ପିଟାଲରେ 'ଚିକିତ୍ସା ପାଇଁ' ଭର୍ତ୍ତି କରାଯାଇଛି । ଇଂଲିଶ୍‌ରେ କୁହାଯାଏ : "The wounded have been hospitalized,' '...for treatment' କୁହାଯାଏ ନାହିଁ । ବାଲାଂରେ କହଂତି : 'ଆହାତଦେର ହାଁସ୍‌ପାତାଲେ ଭର୍ତ୍ତି କରାହୟେଛେ ।' 'ଚିକିତ୍ସାର ଜନ୍ୟେ' କଦାପି ଲଗାନ୍ତି ନାହିଁ । ହିନ୍ଦୀରେ : ''घायलोंको अस्पताल में दाखिल किया गया है ।'' ''चिकित्साके लिये'' ବୋଲାଯାଏ ନାହିଁ । 'ଚିକିତ୍‌ସା ପାଇଁ' ନ କହିଲେ ଓଡ଼ିଆ ଶ୍ରୋତା କେବେ ଭାବିବେ ନାହିଁ ଯେ ଆହତମାନଂକୁ ଭୋଜି ଖାଇବା ପାଇଁ ବା ଅନ୍ୟ କିଛି କାମ ପାଇଁ ହସ୍‌ପିଟାଲ୍‌ରେ ଭର୍ତ୍ତି କରାଯାଇଛି ।

"ବିରୋଧୀ ଦଳର ସଦସ୍ୟମାନେ ବିଧାନସଭା କକ୍ଷ ଛାଡ଼ି ବାହାରକୁ ଚାଲି ଯାଇଥିଲେ ।" ଭିତରକୁ ବା ଉପରକୁ କୁଆଡ଼େ ଚାଲିଯିବାର ସଂଭାବନା ନ ଥିବାରୁ 'ବାହାରକୁ' କହିବା ଅନାବଶ୍ୟକ ।

''ସମୁଦ୍ର ଉତ୍ତାଳ ରହିବ । ଧୀବରମାନଙ୍କୁ ମାଛ ଧରିବାପାଇଁ ସମୁଦ୍ରକୁ ନ ଯିବାକୁ ପରାମର୍ଶ ଦିଆଯାଇଛି ।''

''ମାଛ ଧରିବା ପାଇଁ''ର ଆବଶ୍ୟକତା କ'ଣ ? ବରଂ କଂକଡ଼ା ଧରିବା କିଂବା ନୌକା ବିହାର କରିବା ପାଇଁ ସମୁଦ୍ରକୁ ଯିବାର ବାଧାନାହିଁ, ଏପରି ବୁଝିବାର ଆଶଂକା ରହୁଛି ।

''ଏକ ଘରୋଇ ବସ୍ ନର୍ମଦା ନଦୀରେ ଖସି ପଡ଼ିଥିଲା । ୪୮ଜଣ ଯାତ୍ରୀ ପାଣିରେ ବୁଡ଼ି ଯାଇଥିବାର ଆଶଙ୍କା କରାଯାଉଛି ।''

ନଦୀ ଭିତରେ 'ପାଣି'ରେ ନ ବୁଡ଼ି ଯାତ୍ରୀମାନେ ବାଲିରେ ବା ଆଉ କେଉଁଥିରେ ବୁଡ଼ି ଯାଇଥିବେ ବୋଲି ଶ୍ରୋତାମାନେ ଭାବିବାର ସଂଭାବନା ନାହିଁ । ତେଣୁ ଶବ୍ଦ ଗୋଦରା କରି ଆମ ଭାଷାକୁ ଅସୁନ୍ଦର କରିବା ଅନୁଚିତ ।

କେତେକ ଅନାବଶ୍ୟକ ଶବ୍ଦ ବ୍ୟବହାର ହାସ୍ୟକର ହୋଇଥାଏ । ଉଦାହରଣ ସ୍ୱରୂପ 'ମହିଳା ସଦସ୍ୟା' କିଏ ? କେବଳ 'ସଦସ୍ୟା' କହିଲେ ମହିଳା ଜଣା ପଡ଼ିବେ । 'ମହିଳା' ଲଗାଇଲେ ସଦସ୍ୟାଙ୍କର ଅଧିକ ନାରିତ୍ୱ ପ୍ରକାଶ ପାଇବ ନାହିଁ କି ନ ଲଗାଇଲେ ପୁରୁଷ ସଦସ୍ୟ ବୋଲି କେହି ଭାବିବାର ଆଶଂକା ନାହିଁ । 'ମହିଳା ଛାତ୍ରାବାସ' କହିଲେ 'ମହିଳା'ର ବ୍ୟର୍ଥ ବ୍ୟବହାର ହୁଏ । 'ଛାତ୍ରୀ ନିବାସ' କମ୍ ଅକ୍ଷର ଉପଯୋଗରେ ସ୍ପଷ୍ଟ ଅର୍ଥଦ୍ୟୋତକ ହୁଏ । କୌଣସି କର୍ମ 'ରୀତି ମୁତାବକ ଯଥାବିଧି ପାଳିତ ହେବ' କେମିତି ? ଏ କଥାରୁ ଛଅ ବା ଚାରିଟି ଅକ୍ଷର ବର୍ଜନୀୟ । ହଜ୍ ତୀର୍ଥଯାତ୍ରୀମାନେ 'ସେମାନଙ୍କ ଶ୍ୱେତବସ୍ତ୍ର ପରିଧାନ କରି...' ଇତ୍ୟାଦିରେ 'ସେମାନଙ୍କ' କହିବା ଅନାବଶ୍ୟକ । କିଏ 'ଆଉ କାହା' ଶ୍ୱେତବସ୍ତ୍ର ପରିଧାନ କଲେ ବୋଲି କେହି ଭାବିବେ ନାହିଁ ।

**ଦୂରଦର୍ଶନ :**

ଆକାଶବାଣୀ ଓ ଦୂରଦର୍ଶନରେ ଅନେକ ଉପାଦେୟ ଓ ଉଚ୍ଚମାନର କାର୍ଯ୍ୟକ୍ରମ ପରିବେଷଣ କରାଯାଉଛି । ଗୁଣ ସହିତ ଭାଷାଗତ ଖୁଣ ନହେଲେ ସେ ଗୁଡ଼ିକ ଅଧିକ ସୁନ୍ଦର ଓ ପ୍ରଭାବୀ ହୁଅନ୍ତା । ଆମର ପ୍ରିୟ ଆକାଶବାଣୀ ପରି ଆମ ଦୂରଦର୍ଶନ ବିଭିନ୍ନ ଚାନେଲ୍‌ରେ ମଧ୍ୟ କିଛି ବ୍ୟତିକ୍ରମ ରହି ଯାଉଛି । ପାଠ୍ୟପୁସ୍ତକର ନୋଟ୍‌ବୁକ୍ ବା ମାନେ ବହି ଗୁଡ଼ିକରେ ଅସଂଖ୍ୟ ତ୍ରୁଟି ଥାଏ । ବିଶେଷଭାବେ ବନାନ ପ୍ରମାଦ । ଅନେକ ଛାତ୍ର ଧରି ନେଇଥାଂତି ଏବଂ ଦୃଢ଼ଭାବେ ନିର୍ବୋଧ ଯୁକ୍ତି କରଂତି : ବହିରେ ଯାହା ଛପା ହୋଇଛି ସେଇଟା କେମିତି ଭୁଲ୍ ହେବ ? ସେପରି ଛାତ୍ରଛାତ୍ରୀଂକଠାରୁ ବହୁ ଅଧିକ ସଂଖ୍ୟକ ଲୋକେ ସିନେମା ଓ ଦୂରଦର୍ଶନରେ ଦେଖା ଦେଉଥିବା କଥା କହୁଥିବା ମଣିଷମାନଂକୁ ପରୀରାଇଜର ଚରିତ୍ର ବୋଲି ଭାବଂତି; ରୂପେଲୀ ସୁନେଲୀ ପର୍ଦା ଉପରର ଲେଖାକୁ ନିର୍ଭୁଲ ବିଚାରିବା ବିଚିତ୍ର ନୁହେଁ । ତେଣୁ ପର୍ଦା ଉପରର ଲେଖା ଓ ପର୍ଦାବୈଚିତ୍ର୍ୟମାନଂକ ମୁହଁର ଭାଷାରେ ଶୁଦ୍ଧତା ରକ୍ଷା ଗୁରୁ ଦାୟିତ୍ୱ ଅଟେ ।

**ବନାନ :**

କ୍ୱଚିତ୍ ଶ୍ରୋତା ଶ୍ରାବ୍ୟ ମାଧ୍ୟମରେ ବନାନ୍ ବ୍ୟତିକ୍ରମ ଜାଣି ପାରଂତି । ଅଥଚ ହ୍ରସ୍ୱ-ଦୀର୍ଘ, ଦ୍ୱିତ୍ୱ ଏବଂ ଶଷସ ଉଚ୍ଚାରଣ ତାରତମ୍ୟ ଖୁବ୍ କମ୍ ପାଳନ କରାଯାଏ । ଦୃଶ୍ୟ-ଶ୍ରାବ୍ୟ ମାଧ୍ୟମ ଦୂରଦର୍ଶନରେ ଅନୁରୂପ ଅବସ୍ଥା ଥିଲେ ସୁଦ୍ଧା କେତେକ ତ୍ରୁଟି ସହଜରେ ଜଣାପଡ଼େ । ଖବର ପଢ଼ା ହେଉଥିବା ବେଳେ ତଳେ ଚୁଂବକରେ କିଛି ଲେଖା ଖବର ଦିଆଯାଏ । ଲେଖା ହେଉଛି : 'ନୋବେଲ୍ ଫଳକ ଚୋରୀ ।' ଅତି ସାଧରଣ ଶବ୍ଦ 'ଚୋରି' । କେତେକ ସଂବାଦପତ୍ରରେ ଛପା ହେଲାପରି 'ଶହୀଦ' ଶବ୍ଦକୁ 'ସହିଦ୍' ଭାବରେ ଦେଖିବାକୁ ମିଳୁଛି । ଧାରାବାହିକର କଳାକାର ତାଲିକାରେ 'ଗଣେଷ' ବାହାରି ପଡୁଛି । (ଗଣ+ଈଶ = ଗଣେଶ) ।

**ପଦ ସଂଯୋଗ :**

'ବ୍ୟସ୍ତ' ସହିତ 'ବହୁଳ' ଶବ୍ଦ ଯୋଡ଼ି 'ବ୍ୟସ୍ତବହୁଳ'ରେ ଅଧିକ ବ୍ୟସ୍ତତାର ଭାବ ପ୍ରକାଶ କରାଯାଉଛି । କେତେକ ଖବର କାଗଜରେ ମଧ୍ୟ ଏ ଶବ୍ଦ ଦେଖାଯାଉଛି । ବ୍ୟସ୍ତ ଓ ବହୁଳ, ଏ ଦୁଇଟି ବିଶେଷଣ ପଦ । ତେବେ 'ବହୁଳ' ହେଉଛି ବିଶେଷଣର ବିଶେଷଣ । ଏହା ବ୍ୟସ୍ତତାର ପରିମାଣ ସୂଚାଉଛି : କେତେ ବ୍ୟସ୍ତ ? ବହୁଳ ବ୍ୟସ୍ତ । ତେଣୁ 'ବହୁଳ ବ୍ୟସ୍ତ' ମହାନଗରୀ ଇତ୍ୟାଦି କହିବା ଠିକ୍ । ବିଶେଷ୍ୟ ପଦ 'ବ୍ୟସ୍ତତା' ସହିତ ବିଶେଷଣ ପଦ 'ବହୁଳ' ଯୁକ୍ତ ହୋଇ 'ବ୍ୟସ୍ତତା ବହୁଳ' ବିଶେଷଣ ପଦ ଗଠିତ ହୋଇପାରେ । ଯେମିତି ବୃଷ୍ଟିବହୁଳ ଅଂଚଳ ।

**ପୂରକ ବା ପୂରଣବାଚକ :**

ଖବରରେ ପଢ଼ା ହୋଇଛି ''ଷଷ୍ଠଦଶ ସଡ଼କ ସୁରକ୍ଷା ସମ୍ମେଳନ.... ।'' ଏପରି ଏକ ଶବ୍ଦ ଓଡ଼ିଆ ଭାଷାରେ ନାହିଁ । ପଂଚଦଶ, ସପ୍ତଦଶ ଅଛି । ମାତ୍ର ମଝିରେ ଷଷ୍ଠଦଶ ନାହିଁ; 'ଷୋଡ଼ଶ' ଅଛି । ମୌଳିକ (cardinal) ଓ ପୂରଣବାଚକ (ordinal)ରେ ସମାନ ରୂପ ।

**ଦ୍ୱିତୀୟ ପୁରୁଷର ସମ୍ମାନ :**

ଇଂରାଜୀ ଭାଷାରେ ଦ୍ୱିତୀୟ ପୁରୁଷରେ ସାଧାରଣ ଭାବେ ସମ୍ମାନ-ବିବିଧତା ନାହିଁ । ତୁ, ତୁମେ, ତୁମ୍ଭେମାନେ, ଆପଣ, ଆପଣମାନେ-ସବୁପାଇଁ ଗୋଟିଏ ଶବ୍ଦ, you. Your Highness, Your Goodness ଇତ୍ୟାଦି ଭିନ୍ନ ପ୍ରକାର ସମ୍ମାନ ଜ୍ଞାପକ । ଓଡ଼ିଆରେ ବିରାଟ ସ୍ତରଭେଦ ରହିଛି । ଅନେକ ବନବାସୀ ଉପଜାତିର ଲୋକେ ନିର୍ବିକାର ଢଂଗରେ ତୁ -ଆପଣ ମିଶାମିଶି କରି ଦିଅଂତି । ମାତ୍ର ସାଧରଣ ଶିଷ୍ଟତାରେ ସଂବୋଧନ ତାରତମ୍ୟ ଅବଶ୍ୟ ପାଳନୀୟ । ଧାରାବାହିକ 'ଶ୍ରୀକୃଷ୍ଣ' ଡବିଂ କଲାବେଳେ ଏହି ଗୁରୁତ୍ୱପୂର୍ଣ୍ଣ ତାରତମ୍ୟ ଯଥାର୍ଥ ଭାବେ ପାଳନ କରାଯାଇନାହିଁ । ଅର୍ଜୁନ ଶ୍ରୀକୃଷ୍ଣଙ୍କୁ କେଉଁଠି 'ତୁମେ' କହୁଛଂତି ତ ଆଉ କେଉଁଠି 'ଆପଣ' କହୁଛଂତି । 'ତାସ୍‌ର ଘର'ରେ ବିଶିଷ୍ଟ ନାଟ୍ୟକାର ଏପରି ଶିଷ୍ଟତା ଭ୍ରମ କରିଥିବେ ବୋଲି ବିଶ୍ୱାସ କରିହୁଏନାହିଁ । ସ୍ପଷ୍ଟ ଦିବାଲୋକରେ ବହୁ ଲୋକଂକ ଆଗରେ ଗୋଟିଏ ସୁପାରି ଗୁଂଡା ଜଣକୁ ହତ୍ୟା କରି ପକେଇଲା । ପୁଲିସ୍ ଇନ୍‌ସପେକ୍ଟର ତପନ ସିଂହଂକ ଆଗରେ କେହି ପାଟି ଫିଟେଇଲେ ନାହିଁ । ତପନ ସିଂହ ସେମାନଂକୁ କହୁଛଂତି, ''...ତମମାନଙ୍କ ଆଗରେ ଏ ଘଟଣା ଘଟିଛି । ଅଥଚ ଆପଣମାନେ କେହି କିଛି କହୁନାହାଂତି ।'' ଅଭିନେତାଂକ ପାଟିରୁ ଅସାବଧାନତାବଶତଃ ତୁମେ -ଆପଣ ଭିତରୁ କେଉଁଟା ଗୋଟେ ଯଦି ବାହାରି ଯାଇଥିବ, ସେଇ ଅଂଶର ପୁନର୍ଚିତ୍ର ଗ୍ରହଣ (retake) କରାଯାଇଥାଂତା । ଭାଷାର ସଂଭ୍ରମ ତୁଳନାରେ ସାମାନ୍ୟ ସମୟ ଓ ଅର୍ଥ ବ୍ୟୟ ତୁଚ୍ଛ ବିଚାରିବା ଉଚିତ ।

**ବଚନ :**

ବିଦ୍ୱାନ୍ ଭକ୍ତମାନେ 'ସମର୍ପଣ' ଭଳି କାର୍ଯ୍ୟକ୍ରମରେ ପ୍ରବଚନ ଦିଅଂତି । ସେଥିରେ କୁହାଯାଏ 'ପ୍ରତ୍ୟେକ ଲୋକମାନେ' । ବାରଂବାର ସେଇ ଭୁଲ୍ ହୋଇ ଚାଲିଛି । କାର୍ଯ୍ୟକ୍ରମ ନିଷ୍ପାଦକ ପ୍ରବଚକଂକୁ ସୂଚାଇଦେବା ଆବଶ୍ୟକ ।

**ବିଶେଷଣ :**

ସଂବାଦରେ 'ଆବଶ୍ୟକୀୟ' ଶବ୍ଦ ପଢ଼ାଯାଏ । 'ଆବଶ୍ୟକ' ଶବ୍ଦଟି ବିଶେଷଣ । ଏଥିରେ 'ଇୟ' ପ୍ରତ୍ୟୟ ଯୋଗକରି ଦ୍ୱିତୀୟ ବିଶେଷଣ ଗଢ଼ା ହୁଏନାହିଁ । 'ପ୍ରୟୋଜନ' ବିଶେଷ୍ୟ; ପ୍ରତ୍ୟୟ ଯୋଗେ ବିଶେଷଣ, 'ପ୍ରୟୋଜନୀୟ' ଗଠନ ନିୟମ । ପ୍ରୟୋଜନୀୟ = ଆବଶ୍ୟକ ।

**ବୃଥା ପୁନରାବୃତ୍ତି :**

ଭକ୍ତ 'ଭଗବାନଙ୍କ ପାଖକୁ ଯାଇ ଭଗବାନଙ୍କୁ କହିଲେ....' ଇତ୍ୟାଦି 'ସମର୍ପଣ' କାର୍ଯ୍ୟକ୍ରମରେ ଶୁଣାଯାଏ । 'ଭଗବାନଙ୍କୁ' କହିବାରେ କେବଳ ଶବ୍ଦ ଓ ସମୟ ଅପଚୟ, ଶ୍ରୁତିକଟୁତା ଉତ୍ପାଦକ । 'ତାଂକୁ' କୁହାଯାଇ ପାରେ ।

**ପାଇଁ, ନିମଂତେ = ହେତୁ, କାରଣରୁ ନୁହେଁ**

ଧାରାବାହିକ 'ଶ୍ରୀକୃଷ୍ଣ'ରେ ରତି ପ୍ରଦ୍ୟୁମ୍ନଂକୁ ମନେ ପକାଇ ଦେଉଛଂତି : ''ମହାଦେବଙ୍କ ତପସ୍ୟା ଭଙ୍ଗ କରିବା ନିମନ୍ତେ ସେ ଆପଣଙ୍କୁ ଭସ୍ମ କରି ଦେଇଥିଲେ ।'' ଅର୍ଥ ଓଲଟା ହୋଇଯାଉଛି । 'ତପସ୍ୟା ଭଂଗ କରିବାରୁ/ କରିବା କାରଣରୁ' ହେବ ।

**କର୍ତା ଅନୁସାରେ କ୍ରିୟାର ରୂପ :**

ଧାରାବାହିକ 'ତୁଳସୀ'ରେ ଚହଟରାୟଂକ ବଡ଼ପୁଅ କହୁଛଂତି, ''....ଆମେ ତ କିଛି ଦୋଷ କରିନାହାଂତି ।''

କେତେକ ବହୁଳ ପ୍ରଚାରିତ ସଂବାଦପତ୍ର ମଧ୍ୟ ସଂପାଦକୀୟ ବକ୍ତବ୍ୟରେ ଏପରି ଲେଖୁଛଂତି । ମାତ୍ର ଏହା ପ୍ରତିଷ୍ଠିତ ବ୍ୟାକରଣ ଅନୁସାରୀ ଢାଂଚା ନୁହେଁ । କେତେଗୁଡ଼ିଏ ଆଂଚଳିକ ଶବ୍ଦକୁ ଉପଯୋଗିତା ବିଚାରରେ ମାନକ ଭାଷାରେ ଗ୍ରହଣ କରାଯିବା ଉଚିତ । ମାତ୍ର କର୍ତା-କ୍ରିୟା ସଂପର୍କଗତ ରୂପରେ ଉପଭାଷା ବିବିଧତା ପ୍ରୟୋଗ କଲେ ଢାଂଚା ହିଁ ଦୋହଲି ଯିବ । ପ୍ରତିଷ୍ଠିତ ଢାଂଚା ଅନୁସାରେ ହୁଏ : ଆମେ କରିନାହୁଁ । ଆପଣ/ଆପଣମାନେ/(ସମ୍ମାନରେ) ସେ/ସେମାନେ କରିନାହାଂତି ।

ଆଉ ଏକ ପ୍ରକାର ବ୍ୟତିକ୍ରମରେ ନମୁନା 'ଶ୍ରୀକୃଷ୍ଣ'ରେ ମିଳିଲା । ମାୟାବତୀ ସଂବରାସୁରକୁ କହୁଛଂତି : ''...ତାହାର ନାମକରଣ ପ୍ରଦ୍ୟୁମ୍ନ କାହିଁକ ରଖିଲେ ?''

୧. ...ନାମକରଣ....କାହିଁକି କଲେ ?

୨. ....ନାମ ....କାହିଁକି ରଖିଲେ ?

ଏ ଦୁଇଟି ବାକ୍ୟରୁ ଯେ କୌଣସି ଠିକ୍ ହୋଇଥାଂତା ।

**କାମକୁ ଚାହିଁ ଶବ୍ଦ :**

ଔଷଧ 'ନିର୍ମାଣ' କରାଯାଏ ନାହିଁ; ପ୍ରସ୍ତୁତ କରାଯାଏ । କେନାଲ୍ ମଧ୍ୟ 'ନିର୍ମାଣ' ନୁହେଁ; ଖନନ କରାଯାଏ । ବଂଧ, ମନ୍ଦିର, ସ୍କୁଲ ଆଦି ନିର୍ମାଣ କରାଯାଏ ।

**ଦୁରାରୋଗ୍ୟ 'ଦୁରାବସ୍ଥା' :**

ଏ ଶବ୍ଦଟି ସବୁ ମାଧ୍ୟମରେ ବହୁ ଲୋକଙ୍କୁ ଆକ୍ରମଣ କରିଛି । ଏପରିକି ଗୋଟିଏ ବିଶ୍ୱବିଦ୍ୟାଳୟର କୁଳପତି ଦୂରଦର୍ଶନ ସାଂବାଦିକଂକ ପ୍ରଶ୍ନର ଉତ୍ତରରେ କହିଲେ ଯେ ଆର୍ଥିକ 'ଦୁରାବସ୍ଥା' ସୁଧୁରିଲେ କ'ଣ ସବୁ ଉନ୍ନତିମୂଳକ କାମ କରାଯିବ । ଆଗ କଥାରେ 'ଦୁରାବସ୍ଥା' ସଂଶୋଧିତ ହୋଇ ଦୁରବସ୍ଥା ହେଲେ ଅନ୍ୟ କାମ କରାଯିବା ଉଚିତ ।

ସଂବାଦପତ୍ରରେ ତ ଗୋଟିଏ କବିତା -'କେଉଁଠାକୁ ଗଲେ'-ରେ ଅଛି 'କଲ୍‌ବଲ୍ ଦୁରାବସ୍ଥା..' । କବି କଲମରେ ଭାଷାରେ ଏପରି ଦୁରବସ୍ଥା !

## ସଂବାଦପତ୍ର

### ବ୍ୟାକରଣ

### (କ) ବିଶେଷ୍ୟ ଓ ବିଶେଷଣ ରୂପ :

ଗୋଟିଏ ଦୈନିକ ଖବର କାଗଜର ଏକ ଶୀର୍ଷକ । ଚିକିତ୍ସାଳୟ ପାଇଁ ଅଧିଗ୍ରହଣ ଜମି ଜବର ଦଖଲ ଯୋଗୁଁ (ଁ) ଅସନ୍ତୋଷ । 'ଅଧିଗ୍ରହଣ' ବିଶେଷ୍ୟ ପଦ । 'ଜମି'ର ପ୍ରକାର ସୂଚକ ବିଶେଷଣ ହେବ 'ଅଧିଗୃହୀତ' ।

ଅନୁପମ୍ ଖେର୍ ''ସେନ୍‌ସର ବୋର୍ଡ଼ର ଅଧକ୍ଷ ପଦରୁ ବହିଷ୍କୃତ ପରେ...'', ଏପରି ବାକ୍ୟରେ ବିଶେଷଣ ପଦ 'ବହିଷ୍କୃତ' ଏମଂତେ ରହିପାରଂତା : ...'ବହିଷ୍କୃତ ହେବାପରେ' । ଅନ୍ୟରୂପେ ବିଶେଷ୍ୟ ପଦ 'ବହିଷ୍କାର ପରେ' ହୁଅଂତା ।

କ୍ରୀଡ଼ା ପୃଷ୍ଠାରେ ଅଛି : ''ଯୋଜନାର ସଠିକ୍ କାର୍ଯ୍ୟକାରୀ ଯୋଗୁଁ ସଫଳ ହେଲୁ (ଁ) -ମାଥ୍ୟୁ ହେଡେନ୍'' । 'କାର୍ଯ୍ୟକାରିତା' (ବିଶେଷ୍ୟ) ସହିତ 'ଯୋଗୁଁ' ଲାଗିବ; ବିଶେଷଣ 'କାର୍ଯ୍ୟକାରୀ ସହିତ ନୁହେଁ ।'

ଏକ ସଂପାଦକୀୟରେ ଅଛି : ''ଗତବର୍ଷ ଆମର ବୈଦେଶିକ ମୁଦ୍ରା ଗଚ୍ଛିତ ପରିମାଣରେ ୨୭ ବିଲିଅନ୍ ଡଲାର ବୃଦ୍ଧି ଘଟିଛି ।'' ବିଶେଷ୍ୟ 'ମୁଦ୍ରା' ପୂର୍ବରୁ ଏହାର ସ୍ଥାନ : ଗଚ୍ଛିତ ମୁଦ୍ରା ।

ରାଶିଫଳ ବିଚାରରେ ଜ୍ୟୋତିଷ ଭାଷା ଭୁଲ୍ କଲେ ତାଂକ ଉପରେ ଗ୍ରହ ରୁଷ୍ଟ ହେବା ସଂଭାବନା । ଦେଖଂତୁ 'ଯାନବାହାନ ଚଳାଚଳରେ ସାବଧାନ ଲୋଡ଼ା ।' ବିଶେଷଣ ନୁହେଁ, ବିଶେଷ୍ୟ 'ସାବଧାନତା' ବ୍ୟବହାର୍ଯ ।

ଏକ ସଂପାଦକୀୟ ବାକ୍ୟ, ''ଇରାନ୍‌ର ପରମାଣୁ କାର୍ଯ୍ୟକ୍ରମକୁ ନେଇ.... ଆମେରିକା ନିଜର ନାରାଜ ମଧ ପ୍ରକାଶ କରିଛି ।'' ବିଶେଷଣ 'ନାରାଜ' ନୁହେଁ ବିଶେଷ୍ୟ 'ନାରାଜି' ବା ଅସଂତୋଷ ବ୍ୟବହାର୍ଯ ।

ଖବର ! ''....ବିଜେପି ଏଥିରେ ଅସନ୍ତୁଷ୍ଟତା ବ୍ୟକ୍ତ କରିଥିଲା ।'' ଏହା ଏକ ନାହିଁ ନଥିବା ଶବ୍ଦ । ବିଶେଷଣ 'ଅସନ୍ତୁଷ୍ଟ' ସ୍ଥାନରେ ବିଶେଷ୍ୟ 'ଅସନ୍ତୋଷ' ଆବଶ୍ୟକ ଥିଲା ।

ସେହିପରି ଅନ୍ୟ ଏକ ଶବ୍ଦ, କବିତା ରେ (!) : ''...ତୋ ସାନ୍ନିଧତା ପାଇଁ କିଲବିଲ ହେବା ।'' ସନ୍ନିଧ, ସନ୍ନିଧାନ, ସାନ୍ନିଧ୍ୟ, ନୈକଟ୍ୟ ସାମୀପ୍ୟ-ଏତେ ଶବ୍ଦ ଅଛି ପାଖାପାଖି ଜାକିଜୁକି ହେବା ଭାବ ପ୍ରକାଶ କରିବାପାଇଁ । ନାହିଁ ନଥିବା 'ସନ୍ନିଧତା' କବିତାକୁ ବିକଳ କରୁଛି ।

'ଅନାମଧ୍ୟେୟ'ର ଅର୍ଥ ଅନାମଧେୟ ନୁହେଁ । ନାମ (ବି)ରୁ ବିଶେଷଣ 'ନାମଧେୟ', ବିପରୀତ ଶବ୍ଦ 'ଅନାମଧେୟ', ଅର୍ଥ ନାମହୀନ। ପରମାତ୍ମା ଅନାମ ଅଟଂତି । ଅନାମ ଧ୍ୟେୟର ଅର୍ଥହେବ, ପରମାତ୍ମା ଧ୍ୟାନର ଯୋଗ୍ୟ ବା ପରମାତ୍ମାଂକୁ ଧ୍ୟାନ କରିବା ଉଚିତ ।

ହାୟ ହାୟ ଏ କି ଶବ୍ଦ -'ପାତିବ୍ରତ୍ୟତା' ! ''ବାହାଘର : ପୁଅର ୩୦କୁ ଝିଅର ୧୫'' ବର୍ଷ 'ନହେଲେ ପାତିବ୍ରତ୍ୟତା, ଅନୁଗତତା ଆଦି ଗୁଣଗୁଡ଼ିକ ପତ୍ନୀଠାରେ ନ ଆସିବା ସ୍ୱାଭାବିକ ।'' ସତେ ଅବା ଶ୍ରୀ ସନ୍ୟାସୀଂକ 'ସନ୍ଥ ବିଚାର'ରେ ଠିକ୍ ଶବ୍ଦ 'ପାତିବ୍ରତ୍ୟ'କୁ 'ତା' ଯୁକ୍ତ କଲେ ପତ୍ନୀର ପାତିବ୍ରତ୍ୟ ଅଧିକ ମହିମା ମଂଡିତ ହୋଇଯାଏ । 'ଅନୁଗତ'କୁ 'ତା' ଦେଇ ଆଉ ଏକ ଅଜବ ବିଶେଷ୍ୟ ତିଆରି କରାଯାଇଛି, 'ଅନୁଗତତା' ! ଠିକ୍ ଶବ୍ଦ, ଆନୁଗତ୍ୟ ମାଡ଼ ଖାଇଗଲା ।

ଏକ ଛୋଟ ଦୈନିକ ଖବରକାଗଜର ଗୋଟିଏ ସଂବାଦ ଶୀର୍ଷକରେ ଥିଲା 'ସାଫଲ୍ୟତା' । ସଂବାଦିକ ହୁଏତ 'ସାଫଲ୍ୟ'ରେ ସଂତୁଷ୍ଟ ହୋଇ ନଥିଲେ, 'ସଫଳତା' ମଧ୍ୟ ଖୋଜି ନଥିଲେ ।

''ଆମ ସ୍ୱାଭିମାନର ପ୍ରତୀକ 'କବି ଜଗନ୍ନାଥ ଦାସ' ନାମକ ଏକ ପ୍ରବଂଧରେ ଶବ୍ଦଟିଏ - 'ଔଜଲ୍ୟତା' । ଗୋଟିଏ ଶବ୍ଦରେ ଦୁଇଟି ଭୁଲ୍ : 'ଜ'ରେ 'ୱ' ନାହିଁ ତ ଶେଷରେ 'ତା' ଯୁକ୍ତ ହୋଇଛି । 'ଔଜ୍ଜ୍ୱଲ୍ୟ' ବା 'ଉଜ୍ଜ୍ୱଳତା' ହେବ ।

କ୍ରୀଡ଼ା ସଂବାଦରେ ଜଣେ ଖେଳାଳୀଂକ ସଂପର୍କରେ ଏଇ ଉକ୍ତି : ''...ସଫଳତା ଯାହାଙ୍କ ପଶ୍ଚାତଧାବନ'' । 'ପଶ୍ଚାତ୍‌ଧାବକ' ହେବ, ବା 'ପଶ୍ଚାତ୍‌ଧାବନ କରେ'-ଏପରି କହିଲେ ସିନା ହେବ ।

**(ଖ) ଲିଂଗଭେଦ୍ :**

ଗୋଟିଏ ଖବରରେ ଅଛି : ''ଅଭିଯୋଗକାରିଣୀ ହେଲା ଅଭିଯୁକ୍ତର ଦ୍ୱିତୀୟ ପତ୍ନୀ''... ''ସଂପର୍କୀୟା ଭିଣୋଇ...'' ଇତ୍ୟାଦି । 'ପତ୍ନୀ' ହୋଇଯାଇଛି ପୁଂଲିଂଗ, 'ଭିଣୋଇ' ସ୍ତ୍ରୀଲିଂଗ !

ଏକ ଖବରକାଗଜ ଶବ୍ଦ କ୍ରମରେ ସ୍ତ୍ରୀଲିଂଗ ଗୁରୁତ୍ୱ ବଢ଼ାଇବାକୁ ଉଦ୍ୟମ କରୁଛଂତି । ତଳେ ଦିଆଯାଇଥିବା (କ) ଓ (ଖ) ଅଂତର୍ଗତ ଶବ୍ଦଯୋଡ଼ିଗୁଡ଼ିକରେ ଲିଂଗ ସ୍ଥିତି ବିଚାର କରଂତୁ :

(କ) ରାଧାକୃଷ୍ଣ, ଗୋପୀକୃଷ୍ଣ, ଲକ୍ଷ୍ମୀନାରାୟଣ, ସ୍ତ୍ରୀପୁରୁଷ

(ଖ) ନରନାରୀ, ଛାତ୍ରଛାତ୍ରୀ, ରାଜାରାଣୀ, ବାଳକବାଳିକା, ହରପାର୍ବତୀ

(କ) ବା (ଖ) କୌଣସି ବର୍ଗରେ, ପ୍ରତିଯୋଡ଼ିରେ ପ୍ରଥମ ଶବ୍ଦ ଯାହାଂକ ପାଇଁ ବ୍ୟବହାର କରାଯାଇଛି ସେ ଲିଂଗ ବିଚାରରେ ଅଧିକ ମହତ୍ତ୍ୱପୂର୍ଣ୍ଣ ନୁହଂତି । ଅକ୍ଷର ଓ ବନାନ୍ ମିଶି ଧ୍ୱନିମାତ୍ରା ଅଧିକ ଥିବ । ଶବ୍ଦ ଦ୍ୱିତୀୟରେ ସଂଯୋଜିତ ହେବାରୁ, ଊଣା-ଅଧିକ କ୍ରମ ଯୋଗୁଁ ପଦଲାଳିତ୍ୟ ସୃଷ୍ଟି ହେଉଛି । 'ନର'ରେ ମାତ୍ରା କମ୍, 'ନାରୀ'ରେ ବେଶି, 'ରାଧା'ରେ ଊଣା, 'କୃଷ୍ଣ'ରେ ଅଧିକ । ଖବରକାଗଜଟିରେ 'ନାରୀନର', 'ଛାତ୍ରଛାତ୍ରୀ' ଏପରି ଛାପିଲେ ନାରୀ ଓ ଛାତ୍ରୀମାନେ ଅଧିକ ସମ୍ମାନିତ ହେବେ ବୋଲି ମନେହୁଏ ।

**(ଗ) କ୍ରିୟା ଓଲଟପାଲଟ :**

'କ୍ଷମା ପ୍ରାର୍ଥନା ମାଗିଲେ', ଏପରି କହିଲେ କଅଣ ବୁଝାଯାଏ ? ଜଣେ ଅନ୍ୟାୟ କରିଛଂତି; ତାଂକୁ ଆଉ ଜଣେ 'କ୍ଷମା ପ୍ରାର୍ଥନା' କରଂତୁ ବା କ୍ଷମା ମାଗଂତୁ ।

ବକ୍ତା (ଅନ୍ୟାୟକାରୀ) 'କ୍ଷମା ପ୍ରାର୍ଥନା କଲେ' ବା 'କ୍ଷମା ମାଗିଲେ', ଏମିତି କହିଲେ ଅର୍ଥ ସ୍ପଷ୍ଟ ହେବ ଯେ ସେ ଅନ୍ୟାୟ କରିଥିବାରୁ ଅନୁତପ୍ତ; ତେଣୁ କ୍ଷମା ମାଗୁଛଂତି ।

ଜଗନ୍ନାଥ ଦାସଂକ ଭାଗବତ ପଠନ ପ୍ରସଂଗରେ ଗୋଟିଏ ବାକ୍ୟର କର୍ତାକ୍ରିୟା ସଂପର୍କ ବିଚାର କରଂତୁ : ''ବର୍ଷସାରା ଏହାକୁ ପଠନ କରାଯାଇ ଭାଦ୍ରବ ପୂର୍ଣ୍ଣିମା ଦିନ ଉଦ୍‌ଯାପିତ୍ ହୋଇଥାଏ ଓ ପୁନଃ ଆରମ୍ଭ ହୁଏ ।'' ନିମ୍ନମତେ ସଂପର୍କ ଓ ବାଚ୍ୟ ସ୍ପଷ୍ଟହେବ :

୧.....ପଠନ କରାଯାଇ....ଉଦ୍‌ଯାପନ କରାଯାଏ ଓ ପୁନଃ ଆରଂଭ କରାଯାଏ ।

୨. ଏହା ପଠିତ ହୋଇ ....ଉଦ୍‌ଯାପିତ ହୋଇଥାଏ...ଅରଂଭ ହୁଏ ।

**(ଘ) କର୍ତା ସଂଧାନ**

'କୋଲ୍‌କାତା' ନାମ ହେବା ପରେ ବି ଛାପା ହେଉଥିବା 'କଲିକତା ଡାଏରୀ'ରେ ଦିନକର ଖବର ଏକାଂଶ : ଓଡ଼ିଆ ଆଇ.ଏ.ଏସ୍‌ଙ୍କୁ କୃତଜ୍ଞତା । ପ୍ରଥମ ବାକ୍ୟ : ''ମୁଖଗହ୍ୱର କର୍କଟ ରୋଗରେ ପୀଡ଼ିତ ହୋଇ ମୃତ୍ୟୁ ସହିତ ସଂଗ୍ରାମ କରୁଥିବା ବେଳେ ପଶ୍ଚିମବଙ୍ଗ ରାଜ୍ୟପାଳଙ୍କ ସଚିବ ଦିଲ୍ଲୀପ ରଥ ତାଂକୁ ସହାୟତା କରିଥିବାରୁ ବଲାଙ୍ଗୀରର ବିଶିଷ୍ଟ ଶିଳ୍ପପତି ସଞ୍ଜୀବ କାଉଣ୍ଟିଆ ତାଙ୍କୁ କୃତଜ୍ଞତା ଜଣାଇଛନ୍ତି ।'' ଇଂଲିଶ୍‌ରୁ ଅନୁଦିତ ବାକ୍ୟ ଇଂଲିଶ୍ ଢାଂଚାରେ ଗଠିତ ହୋଇଥିବାରୁ କର୍ତା, ସଂଜୀବ କାଉଁଟିଆ, ପ୍ରଥମେ ନ ରହି ବହୁଦୂରକୁ ସ୍ଥାନାଂତରିତ ହୋଇଛି; ଦୁଇଟି 'ତାଙ୍କୁ' ଆସିଛି; ରାଜ୍ୟପାଳଂକ

ସଚିବ ପୀଡ଼ିତ ହେବା ଧାରଣା ଆସି ପରେ ବଦଳିଛି। ବାକ୍ୟଟି ଏପରି ହେଲେ ଓଡ଼ିଆ ହୁଅଂତା ଓ ବକ୍ତବ୍ୟ ପରିଷ୍କାର ହୁଅଂତା : ବଲାଂଗୀରର ବିଶିଷ୍ଟ ଶିଳ୍ପପତି ସଂଜୀବ କାଉଁଟିଆ ମୁଖ ଗହ୍ୱର କର୍କଟ ରୋଗରେ ପୀଡ଼ିତ ହୋଇ ମୃତ୍ୟୁ ସହିତ ସଂଗ୍ରାମ କରୁଥିବା ବେଳେ ପଶ୍ଚିମ ବଙ୍ଗ ରାଜ୍ୟପାଳଙ୍କ ସଚିବ ଦିଲ୍ଲୀପ ରଥ ତାଂକୁ ସହାୟତା କରିଥିବାରୁ ସେ/ଶ୍ରୀ କାଉଁଟିଆ ତାଂକୁ କୃତଜ୍ଞତା ଜଣାଇଛଂତି ।

**ଅବିନ୍ୟସ୍ତ ପଦାବଳୀ, ଅନିଶ୍ଚିତ କର୍ତ୍ତା :**

'ମଧ୍ୟ' ଶବ୍ଦଟି କେଉଁଠି ବସିଲେ କି ଅର୍ଥ ପ୍ରକାଶ କରେ, ସାଂବାଦିକ ଓ ସଂବାଦପାଠକମାନଂକ ଧାରଣା ସ୍ପଷ୍ଟ ହେବା ଉଚିତ । ସଂବାଦପତ୍ରର ଗୋଟିଏ ଖବର :

ମୁଖ୍ୟମନ୍ତ୍ରୀ ବନ୍ୟାଞ୍ଚଳ ବୁଲି ଦେଖିଥିଲେ । ସେ ମଧ ଜିଲ୍ଲା କର୍ତ୍ତୃପକ୍ଷଙ୍କ ସହିତ ଆଲୋଚନା କରିଥିଲେ ।,

'ମଧ୍ୟ' ଦୁଇଟି ବାକ୍ୟର କ୍ରିୟାପଦ ସହିତ ସଂପର୍କିତ : 'ଦେଖିଥିଲି', 'ଆଲୋଚନା'(ମଧ୍ୟ) କରିଥିଲେ । 'ସେ ମଧ୍ୟ' କହିଲେ, ପୂର୍ବରୁ ଆଉ କେହି ଆଲୋଚନା କରିଥିଲେ, ଏପରି ଅର୍ଥ ଆସୁଛି; ଦୁଇଟି କର୍ତ୍ତାର ସଂଭାବନା ରହୁଛି । ଅଥଚ ମୁଖ୍ୟମଂତ୍ରୀଙ୍କ ସହିତ ଏହି କଳ୍ପିତ ଦ୍ୱିତୀୟ କର୍ତ୍ତା ବକ୍ତବ୍ୟରେ ଅପେକ୍ଷିତ ନୁହେଁ ।

**କର୍ତ୍ତାକାରକରେ ଦ୍ୱିତୀୟା ବିଭକ୍ତି ? :**

ଖେଳ ଖବରରେ "୧୬ ପୂର୍ବତନ ଅଧିନାୟକଙ୍କ ସମେତ ଲଏଡ଼ଙ୍କୁ ସମ୍ମାନିତ ।" ଲଏଡ୍ ସମ୍ମାନିତ; ଏତେ ସହଜ ପ୍ରଥମା ବିଭକ୍ତି !

**(ଢ) ବାକ୍ୟ ଗଠନ :**

ଗୋଟିଏ ଦୈନିକ ଖବରକାଗଜର ପ୍ରଥମ ପୃଷ୍ଠା ଖବରରେ ଏପରି ତିନୋଟି ବାକ୍ୟ (?) ଥିଲା : (୧) ଆଗାମୀ ଦିନର ରାଜ୍ୟର ନେତୃତ୍ୱ ଓ ମୁଖ୍ୟ ମନ୍ତ୍ରୀ ହେବେ କି ବୋଲି ପ୍ରଶ୍ନ ହେବାରୁ ଶ୍ରୀ ପଟ୍ଟନାୟକ କହିଥିଲେ ଯେ ଏ ସଂପର୍କରେ ରାଜ୍ୟବାସୀ ନିଷ୍ପତ୍ତି ନେବେ । (୨)... ଏହି ସମସ୍ୟା ଦୂର କରାଯିବାକୁ ସେ ଉଦ୍ୟମ ଅବ୍ୟାହତ ରଖିବେ । (୩) ଶ୍ରୀ ପଟ୍ଟନାୟକ ଗୋପାଳପୁର ବନ୍ଦରର ବିକାଶ ପାଇଁ କେନ୍ଦ୍ର ସରକାରଙ୍କଠାରେ ଚାପ ସୃଷ୍ଟି କରାଯିବ ।

(୧)ରେ ଦୁଇଟି ପ୍ରଶ୍ନ ଯୁଗ୍ମ ଭାବରେ ରହିଛି । ଅଲଗା କରିଦେଲେ ହେବ: (କ) ..ନେତୃତ୍ୱ ନେବେ କି ? (ଖ)....ମୁଖ୍ୟମନ୍ତ୍ରୀ ହେବେ କି ? କେବଳ 'ହେବା' କ୍ରିୟା ଦ୍ୱାରା ଓ ଦୁଇଟି ବାକ୍ୟ ଯୋଡ଼ାଯାଇ ପାରିବନାହିଁ । 'ନେବା' ଓ 'ହେବା' ଦୁଇଟି କ୍ରିୟାପଦ ଦରକାର ।

(୨) ରେ କର୍ମବାଚ୍ୟ, 'କରାଯିବାକୁ' ଏବଂ କର୍ତ୍ତୃବାଚ୍ୟ 'ରଖିବେ', ଦୁଇ ବାଚ୍ୟର ଦୁଇଟି କ୍ରିୟାପଦ ମିଶିଯିବାରୁ ସଂପୂର୍ଣ୍ଣ ବାକ୍ୟଟି କୌଣସି ବାଚ୍ୟରେ ରହିଲା ନାହିଁ । ଅନ୍ୟଭାବେ କହିଲେ, ବାକ୍ୟହିଁ ହେଲାନାହିଁ ।

(୩) କର୍ତ୍ତୃବାଚ୍ୟରେ ବାକ୍ୟ ଆରଂଭ ହୋଇ କର୍ମବାଚ୍ୟରେ ସମାପ୍ତ ହେଲା : 'ଶ୍ରୀ ପଟ୍ଟନାୟକ ...କରାଯିବ । '...ଚାପ ସୃଷ୍ଟି କରିବେ' ବା 'ଶ୍ରୀ ...କହିଲେ, ଚାପର ସୃଷ୍ଟି କରାଯିବ' ଠିକ୍ ହୁଅଂତା ।

**ପୁନରାବୃତ୍ତି :**

ସମ୍ବାଦ ସାଲାଡ୍‌ରେ ଥିବା 'ଖିୟାଲି ଶିଳ୍ପୀ'ରେ ଏକ ବାକ୍ୟାଂଶ : "୩୦ ହଜାର କଦଳୀ ସ୍ତୁପାକାର ଆକାରରେ ଗଦାକରି..." । "...ସ୍ତୁପାକାରରେ ସଜାଇ... " ହୋଇପାରିଲା ନାହିଁ । ଚାଲିଲା : ସ୍ତୁପ=ଗଦା, ଆକାର-ଆକାରରେ । ବନାନ୍ ମଧ ହେବାର ଥିଲା :ଖିଆଲୀ, ସ୍ତୂପ ।

ଗୋଟିଏ ସାପ୍ତାହିକ ପତ୍ରିକାର ସଂପାଦକୀୟ ଲେଖାରେ ଥିଲା 'ଆତ୍ମ-ସ୍ୱାଭିମାନ' । ଆତ୍ମ - ସ୍ୱ । ତେଣୁ କେବଳ 'ସ୍ୱାଭିମାନ' ବା 'ଆତ୍ମାଭିମାନ' ହେବ ।

ଏକ ଦୈନିକ ସଂବାଦପତ୍ର ସଂପାଦକୀୟ ଲେଖାରେ ଥିଲା : 'ନିଜର ସ୍ୱକଳ୍ପିତ ସାର୍ବଭୌମତ୍ୱକୁ ସିଦ୍ଧ କରିବା ଲାଗି ...'ଇତ୍ୟାଦି । 'ନିଜ' ଯାହା 'ସ୍ୱ' ସେଇଆ । 'ନିଜର' ଅନାବଶ୍ୟକ ।

ଦିନକର କବିତା 'ବର୍ଷା'ର ଗୋଟିଏ ଧାଡ଼ି : ''ନୀଳ ନିମନ୍ତ୍ରଣର ଡାକରେ...'' । କେବଳ '...ନିମନ୍ତ୍ରଣରେ' କହିଲେ ଭାବ ବ୍ୟଂଜିତ ହେବ ।

**ପରସ୍ପର ବିରୋଧୀ ଓ ଅସ୍ପଷ୍ଟ :**

ଗୋଟିଏ ସଂବାଦ ଶୀର୍ଷକ : ''ନକଲି ମୋବାଇଲ୍ ଚେକିଂ ଅଫିସର କହି ଠକେଇ ।'' ନିଜକୁ 'ନକଲି' କହି କେହି ଠକେଇ କାମ କରି ପାରିବନାହିଁ । ସ୍ୱବିରୋଧୀର କାର୍ଯ୍ୟ ଅସିଦ୍ଧ ହୋଇଥାଏ । 'ନକଲି... ଅଫିସରଙ୍କ ଠକେଇ' ବା 'ମୋବାଇଲ...କହି ଠକେଇ' ହୋଇ ପାରିବ ।

''ପୁରୀରେ ଆଉ ଏକ ରାଜଭବନ ଦରକାର କି ? କହିଲେ ସଂଭାବନା ରହୁଛି ଯେ ପୁରୀରେ ଏକ ରାଜଭବନ ଅଛି; ଆଉ ଗୋଟିଏ ଦରକାର କିନା ପ୍ରଶ୍ନ କରାଯାଉଛି । 'ଆଉ' ଶବ୍ଦଟି ଅସ୍ପଷ୍ଟ କରୁଥିବାରୁ ବାଦ୍ ଦେବା ଭଲ୍ ।

**ପାଇଁ, ନିମଂତେ, ହେତୁ, ଫଳରେ :**

'କଫ ପାଇଁ ଗୋଲମରିଚ, ଲବଙ୍ଗ, ଡାଲଚିନି, ମେଥି, ଅଦା, ପୋଦିନା ଓ ଜାଇଫଳ' ଖିଆଯାଏ ନା 'କଫ ନିରାକରଣ ପାଇଁ ?' 'କଫ ପାଇଁ' ହେଲେ ତ କଫ ବଢ଼ିଯିବ ! 'ସୁନାମୀ ପାଇଁ' ଅର୍ଥ ସଂଗ୍ରହ ଓ କାର୍ଯ୍ୟକ୍ରମ ପ୍ରସ୍ତୁତ କଲେ, ଆଉ ଏକ ସୁନାମ ଘଟାଇବା ଭାବ ପ୍ରକାଶ ପାଏ । ''..ତାମିଲ୍‌ନାଡୁ ଓ ଅଣ୍ଡାମାନ୍ ନିକୋବାରର ବିପର୍ଯ୍ୟୟ ପାଇଁ, ରାଜ୍ୟ ସରକାରମାନେ ସାହାଯ୍ୟ ଘୋଷଣା କରିଛନ୍ତି ।'' ବିପର୍ଯ୍ୟୟ ଘଟାଇବା ପାଇଁ, ଏପରି ଭାବ ଆସୁଛି । ଗୋଟିଏ ମାତ୍ର ଶବ୍ଦ 'ମୁକାବିଲା' (ବିପର୍ଯ୍ୟୟ ମୁକାବିଲା ପାଇଁ) ଉକ୍ତି ସ୍ପଷ୍ଟ କରିଦେବ ।

**ବନାନ୍ :**

ଶବ୍ଦମାନେ ସାଂବାଦିକଂକଠାରୁ ସଂପାଦକ, କବି, ଲେଖକଲେଖିକାଂକ ପର୍ଯ୍ୟଂତ, ଖବରକାଗଜ ସହିତ ସଂପୃକ୍ତ ପ୍ରାୟ ସମସ୍ତଂକ ଅବହେଳା ଓ ଅତ୍ୟାଚାରର ଶିକାର ହେଉଛଂତି । ପ୍ରତିଦିନର ଯେ କୌଣସି ଖବରକାଗଜ ଉପରେ ନଜର ଦେଲେ ବନାନ ବ୍ୟତିକ୍ରମରେ ଶବ୍ଦଗୁଡ଼ିକ କେମିତି ବିପର୍ଯ୍ୟସ୍ତ, ଜଣାପଡ଼େ । କେତେଗୁଡ଼ିଏ ଭୁଲ୍-ଠିକ୍ ଶବ୍ଦ ତାଲିକା ଦିଆଯାଉଛି :

| ଭୁଲ୍ | ଠିକ୍ |
|---|---|
| ଭୁଲ | ଭୁଲ୍ |
| ଠିକ | ଠିକ୍ |
| ସହିଦ | ଶହୀଦ୍ |
| ପଦଧ୍ୱନୀ | ପଦଧ୍ୱନି |
| କାକଳୀ | କାକଳି |
| ମୂର୍ତ୍ତୀ, ପ୍ରତିମୂର୍ତ୍ତୀ | ମୂର୍ତ୍ତି (ମୂର୍ତି), ପ୍ରତିମୂର୍ତ୍ତି (ପ୍ରତିମୂର୍ତି) |
| ଭାବମୂର୍ତ୍ତୀ | ଭାବମୂର୍ତ୍ତି (ଭାବମୂର୍ତି) |
| ସର୍ବୋତଭାବେ | ସର୍ବତୋଭାବେ |
| ପ୍ରୀୟା (କବିତାରେ) | ପ୍ରିୟା |
| ସୁଖିଲା | ଶୁଖିଲା (ଶୁଷ୍କ) |

| ଭୁଲ୍ | ଠିକ୍ |
|---|---|
| ତଟନୀ | ତଟିନୀ |
| ନିଷ୍ପତି | ନିଷ୍ପତ୍ତି |
| ବିବୃତ୍ତି | ବିବୃତି |
| ଦମ୍ପତ୍ତି | ଦମ୍ପତି |
| ଜୁବୁଲି, ଜୁବ୍‌ଲି | ଜୁବିଲୀ (jubilee) |
| ଧନନ୍ତ୍ୱରୀ | ଧନ୍ୱନ୍ତରୀ |
| ମଜ୍ଜା (ଆନଂଦ) | ମଜା, ମଜ୍ଜା (ହାଡ଼ରସା ବା ହାଡ଼ର ମଂଜ) |
| ମକ୍କା (ଫଳ) | ମକା, ମକ୍କା (ମୁସ୍‌ଲମାନ ତୀର୍ଥସ୍ଥାନ) |
| ଉଦ୍‌ବୁଧ | ଉଦ୍‌ବୁଦ୍ଧ |
| କୃତୀ-ବି (କାର୍ଯ୍ୟ, | କୃତି |
| କୃତିତ୍ୱ, ରଚନା) | କୃତୀ-ବିଂ (ନିପୁଣ, ସମର୍ଥ, ପଂଡିତ) |
| ବଡ | ବଡ଼ |
| ଡ଼ାକ୍ତର | ଡାକ୍ତର |
| ହୁଏତଃ | ହୁଏତ |

('ସମ୍ଭବତଃ'ରୁ ଭ୍ରମରେ ଆନୀତ 'ଃ')

କିଛିକାଂଶରେ ('କେତେକ' ଶବ୍ଦରୁ କିଛି ଅଂଶରେ, କେତେକାଂଶରେ ଭ୍ରମବଶତଃ ଉତ୍ପନ୍ନ) ଗୋଟିଏ ଅକ୍ଷର 'ଡ' ତଳେ ବିଂଦୁ (.) ଦେଲେ ଆଉ ଗୋଟିଏ ଅକ୍ଷର 'ଡ଼' ହୁଏ । ନ ଦେଲେ ବେଳେବେଳେ ସାଂଘାତିକ ଅର୍ଥ ବାହାରିପାରେ । ଗୋଟିଏ ଖବରକାଗଜର 'ନାରୀଶକ୍ତି ବିଭାଗରେ ବାକ୍ୟଟିଏ : "...ପ୍ରଥମେ ବଡ଼ି ବେପାର ଆରମ୍ଭ କଲୁଁ (ଲୁଁ) ଓ ଏଥିରେ ସଫଳ ହେଲୁ (ଲୁଁ) ବୋଲି କହନ୍ତି ଗୋଷ୍ଠୀର ଜଣେ ସଦସ୍ୟା ।" 'ବଡ଼ି' ବିଲଡିଂ, ବସ୍, ଟ୍ରକ୍‌ର 'ବଡି' ଇତ୍ୟାଦି ଅଧିକାଂଶ ଲୋକ ବୁଝଂତି । ବିଂଦୁ ଦେଇ 'ବଡ଼ି' କରିବା ଜରୁରୀ ।

ବିଂଦୁ ଭଳି ଟିକିଏ ଟିକିଏ କଥା ଆମର କେଡ଼େ ମୁଂଡବ୍ୟଥାର କାରଣ ! ଭାଷା ଶିଳ୍ପରେ ସଂପୃକ୍ତ ସମସ୍ତଂକର ସ୍କୁଲ ସ୍ତରର ବ୍ୟାକରଣ ଭଲ ଭାବରେ ପଢ଼ିବା ଓ ବନାନ ଅଭ୍ୟାସ କରିବା ଉଚିତ । ସଂପୃକ୍ତ ଅଧିକାରୀ, ସ୍ୱତ୍ୱାଧିକାରୀମାନେ କିଛି ସମୟ ଦିଅଂତୁ; କର୍ମଚାରୀ, ସଂବାଦଦାତା, ଓ ସଂବାଦ ପାଠକମାନଂକ ଭାଷା ନିଷ୍ଠା ପରୀକ୍ଷା କରିନିଅଂତୁ; ନିୟମିତ କର୍ମଶାଳା ଅନୁଷ୍ଠାନ କରାଂତୁ, ମୁଦ୍ରଣ ସ୍ୱଚ୍ଛତା ଓ ପରିପାଟି ପ୍ରତି ଦୃଷ୍ଟି ଦିଅଂତୁ । ଏଥିରେ ବିଭାଗ ଓ ପୃଷ୍ଠା ସଂଖ୍ୟା କମ୍ ହେଉପଛେ ସଂବାଦପତ୍ରଟି ଶୁଦ୍ଧ ସୁଂଦର ହେବ । ଆକାଶବାଣୀ ଓ ଦୂରଦର୍ଶନରେ ଯଥାସଂଭବ ଅନୁରୂପ ବ୍ୟବସ୍ଥା ଗ୍ରହଣ କରାଯାଉ । କୌଣସି ଶ୍ରୋତା, ଦର୍ଶକ ବା ପାଠକ ତ୍ରୁଟି ଦର୍ଶାଇ ପତ୍ରଦେଲେ ମାଧ୍ୟମରେ ସଂପୃକ୍ତ ବ୍ୟକ୍ତିମାନେ ତାଂକୁ ନ୍ୟୂନ ମନେ ନ କରି, କାହାର ଗୌରବ ହାନି ହେଲା ବୋଲି ନ ବିଚାରି ତ୍ରୁଟି ସୁଧାରି ନେଲେ ଆମ ମାତୃଭାଷା କଳୁଷମୁକ୍ତ ହେବ । ଶ୍ରୀମଂଡନକାରୀ ସାଧକମାନଂକର ତ ଅଭାବ ନାହିଁ !

# ପ୍ରାକ୍ତନ ଇଂରାଜୀ ପ୍ରାଧ୍ୟାପକ, ଦେଉଳହାଟ, ବାଲେଶ୍ୱର - ୭୫୬ ୦୩୬

ତଥ୍ୟସୂତ୍ର :

୧.ଆକାଶବାଣୀ, ୨. ଇ.ଟି.ଭି., ଓଡ଼ିଆ, ୩. ଦୈନିକ ସଂବାଦ, ୪. ଦୈନିକ ପ୍ରଜାତଂତ୍ର, ୫. ଦୈନିକ ସମାଜ, ୬. ଦୈନିକ ଧରିତ୍ରୀ, ୭. ଦୈନିକ କାଳାନ୍ତର, ୮. ସାପ୍ତାହିକ ରାଷ୍ଟ୍ରଦୀପ

# ଆମେ ଓଡ଼ିଆ, ଆମ ଭାଷା..........

ଅଭୟ ଦ୍ୱିବେଦୀ

**କା**ନ୍ଦିକାନ୍ଦି ବୋଉକୁ କହିଲି - ବାପା ତା ଇଂରାଜୀ ଜାଣନ୍ତି : ଏଥର କହିବୁ ମୋ ପାଖକୁ ମନିଅର୍ଡର୍ କୁପନ୍‌ରେ ଇଂରାଜୀରେ ଚିଠି ଲେଖିବେ । ହଷ୍ଟେଲର ମୋରି ରୁମ୍‌ରେ ଆମ କ୍ଲସର ଗୋଟିଏ ପିଲା ରହୁଛି । ତାକୁ କେବଳ ଆମ ଅଷ୍ଟମ ଶ୍ରେଣୀ ପିଲା ମାନନ୍ତି ନାହିଁ , ସ୍କୁଲର ସିନିୟର ଛାତ୍ରମାନେ ମଧ୍ୟ ଖାତିର କରନ୍ତି । କାହିଁକି ଜାଣିଛୁ ? ତା ବାପା ତା ପାଖକୁ ସବୁବେଳେ ଇଂରାଜୀରେ ଚିଠି ଦିଅନ୍ତି ।

X X X X X

ବାଣୀ-ବିହାର ଛାତ୍ରଜୀବନର ଆନୁଭୂତି ଅନନ୍ୟ । ସଞ୍ଜବେଳେ ଆମେ ବୁଲିବାକୁ ବାହାରୁ । ଆମର ଜଣେ ସାଙ୍ଗ ତା ଜାମା-ପ୍ୟାଣ୍ଟ ଧୋବାକୁ ଦେବ ବୋଲି କାଗଉରେ ପ୍ୟାକେଟ୍ କରି ଆମ ସାଙ୍ଗରେ ଆସିଲା । ରାସ୍ତାରେ ଜଣେ ବନ୍ଧୁ ତାକୁ ମଜାରେ କହିଲା - ଆମ ସାଙ୍ଗରେ ବୁଲିବା ପାଇଁ ତୋ'ର ଯୋଗ୍ୟତା ନାହିଁ । ଓଡ଼ିଆ ପେପର୍‌ରେ ପ୍ୟାକେଟ୍ କରିଛୁ ? ସେ ଲଣ୍ଡ୍ରିବାଲା ଆମକୁ କ'ଣ ଭାବିବ ? ମଫ ନା ଚୁଡ଼ା ?

X X X X X

ନୂଆ ସହରରେ ଭଲ ଭଡ଼ାଘରଟିଏ ପାଇବା ଭାଗ୍ୟର କଥା । ମୁଁ ସେହିଭଳି ଭାଗ୍ୟବାନ୍ ଥିଲି । ଯେଉଁ କଲୋନୀରେ ଘରଟି ପାଇଲି ସେଠାରେ ସମସ୍ତେ ଶିକ୍ଷିତ ଏବଂ ସମ୍ଭ୍ରାନ୍ତ । ଦିନେ ସକାଳେ ଜଣେ ପଡ଼ୋଶୀ ମୋ ଘରକୁ ପଶି ଆସିଲେ । ଆଗରୁ ଥରେ ଦି'ଥର ଦେଖା ହୋଇଛି । ଚା ମଗାଇଲି । ସକାଳର ଖବରକାଗଜ ଦେଖାଇ କହିଲି - ଏ ଦେଶ କୁଆଡ଼େ ଗଲା ?

ବନ୍ଧୁଜଣକ ଅତି ଗର୍ବର ସହିତ କହିଲେ - ମୁଁ ଓଡ଼ିଆ ଖବରକାଗଜ ପଢ଼େନା । କାରଣ ମୁଁ ଓଡ଼ିଆ ପଢ଼ି ଜାଣେନା । ପିଲାଟି ବେଳୁ ବାହାରେ ରହିଲି ! ଓଡ଼ିଆ କହି ଦେଉଛି, ସେତିକି ଯଥେଷ୍ଟ ।

X X X X X

ଏ ଅନୁଭୂତି କେବଳ ମୋର ବ୍ୟକ୍ତିଗତ ନୁହେଁ ; ବିଭିନ୍ନ ପର୍ଯ୍ୟାୟରେ ଆମ ସମସ୍ତଙ୍କର । ସେଦିନ ଯଦି ମୋ ମା କିମ୍ବା ବାପା କେହି ମୋତେ ଗେହ୍ଲା କରି କହି ଦେଇ ଥାଆନ୍ତେ - ବାବୁରେ, ଧନରେ ! କେହି ଯଦି ସାଇରାବାନୁ ବା ଆଶା ପାରେଖକୁ ତୋ'ର ମା ବୋଲି ଚିହ୍ନାଇ ଦିଏ, ତୁ କ'ଣ ତୋ ନିଜ ମା'କୁ ଭୁଲି ସେମାନଙ୍କୁ ମା ବୋଲି ମାନିନେବୁ କି ? ତୋ ମା' ନିପଟ ମଫସଲୀ ହୋଇପାରେ, ଅସୁନ୍ଦରୀ ହୋଇପାରେ । କିନ୍ତୁ ସେ ହିଁ କେବଳ ମା' ମର୍ଯ୍ୟାଦାର ଅଧିକାରିଣୀ । ସେ ଅଧିକାର କେହି ତା ଠାରୁ ଛଡ଼ାଇ ନେଇ ପାରିବେ ନାହିଁ, କାରଣ ସେ ତୋର ଜନ୍ମଦାତ୍ରୀ ମା । ଠିକ୍ ସେହିଭଳି ଓଡ଼ିଆ ତୋର ମାତୃଭାଷା । ଅନ୍ୟ ଭାଷାକୁ ତୁ ଭଲ ପାଇ ସମ୍ମାନ ଦେଖା - କିନ୍ତୁ ମାତୃଭାଷାକୁ କେବେହେଲେ ଅବମାନନା କରନା । ଓଡ଼ିଆ ଭାଷାରେ ଲେଖିଲାବେଳେ, ପଢ଼ିଲାବେଳେ କିମ୍ବା କହିଲାବେଳେ ନିଜକୁ ଛୋଟ ବୋଲି ଭାବନା । ତୁମରିମାନଙ୍କ ସମ୍ବଳ କରି ସେ ସମୃଦ୍ଧ ହେବ, ଉନ୍ନତ ହେବ । ଓଡ଼ିଆ ଭାଷାରେ ତୁ ଏପରି ଗୋଟିଏ ଗ୍ରନ୍ଥ ରଚନା କରିବା ପାଇଁ ସଙ୍କଳ୍ପ କର, ଯାହା ସମଗ୍ର ବିଶ୍ୱବାସୀଙ୍କୁ ମୁଗ୍ଧ ଚକିତ କରିଦେବ ।

ଯଦି 'ବାଣୀବିହାରର' ସେହି ବନ୍ଧୁଙ୍କୁ କେହି ଥରେ ହେଲେ କହିଥାନ୍ତା - ଓଡ଼ିଆ ଖବରକାଗଜରେ ପ୍ୟାକେଟ୍ କଲେ ଯଦି ଲାଜ ଲାଗେ, ଓଡ଼ିଆରେ କଥାବର୍ତ୍ତା ହେଲେ ଯଦି ମଫ ବୋଲି କୁହାଯାଏ ତେବେ ହୀନମନ୍ୟତା ଆମ ଭାଷାରେ ନାହିଁ ; ଆମ ଭିତରେ ରହିଛି ଏବଂ ଉଇହୁଙ୍କା ବାନ୍ଧି ଆମ ଚାରି ପାଖରେ ଆମକୁ ଘେରି ଯାଇଛି । ସେଇ ଉଇହୁଙ୍କାକୁ ଭାଙ୍ଗି ପାରିଲେ, ଆମେ ଆମର ବିଭବ ଏବଂ ଐଶ୍ୱର୍ଯ୍ୟର ସନ୍ଧାନ ପାଇବା । ଆମ ଭାଷା ଆମର ବିଭବ, ଆମର ଐଶ୍ୱର୍ଯ୍ୟ ।

ଯେଉଁ ବନ୍ଧୁ ସେଦିନ ଗର୍ବର ସହିତ କହିଲେ - ମୁଁ ଓଡ଼ିଆ ପଢ଼ି ଜାଣେନା, ତାଙ୍କ ଭଳି ଅକୃତଜ୍ଞ ସନ୍ତାନ ବୋଧହୁଏ ସଂସାରରେ ବିରଳ ; ଏକଥା ବୋଧହୁଏ କେହି ତାଙ୍କୁ ମୁହିଁ ଖୋଲି କହି ନାହାନ୍ତି । ଏହି ରାଜ୍ୟରେ ତାଙ୍କ ଜନ୍ମ, ଅଥଚ ଆଦ୍ୟ ଜୀବନର ମାତ୍ର କିଛି ବର୍ଷ ବାହାର ରାଜ୍ୟର କେଉଁ ସ୍କୁଲ କଲେଜରେ ପାଠ ପଢ଼ି ଇଂରାଜୀ ଭାଷାକୁ ଏମିତି ଆଦରି ନେଲେ ଯେ ନିଜ ମାତୃଭାଷା ତାଙ୍କୁ ଅସ୍ପୃଶ୍ୟ ମନେ ହେଲା । ଏହି ସହରରେ ସେ ପ୍ରାୟ ବିଗତ ପଚିଶ ବର୍ଷରୁ ଊର୍ଦ୍ଧ୍ୱ ହେବ ରହି ଆସୁଛନ୍ତି । ତାଙ୍କ ପିଲାମାନେ ମଧ୍ୟ ଏହି ସହରରେ ପାଠ ପଢ଼ିଛନ୍ତି । ଅଥଚ ତାଙ୍କ ମନ ଟିକିଏ ବଳିଲା ନାହିଁ ଓଡ଼ିଆ ଅକ୍ଷର ଦି'ଟା ଶିଖିବା ପାଇଁ ? ଏଇମାନେ ହିଁ ଅକୃତଜ୍ଞ ।

ଚେତନାର ସ୍ତର କିଭଳି ସଙ୍କୁଚିତ ହେଲେ ଜଣେ ମଣିଷ ନିଜର ସବୁ ମୋହ ତୁଟାଇ ପାରେ, ବୋଧହୁଏ ଆମ ଓଡ଼ିଆଙ୍କ ବ୍ୟତୀତ ଆଉ ଅଧିକ କେହି ଭଲଭାବେ ଜାଣି ନଥିବେ ! ଆମ ଅନ୍ତରଟା ଯେଉଁ ପରିମାଣରେ ଶୁଖି ଶୁଖି ଯାଉଛି, ଆମେ ଆମର ବାହାରଟାକୁ ସେହି ଅନୁପାତରେ ଖୋଳପାରେ ଢ଼ାଙ୍କି ରଖିବାକୁ ଶ୍ରେୟ ମନେ କରୁଛୁ ।

ଏକ ସ୍ୱାଭାବିକ ପ୍ରଶ୍ନ ମନରେ ଆସେ - ଏହାର ମୌଳିକ କାରଣ କ'ଣ ? ପ୍ରଥମତଃ: ଶହ ଶହ ବର୍ଷର ପରାଧୀନତା, ବିଶେଷ କରି ଗୋଲାମୀଗିରି ଆମ ହୃଦୟର ସୂକ୍ଷ୍ମତମ ତନ୍ତ୍ରୀକୁ ସମ୍ପୂର୍ଣ୍ଣ ଭାବେ ଛିନଭିନ କରି ଦେଇଛି, ଏଥିରେ ସନ୍ଦେହ ନାହିଁ । ଜଣେ ଗୋଲାମ ବା କ୍ରୀତଦାସର ନିଜସ୍ୱ ସ୍ଥିତି ବୋଲି କିଛି ନ ଥାଏ । ସବୁବେଳେ ସେ ମାଲିକର ସବୁ କିଛିକୁ ଭଲ ବୋଲି କହୁଥାଏ । ତା ନିଜ ଛୁଆକୁ ସେ ଅଧିକ ଭଲ ପାଏ, ଏ କଥା ମଧ୍ୟ ସେ ମୁକ୍ତକଣ୍ଠରେ କହି ପାରେନା ; ବରଂ ତା ମାଲିକର ଛୁଆକୁ ଅଧିକ ଭଲ ପାଏ ବୋଲି ଚାରିଆଡ଼େ ଦୃଢ଼କଣ୍ଠରେ କହି ବୁଲୁଥାଏ । ଏପରିକି ସେଇମାନେ ଡାଡି, ମମି ଡାକ ଶୁଣିଲେ ଛାତି ଫୁଲେଇ ଦି ପାହୁଣ୍ଡ ଅଧିକ ବାଟ ଚାଲିପାରନ୍ତି ବୋଲି ବିଶ୍ୱାସ କରନ୍ତି ।

ମାତ୍ର ଏହା ଯଦି ସମ୍ପୂର୍ଣ୍ଣ ସତ୍ୟ, ତେବେ ଏହି ନିୟମ ମଧ୍ୟ ଆମ ପଡ଼ୋଶୀ ରାଜ୍ୟମାନଙ୍କ ପାଇଁ ଲାଗୁ ହେବା କଥା । ମାତ୍ର ଆମେ ସମସ୍ତେ ଜାଣୁ, ଅନେକ ପଡ଼ୋଶୀ ରାଜ୍ୟ ପାଇଁ ଏ ନିୟମ ଅଦୌ ଲାଗୁ ନୁହେଁ । ଆମର ଦୁଇ ଜଣ ଶିକ୍ଷିତ ବନ୍ଧୁ ଯଦି ରାଜ୍ୟ ବାହାରେ କେଉଁଠି ଅକସ୍ମାତ ଭେଟ ହୋଇ ଯାଆନ୍ତି, ତେବେ ଇଂରାଜୀ ବ୍ୟତୀତ ଓଡ଼ିଆ ଭାଷା ବୋଧହୁଏ ସେମାନଙ୍କ ପାଟିରେ ପଶେନି । ଭୁବନେଶ୍ୱର ବିମାନ ବନ୍ଦରରେ ଯେଉଁ ଶିକ୍ଷିତ ଓଡ଼ିଆମାନେ ଉଡ଼ାଜାହାଜରେ ଚଢ଼ନ୍ତି, ସେମାନଙ୍କ ମଧ୍ୟରୁ ଅଧିକାଂଶ, ଓଡ଼ିଆ ଖବରକାଗଜ କିମ୍ବା ପତ୍ରପତ୍ରିକା ସାଙ୍ଗରେ ନେବାକୁ ଅପମାନଜନକ ବୋଲି ମନେ କରନ୍ତି । ମାତ୍ର ଅନ୍ୟ ରାଜ୍ୟର ଯାତ୍ରୀମାନେ ତାଙ୍କ ମାତୃଭାଷାର ପତ୍ର ପତ୍ରିକା ଗର୍ବର ସହିତ ପଢୁଥାଆନ୍ତି ।

ଏହି ହୀନମନ୍ୟତାର ଅନ୍ୟ ଅନେକ କାରଣ ମଧ୍ୟରୁ ସର୍ବପ୍ରଧାନ ଏବଂ ସର୍ବପ୍ରଥମ ହେଉଛି ଯେଉଁମାନେ ଆମର ଆଦର୍ଶସ୍ଥାନୀୟ, ସେମାନେ କେବେହେଲେ ମାତୃଭାଷା ଓଡ଼ିଆକୁ ସମ୍ମାନ ଦେଇ ନାହାନ୍ତି, ଦେଉ ନାହାନ୍ତି ମଧ୍ୟ । ଆମେ ସମସ୍ତେ ସେହି ପରମ୍ପରାକୁ କେବଳ ସମୃଦ୍ଧ କରିବାରେ ଲାଗିଛୁ । ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ହେବାର ବହୁ ପୂର୍ବରୁ ଯେଉଁ ମହାନ ବ୍ୟକ୍ତିମାନେ ସାଧାରଣ

ଜନଜୀବନକୁ ପ୍ରଭାବିତ କରୁଥିଲେ ସେମାନଙ୍କ ମଧ୍ୟରୁ ଅନେକ, ବ୍ୟକ୍ତିଗତ ଜୀବନଚର୍ଯ୍ୟାରେ ଓଡ଼ିଆ ଭାଷାକୁ ଆଦୌ ସ୍ଥାନ ଦେଇ ନଥିଲେ । ଉତ୍କଳ ପ୍ରଦେଶ ଗଠନ ଏବଂ ସ୍ୱାଧୀନତା ପରେ ଏଯାବତ୍ ଅଧିକରୁ ଅଧିକ ନେତୃସ୍ଥାନୀୟ ବ୍ୟକ୍ତି କେବେହେଲେ ଓଡ଼ିଆ ଭାଷାକୁ ସମୃଦ୍ଧ କରିବାର ପ୍ରୟାସ କରି ନାହାନ୍ତି ବରଂ ଓଡ଼ିଆ ଭାଷାକୁ ତୃତୀୟ ପର୍ଯ୍ୟାୟର ସେହି ବନ୍ଧୁଙ୍କ ଭଳି ସବୁବେଳେ ଅବମାନନା କରି ଆସିଛନ୍ତି । ଏହି ହୀନମନ୍ୟତା ଆଜି ଆମର ଅସ୍ଥିମଜ୍ଜାକୁ ଭେଦ କରି ରକ୍ତରେ ପ୍ରବାହିତ ହେଉଛି ।

ଆଜି ଆମର ପ୍ରଥମ ଓ ପ୍ରଧାନ କର୍ତ୍ତବ୍ୟ ହେଉଛି ଏହି ତିନି ପର୍ଯ୍ୟାୟର ବ୍ୟକ୍ତିମାନଙ୍କୁ ଓଡ଼ିଆ ଭାଷାର ସମୃଦ୍ଧ ପରମ୍ପରା ସମ୍ପର୍କରେ ସଚେତନ କରେଇବା । କେବଳ କୁତୁକୁତୁ କଲେ ସମସ୍ୟାର ସମାଧାନ ହେବନାହିଁ, ବରଂ ନିଆଁରେ ସେମାନଙ୍କୁ ଦଗ୍ଧୀଭୂତ କରିବାକୁ ହେବ । ଆମେ ହୁଏତ ସେ ଉତ୍ତାପରେ ସିଝିଯାଇ ପାରୁ, ମାତ୍ର ସେଥିପାଇଁ ଆମକୁ ପ୍ରସ୍ତୁତ ରହିବାକୁ ହେବ ।

ଏ ଦାୟିତ୍ୱ ମୁଖ୍ୟତଃ ଗଣମାଧ୍ୟମର । କୋଲକାତାରୁ ଢ଼ାକା ମଧ୍ୟରେ ସଦ୍‌ଭାବନା ବସ୍ ଯାତ୍ରାରେ ପଶ୍ଚିମବଙ୍ଗ ସରକାର ପଠାଇଥିବା ତାଲିକାରୁ କେନ୍ଦ୍ର ସରକାର କୌଣସି କାରଣରୁ ସୁନୀଲ ଗଙ୍ଗୋପାଧ୍ୟାୟଙ୍କ ନାମ କାଟିଦେଲେ । ଏହା ବିରୋଧରେ ସମଗ୍ର ରାଜ୍ୟରେ ତୀବ୍ର ପ୍ରତିକ୍ରିୟା ପ୍ରକାଶ ପାଇଲା । ବାଧ୍ୟ ହୋଇ କେନ୍ଦ୍ର ସରକାର ସୁନୀଲ ଗଙ୍ଗୋପାଧ୍ୟାୟଙ୍କ ନାମ ତାଲିକାଭୁକ୍ତ କଲେ । ଜଣେ ପ୍ରଖ୍ୟାତ ସାହିତ୍ୟିକ ଏବଂ ଭାଷାକାର ଭାବେ ସୁନୀଲ ଗଙ୍ଗୋପାଧ୍ୟାୟଙ୍କୁ ରାଜ୍ୟବାସୀ ଅସ୍ୱୀକାର କରି ପାରିଲେ ନାହିଁ ।

ସାମାନ୍ୟ ନିଦରେ ଶୋଇଥିଲେ କେହି ଡାକଟିଏ ମାରିଲେ ଚଳିବ, ମାତ୍ର ଯିଏ ନିସ୍ତେଜକ ବଟିକା ଖାଇ ଅର୍ଦ୍ଧମୃତ, ତା ପାଇଁ ନିଶ୍ଚିତ ଭାବେ ଅଧିକ ପରିଶ୍ରମ କରିବାକୁ ହେବ । ଏହିଭଳି ଏକ ଉଦ୍ୟମ ହେଉଛି ପୁସ୍ତକ ମେଳାର ଆୟୋଜନ । ବର୍ତ୍ତମାନ ସବୁ ଜିଲ୍ଲାର ସଦର ମହକୁମାରେ ଏବଂ ଅନ୍ୟାନ୍ୟ ସହରମାନଙ୍କରେ ପୁସ୍ତକ ମେଳା ଆୟୋଜନ କରାଯାଉଛି । ଆମ ଛୋଟ ସହରରେ ମଧ୍ୟ ସାତ ଦିନ ବ୍ୟାପୀ ପୁସ୍ତକ ମେଳାର ଆୟୋଜନ ହୁଏ । ପ୍ରତିଦିନ ମୁଁ ଲକ୍ଷ୍ୟ କରେ, ଯେଉଁମାନେ ଆଦୌ କେବେହେଲେ ପୁସ୍ତକଟିଏ କିଣି ନ ଥାନ୍ତେ, ସେମାନେ କୌଣସି ବନ୍ଧୁଙ୍କର ପ୍ରରୋଚନାରେ କିମ୍ବା ପୁଅ ଝିଅଙ୍କର ଅନୁରୋଧକ୍ରମେ ପୁସ୍ତକ ମେଳାକୁ ଆସନ୍ତି, ବହି ଓଲଟାନ୍ତି, କିଛି ମଧ୍ୟ କିଣନ୍ତି । ବହି କିଣିବାର ଆଗ୍ରହ, ପଢ଼ିବାର ଆଗ୍ରହ ଠାରୁ କମ୍ ନୁହେଁ । ମୁଁ ଦୃଢନିଶ୍ଚିତ, ଆମ ରାଜ୍ୟରେ ଯଦି ଏହିଭଳି ପୁସ୍ତକ ମେଳାର ବହୁଳ ପ୍ରଚାର ଓ ପ୍ରସାର ଘଟେ ତେବେ ନିଶ୍ଚିତ ଭାବେ ଆମ ଭାଷା ମଧ୍ୟ ସମୃଦ୍ଧ ହେବ, ଏଥିରେ ସନ୍ଦେହ ନାହିଁ ।

ମୋର ଜଣେ ବନ୍ଧୁ ବହୁ ବର୍ଷ ଧରି କୋଲକାତାରେ ଅବସ୍ଥାନ କରୁଛନ୍ତି । ଦିନେ ସେ ତାଙ୍କର ଅଭିଜ୍ଞତା ବର୍ଣ୍ଣନା କରୁଥାନ୍ତି - ତାଙ୍କ ଘରେ ଜଣେ ମହିଳା କାମ କରନ୍ତି । ଗୋଟିଏ ବର୍ଷ ପୂଜା ସମୟରେ ବନ୍ଧୁଙ୍କ ପତ୍ନୀ ତାଙ୍କୁ ଦୁଇଶହ ଟଙ୍କା ବକ୍‌ସିସ୍ ଦେଲେ । ତା'ର କିଛି ଦିନ ପରେ ବନ୍ଧୁ କୌତୂହଳରେ ସେ ଚାକରାଣୀକୁ ପଚାରିଲେ - ଟଙ୍କା ନେଲୁ, ଶାଢ଼ୀ କିଣିଲୁ ନାହିଁକି ? ଚାକରାଣୀଟି ଉତ୍ତର ଦେଲା - ମୋର ଯାହା ଶାଢ଼ୀ ଅଛି, ସେଇଥିରେ ଚଳିଯାଉଛି । ଶହେ ଟଙ୍କା ଦେଇ ଦୁଇଟି ପୂଜା ପତ୍ରିକା କିଣିଲି । ବର୍ଷରେ ଥରେ ଏଇ ପୂଜା ସମୟରେ ମୁଁ କିଛି ପତ୍ରିକା କିଣେ ।

ଉପସଂହାରରେ ମୁଁ ସେହି ମହୀୟସୀ ମହିଳାଙ୍କୁ ପ୍ରଣତି ଜଣାଉଛି ।

# ସାଳନ୍ଦୀ ନଗର, ଭଦ୍ରକ, ଫୋନ୍ - ୯୪୩୭୧ - ୯୧୩୫୦

# ଓଡ଼ିଶାର ଉତ୍ତର ଉପାନ୍ତ ଅଞ୍ଚଳରେ ଓଡ଼ିଆ ଭାଷା ଓ ସାହିତ୍ୟ

ଡ. ନଗେନ୍ଦ୍ର ନାଥ ମହାପାତ୍ର

ଓଡ଼ିଶାର ଉପାନ୍ତ ଅଞ୍ଚଳ କହିଲେ ସେହି ସବୁ ଅଞ୍ଚଳକୁ ବୁଝାଏ, ଯାହା ବର୍ତ୍ତମାନ ଓଡ଼ିଶା ପ୍ରଦେଶର ସୀମା ଶେଷ ଭାଗରେ ଅବସ୍ଥିତ; ଓଡ଼ିଶା ସୀମାରେଖା ଭିତରେ କିଂବା ବାହାରେ ଅନ୍ୟ କେଉଁ ପ୍ରଦେଶରେ ଥାଉ । ବର୍ତ୍ତମାନ ଓଡ଼ିଶା କହିଲେ ୧୯୩୬ ମସିହା ଅପ୍ରେଲ ପହିଲାରୁ ପୁନର୍ଗଠିତ ଓ ୧୯୪୮ ମସିହାରେ ପରିବର୍ଦ୍ଧିତ ଭୂଖଣ୍ଡ-ସ୍ୱାଧୀନ ଭାରତର ଏକ ସ୍ୱତନ୍ତ୍ର ପ୍ରଦେଶ । ଏହାର ଉତ୍ତର-ପୂର୍ବ ଦିଗରେ ପଶ୍ଚିମ-ବଂଗ, ଉତ୍ତର ଦିଗରେ ସଂପ୍ରତି ନବଗଠିତ ଝାଡ଼ଖଣ୍ଡ, ପଶ୍ଚିମ ଦିଗରେ ନବଗଠିତ ଛତିଶଗଡ଼, ଦକ୍ଷିଣରେ ଆନ୍ଧ୍ର ପ୍ରଦେଶ ଓ ପୂର୍ବରେ ବଙ୍ଗୋପସାଗର ଅବସ୍ଥିତ । ଐତିହାସିକ ଉତ୍କଳର ସୀମା ବହୁ କାଳ ପର୍ଯ୍ୟନ୍ତ ଉତ୍ତରଦିଗରେ ଗଙ୍ଗାଠାରୁ ଦକ୍ଷିଣରେ ଗୋଦାବରୀ ନଦୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା । ଉତ୍ତର ଦିଗରେ କିଛିକାଳ ପର୍ଯ୍ୟନ୍ତ ସେକାଳର ଗୌଡ଼ଦେଶ ଉପରେ ବି ଉତ୍କଳର ଆଧିପତ୍ୟ ରହିଥିଲା । ଓଡ଼ିଶାର ପଶ୍ଚିମ ସୀମାନ୍ତ ବହୁକାଳ ଯାବତ୍ ଏବର ନବଗଠିତ ଛତିଶଗଡ଼ ରାଜ୍ୟର ସୁବିସ୍ତୃତ ଅଞ୍ଚଳ ଅନ୍ତର୍ଭୁକ୍ତ ରହିଥିଲା । ପ୍ରାଚୀନ ସେହି ଉତ୍କଳ ସାମ୍ରାଜ୍ୟର ସୀମା ୧୯୩୬ ମସିହା ଅପ୍ରେଲ ପହିଲାରେ ଗଠିତ ଓଡ଼ିଶା ପ୍ରଦେଶର ଆକାରଠାରୁ ଥିଲା ବହୁତ ବଡ଼ ।

ଓଡ଼ିଶାର ଉତ୍ତର ଉପାନ୍ତ ଅଞ୍ଚଳ କହିଲେ ବଲେଶ୍ୱର ଓ ମୟୂରଭଂଜ ଜିଲ୍ଲାର ଉତ୍ତରାଞ୍ଚଳ, ତତ୍‌ସଂଲଗ୍ନ ପଶ୍ଚିମ ବଙ୍ଗଳାର ମେଦିନୀପୁର ଜିଲ୍ଲା ଅନ୍ତର୍ଗତ ଦକ୍ଷିଣ-ପଶ୍ଚିମାଞ୍ଚଳ ଓ ଝାଡ଼ଖଣ୍ଡ ରାଜ୍ୟର ସିଂଭୂମ ଜିଲ୍ଲା ଅନ୍ତର୍ଗତ ସମଗ୍ର ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ବୁଝାଏ । ଏ ଅଞ୍ଚଳର ଅଧିବାସୀଗଣ ଓଡ଼ିଆ ଭାଷା କହୁଥିଲେ । ଓଡ଼ିଆରେ ପଢୁଥିଲେ ଓ ଲେଖୁଥିଲେ । ଓଡ଼ିଶୀ ସଂସ୍କୃତି ସର୍ବତ୍ର ପ୍ରଚଳିତ ଥିଲା । ସଂସ୍କୃତିର ବାର୍ତ୍ତାବହ ଭାବେ ଉତ୍କୃଷ୍ଟ ଓଡ଼ିଆ ସାହିତ୍ୟ ସୃଷ୍ଟି ହୋଇଥିଲା । ଓଡ଼ିଆ ସଂସ୍କୃତଜ୍ଞ ପଣ୍ଡିତ ଓ ବିଦ୍ୱାନମାନଙ୍କ ଦ୍ୱାରା ପ୍ରଣୀତ ବହୁତ ଉପାଦେୟ ସଂସ୍କୃତ ଗ୍ରନ୍ଥ ଓ ବ୍ୟବହାର ଶାସ୍ତ୍ରର ଶତ ସଂଖ୍ୟକ ପାଣ୍ଡୁଲିପି ତଥା ଓଡ଼ିଆ କବିମାନଙ୍କ ଦ୍ୱାରା ଲିଖିତ ପୁରାଣ, କାବ୍ୟ, ଚଉତିଶା, ଭଜନ ଆଦିର ଅଜସ୍ର ତାଳପତ୍ର ପୋଥି ଏ ଅଞ୍ଚଳର ପ୍ରାୟ ସର୍ବତ୍ର ଅଦ୍ୟାବଧି ଦୃଷ୍ଟିଗୋଚର ହୁଏ । ଓଡ଼ିଆ ଭାଷାର ଲୋକ ସାହିତ୍ୟ ଓ ସଂଗୀତରେ ଏ ଅଞ୍ଚଳ ସୁସମୃଦ୍ଧ । ସର୍ବୋପରି ଉତ୍ତରାଞ୍ଚଳୀୟ ଓଡ଼ିଆ ଭାଷା କଥିତ ଭାଷାରୂପେ ବିଭିନ୍ନ ସ୍ଥାନର ସ୍ଥାନୀୟ ବୈଶିଷ୍ଟ୍ୟ ସହ ଏ ସମଗ୍ର ଅଞ୍ଚଳରେ ପ୍ରଚଳିତ । ଓଡ଼ିଆ ଓ ବଂଗଳାର ବହୁ ପ୍ରସିଦ୍ଧ ସାରସ୍ୱତ ରଚନାରେ ଏହି ଭାଷାର ପ୍ରୟୋଗ ଓ ପ୍ରଭାବ ପରିଲକ୍ଷିତ ହୁଏ ।

ଏ ସମଗ୍ର ଅଞ୍ଚଳରେ ଦେଖାଯାଉଥିବା ଅଗଣିତ ଦେବ ମନ୍ଦିର ଓ ପୀଠସ୍ଥଳୀ ଏବଂ ବାସଗୃହ ଗୁଡ଼ିକ ଓଡ଼ିଶୀ ସ୍ଥାପତ୍ୟରୀତିରେ ନିର୍ମିତ ହୋଇଅଛି । ଦେବସ୍ଥାନ ମାନଙ୍କରେ ପ୍ରଚଳିତ ଅନୁଷ୍ଠାନ, ଭୋଗରାଗ, ପର୍ବପର୍ବାଣୀ, ମେଳା ମଉଚ୍ଛବ ଓଡ଼ିଆ ରୀତିରେ ସଂପାଦିତ ହେଉଥିଲା ଓ ଏବେବି ହେଉଅଛି ।

ସମଗ୍ର ଅଞ୍ଚଳରେ ପ୍ରତିଗ୍ରାମରେ 'ଭାଗବତ ଟୁଙ୍ଗୀ' ରହିଥିଲା । ଲୋକମାନଙ୍କ ଘରେ ତାଳପତ୍ରରେ ଲିଖିତ ପୋଥି, ପୁରାଣ, କାବ୍ୟ, ଶାସ୍ତ୍ର ପ୍ରଭୃତି ସର୍ବତ୍ର ଭକ୍ତି ସହକାରେ ପ୍ରତ୍ୟହ ପୂଜିତ ଓ ପଠିତ ହେଉଥିଲା । ନାରାୟଣରୂପୀ ଭାଗବତ ଗାଦି ରହିଥିବା ଭାଗବତ ଟୁଙ୍ଗୀ ଗ୍ରାମ୍ୟ ଲୋକଙ୍କର ସାନ୍ଧ୍ୟ ମିଳନ, ବିଚାର ଆଲୋଚନା, ଦଣ୍ଡକ୍ଷମାର ସ୍ଥଳ, ସମାଜିକ ଶାନ୍ତଶୃଙ୍ଖଳା ରକ୍ଷା ଓ ଆଧ୍ୟାତ୍ମ-ଭାବ-ପ୍ରଚାର

ପୀଠ ରୂପେ ବିରାଜମାନ କରୁଥିଲା । ବିଭିନ୍ନ ସମୟରେ ବର୍ଷଯାକ ଲୀଳା, ସୁଆଙ୍ଗ, ପାଲା, ଦାସକାଠିଆ, ନାଚଗୀତ, ଉଡ଼ା, ପାଟ ପ୍ରଭୃତି 'ତେରପର୍ବ' ପାଳିତ ହେଉଥିଲା ।

ଓଡ଼ିଆ ସାଧବପୁଅ 'ସାତ ସମୁଦ୍ର ତେରନଈ' ପାରି ହୋଇ ବେପାରବଣିଜ କରି ଫେରୁଥିଲେ, ସାଧବବୋହୂମାନେ ଆନନ୍ଦ ଉଲ୍ଲାସରେ ସେମାନଙ୍କୁ ଘରକୁ ପାଛୋଟି ଆଣୁଥିଲେ । ପରିଜନମାନେ ବୋଇତରୁ ଧନରତ୍ନ ବୋହି ଆଣୁଥିଲେ । ତାହାର ନିଦର୍ଶନ ଏବେ କାର୍ତ୍ତିକ ପୂର୍ଣ୍ଣିମାରେ କଦଳୀ ବାହୁଙ୍ଗା ଭସାଣରେ ସୀମାବଦ୍ଧ । କର୍ପୂର ଉଡ଼ିଯାଇଛି । ପଡ଼ିରହିଛି କନା ଖଣ୍ଡିକ । ଏବେ ରହିଛି ସେ ସବୁର ସ୍ମୃତି କେବଳ - ସେ ସ୍ମୃତିର ଏକ କରୁଣ ଆଲେଖ୍ୟ 'ତଅପୋଇ' କାହାଣୀ । ବହୁ ଐତିହାସିକ ସ୍ମୃତି ବିଜଡ଼ିତ ତାମ୍ରଲିପ୍ତ, ପିପିଲି ଓ ବାଲେଶ୍ୱର ବନ୍ଦରର ଗୌରବ ଆଜି ଅବଲୁପ୍ତ । ସାଧବପୁଅର ପାରଂପରିକ ସାହସିକ ଜଳଯାତ୍ରା ଏ ଅଞ୍ଚଳର ଲୋକଗୀତରେ ବର୍ଣ୍ଣିତ । ଏ ସମଗ୍ର ଅଞ୍ଚଳ ଦିନେ ଓଡ଼ିଆ ପାଇକ ବାହିନୀର କୁହାଟ ଓ ଧାଉଡ଼ି ଶବ୍ଦରେ ମୁଖରିତ ହେଉଥିଲା । ଓଡ଼ିଶାର ଗଜପତିମାନେ ସମରାଭିଯାନରେ, ଶିକାରାଭିଯାନରେ ବିଜେ କଲାବେଳେ ଗଜଯୂଥ-ଧୂଳି-ଧୂସରିତ ହେଉଥିଲା ଗ୍ରାମଦାଣ୍ଡ । ରାଇବଣିଆ, ମନ୍ଦାରଣ ପରି ସୁବୃହତ୍ ବହୁ ଭିନ୍ନ ଦୁର୍ଗ ଏ ସବୁର ମୂକସାକ୍ଷୀ ରୂପେ ବିଦ୍ୟମାନ ।

କାଳର କରାଳ ଗତିରେ ରାଜନୈତିକ ଉତ୍‌ଥାନ ପତନ ମଧ୍ୟରେ ଅତୀତର ସେ ପ୍ରାଚୀନ ଉତ୍କଳ କଳିଙ୍ଗର ସାମ୍ରାଜ୍ୟ ନାହିଁ କିଂବା ସେ ସମସ୍ତ ଅଞ୍ଚଳ ଆଜି ଆଧୁନିକ ଓଡ଼ିଶା ପ୍ରଦେଶ ଭିତରେ ନାହିଁ । ସେ ସବୁ ଅଞ୍ଚଳର ଲୋକ ସମାଜ ପରିବର୍ତ୍ତିତ ପରିସ୍ଥିତିରେ ପଡ଼ୋଶୀ ରାଜ୍ୟ ସହିତ ମିଶିଯିବାରେ ବାଧ୍ୟ ହୋଇଛନ୍ତି । ଆମର ବର୍ତ୍ତମାନ ଆଲୋଚ୍ୟ ଉତ୍ତର-ପୂର୍ବ ଉପାନ୍ତ ଅଞ୍ଚଳର ମେଦିନୀପୁର ଲୋକମାନେ ସେଠା ଅଧୁନା ପ୍ରଚଳିତ ବଙ୍ଗଭାଷା ଶିଖୁଛନ୍ତି, ପଢୁଛନ୍ତି । ଘରେ ଓଡ଼ିଆ ମିଶା ବଙ୍ଗଳା ଭାଷାରେ କଥା କୁହନ୍ତି । ଓଡ଼ିଆ ସାମାଜିକ ରୀତିନୀତି ପାଳନ୍ତି । ଓଡ଼ିଆ ଭାଷାରେ ରଚିତ ବହୁ ସାହିତ୍ୟ ଏବେ ବଂଗଳିପିରେ ମୁଦ୍ରିତ ହୋଇ ସେ ଅଞ୍ଚଳରେ ପ୍ରଚଳିତ । ଏହି ପୃଷ୍ଠଭୂମି ଉପରେ ବର୍ତ୍ତମାନର ଏ ପ୍ରବନ୍ଧ ରଚିତ ହେଉଛି ।

**ଉତ୍ତର-ପୂର୍ବ ଉପାନ୍ତ ଅଞ୍ଚଳରେ ଓଡ଼ିଆ ଭାଷା :**

ବାଲେଶ୍ୱର ଓ ମୟୂରଭଂଜ ଜିଲ୍ଲାର ଉତ୍ତର-ପୂର୍ବାଞ୍ଚଳ ଓ ମେଦିନୀପୁର (ପ.ବଂଗ)ର ଦକ୍ଷିଣ-ପଶ୍ଚିମାଂଶ ପରସ୍ପର ସଂଲଗ୍ନ, ସ୍ଥୂଳତଃ; ବାଲେଶ୍ୱର, ବାରିପଦା ଓ ମେଦିନୀପୁର ସହର ମଧ୍ୟସ୍ଥିତ ଅଞ୍ଚଳକୁ ଓଡ଼ିଶାର ଉତ୍ତର -ପୂର୍ବାଞ୍ଚଳ ରୂପେ ଗ୍ରହଣ କରାଯାଉଛି । ଏହି ନିର୍ଦ୍ଦିଷ୍ଟ ଅଞ୍ଚଳରେ ପ୍ରଚଳିତ୍ ଲୋକ କଥିତ ଭାଷାହିଁ ଉତ୍ତରାଞ୍ଚଳ ଓଡ଼ିଆ ଭାଷାରୂପେ ପରିଗଣିତ । ଭାଷା ତାତ୍ତ୍ୱିକ ଦୃଷ୍ଟିରୁ ଭୋଗରାଇ, ବାଲିଆପାଳ, ଜଳେଶ୍ୱର (ବାଲେଶ୍ୱର ସଦର), ମୁରୁଡ଼ା, ଶୂଳିଆପଦା, କୁଳିଅଁଳା (ବାରିପଦା ସଦର), ନୟାଗ୍ରାମ (ଝାଡ଼ଗ୍ରାମ ସବ୍‌ଡିଭିଜନ), ଦାନ୍ତୁନ, ମୋହନପୁର, ରାମ ନଗର, କାନ୍ଥୀ, ଦୀଘା (ମେଦିନୀପୁର ସଦର) ଅଞ୍ଚଳରେ ପ୍ରଚଳିତ କଥିତ ଭାଷା ରୂପରେ ଅଧିକ ଘନିଷ୍ଠ ଐକ୍ୟ ରକ୍ଷିତ ହୋଇଥିବାସ୍ଥଳେ ଆଧୁନିକ କାଳରେ ଶିକ୍ଷା ଓ ସଭ୍ୟତାର ପ୍ରସାର ଓ ପ୍ରଭାବ ଫଳରେ ବାଲେଶ୍ୱର, ବାରିପଦା, ମେଦିନୀପୁର ଓ ଖଡ଼ଗପୁର ସହରାଞ୍ଚଳରେ ମାନକ ଭାଷା (ଓଡ଼ିଆ ଓ ବଙ୍ଗଳା) -ର ପ୍ରଚଳନ ଅଧିକ । ଏତଦ୍‌ବ୍ୟତୀତ ଏହି କଥିତ ଭାଷା ଓଡ଼ିଶା ଓ ପଶ୍ଚିମବଙ୍ଗ ସଂଲଗ୍ନ ସିଂଭୂମ ସୀମାନ୍ତ ଗୋପୀବଲ୍ଲଭପୁର, ବାହାଡ଼ାଗୋଡ଼ା (ଧଳଭୂମି) ଷଢ଼େଇକଳା, ଖରସୁଆଁ ଅଞ୍ଚଳରେ (କେତେକାଂଶରେ ପୂର୍ବୀହିନ୍ଦୀ ପ୍ରଭାବିତ) ପ୍ରଚଳିତ । ଏକ ଭାଷାକ୍ଷେତ୍ର ରୂପେ ଉତ୍ତରାଞ୍ଚଳର ବୈଶିଷ୍ଟ୍ୟ ହେଉଛି ଯେ ଏହା ତିନିଗୋଟି ଭାଷା-ପରିବାରର ମିଳନ କ୍ଷେତ୍ର । ଆର୍ଯ୍ୟଗୋଷ୍ଠୀର ତିନିଗୋଟି ପ୍ରଧାନ ଭାଷା ଓଡ଼ିଆ, ବଂଗଳା ଓ ହିଂଦୀ ବ୍ୟତୀତ ଉର୍ଦ୍ଦୁ/ହିନ୍ଦୁସ୍ଥାନୀ ଓ ପାର୍ଶୀ ପ୍ରଭୃତି ଭାଷା ପ୍ରଚଳିତ । ଆର୍ଯ୍ୟେତର ଭାଷା ଭାବେ ମୁଣ୍ଡା ଗୋଷ୍ଠୀର ସାନ୍ତାଳୀ, ହୋ, ଭୂମିଜ,

ମୁଣ୍ଡାରୀ ପ୍ରଭୃତି ଭାଷା ଓ ଦ୍ରାବିଡ଼ ଗୋଷ୍ଠୀର ଅରାଂ, ଖଡ଼ିଆ, ଗଣ୍ଡି ପ୍ରଭୃତି ଭାଷା ପ୍ରଚଳିତ । ଏତଦ୍‌ବ୍ୟତୀତ କର୍ମାଳୀ, ବାଥୁଡ଼ି, ଭୂୟାଁ ପ୍ରଭୃତି ଭାଷା ମଧ୍ୟ ଏ ଅଞ୍ଚଳରେ ପ୍ରଚଳିତ । ଉପରୋକ୍ତ ଅଂଚଳରେ ବେସରକାରୀ/ସରକାରୀ ସ୍ତରରେ ଅଫିସିଆଲ ଭାଷାରୂପେ 'ଇଂରାଜୀ' ବ୍ୟବହୃତ ହେଉଅଛି ।

ସାଧାରଣତଃ କୌଣସି କ୍ଷେତ୍ର ବିଶେଷରେ ଏକାଧିକ ଭାଷା ପ୍ରଚଳିତ୍ ଥିଲେ ଭାଷାମାନଙ୍କ ମଧ୍ୟରେ ପାରସ୍ପରିକ ସଂଯୋଗ ଘଟିବାର ଅବକାଶ ଆସିବା ସଂଗେସଂଗେ ବିଶେଷ ଲୌକିକ ପ୍ରବୃତ୍ତି ଲାଭ କରିଥାଏ । ପୁଣି ଏହି ଭାଷା ମାନଙ୍କ ମଧ୍ୟରେ କୌଣସି ଭାଷା କୌଣସି ସ୍ତରରେ ବିଶେଷ ମର୍ଯ୍ୟାଦା ବା ଗୁରୁତ୍ୱ ଲାଭ କରେ ତା'ହେଲେ ଅନ୍ୟାନ୍ୟ ଭାଷା ସକଳ ତାହାର ଆଦର୍ଶାଭିମୁଖୀ ହୋଇ ପଡ଼ନ୍ତି । ଏହି ପରିପ୍ରେକ୍ଷୀରେ ଆଲୋଚ୍ୟ ଉପାନ୍ତ ଅଂଚଳୀୟ ଓଡ଼ିଆ ଭାଷାର ଭାଷା ତାତ୍ତ୍ୱିକ ବିଶ୍ଳେଷଣ କଲେ ଏହାର ସ୍ୱାତନ୍ତ୍ର୍ୟ ଓ ଔପନ୍ୟାସିକ ବୈଚିତ୍ର୍ୟ ସୃଷ୍ଟି ମୂଳରେ କେତେକ ନିଧାର୍ଯ୍ୟ 'ଭାଷା ତାତ୍ତ୍ୱିକ ଓ ଔପନ୍ୟାସିକ କାରଣ' ବିଦ୍ୟମାନ ଥିବା ବିଷୟ ଉପଲବ୍ଧ ହେବ ।

ପନ୍ଦରଶହ ବୟାଅଶୀ ଖ୍ରୀ. ରେ ତୋଡ଼ରମଲ୍ଲଙ୍କ ଶାସନ କାର୍ଯ୍ୟରେ ଓଡ଼ିଆ ପରିବର୍ତ୍ତେ ପାର୍ଶୀଭାଷା ପ୍ରଚଳିତ ହେଲା । ଷୋହଳଶହ ଏଗାର ଖ୍ରୀ.ରେ ମରହଟ୍ଟା ଭାସ୍କର ପଣ୍ଡିତ ବଙ୍ଗର ନବାବଙ୍କ ଠାରୁ ଓଡ଼ିଶାର ଶାସନ ଭାର ଗ୍ରହଣ କଲେ । ଷୋହଳଶହ ଚାଳିଶି ଖ୍ରୀ.ରେ ଇଂରେଜମାନେ ବାଲେଶ୍ୱର ଠାରେ ବାଣିଜ୍ୟକୋଠୀ ସ୍ଥାପନ କଲେ । ପର୍ତ୍ତୁଗୀଜ ଓ ଓଲନ୍ଦାଜମାନେ ବାଲେଶ୍ୱର, ହିଜଲୀ ସ୍ଥାନରେ ବାଣିଜ୍ୟ ବ୍ୟବସାୟରେ ଲିପ୍ତଥିଲେ । ଖ୍ରୀ. ୧୮୦୩ରେ ଇଂରେଜମାନେ ଓଡ଼ିଶା ଅଧିକାର କଲେ ଓ ଶାସନ କାର୍ଯ୍ୟ ପରିଚାଳନା ନିମନ୍ତେ ଶିକ୍ଷିତ ବଂଗାଳୀଙ୍କୁ ନିଯୁକ୍ତ କରିଥିଲେ । ପୂର୍ବତନ ମୟୂରଭଂଜ ରାଜ୍ୟର ଶାସନ ପରିଚାଳନାରେ ମଧ୍ୟ ବହୁ ସଂଖ୍ୟକ ବଂଗଭାଷୀ ନିଯୁକ୍ତ ହୋଇଥିଲେ । ଆଲୋଚ୍ୟ ଅଂଚଳର କଥିତ ଭାଷା ଉପରେ ଏସବୁର ପ୍ରଭାବ ପରିଲକ୍ଷିତ ହୁଏ ।

ବର୍ତ୍ତମାନ ଓଡ଼ିଶାର ଉତ୍ତରାଞ୍ଚଳ ମେଦିନୀପୁର ଓ ମୟୂରଭଂଜ ଜିଲ୍ଲା ସଂଲଗ୍ନ ଧଳଭୂମି ଅଞ୍ଚଳ ଆବୁଲ ଫାଜଲଙ୍କ 'ଆଇନ-ଇ-ଆକ୍‌ବରୀ'ରେ ଲିଖିତ ଜଳେଶ୍ୱର ସରକାରର ଅନ୍ତର୍ଭୁକ୍ତ ଥିଲା । ଖ୍ରୀ୧୭୫୧ରେ ବଙ୍ଗଳାର ନବାବ ଆଲିବର୍ଦ୍ଦି ଖାଁ ନାଗପୁରର ମରହଟ୍ଟା ଶାସକଙ୍କୁ ଏକ ଚୁକ୍ତିରେ ଓଡ଼ିଶାର ଧଳଭୂମି ଓ ମେଦିନୀପୁର ଅଞ୍ଚଳ ବ୍ୟତୀତ କେତେକାଂଶ ନିଜ ଅକ୍ତିଆରରୁ ଛାଡ଼ି ଦେଇଥିଲେ । ଖ୍ରୀ. ୧୨୯୫ରେ କ୍ଲାଇବ ଦିଲ୍ଲୀ ଦରବାର ପକ୍ଷରୁ ବଂଗ-ବିହାର -ଓଡ଼ିଶାର ଦେୱାନୀ ପ୍ରାପ୍ତିବେଳେ ଓଡ଼ିଶାର ରୂପନାରାୟଣ ନଦୀ ଓ ସୁବର୍ଣ୍ଣରେଖା ନଦୀର ମଧ୍ୟବର୍ତ୍ତୀ ଅଞ୍ଚଳ ଅର୍ଥାତ୍ ଧଳଭୂମି ଓ ମେଦିନୀପୁର ଅଞ୍ଚଳକୁ କେବଳ ଅନ୍ତର୍ଭୁକ୍ତ କରାଯାଇଥିଲା । ଖ୍ରୀ. ୧୮୦୩ରେ ଇଂରେଜ୍ ଓଡ଼ିଶା ଅଧିକାର କରିବା ପୂର୍ବରୁ ୧୭୯୩ ଖ୍ରୀ.ର ପ୍ରଥମ ପ୍ରବିଧାନ (First Regulation) ରେ ଓଡ଼ିଶା ବିଷୟ ଉଲ୍ଲେଖ କରାଯାଇଥିବାରୁ ଧଳଭୂମି ଓ ମେଦିନୀପୁର ଅଞ୍ଚଳ ଓଡ଼ିଶାର ଅନ୍ତର୍ଭୁକ୍ତ ଥିଲା । ଏହି ଅଞ୍ଚଳ ଇଂରେଜ ଶାସକମାନଙ୍କ ଦ୍ୱାରା ୧୮୦୩ ଖ୍ରୀ. ପୂର୍ବରୁ ସ୍ଥାପିତ 'ଜଂଗଲ-ମହଲ'ର ଅନ୍ତର୍ଭୁକ୍ତ ଥିଲା । ଖ୍ରୀ. ୧୮୩୨ ପର୍ଯ୍ୟନ୍ତ ମେଦିନୀପୁର ସହିତ ଧଳଭୂମ ସଂଯୁକ୍ତ ଥିଲା । ଖ୍ରୀ. ୧୮୩୩ରେ ଏହା ମାନଭୂମ ସହିତ, ୧୮୪୬ ଖ୍ରୀ.ରେ ଧଳଭୂମ ମହକୁମା ସିଂଭୂମ ଜିଲ୍ଲା ସହିତ ସଂଯୁକ୍ତ ହେଲା ଓ ଅଦ୍ୟାବଧି ସିଂଭୂମର ଏକ ମହକୁମା ରୂପେ ବିଦ୍ୟମାନ ।

ଉତ୍ତରାଞ୍ଚଳୀୟ ଓଡ଼ିଆ ଭାଷା ଅଧ୍ୟୟନ କାଳରେ ମୟୂରଭଂଜ -ଝାଡ଼ଗ୍ରାମ ଅଂଚଳରେ ପ୍ରଚଳିତ କୁଡୁମାଳୀ ଭାଷାର ସ୍ଥିତି ଉପଲବ୍ଧ ହୁଏ । ଗ୍ରୀୟରସନ ଏହାକୁ ଏକ ଉପଭାଷା ରୂପେ ଚିହ୍ନିତ କରିଥିଲେ ।

ମେଦିନୀପୁର ଜିଲ୍ଲା ବହୁକାଳଧରି ବିଭିନ୍ନ ଶାସନାଧୀନ ହୋଇ ପ୍ରତିକୂଳ ପରିସ୍ଥିତି ମଧ୍ୟରେ ବଂଗଳାରେ ରହିଥିଲେ ହେଁ ଏଠାରେ ଓଡ଼ିଆ ଭାଷାର ସ୍ୱାତନ୍ତ୍ର୍ୟ ଅକ୍ଷୁଣ୍ଣ ରହିଥିଲା । ଏହି ଅଞ୍ଚଳ ଓଡ଼ିଶାରୁ ବିଚ୍ଛିନ୍ନ ହୋଇଯିବା ପରେ ସୁଦ୍ଧା ଏଠାରେ ଓଡ଼ିଆ ଭାଷା ପ୍ରଚଳିତ ଥିବା ଉଲ୍ଲେଖ କରି ସାର୍ ଜନ୍ ବିମ୍‌ସ

ଲେଖିଛନ୍ତି "ଓଡ଼ିଶାର ଉତ୍ତରରେ ସୁବର୍ଣ୍ଣରେଖା ନଦୀ କୂଳେକୂଳେ ଓ ହିଜ୍‌ଲୀ ଉପକୂଳରେ ଏପରିକି ମେଦିନୀପୁର ପର୍ଯ୍ୟନ୍ତ ବିସ୍ତୀର୍ଣ୍ଣ ଅଂଚଳରେ ଏକ ପ୍ରକାର ଓଡ଼ିଆ ଅପଭ୍ରଂଶ ଓ ବଂଗଳା ଅପଭ୍ରଂଶର ମିଶାମିଶି ଭାଷା କଥିତ ଭାଷାରୂପେ ପ୍ରଚଳିତ ।" (ମହାନ୍ତି ସୁରେନ୍ଦ୍ର, ଓଡ଼ିଆ ସାହିତ୍ୟର ଆଦିପର୍ବ, ପୃ-୧୬, ୨ୟ ସଂ, ୧୯୭୧) । ଫକୀରମୋହନ 'ଆତ୍ମଜୀବନ ଚରିତ'ରେ ଲେଖିଛନ୍ତି "ମେଦିନୀପୁର ଜିଲ୍ଲା ପରିମାଣ ପ୍ରାୟ ୫ ହଜାର ୨ ଶତ ମାଇଲ । ସେଥି ମଧ୍ୟରୁ ଜିଲ୍ଲାର ଦକ୍ଷିଣାଞ୍ଚଳ ପ୍ରାୟ ୨୨ଶତ ମାଇଲ ନିରୋଳା ଓଡ଼ିଆ ଭାଷୀ ମାନଙ୍କ ସ୍ଥାନ । ସେମାନଙ୍କ ଘର ବାହାରର କଥାଭାଷା, ଘରୋଇ ଚିଠି, ହିସାବପତ୍ର, ମହାଜନ ସିରସ୍ତା, ଦଲିଲ ଦସ୍ତାବିଜ୍ କେବଳ ଓଡ଼ିଆ ଭାଷାରେ ଲେଖାପଢ଼ା ହେଉଥିଲା । ପୂର୍ବେ ମେଦିନୀପୁର ଜିଲ୍ଲାର କଚେରୀଭାଷା ମଧ୍ୟ ଆଂଶିକ ଓଡ଼ିଆ ଥିଲା । ବାଲେଶ୍ୱର ଜିଲ୍ଲା ସଦର କଚେରୀରୁ ଅମଲାମାନେ ନିଯୁକ୍ତ ହୋଇ ସେ ସ୍ଥାନକୁ ଯାଇଥିଲେ ।"

ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠିତ ହେବା ପରେ ମେଦିନୀପୁରର ସମସ୍ତ ଓଡ଼ିଆ ସରକାରୀ ବିଦ୍ୟାଳୟ.ଲୋପ ପାଇଲା । ବହୁ ପୂର୍ବରୁ ଅର୍ଥାତ୍ ୧୮୬୫-୧୮୭୦ ଖ୍ରୀ. ସମୟକୁ ମେଦିନୀପୁର ବିସ୍ତୃତ ଅଂଚଳରେ ଗ୍ରାମମାନଙ୍କରେ ଥିବା ଚାଟଶାଳୀମାନ ବିନଷ୍ଟ ହୋଇଥିଲା । ଅବଧାନମାନେ ବାରଂବାର ଓ ବିଭିନ୍ନ ଭାବରେ ନିର୍ଯ୍ୟାତିତ ହୋଇ ବିତାଡ଼ିତ ହୋଇଥିଲେ । ଏ ବିଷୟରେ ଫକୀରମୋହନ ଲେଖିଛନ୍ତି, 'ମେଦିନୀପୁର ଦକ୍ଷିଣାଞ୍ଚଳରୁ ଚାହାଳୀ ଏକାବେଳେକେ ଉଠିଯିବା ଗୋଟିଏ ରହସ୍ୟମୟ ଦାରୁଣ ଓ ଶୋଚନୀୟ ବିଷୟ ଅଟେ ।" (ସେନାପତି ଫକୀରମୋହ, ଆତ୍ମଜୀବନ ଚରିତ) । କାଳକ୍ରମେ ମେଦିନୀପୁର ଅଞ୍ଚଳରେ ଓଡ଼ିଆ ପଠନ ପାଠନ.ଆନୁଷ୍ଠାନିକ (formal) ସ୍ତରରେ ସଂପୂର୍ଣ୍ଣ ଲୋପ ପାଇଛି ।

ସ୍ୱାଧୀନ ଭାରତର ପ୍ରତି ପ୍ରଦେଶରେ ସେଠାକାର ପ୍ରଧାନଭାଷା ପ୍ରଚଳିତ ହୁଏ । ସେହି ପ୍ରଦେଶର ସରକାର ସେଠା ପ୍ରଧାନ ଭାଷାର ଉନ୍ନତି କଳ୍ପେ ସବୁପ୍ରକାର ଚେଷ୍ଟା କରିଥାନ୍ତି । ସେହି କାରଣରୁ ମେଦିନୀପୁରବାସୀ ଓଡ଼ିଆମାନେ ଓଡ଼ିଆ ଭାଷା ଶିକ୍ଷା ଦିଗରୁ ପୂର୍ଣ୍ଣତଃ ବଂଚିତ ହୋଇଛନ୍ତି । ଏହା ସତ୍ତ୍ୱେ ସେମାନେ ଓଡ଼ିଆ ଭାଷାକୁ ଭୁଲି ପାରିନାହାନ୍ତି କିଂବା ପ୍ରାଚୀନ ଓଡ଼ିଆ ସାହିତ୍ୟକୁ ଛାଡ଼ି ପାରିନାହାନ୍ତି । ଏ ଅଂଚଳର କଥିତ ଭାଷାରୂପ ଓଡ଼ିଆ-ବଂଗଳା ମିଶ୍ରିତ ହୋଇଥିଲେହେଁ ଏଥିରେ ଓଡ଼ିଆ ଭାଷାର ବିଭିନ୍ନ ବୈଶିଷ୍ଟ୍ୟର ପ୍ରଧାନ୍ୟ ଲକ୍ଷଣୀୟ । ଏକ ସୀମାନ୍ତବର୍ତ୍ତୀ ଅଂଚଳଭାବେ ଏହି କଥିତ ଭାଷାର ଅସମାପିକା କ୍ରିୟାରୂପ ତଥା ଶାବ୍ଦିକ ପ୍ରୟୋଗ କ୍ଷେତ୍ରରେ କିଛିଟା ବଂଗୀୟ ପ୍ରଭାବ ଅନୁଭୂତ ହୋଇଥାଏ, କିଂତୁ, ତାର ବାକ୍‌ରୀତି ଓ ଶବ୍ଦଭଣ୍ଡାର ବହୁ ପରିମାଣରେ ଓଡ଼ିଆ ଭାଷାର ମୌଳିକ ସଂପଦରେ ସମୃଦ୍ଧ । ଆଲୋଚ୍ୟ ଓଡ଼ିଆ ଭାଷାରେ ବଂଗୀୟ ସଂସର୍ଗ ତାକୁ ଏଭଳି ସ୍ୱାତନ୍ତ୍ର୍ୟ ପ୍ରଦାନ କରିନାହିଁ । ବରଂ, ମୂଳ ଅର୍ଦ୍ଧମାଗଧୀ ଭାଷାରୁ ଓଡ଼ିଆ, ବଂଗଳା, ଅସମୀୟା ଆଦି ଆଧୁନିକ ଭାରତୀୟ ଭାଷାର ଉନ୍ମେଷ କାଳରେ ଯେଉଁ ଔପନ୍ୟାସିକ ସ୍ୱାତନ୍ତ୍ର୍ୟମାନ ସୃଷ୍ଟି ହୋଇଥିଲା ତାହାହିଁ ଆଲୋଚ୍ୟ ଓଡ଼ିଆ ଭାଷାରେ ସମଧିକ ପରିମାଣରେ ବିଧୃତ ।

ଉତ୍ତରାଞ୍ଚଳୀୟ ଓଡ଼ିଆ ଭାଷାରେ ଧ୍ୱନି ପରିବର୍ତ୍ତନ ଓ ରୂପରଚନା (ଲିଙ୍ଗ, ବଚନ, କାରକ, ବିଭକ୍ତି, ସର୍ବନାମ, କ୍ରିୟାପଦ, ଅର୍ଥ ପରିବର୍ତ୍ତନ ପ୍ରଭୃତି) ର ପ୍ରକ୍ରିୟାଗତ ବହୁବିଧ ବୈଶିଷ୍ଟ୍ୟ ପରିଲକ୍ଷିତ ହୁଏ । ଆଲୋଚ୍ୟ ଭାଷାର ଶବ୍ଦ ଭଣ୍ଡାରରେ ଏପରି ଅସଂଖ୍ୟ ଶବ୍ଦ ପ୍ରଚଳିତ, ଯେଉଁ ସବୁର ମୂଳଉତ୍ସ ଐତିହାସିକ ଦୃଷ୍ଟିକୋଣରୁ ବିଚାର୍ଯ୍ୟ ।

ଉତ୍ତରାଞ୍ଚଳୀୟ ଓଡ଼ିଆ ଭାଷାର ଶବ୍ଦ ସମ୍ଭାର ବହୁ ବୈଚିତ୍ର୍ୟପୂର୍ଣ୍ଣ । ଅଦ୍ୟାବଧି ଏ ସମସ୍ତ ସଂଗୃହୀତ କିଂବା ସଂକଳିତ ହୋଇ ପାରିନାହିଁ । ଶିକ୍ଷା ବିସ୍ତାର ସଂଗେସଂଗେ ଏହା କ୍ରମେ ସଂକୁଚିତ ହୋଇ ପଡୁଅଛି । ଏହି ଭାଷାର ଆଭିଧାନିକ ମୂଲ୍ୟ ବ୍ୟତୀତ ଧ୍ୱନି ଓ ରୂପରଚନା ପ୍ରକ୍ରିୟାର ବିଶ୍ଳେଷଣ ଦିଗରେ ମଧ୍ୟ ବହୁ ଉପଯୋଗିତା ରହିଅଛି । •

ଆଲୋଚ୍ୟ ଆଂଚଳିକ କଥିତ ଭାଷା ସାଧାରଣତଃ 'ଇନ୍‌ଫର୍ମାଲ' ସ୍ତରରେ ବ୍ୟବହୃତ ହୋଇଥାଏ । ମାନକ ଓଡ଼ିଆ ଓ ମାନକ ବଂଗଳା 'ଫର୍ମାଲ' ସ୍ତରରେ ପ୍ରୟୋଗ ହୁଏ । ସୀମାରେଖାର ଉଭୟ ପଟରେ ମାନକ ଭାଷାର ରୂପ ନିର୍ଦ୍ଧାରଣରେ ଏହାର ଭୂମିକା ଗୁରତ୍ୱପୂର୍ଣ୍ଣ । କଥିତ ଭାଷାର ସ୍ୱରଧ୍ୱନି ମାନକ ଓଡ଼ିଆର ସ୍ୱରଧ୍ୱନି ସହ ସମାନ ନୁହେଁ । ଏହା ମାନକ ବଂଗଳାଠାରୁ ମଧ୍ୟ ନିମ୍ନଲିଖିତ କ୍ଷେତ୍ରରେ ପ୍ରଭେଦ ସୂଚାଏ ।

୧. କଥିତ ଭାଷାର ପାଞ୍ଚଗୋଟି ସ୍ୱରଧ୍ୱନି ଥିଲାବେଳେ ମାନକ ବଂଗଳାରେ ସାତଗୋଟି ସ୍ୱର ରହିଅଛି ।

୨. ଣ ଓ ଳ ର ଅବସ୍ଥିତି ମାନକ ବଂଗଳାରେ ନଥିବାବେଳେ କଥିତଭାଷାରେ ଏହା ଅବସ୍ଥିତ ।

୩. କଥିକ ଭାଷାରେ ମୂର୍ଦ୍ଧନ୍ୟ ସଂଘର୍ଷୀ 'ଷ'ର ପ୍ରଚଳନ ନାହିଁ ।

୪. ମାନକ ବଂଗଳାରେ ମହାପ୍ରାଣ 'ଢ'ର ପ୍ରଚଳନ ନାହିଁ ।

୫. କଥିତ ଭାଷାରେ ଅଳ୍ପପ୍ରାଣ ସଘୋଷ କଣ୍ଠ୍ୟ ନାସିକ୍ୟ ଧ୍ୱନି 'ଙ'ର ଉପସ୍ଥିତି କ୍ୱଚିତ ଘଟେ ।

ଉତ୍ତରାଞ୍ଚଳୀୟ ଓଡ଼ିଆ ଭାଷା ବିଷୟକ ଏହା ଏକ ସଂକ୍ଷିପ୍ତ ସୂଚନା ମାତ୍ର । ଏଥିରେ ମାନକ ଓଡ଼ିଆ ଓ ମାନକ ବଂଗଳା ଭାଷାର ସମସ୍ତ ବ୍ୟାକରଣିକ ଓ ଆଭିଧାନିକ ବିଭାବ ସବିସ୍ତୃତ ଆଲୋଚିତ ହୋଇନାହିଁ । ଏହା ସତ୍ତ୍ୱେ ସୂଚିତ ବିବରଣୀରୁ କଥିତ ଭାଷା ସହିତ ମାନକ ଓଡ଼ିଆ ଭାଷାର ସଂପର୍କ ମାନକ ବଂଗଳା ଭାଷା ଅପେକ୍ଷା ଅଧିକ ଘନିଷ୍ଠ ଥିବାର ସ୍ପଷ୍ଟ ପ୍ରତୀୟମାନ ହେବ ।

ଉତ୍ତରାଞ୍ଚଳୀୟ ଓଡ଼ିଆ ସାହିତ୍ୟିକମାନେ ଏହି ଭାଷା ଦ୍ୱାରା ଅତ୍ୟନ୍ତ ପ୍ରଭାବିତ । ଆଧୁନିକ ଓଡ଼ିଆ ଗଦ୍ୟଶୈଳୀର ପ୍ରାଣ ପ୍ରତିଷ୍ଠାତା ଫକୀରମୋହନ ଭାଷା ନିର୍ବାଚନରେ ସ୍ୱାତନ୍ତ୍ୟ ପ୍ରଦର୍ଶନ କରି ମୌଳିକ ଦୃଷ୍ଟି ଭଂଗୀର ପରିଚୟ ଦେବା ସଂଗେସଂଗେ 'ଓଡ଼ିଆ ସାହିତ୍ୟରେ ଏ ଲୋକଭାଷାକୁ ଦେଲେ ପ୍ରଥମ ହୋଇ ଅପୂର୍ବ ଜୀବନ୍ୟାସ'' ଓ ''ସାହିତ୍ୟିକ କୌଳିନ୍ୟ ।'' ''ପରବର୍ତ୍ତୀ କାଳରେ ବହୁ ସାହିତ୍ୟିକ ଫକୀରମୋହନଙ୍କ ଗଦ୍ୟରୀତିରେ ଅର୍ଥାତ୍ ଲୋକ ପ୍ରଚଳିତ ଭାଷାରେ ଉଚ୍ଚମାନର ସର୍ଜନାତ୍ମକ ସାହିତ୍ୟ ସୃଷ୍ଟିର ସଫଳ ପରୀକ୍ଷାରେ ଅନୁପ୍ରେରିତ ହୋଇ, ଅନୁପ୍ରାଣିତ ହୋଇ ଓ ପ୍ରଭାବିତ ହୋଇ ସେହିପରି ଶୈଳୀକୁ ଅନୁସରଣ ଓ ଅନୁକରଣ କରିବାର ଚେଷ୍ଟା କରିଥିଲେ । ପୁଣି କେତେକ ପରିମାଣରେ ସଫଳତା ମଧ୍ୟ ହାସଲ କରିଥିଲେ ।'' ଆନ୍ତର୍ଜାତିକ ଖ୍ୟାତି ସଂପନ୍ନ ସ୍ୱନାମଧନ୍ୟ ସାରସ୍ୱତ ସାଧକ ମନୋଜ ଦାସଙ୍କ ଗଳ୍ପ ସାହିତ୍ୟରେ ଏହି ଭାଷାର ବହୁଳ ବ୍ୟବହାର ପରିଲକ୍ଷିତ ହୁଏ । ଏତଦ୍‌ବ୍ୟତୀତ ଏ ଅଂଚଳର ଅନେକ ଲବ୍ଧ ପ୍ରତିଷ୍ଠ ସାହିତ୍ୟିକ/କବି ସେମାନଙ୍କ ରଚନାରେ ଏହି ଭାଷାର ସଫଳ ବ୍ୟବହାର କରୁଥିବାର ଦୃଷ୍ଟିଗୋଚର ହୁଏ ।

### ଉତ୍ତର-ପୂର୍ବାଞ୍ଚଳୀୟ ସାହିତ୍ୟ :

ଶହଶହ ବର୍ଷ ଧରି ସାହିତ୍ୟର ଯେଉଁ ଅଖଣ୍ଡ ପ୍ରଭାବ ଉତ୍କଳ ସାମ୍ରାଜ୍ୟରେ ବିସ୍ତାରିତ ହୋଇଥିଲା, ଉତ୍ତର ପୂର୍ବାଂଚଳ ସେଥିରୁ ମୁକ୍ତ ନଥିଲା । ଏ ଅଂଚଳରେ ପ୍ରତି ଗ୍ରାମରେ 'ଭାଗବତ ଟୁଙ୍ଗୀ'ରେ 'ଭାଗବତ ଗୋସାଇଁ' ପୂଜିତ ହେଉଥିଲେ । ଭାଗବତ, ହରିବଂଶ, ମହାଭାରତ, ରାମାୟଣ ସହିତ ରୀତିଯୁଗୀୟ କାବ୍ୟ ସମୂହ ନିତ୍ୟ ପଠିତ ଓ ଆଲୋଚିତ ହେଉଥିଲା । ଚାଟଶାଳୀ ମାନଙ୍କରେ ଓଡ଼ିଆ ଅବଧାନମାନେ ଓଡ଼ିଆ ଭାଷା, ଲିପି, ସାହିତ୍ୟ ଓ ସଂଗୀତ ଶିକ୍ଷା ଦେଉଥିଲେ । ବହୁ କବି କାବ୍ୟ,କବିତା, ଗୀତ, ଛାନ୍ଦ ଆଦି ରଚନା କରିଥିଲେ । ରସ ବିନୋଦ ଓ ରସକଲ୍ଲୋଳକାର ଭକ୍ତିଶ୍ରେଷ୍ଠ ସ୍ୱାଭିମାନୀ ଦୀନକୃଷ୍ଣ ଦାସ ଏ ଅଂଚଳରେ ଅଗ୍ରଗଣ୍ୟ କବି । ତାଙ୍କର କାବ୍ୟିକ ପ୍ରେରଣା ଓ ପ୍ରଭାବରେ ଆଲୋଚ୍ୟ ଅଂଚଳରେ ବହୁ ଓଡ଼ିଆ ପ୍ରାଚୀନ

କାବ୍ୟ, ଚଉତିଶା ରଚିତ ହୋଇଥିବାର ଦେଖିବାକୁ ମିଳେ । ଏସବୁ ପ୍ରାୟ ଧର୍ମଭିତ୍ତିକ ରଚନା । ରାମ, ଚଣ୍ଡୀ, ଶୀତଳା, ଶିବ, ମନସା ଏବଂ ରାଧାକୃଷ୍ଣ ବିଷୟକ ବହୁ ଉତ୍କୃଷ୍ଟ ଲୌକିକ କାବ୍ୟ ଓ କୀର୍ତ୍ତନ ଏ ଅଂଚଳର କବିମାନଙ୍କ ଦ୍ୱାରା ରଚିତ ।

ଉତ୍ତର-ପୂର୍ବ ଉପାନ୍ତ ଅଂଚଳରେ ବୃହସ୍ଥାନରେ ସଂସ୍କୃତ ଚର୍ଚ୍ଚାର ପ୍ରାଚୀନ ପରଂପରା ରହିଅଛି । ପ୍ରବୀଣ ସଂସ୍କୃତ ଅଧ୍ୟାପକଗଣ ସେମାନଙ୍କର ପାଣ୍ଡିତ୍ୟ ନିମନ୍ତେ ପ୍ରସିଦ୍ଧି ଅର୍ଜ୍ଜନ କରିଛନ୍ତି । ବହୁ ସାରସ୍ୱତ ସାଧକ ସଂସ୍କୃତ ଭାଷାରେ ବହୁ ଉଚ୍ଚକୋଟୀର କାବ୍ୟ, ଟୀକା, ଅଷ୍ଟକ, ଅଭିଧାନ, ବ୍ୟାକରଣ, ସ୍ମୃତି ଓ ବ୍ୟବହାର ଶାସ୍ତ୍ର ଏବଂ ପ୍ରବନ୍ଧମାନ ରଚନା କରିଥିବାର ଦେଖାଯାଏ ।

ଆଲୋଚ୍ୟ ଅଂଚଳର ବହୁ କବି ଉଭୟ ବଂଗଳା ଓ ଓଡ଼ିଆ ଭାଷାରେ ସାହିତ୍ୟ ରଚନା କରିଥିବାର ଜଣାଯାଏ । ଏ ଅଞ୍ଚଳରେ ଓଡ଼ିଆ ଲିପି ଓ ଭାଷା ସହିତ ଓଡ଼ିଆ ଭାଷା ଓ ବଂଗଲିପିରେ ଲିଖିତ ତାଳପତ୍ର ପୋଥି ବହୁଳ ଦୃଷ୍ଟିଗୋଚର ହୁଏ

ସୀମା ସେପାଖ ମେଦିନୀପୁର ଜିଲ୍ଲାର ଅଧିବାସୀମାନଙ୍କ ମଧ୍ୟରେ ଓଡ଼ିଆ ସାହିତ୍ୟ ପ୍ରୀତି ଏବେ ବି ପର୍ଯ୍ୟାପ୍ତ ପରିମାଣରେ ରହିଥିବାର ଦେଖାଯାଏ । ଅନେକେ ପ୍ରାଚୀନ ଓ ଲୌକିକ ସାହିତ୍ୟ ସବୁ ବଂଗଲିପି (ଓଡ଼ିଆ ଭାଷା)ରେ ପ୍ରକାଶିତ ହୋଇଅଛି । ଏହି ସବୁ ପୁସ୍ତକ ପ୍ରକାଶ କରିବାରେ କାନ୍ଥୀ ନିହାର ପ୍ରେସ୍‌ର ଅବଦାନ ଉଲ୍ଲେଖଯୋଗ୍ୟ । ଏତଦ୍‌ବ୍ୟତୀତ ଏଗ୍ରା, ମେଦିନୀପୁର, ଦାନ୍ତନ, ଜଳେଶ୍ୱର, ଚନ୍ଦନେଶ୍ୱର, ବାରିପଦା ଓ ବାଲେଶ୍ୱର ପ୍ରଭୃତି ସ୍ଥାନରେ କେତେକ ପ୍ରେସ୍‌ରେ ଓଡ଼ିଆ ସାହିତ୍ୟ ବଂଗଲିପିରେ ମୁଦ୍ରିତ ହୋଇ ପରିଶିଷ୍ଟରେ ଏକ ତାଲିକା ସଂଯୁକ୍ତ ହୋଇଛି । ସଂଗୃହୀତ ସାହିତ୍ୟ ସବୁ ନିମ୍ନ ପ୍ରର୍ଯ୍ୟାୟରେ ବିଭକ୍ତ । ଯଥା : (କ) ଭକ୍ତି ସାହିତ୍ୟ (ଖ) ବ୍ୟଙ୍ଗ ଓ ହାସ୍ୟରସ (ଗ) ପାରିବାରିକ ଓ ସାମାଜିକ । ଭକ୍ତି ସାହିତ୍ୟରେ ରାମସୀତା, ରାଧାକୃଷ୍ଣ, ଶିବପାର୍ବତୀ, ଦୁର୍ଗା, ଲକ୍ଷ୍ମୀ, ଶୀତଳା, ଗଙ୍ଗା, ମନସା, ସତ୍ୟପୀର, ସତ୍ୟନାରାୟଣ, ଷଷ୍ଠୀ, ଧର୍ମ ପ୍ରଭୃତି ଦେବେଦେବୀଙ୍କ ଶାସ୍ତ୍ରୀୟ ଓ ଲୌକିକ ମହିମାଗାନ କରାଯାଇଛି । ଜନ୍ମାଷ୍ଟମୀ ବ୍ରତକଥା, ଗଜସ୍ତୁତି, ହରିଣୀ ସ୍ତୁତି, ଭାଗବତ, ଟୀକା ଭାଗବତ, ଭଜନ ସାର, ବାମନ ଜନ୍ମ, ତ୍ରିନାଥ ମେଳା, ଚନ୍ଦନେଶ୍ୱର ମହାତ୍ମ୍ୟ, ସୀତାଚୋରୀ ପ୍ରଭୃତି ରଚନା ଭକ୍ତି ସାହିତ୍ୟ ଭାବରେ ବିଶେଷ ଲୋକପ୍ରିୟ ।

ଆଧୁନିକ ଫାର୍ଶ, ଦହିବାଲୀ ଗୀତ, ଟିଉସନ ମାଷ୍ଟର, ଦୁଇ ସମୁଦୁଣୀ କଳି, ଅଜା ନାତୁଣୀ, ଚଢ଼େଇଆ ଚଢ଼େୟାଣୀର ଝଗଡ଼ା ପ୍ରଭୃତି ବ୍ୟଙ୍ଗ ଓ ହାସ୍ୟରସାତ୍ମକ ରଚନା ।

ଆଦର୍ଶନାରୀ, ସୁଲକ୍ଷଣୀ ଝିଅ, ନଣନ୍ଦୀ ଲାଗି ଶଳା ଭାଉଜର ବିଳାପ, ସୁନାଝିଅ, ଗେହ୍ଲାଝିଅ, ଚଂପାବତୀ ହରଣ, ଝୁମରୀ ନାନୀ, ଗେହ୍ଲୀନାନୀର ଗୀତ ପ୍ରଭୃତି ପାରିବାରିକ ଓ ସାମାଜିକ ସାହିତ୍ୟର ନିଦର୍ଶନ ।

ଉପରଲିଖିତ ଆଲୋଚନାରୁ ମେଦିନୀପୁର ଅଂଚଳର ଅଧିବାସୀ ମାନଙ୍କର ଓଡ଼ିଆ ଭଷା ଓ ସାହିତ୍ୟ ପ୍ରୀତି ସ୍ୱଷ୍ଟ ବୁଝା ପଡ଼ିବ । ଦକ୍ଷିଣ ମେଦିନୀପୁରର ପ୍ରତିଘରେ ଖୋଜିଲେ ଏପରି ପୁସ୍ତକ କେତେଖଣ୍ଡ ନିଶ୍ଚୟ ମିଳିବ । ଅନେକ ଲୋକ ସାହିତ୍ୟିକ ସେମାନଙ୍କର ରଚନା ନିମନ୍ତେ କବି-ଖ୍ୟାତିସହ ଅର୍ଥ ମଧ୍ୟ ଅର୍ଜ୍ଜନ କରିଅଛନ୍ତି ।

**ଲୋକ ସାହିତ୍ୟରେ କେତେକ ଐତିହାସିକ ସ୍ଥାନର ଉଲ୍ଲେଖ :**

ଆଲୋଚ୍ୟ ଅଂଚଳର ଜନ ସମାଦରେ ବହୁ ପ୍ରଚଳିତ ଦୁଇଗୋଟି ଲୋକଗୀତରେ ଉଚ୍ଚାରିତ ସ୍ଥାନ ବିଷୟରେ ଏଠାରେ ଉଲ୍ଲେଖ କରୁଅଛି । ଦୁଇଟି ଶିଶୁଗୀତରୁ ପ୍ରଥମଟି ପିଲାଙ୍କୁ ଶୁଆଇବା ଗୀତ ଓ ଦ୍ୱିତୀୟଟି

ଶିଶୁ ଉଦ୍‌ବୋଧନ ଗୀତିକା । ଗୀତ ଦୁଇଟି ପରିଶିଷ୍ଟରେ ସଂଯୋଜିତ ହେଉଛି । ପ୍ରଥମ ଗୀତଟିରେ 'ମହନପୁର' ଓ 'ରେବଣା'-ଏପରି ଦୁଇଟି ବିଶେଷ ସ୍ଥାନର ଉଲ୍ଲେଖ ଗୀତଟିକୁ ଐତିହାସିକ ଗୁରୁତ୍ୱ ପ୍ରଦାନ କରିଛି ।

'ମହନପୁର' (ମୋହନପୁର) -ବର୍ତ୍ତମାନ ଓଡ଼ିଶାର ସୀମା ସେପାଖ ମେଦିନୀପୁର ଜିଲ୍ଲା ମଧ୍ୟରେ ଅବସ୍ଥିତ ଏକ ପ୍ରାଚୀନ ଓ ସମୃଦ୍ଧ ଜନବସତି ।

'ରେବଣା' -ଏହା ଉତ୍କଳର ପ୍ରାଚୀନ ସମୃଦ୍ଧ ଓ ସବୃହତ ଦୁର୍ଗ ଭାବରେ ପରିଚିତ 'ରାଇବଣିଆ'କୁ ଚିହ୍ନିତ କରୁଥିବାର କେହିକେହି ଐତିହାସିକ କହନ୍ତି । ଗଜପତି ନରସିଂହ ଦେବଙ୍କ ସମୟରେ ଏହି ବିଶାଳ ଦୁର୍ଗ ନିର୍ମିତ ହୋଇଥିବାରୁ ଇତିହାସରୁ ଜଣାପଡ଼େ । ଏହା ବର୍ତ୍ତମାନ ଓଡ଼ିଶାର ଉତ୍ତର ସୀମାରେ ଅବସ୍ଥିତ ।

ଦ୍ୱିତୀୟ ଗୀତଟିରେ ଉଚ୍ଚାରିତ 'କାଆଁଶୀ ନଦୀର ଜଳ' ପଦଟି ଏଠାରେ ଆଲୋଚ୍ୟ । ଏହି ଉଦ୍‌ବୋଧନ ଗୀତିକାଟି ଓଡ଼ିଶାର ଉତ୍ତର-ପୂର୍ବ ସୀମାରେଖାର ଉଭୟ ପାଟର ଲୋକ ସମାଜରେ ବହୁଳ ପ୍ରଚଳିତ । କାଆଁଶୀ/କାସାଇ/କଂସାବତୀ ଅଥବା କପିଶା ନଦୀ ମେଦିନୀପୁର ଜିଲ୍ଲାରେ ଅବସ୍ଥିତ । ଏହା ପ୍ରାଚୀନ ଉତ୍କଳର ଏକ ନଦୀରୂପେ ଖ୍ୟାତିଲାଭ କରିଥିବା ବିଷୟ ପ୍ରାଚୀନ ସଂସ୍କୃତ କାବ୍ୟରେ ବର୍ଣ୍ଣିତ ଓ ଐତିହାସିକଙ୍କ ଦ୍ୱାରା ସମର୍ଥିତ ।

'ଆତ୍ମଜୀବନ ଚରିତ'ରେ ଫକୀରମୋହନ ଏକ ସୁପ୍ରସିଦ୍ଧ ଲୋକୋକ୍ତିକୁ ସ୍ଥାନିତ କରିଛନ୍ତି । ଉକ୍ତିଟି ହେଉଛି -''ହଳଦୀ ମଖାମଖି, ନାରଣଗଡ଼ ପାରିହେଲେ କୁଟୁମ୍ବ ଦେଖାଦେଖି ।'' ଲୋକୋକ୍ତିଟିରେ ବର୍ଣ୍ଣିତ 'ନାରଣଗଡ଼'-ମେଦିନୀପୁର ଜିଲ୍ଲାରେ ଅବସ୍ଥିତ । ଏକଦା ଏହି ଅଂଚଳ ଠଗ ବା ଦସ୍ୟୁ ଅଧ୍ୟୁଷିତ ଅଂଚଳରୂପେ କୁଖ୍ୟାତି ଲାଭ କରିଥିଲା ।

ଗଦାଧର ତର୍କବାଗୀଶ ସମ୍ଭବତଃ ୧୮୨୧-୨୨ ମସିହାରେ ଓଡ଼ିଆ ଭାଷାର ପ୍ରଥମ ବ୍ୟାକରଣ ରଚନା କରିଥିଲେ । ଏଥିରେ ନାନୀଲୋ, ଖୁଡ଼ିଲୋ, କୁଟା କେରାୟ ଓ ଗଜପତି ପ୍ରଭୃତି ଉଦାହରଣ ଦିଆଯାଇଥିବାରୁ ପ୍ରଥମ ଓଡ଼ିଆ ବ୍ୟାକରଣ ରଚୟିତା ଗଦାଧର ମେଦିନୀପୁର ବାସିନ୍ଦା ଥିବାର ମନେ କରା ଯାଇପାରେ । (ଦାଶ ଗଗନେନ୍ଦ୍ର ନାଥ, ଏଷଣା-୧, ୧୯୮୦) ।

ବଂଗଳା ଭାଷାରେ ଶ୍ରୀମଦ୍ ଭାଗବତର ପ୍ରଥମ ଅନୁବାଦକ ରୂପେ ବିପ୍ର ସନାତନ ବିଦ୍ୟାବାଗୀଶ ବିଶେଷ ଖ୍ୟାତି ଅର୍ଜ୍ଜନ କରିଛନ୍ତି । ସେ ପ୍ରୋକ୍ତ ଗ୍ରନ୍ଥର ବଂଗଳାନୁବାଦ କଲାବେଳେ 'ଶ୍ରୀ ଜଗନ୍ନାଥ ଦାସକୃତ ଭାଗବତର ଅପୂର୍ବ ବର୍ଣ୍ଣନ'ର ସାହାଯ୍ୟ ଗ୍ରହଣ କରିଥିଲେ (ମିଶ୍ର ନୀଳମଣି, ସଂପୂର୍ଣ୍ଣ କଥା ଭାଗବତ, ପୃ-୩, ୧୯୮୪)

ଓଡ଼ିଶାରେ ଆଧୁନିକ ଶିକ୍ଷା ଓ ଓଡ଼ିଆ ସାହିତ୍ୟର ବିକାଶହିଁ ମୁଖ୍ୟତଃ ବାଲେଶ୍ୱର ଓ ବାରିପଦା ସହରକୁ କେନ୍ଦ୍ରକରି ସମ୍ଭବ ହୋଇଛି । ଉନବିଂଶ ଶତକର ଶେଷ ତିରିଶ ବର୍ଷ ଭିତରେ ବାଲେଶ୍ୱର ସହରରେ ପ୍ରେସ୍ ପ୍ରତିଷ୍ଠା, ପତ୍ରିକା ସଂପାଦନା, ସାହିତ୍ୟ ସଂଗଠନ ସହିତ ପାଠ୍ୟ ପୁସ୍ତକ ରଚନା - ସବୁ ଦୃଷ୍ଟିରୁ ବାଲେଶ୍ୱର ସହରର ଅବଦାନ ଉଲ୍ଲେଖନୀୟ । ବାଲେଶ୍ୱରଠାରେ ପ୍ରେସ୍ ପ୍ରତିଷ୍ଠା ଓ ପତ୍ରପତ୍ରିକା ପ୍ରକାଶିତ ହେବାହେତୁ ଉତ୍ତରପୂର୍ବ ଉପାନ୍ତ ଓଡ଼ିଶାର ଅନେକ ଲେଖକ ଓଡ଼ିଆରେ ସାହିତ୍ୟ ସାଧନା କରି ଆତ୍ମପ୍ରକାଶ କରିଥିଲେ । ସେମାନଙ୍କ ମଧ୍ୟରୁ ପଣ୍ଡିତ ରୁଦ୍ରନାରାୟଣ ଷଡ଼ଙ୍ଗୀ (ନାଁପୋ), ଭୋଳାନା ସାମନ୍ତରାୟ (ମହିଷାଦଳ), ପ୍ରିୟନାଥ ମହାନ୍ତି (କାନ୍ଥୀ), ନରେନ୍ଦ୍ର ନାଥ ଦାସମହାପାତ୍ର (ଅଲାଲପୁର), ଜଗନ୍ନାଥ ସିଂହ (କଖଡ଼ା), ଓ ରୁଦ୍ରନାରାୟଣ ପଟ୍ଟନାୟକ (ଦେହୁଡ଼ଦା ସ୍କୁଲର ଭୂତପୂର୍ବ ଛାତ୍ର) ପ୍ରଭୃତିଙ୍କ ନାମ ଉଲ୍ଲେଖଯୋଗ୍ୟ । କବିବର ରାଧାନାଥ ରାୟ, ବ୍ୟାସକବି

ଫକୀରମୋହନ ଓ ଭକ୍ତିକବି ମଧୁସୂଦନ ପ୍ରଭୃତି ପ୍ରମୁଖ ଓଡ଼ିଆ କବି ଓ ଲେଖକ ଏବଂ ସାର୍ ଜନ୍ ବିମ୍‌ସ (ବାଲେଶ୍ୱର କଲେକ୍ଟର) ଙ୍କ ପରି ସୁପଣ୍ଡିତଙ୍କର ସାରସ୍ୱତ ସାଧନା କ୍ଷେତ୍ରରୂପେ ବାଲେଶ୍ୱର ସହର ପରିଚିତ ହୋଇଥିଲା । ସ୍ୱନାମଧନ୍ୟ ପ୍ରଜାବତ୍ସଳ ମହାରାଜ ଶ୍ରୀରାମଚନ୍ଦ୍ର ଭଂଜଦେବଙ୍କ ପ୍ରଗାଢ଼ ପ୍ରଚେଷ୍ଟା ଫଳରେ ବାରିପଦାରେ ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତିର ସୁରକ୍ଷା ଓ ପ୍ରସାର ଘଟିଥିଲା । ଉପାନ୍ତ ଅଂଚଳରେ ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତିର ସୁରକ୍ଷା ଓ ପ୍ରସାର ଦିଗରେ ବାଲେଶ୍ୱର ଓ ବାରିପଦା ସହରର ଅବଦାନ ମହତ୍ୱପୂର୍ଣ୍ଣ ଓ ବିଶେଷ ଉଲ୍ଲେଖଯୋଗ୍ୟ ।

ଓଡ଼ିଶା ପରାଧୀନ ହେବା ପୂର୍ବରୁ ଓ ପରେ ଆଲୋଚ୍ୟ ସମଗ୍ର ଅଂଚଳରେ ବିଶେଷତଃ ମେଦିନୀପୁର ବିସ୍ତୃତ ଅଂଚଳରେ ଓଡ଼ିଆ ଜମିଦାରମାନେ ପାରଂପରିକ ଓଡ଼ିଆ ସାହିତ୍ୟ, ସଂଗୀତ ଓ ସଂସ୍କୃତ ଚର୍ଚ୍ଚାର ପରଂପରା ରକ୍ଷା କରିଥିଲେ । ମୋଗଲ, ମରହଟ୍ଟା ଶାସନ କାଳରେ ବାଦଶାହୀ ଦରବାର ଅନୁକରଣରେ ରାଜା ଜମିଦାରମାନେ ସେମାନଙ୍କର 'ଗଡ଼' ମାନଙ୍କରେ ପ୍ରଖ୍ୟାତ ଉସ୍ତାଦ୍, ସଂଗୀତଜ୍ଞ, ଗାୟକ ଓ କବିମାନଙ୍କୁ ନିଯୁକ୍ତ କରିବା ସଂଗେସଂଗେ ପୃଷ୍ଠପୋଷକତା ପ୍ରଦାନ କରୁଥିଲେ । କିଂତୁ, ଊନବିଂଶ ଶତକର ଦ୍ୱିତୀୟାର୍ଦ୍ଧରେ ନ'ଅଙ୍କ ଦୁର୍ଭିକ୍ଷର ଦାରୁଣ ଦୁର୍ବିପାକ ପରେପରେ ଓଡ଼ିଆ ଭାଷା ବିଲୋପ ଆନ୍ଦୋଳନ-ଏପରି ଦୁଇଗୋଟି ପ୍ରମୁଖ ଘଟଣା, ଘଟିବା ଫଳରେ ଓଡ଼ିଆ ଜାତୀୟ ଚେତନାର ପୁନଃପ୍ରତିଷ୍ଠା ସାଂଗକୁ ସୃଷ୍ଟି ହୋଇଥିଲା ଭାଷା-ସାହିତ୍ୟ ଓ ସାଂସ୍କୃତିକ ନବଜାଗରଣ । ଓଡ଼ିଶାର ଏକତ୍ରିକରଣ ନିମନ୍ତେ ୧୯୦୩ ମସିହାରେ ଉତ୍କଳ ସମ୍ମିଳନୀର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଥିଲା । ଖ୍ରୀ.୧୯୩୬ରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠିତ ହେବାପରେ ପୂର୍ବତନ ଓଡ଼ିଶା ଭୂଖଣ୍ଡର ବହୁ ଅଂଚଳ ନବଗଠିତ ପ୍ରଦେଶର ବାହାରେ ରହିଲା । ଉତ୍ତର-ପୂର୍ବ ଉପାନ୍ତ ଅଂଚଳରେ ଅବସ୍ଥିତ ମେଦିନୀପୁର ବିସ୍ତୃତ ଅଂଚଳ ପଶ୍ଚିମ ବଂଗରେ ମିଶିଲା । ଏହାର ପ୍ରତିବାଦ ସ୍ୱରୂପ ଉଭୟ ମେଦିନୀପୁର ଏ ଓଡ଼ିଶା ଭିତରେ ବହୁ ଅନୁଷ୍ଠାନ ଗଠିତ ହୋଇ ପ୍ରତିବାଦ ସଭା, ଶୋଭା-ଯାତ୍ରା, ସ୍ମାରକପତ୍ର ପ୍ରଦାନ, ସମ୍ମେଳନ ମାଧ୍ୟମରେ ସରକାରୀ ନିଷ୍ପତ୍ତି ବିରୁଦ୍ଧରେ ସ୍ୱର ଉତ୍ତୋଳିତ ହୋଇଥିଲେହେଁ ରାଜନୀତିର ଚକ୍ରବ୍ୟୂହରେ ସେ ସବୁ ସଫଳ ହେଲାନାହିଁ ।

ସ୍ୱାଧୀନତା ଲାଭ ପରେ ଉପାନ୍ତ ଅଂଚଳଦ୍ୱେର ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତିର ସୁରକ୍ଷା ନିମନ୍ତେ ପ୍ରାଦେଶିକ ସରକାରଙ୍କ ଅବ୍ୟାହତ ଉଦ୍ୟମ ସୀମିତ ସଫଳ ମଧ୍ୟରେ ଉଲ୍ଲେଖନୀୟ ନହେଲେ ମଧ ଅଭିନନ୍ଦନୀୟ ।

ମେଦିନୀପୁର ଅଂଚଳ ରାଜନୀତିକ କାରଣରୁ ପଶ୍ଚିମ ବଂଗଳାରେ ଅନ୍ତର୍ଭୁକ୍ତ ହୋଇଅଛି । ଏଠାରେ ୧୯୩୬ ମସିହା ପରଠାରୁ ଓଡ଼ିଆ ଭାଷା ଶିକ୍ଷାର ପ୍ରଚଳନ ନାହିଁ । ସେଠା ବିଦ୍ୟାଳୟ ମାନଙ୍କରେ ବଂଗଳା ଭାଷାରେ ଶିକ୍ଷା ବ୍ୟବସ୍ଥା ପ୍ରଚଳିତ । ଓଡ଼ିଆ ଭାଷା କ୍ରମେ ସଂକୁଚିତ ହୋଇଛି, ହେଉଛି ବି । କେବଳ ଘରୋଇ ସ୍ତରରେ ଏହି ଭାଷାର ପ୍ରଚଳନ ଓ ଉପଯୋଗ ହେଉଅଛି । ଓଡ଼ିଆ ସାହିତ୍ୟ ବଂଗଳିପିରେ ମୁଦ୍ରିତ ହୋଇ ପ୍ରକାଶିତ ଓ ପ୍ରସାରିତ ହେଉଛି । ଏ ଅଂଚଳର ଜନସାଧାରଣଙ୍କର ଓଡ଼ିଆ ଭାଷା, ସାହିତ୍ୟ ପ୍ରତି ପ୍ରୀତିପୂର୍ଣ୍ଣ ସରକାରୀ ନୀତି ଅବଦମିତ କରିବା-ଏକ ଅସ୍ୱାଭାବିକ କାର୍ଯ୍ୟ ହେବ ।

**ଓଡ଼ିଆ ଭାଷାରେ ବଂଗଳିପି ରେ ଲିଖିତ ପୁସ୍ତକ ତାଲିକା :**

୧. ଅର୍ଜ୍ଜୁନ ଗୀତା
୨. ଅଙ୍ଗଦ ବୀର
୩. ଅନନ୍ତ ବ୍ରତ
୪. ଅଜା ନାତୁଣୀ

୫. ଆଖଣ୍ଡଳମଣି ଜଣାଣ ଓ ଭଜନ
୬. ଆଦର୍ଶ ନାରୀ
୭. ଆଧୁନିକ ପାର୍ଶ
୮. ଉଷା ହରଣ
୯. ଏକାଦଶୀ ମହାତ୍ମ୍ୟ
୧୦. କପଟ ପାଶା
୧୧. କପିଳା ମଙ୍ଗଳ
୧୨. କନିଆ ବଉ
୧୩. କଳିର ବଉ
୧୪. କର୍ମଚିନ୍ତା ଓ ସ୍ୱାମୀର ଶୋକ
୧୫. କଳିର ମହାତ୍ମ୍ୟ
୧୬. କଟକିଆଣୀ
୧୭. କଲିକତିଆ ବୋହୂ
୧୮. କୌଶଲ୍ୟା ରୋଦନ
୧୯. କଳିଯୁଗ ରହସ୍ୟ
୨୦. କୁଦି ଯାତ୍ରା
୨୧. କଂସ ବଧ
୨୨. କଂସର ଜନ୍ମ
୨୩. କାର୍ତ୍ତିକ ମାହାତ୍ମ୍ୟ
୨୫. କୁଳବତୀ ଉପାଖ୍ୟାନ
୨୬. ଗଙ୍ଗାସାଗର ମାହାତ୍ମ୍ୟ
୨୭. ଗଜସ୍ତୁତି
୨୮. ଗରୁଡ଼ ପୁରାଣ
୨୯. ଗୁପ୍ତ ଭାଗବତ
୩୦. ଗେହ୍ଲାଝିଅ
୩୧. ଗେହ୍ଲୀ ନାନୀ ଗୀତ
୩୨. ଚଂପାବତୀ ହରଣ
୩୩. ଚନ୍ଦନେଶ୍ୱର ମାହାତ୍ମ୍ୟ
୩୪. ଚୋର କେଳି
୩୫. ଚେଢ଼ିଆ ଚେଢ଼ିଆଣୀର ଝଗଡ଼ା
୩୬. ଜଳକେଳି ଓ ବସ୍ତ୍ର ହରଣ
୩୭. ଜନ୍ମାଷ୍ଟମୀ ବ୍ରତକଥା
୩୮. ଜୀତାଷ୍ଟମୀ ବ୍ରତ କଥା
୩୯. ଜଡ଼ ଭରତ
୪୦. ଜାନକୀ ରୋଦନ
୪୧. ଜେମା ରୋଦନ
୪୨. ଝୁମୁରୀ ନାନୀ
୪୩. ଟୀକା ଭାଗବତ
୪୪. ଟିଉସନ ମାଷ୍ଟର
୪୫. ତୁଲାଭିଣା
୪୬. ତୁଳସୀ ମାହାତ୍ମ୍ୟ
୪୭. ତ୍ରିନାଥ ମେଳା
୪୮. ଦହିବାଲୀ ଗୀତ
୪୯. ଦାନବୀର ହରିଶ୍ଚନ୍ଦ୍ର
୫୦. ଦାରୁବ୍ରହ୍ମ ଗୀତା
୫୧. ଦୁଇ ସମୁଦୁଣୀ କଳି
୫୨. ଦେଉଳ ତୋଳା
୫୩. ଦୁର୍ଗାଷ୍ଟମୀ ବ୍ରତକଥା
୫୪. ଦୁର୍ଗୋତ୍ସବ
୫୫. ଧନୀ ଚଣ୍ଡାଳ
୫୬. ଧ୍ରୁବ ଚରିତ
୫୭. ନଣନ୍ଦୀ ଲାଗି ଶଳାଭାଉଜର ବିଳାପ
୫୮. ନଳନୀଳ
୫୯. ନାଗବଲ୍ଲୀ ବ୍ରତ
୬୦. ନଟୁଚୋରୀ
୬୧. ନାବକେଳି
୬୨. ନୃସିଂହ ଚତୁର୍ଦ୍ଦଶୀ ବ୍ରତକଥା
୬୩. ପଞ୍ଚାନନ ମେଳା
୬୪. ପଞ୍ଚକ ବ୍ରତ କଥା
୬୫. ପତ୍ନୀ ଚିନ୍ତା
୬୬. ପରଶମଣି
୬୭. ପତିର ସତୀ ପରୀକ୍ଷା
୬୮. ପ୍ରମିଳା ବିଳାପ
୬୯. ବର୍ଣ୍ଣବୋଧ
୭୦. ବାମନ ଜନ୍ମ
୭୧. ବାଘାମ୍ବର ପାଲା
୭୨. ବିଶ୍ୱରୂପ ପ୍ରଦର୍ଶନ
୭୩. ବିଛୁଆତି ତାଳ ଓ ବାଇଡଙ୍କ ଫଳ
୭୪. ବେଦବତୀ ଉପଖ୍ୟାନ
୭୫. ବେହୁଲା ରୋଦନ

୭୬. ବ୍ୟାସଦେବ ଜନ୍ମ
୭୭. ବୃନ୍ଦାବତୀ ହରଣ
୭୮. ବୈଶାଖ ମାହାତ୍ମ୍ୟ
୭୯. ବ୍ରହ୍ମାଣ୍ଡ ଭୂଗୋଳ
୮୦. ଭାଗବତ
୮୧. ଭଜନ ସାର
୮୨. ଭିକ୍ଷୁ ଗୀତା
୮୩. ମହୀ ରାବଣବଧ
୮୪. ମଥୁରା ମଙ୍ଗଳ
୮୫. ମହାଭାରତ ଆଦି
୮୬. ମାଘ ମାହାତ୍ମ୍ୟ
୮୭. ମାଧବ ସୁଲୋଚନା
୮୮. ମୀରାଦେଈ
୮୯. ଯଦୁବଂଶ ଧ୍ୱଂସ
୯୦. ରଥଯାତ୍ରା
୯୧. ରସକେଳି
୯୨. ରାମ ନବମୀ ବ୍ରତ
୯୩. ରାସଲୀଳା
୯୪. ରାଇ ଦାମୋଦର
୯୫. ରାମଶୋକ
୯୬. ରାଧିକା ରୋଦନ
୯୭. ରାଧାଷ୍ଟମୀ ବ୍ରତକଥା
୯୮. ରୁକ୍ମିଣୀ ହରଣ
୯୯. ଲକ୍ଷ୍ମୀବ୍ରତକଥା ବା ଗୁରୁବାର ଓଷା
୧୦୦. ଲକ୍ଷ୍ମୀ ସଂକ୍ରାନ୍ତି ବ୍ରତ
୧୦୧. ଲକ୍ଷ୍ମୀ ଭଣ୍ଡାର
୧୦୨. ଲକ୍ଷ୍ମୀ ପୁରାଣ
୧୦୩. ଲଳିତା ସପ୍ତମୀ
୧୦୪. ଶ୍ରୀଶ୍ରୀ ରାଧାରାଣୀ ରୋଦନ
୧୦୫. ଶିବ ଚତୁର୍ଦ୍ଦଶୀ ରୋଦନ
୧୦୬. ଶୁକଦେବ ଜନ୍ମ
୧୦୭. ଶ୍ରୀମଦ୍ ଭଗବତ୍ ଗୀତା
୧୦୮. ଷଷ୍ଠୀ ମଙ୍ଗଳ
୧୦୯. ଷଷ୍ଠୀ ମହାତ୍ମ୍ୟ
୧୧୦. ସତ୍ୟଧର୍ମ
୧୧୧. ସାରଦା ମଙ୍ଗଳ
୧୧୨. ସାବିତ୍ରୀ ବ୍ରତ
୧୧୩. ସ୍ୱୟମ୍ବର ଦଶମୀ
୧୧୪. ସୁଗନ୍ଧିକା ହରଣ
୧୧୫. ସୁନାଝିଅ
୧୧୬. ସୁଲକ୍ଷଣୀ ଝିଅ
୧୧୭. ସୀତାଚୋରୀ
୧୧୮. ସତୀବନ ଦେବୀ
୧୧୯. ହରିଣୀ ସ୍ତୁତି

### (କ) ପିଲା ଶୁଆଇବା ଗୀତ :

ଆଇ ଆଇରେ ନିଦମାଉସୀ
ନିଦ ଦେଇଯିବୁ ଛୁଆକୁ ବସି
ଛୁଆ ଶାଶୁଘର ସୁନ୍ଦରଗଡ଼
ଛୁଆ ମଥାର ଯେ ହାତୀ ଜଳ ଢାଳିବ
ହାତୀ ମଥାର ଯେ ସୁନ୍ଦର ଟୀକା
ସମସ୍ତେ ଦେଖିଲେ କୁଡ଼ିବେ ମଥା
ହାତୀ ମଥାର ଯେ ମନ୍ଦାର ଫୁଲ
ହାତି ଚାଲିଗଲା ମହନପୁର
ହାତୀ ଚାଲିଗଲା ରେବଣା ବାଟେ
ଛୁଆ ମଥାବନ୍ଧା ଅବତା ଗଟେ ।

ବନସ୍ତରେ ହାତୀ  କିପରି ରୁହେ
ତତେ ଛାଡ଼ି ଦିନ ନେବା କେମନ୍ତେ
ବନସ୍ତରେ ହାତୀ ଖାଇଲା କିସ
ତୁମ ପାଖରେ ଯେ ନଥିଲା ବିଷ ।
(ଶାସନ, ପାଉଁଶକୁଲୀ , ବାଲେଶ୍ୱର)

(ଖ) ଶିଶୁ ଉଦ୍‌ବୋଧନ ଗୀତିକା :

ଆଇ ଆଇରେ କଜଳପାତି  ଗାଈ ମଣିତେ ଯିବା
ମାଆବାପା ଗାଳିଦେବେ  ଯୁଗୀ ବେଶ ହବା ।
ଶୁଷ କ୍ଳନେ ଖାଇବା କିସ, ନାଁ , କାଆଁସୀ ନଦୀର ଜଳ
ଭୁକ ନାଗିନେ ଖାଇବା କିସ, ନାଁ, ଆଷାଢ଼ିଆ ଫଳ
ନିଦ ନାଗିନେ ଶୁଇବା କେଠି, ନାଁ, ଗାଈ ପେଟତଳେ
ଶୀତ କନେ ଘୁଡ଼ିବା କିସ, ନାଁ , ଗଛର ବକଳ
(ବାଣୀଦା, ଜଳେଶ୍ୱର,ବାଲେଶ୍ୱର)

# ବାଣୀଦା, ସୁଗୋ, ଧାନସିମୂଳିଆ,
ବାଲେଶ୍ୱର-୭୫୬ ୦୮୪

# ଉପାନ୍ତ ଅଞ୍ଚଳରେ ଓ ଓଡ଼ିଶା ଭିତରେ ଓଡ଼ିଆ ଭାଷା ଓ ସଂସ୍କୃତି ବଞ୍ଚାଇ ରଖିବା କେମିତି ?

## ଅନନ୍ତ କିଶୋର ଜେନା

'ଉତ୍କଳ ସମ୍ମିଳନୀ' ଜନ୍ମ ନେଇଥିଲା ସେଦିନ ଏକ ସ୍ୱତନ୍ତ୍ର 'ଉତ୍କଳ ପ୍ରଦେଶ'ର ସୃଷ୍ଟିପାଇଁ । ଓଡ଼ିଆମାନଙ୍କ ମଧ୍ୟରେ ସଚେତନତା ସୃଷ୍ଟି କରି ଇଂରେଜ ଶାସକଙ୍କ ଉପରେ ଚାପ ପକାଇବା ପାଇଁ । ୧୯୩୬ ମସିହା ଅପ୍ରେଲ୍ ପହିଲାରେ ସ୍ୱତନ୍ତ୍ର ଓଡ଼ିଶା ଗଠନ ହେଲା, ମାତ୍ର ଅନେକ ଅଂଚଳ (ଓଡ଼ିଆ ଭାଷାଭାଷୀ) ରହିଗଲା ବିହାରରେ, ବଂଗରେ ତଥା ଆନ୍ଧ୍ର ଓ ମଧ୍ୟ ପ୍ରଦେଶରେ । ସେସବୁ ଓଡ଼ିଆ ଅଂଚଳ ଯେ ଓଡ଼ିଶାରେ ମିଶିବ- ଏ ଆଶା ଆଜି ବାସ୍ତବ ହେବା ସହଜ ନୁହେଁ । କିନ୍ତୁ ସେମାନଙ୍କର ଭାଷା ଓ ସଂସ୍କୃତିକୁ ସବୁଦିନ ପାଇଁ ବଂଚାଇ ରଖାଯିବ କିପରି ?

ଆଜି 'ଉତ୍କଳ ସମ୍ମିଳନୀ'ଗଭୀର ଭାବରେ ଚିନ୍ତା ଓ ଆଲୋଚନା କରି କାର୍ଯ୍ୟ ଖସଡ଼ା ତିଆରି ପୂର୍ବକ ତାହାକୁ ସଫଳ ରୂପାୟନ କରିବା ଉଚିତ । ଏବର ସମ୍ମିଳନୀ ଓଡ଼ିଆ କହୁଥିବା ଭୂଖଣ୍ଡକୁ ଏକତ୍ର କରିବାକୁ ଚେଷ୍ଟାକରିବା ଅପେକ୍ଷା, ଲୋକମାନଙ୍କର ଭାବଗତ ଏକତା କିପରି ଆସିବ ସେଥିପାଇଁ ଉଦ୍ୟମ କରିବା ଦରକାର । ଷଢ଼େଇକଳା, ଖରସୁଆଁ, ସିଂଭୂମ, ମେଦିନୀପୁର, ପଲାସା ଇତ୍ୟାଦି ପଡ଼ୋଶୀ ରାଜ୍ୟରେ ଥିବା ଓଡ଼ିଆ ଅଂଚଳରେ ଯେଉଁ ଓଡ଼ିଆ ସ୍କୁଲ ରହିଛି, ସେସବୁକୁ ଓଡ଼ିଆ ପାଠ୍ୟପୁସ୍ତକ ଆମ ସମ୍ମିଳନୀ ଯୋଗାଇବା ଦରକାର । ସରକାର ମଧ୍ୟ ସମ୍ମିଳନୀ ମାଧ୍ୟମରେ ଓଡ଼ିଆ ପାଠ୍ୟପୁସ୍ତକ ଏସବୁ ଅଂଚଳକୁ ପ୍ରଦାନ କରିବା ଆବଶ୍ୟକ । ସମ୍ମିଳନୀ ସେଠାରେ ସ୍କୁଲ ଶିକ୍ଷକ (ବିଶେଷ କରି ଓଡ଼ିଆ ଶିକ୍ଷକ), ପାଠାଗାର ଓ ଭାଗବତ ଟୁଙ୍ଗୀ ପାଇଁ ଅର୍ଥ ସଂଗ୍ରହ କରି ପଠେଇବା ଦରକାର । 'ଉତ୍କଳ ସମ୍ମିଳନୀ'ର ବାର୍ଷିକ ଗୋଟିଏ ଅଧିବେଶନ ଏସବୁ ଅଂଚଳରେ ହେବା ଦରକାର । ସେଠାରେ ଥିବା ଓଡ଼ିଆ ଭାଇମାନଙ୍କ ସହିତ ଭାବର ଆଦାନ ପ୍ରଦାନ ପାଇଁ ଏହା ନିହାତି ଆବଶ୍ୟକ । ସେସବୁ ଅଂଚଳର ଗରିବ ତଥା ମେଧାବୀ ଛାତ୍ରଛାତ୍ରୀମାନଙ୍କୁ ସମ୍ମିଳନୀର ସମ୍ମିଳିତ ଉଦ୍ୟମରେ ଯଥାସମ୍ଭବ ଛାତ୍ରବୃତ୍ତି ପ୍ରଦାନ କରିବା ଆବଶ୍ୟକ ।

ପ୍ରତିବର୍ଷ ଗୋଟିଏ ଗୋଟିଏ ଉପାନ୍ତ ଅଞ୍ଚଳ ମନୋନୟନ କରି (ପାଳିକରି) ସେଠାରୁ ଛାତ୍ର, ଶିକ୍ଷକ, ଅଭିଭାବକମାନଙ୍କୁ ନିମନ୍ତ୍ରଣ କରି ୩/୪ ଦିନ ପାଇଁ ଦର୍ଶନୀୟ ସ୍ଥାନ ବୁଲାଇ ସମୁଚିତ ସୌହାର୍ଦ୍ଧ୍ୟପୂର୍ଣ୍ଣ ବାତାବରଣରେ ଛାଡ଼ିବା ଉଚିତ । ସବୁଅଂଚଳର ମୁଖ୍ୟସ୍ଥାନମାନଙ୍କୁ, ଅଗମ୍ୟ ବା ନିପଟ ମଫସଲ ଅଂଚଳକୁ (ଉପାନ୍ତ ଅଂଚଳ) ଓଡ଼ିଆ ଖବରକାଗଜ ଓ ଓଡ଼ିଆ ପତ୍ରପତ୍ରିକା ଯେମିତି ଯାଏ - ସମ୍ମିଳନୀ ତାହା କମିତି କରି ନିଶ୍ଚିତ କରିବା ଦରକାର ।

ଡକ୍ଟର ମନୀନ୍ଦ୍ର ମହାନ୍ତି, ଶରତ ମହାପାତ୍ର ଇତ୍ୟାଦି ପଡ଼ୋଶୀ ରାଜ୍ୟର ଉପାନ୍ତ ଅଂଚଳକୁ ଯାଇ ଦୁଇ/ତିନିଦିନ ରହି ଓଡ଼ିଆ ବହି ବିତରଣ କରି, ପାଲା ଦାସକାଠିଆ କରାଇ -ଯେଉଁ ଗୁଣ୍ଡୁଚି ମୂଷାର ଉଦ୍ୟମ ୨/୩ ବର୍ଷ ହେଲା ଆରମ୍ଭ କରିଛନ୍ତି -ତାହାକୁ ସମ୍ମିଳନୀ ଆହୁରି ସଂଗଠିତ କରି ଭାବର ସେତୁବନ୍ଧ ନିର୍ମାଣରେ ପ୍ରୟାସୀ ହେବା ଦରକାର । ସେସବୁ ଅଂଚଳରେ ବିଭିନ୍ନ ସାହିତ୍ୟ ଅନୁଷ୍ଠାନ ଦ୍ୱାରା ସାହିତ୍ୟ ସଭା କରାଇବା ଆବଶ୍ୟକ । ସରକାରଙ୍କ ସଂସ୍କୃତି ବିଭାଗ ମଧ୍ୟ ଏଇସବୁ ଅଂଚଳରେ ଭଲଭଲ ଓଡ଼ିଆ ଚଳଚିତ୍ର, ପାଲା ଇତ୍ୟାଦି ପ୍ରଦର୍ଶନ କରାଇବା ଉଚିତ । ଏହା କେବଳ 'ଉତ୍କଳ ସମ୍ମିଳନୀ' ବାରମ୍ବାର ଉଦ୍ୟମ କଲେ ସମ୍ଭବ ହେବ ।

'ଉତ୍କଳ ସମ୍ମିଳନୀ' କେବଳ ପୂର୍ବସୂରୀମାନଙ୍କୁ ସ୍ମରଣ କଲେ ହେବନାହିଁ, ସେମାନଙ୍କ

କାର୍ଯ୍ୟାବଳୀ, ଉଦ୍ୟମ ଓ ଲକ୍ଷ୍ୟକୁ ଅନୁସରଣ କରିବାକୁ ହେବ । ପଣ୍ଡିତ ଗୋପବନ୍ଧୁ, ଜାତିପ୍ରାଣ ମଧୁସୂଦନ, ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଓ ବ୍ୟାସକବି ଫକୀରମୋହନଙ୍କୁ ଅନୁସରଣ କରି ଉପାନ୍ତ ଅଂଚଳର ଓଡ଼ିଆ ଭାଇ-ଭଉଣୀଙ୍କ ପାଇଁ ଏସବୁ କାର୍ଯ୍ୟକ୍ରମ ଭାବିବାକୁ ହେବ, କାର୍ଯ୍ୟକାରୀ କରିବାକୁ ହେବ ।

'ଉତ୍କଳ ସମ୍ମିଳନୀ'ର ପ୍ରତ୍ୟେକ ସଭ୍ୟ-ସଭ୍ୟା ତଥା ପ୍ରତ୍ୟେକ ଶିକ୍ଷିତ ଓଡ଼ିଆ ଏଇ ଅବସରରେ ଶପଥ ନେବା ଉଚିତ ଯେ ସେ ପ୍ରତିମାସ କିଛି ଓଡ଼ିଆ ବହି କିଣିବେ, ନିଜ ଘର ପାଇଁ ଏବଂ ଉପାନ୍ତ ଅଂଚଳ ପାଇଁ । କିଛି ଅର୍ଥ (ଯଥା ସମ୍ଭବ) ରଖିବେ ଉପାନ୍ତ ଅଂଚଳର ଭାଷା/ସଂସ୍କୃତିର ରକ୍ଷାପାଇଁ ଏବଂ କିଛି ସମୟ ଦେବେ ବହିଗୁଡ଼ିକ ପଢ଼ିବା ପାଇଁ ତଥା ଓଡ଼ିଆ ଭାଇମାନଙ୍କ କଥା ଚିନ୍ତା କରିବା ପାଇଁ । ନିଜ ଘରେ ଓଡ଼ିଆ ଲେଖକ-ଲେଖିକା ଓ ସେମାନଙ୍କର ବହିପତ୍ର ରଚନା ବିଷୟରେ ଆଲୋଚନା ମଧ୍ୟ କରିବାକୁ ସମୟ ଦେବେ ।

ଇଂରାଜୀ ତଥା ପ୍ରତିବେଶୀ ଭାଷା ଓ ସାହିତ୍ୟ ପଢ଼ିବାକୁ କେହି ମନା କରୁନାହିଁ, କିନ୍ତୁ ପ୍ରଥମେ ନିଜ ଭଷା/ସାହିତ୍ୟ/ସଂସ୍କୃତି ବିଷୟରେ ସଚେତନ ହେବା ଦରକାର । 'ମୁଁ ଯେ ଓଡ଼ିଆ'-ଏ ପ୍ରକାର ଆତ୍ମାଭିମାନ ପ୍ରଥମେ ସବୁ ଓଡ଼ିଆଙ୍କର ଯେମିତି ଆସିବ-ତାହା ପ୍ରତ୍ୟେକେ ଚିନ୍ତା କରନ୍ତୁ । ବଂଗାଳୀ ଭାଇ ମାନଙ୍କୁ ଦେଖନ୍ତୁ; ଯେଉଁଠି /ଯେତେବେଳେ ହେଉ, ପରସ୍ପର ବଂଗଳା ଭାଷାରେ କିପରି ପ୍ରଥମେ ଭାବର ଆଦାନପ୍ରଦାନ କରନ୍ତି -ସେଥିରୁ ଆମେ ଶିଖିବା ଉଚିତ । ବଂଗଳା ଦେଶ (ପୂର୍ବବଂଗ) ପଶ୍ଚିମବଂଗ ଠାରୁ ଭୂଖଣ୍ଡ ଓ ଶାସନରେ ଅଲଗା ହେଲା ସ୍ୱାଧୀନତାର ଅବ୍ୟବହିତ ପୂର୍ବରୁ ଧର୍ମର ଦ୍ୱାହି ଦେଇ ଜିନ୍ନାଙ୍କ ଡାକରେ । ହେଲେ ବଂଗଳା ଭାଷା ଓ ସଂସ୍କୃତିକୁ ବଙ୍ଗାଳୀ ମୁସଲମାନ ଭାଇମାନେ ବାଂଲାଦେଶରୁ ଛାଡ଼ି ପାରିଲେ କି ? ଆମ ସମସ୍ତ ଓଡ଼ିଆଙ୍କର ଏକଥା ଭାବିବାର ବେଳ ଆଜି ଆସିଛି 'ଉତ୍କଳ ସମ୍ମିଳନୀ'ରେ ।

# ଆଞ୍ଚଳିକ ପରିବହନ ଅଧିକାରୀ, ଚଣ୍ଡୀଖୋଲ

''ପରକୀୟା ଭାଷା-ଶିକ୍ଷା ଜଳ ଉପରେ ଘୃତବିନ୍ଦୁ ପତନବତ୍; ଅର୍ଥାତ୍ ଶିକ୍ଷାକାରୀ ହୃଦୟରେ ଜ୍ଞାନ ଆବଦ୍ଧ ରହେ । ମାତୃଭାଷା ଶିକ୍ଷା ଜଳ ଉପରେ ତୈଳବିନ୍ଦୁ ପତନବତ୍, ଅର୍ଥାତ୍ ଦେଶ ମଧ୍ୟରେ ସର୍ବତ୍ର ବିସ୍ତାର ଲାଭ କରେ ।''

**– ବ୍ୟାସକବି ଫକୀରମୋହନ**

# ଆମେ ଓଡ଼ିଆ : ମାତୃଭାଷା ଆମର ପରିଚୟ

ରାଜକିଶୋର ରାମ

କୌଣସି ବୈଦେଶିକ ଭାଷା ସହିତ ସଖ୍ୟ ସ୍ଥାପନ କରିବା ଯେପରି ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ, ନିଜ ମାତୃଭାଷା ପ୍ରତି ଅମର୍ଯ୍ୟାଦା ପ୍ରଦର୍ଶନ କରିବା ତତୋଧିକ ଅବିମୃଷ୍ୟକାରିତା ଓ ଆତ୍ମଘାତୀ କାର୍ଯ୍ୟ । ଗୋଟାଏ ସମାଜ୍ୟବାଦୀ ପରସ୍ୱ ଅପହରଣକାରୀ ଗୋଷ୍ଠୀ କବଳରୁ ମୁକ୍ତି ଲାଭ କରିବା ପରେ ଦୀର୍ଘ ୫୭ ବର୍ଷ ଅତିକ୍ରାନ୍ତ ହୋଇଥିଲେ ହେଁ ସେମାନଙ୍କ ଭାଷା ପରିଧାନ ପ୍ରତି ଆମର ମମତ୍ୱବୋଧ ଓ ଉତ୍କଟ ଆସକ୍ତି ପରିବାର ଠାରୁ ଆରମ୍ଭ କରି ପରମପୁରୁଷ ପର୍ଯ୍ୟନ୍ତ ଏଭଳି ଘନ ସନ୍ନିବିଷ୍ଟ ଯେ ସେଥିରୁ ସତେ ଯେପରି ଆଉ ଆମର ମୁକ୍ତି ନାହିଁ । ଏକାଧିକ ଭାଷାରେ ପାଣ୍ଡିତ୍ୟ ଓ ବିଦ୍‌ବତ୍ତା ଅର୍ଜନ କରିବା ଅର୍ଥ ନୁହେଁ ନିଜ ମାତୃଭାଷାପ୍ରତି ହୀନମନ୍ୟତା ପୋଷଣ କରିବା । କ୍ଷୋଭର ବିଷୟ ଏହି ଯେ ଶିକ୍ଷିତ ବର୍ଗରେ ଏତାଦୃଶ ଆଚରଣ ଅଧିକମାତ୍ରାରେ ପରିଦୃଷ୍ଟ । ଆମର କଥା ଓ କାର୍ଯ୍ୟରେ ମେଳ ରହୁ ନଥିବା ଯୋଗୁଁ ଅପସଂସ୍କୃତି ଧୀରେଧୀରେ ଆମକୁ କବଳିତ କରିଚାଲିଛି । ଆଳାପ ଆଚରଣରେ ପାଶ୍ଚାତ୍ୟ ପ୍ରଭାବ ଆମ୍ଭମାନଙ୍କୁ ମୋହଗ୍ରସ୍ତ କରି ପରମୁଖାପେକ୍ଷୀ କରାଇଛି । ଆମ୍ଭେମାନେ ସେ ପ୍ରତି ଅତି ଅନ୍ଧଭାବେ ପ୍ରଲୁବ୍‌ଧ ।

କହିବା ବାହୁଲ୍ୟ ଯେ ଭାରତୀୟ ଭାଷାମାନଙ୍କ ମଧ୍ୟରେ ପ୍ରାଚୀନତା, ଚାରୁତା ଓ ଗାମ୍ଭୀର୍ଯ୍ୟ ଦୃଷ୍ଟିରୁ ଆମ ମାତୃଭାଷା କୌଣସି ଗୁଣରେ ନ୍ୟୂନ ନୁହେଁ । ବ୍ରିଟିଶ ଭାଷାବିତ୍ ବୀମସ୍ ସାହେବ ଏହା ପ୍ରମାଣ କରି କହିଛନ୍ତି ଯେ ହିନ୍ଦୀ, ବେଂଗଲି, ତେଲ୍‌ଗୁ ଆଦି ଭଷାଠାରୁ ଓଡ଼ିଆ ଭାଷା ଅତି ପ୍ରାଚୀନ । କିନ୍ତୁ ଆମେ ଓଡ଼ିଆ ନିଜ ମାତୃଭାଷାକୁ ନ୍ୟୂନ ମନେକରି ବିଦେଶୀ ଭାଷାକୁ ଆପଣେଇ ନେଇ ନିଜକୁ ଉଚ୍ଚ ଶିକ୍ଷିତ ବୋଲି ମନେ କରୁଛୁଁ । ଓଡ଼ିଆ ଭାଷାର କ୍ରମ ବିକାଶ ପାଇଁ ଆମେ ଆବଶ୍ୟକ ପଦକ୍ଷେପ ଗ୍ରହଣ କରୁନାହୁଁ । ପ୍ରାଥମିକ ଶିକ୍ଷା ନିମିତ୍ତ ଏ ଅବଧି କ୍ରମିକ ଶବ୍ଦ ଭଣ୍ଡାର ସଂକଳନ କାରଯାଇପାରି ନାହିଁ । ପ୍ରାଥମିକ ସ୍ତରରେ ପଠନ ଲିଖନ ପ୍ରତି ଦୃଷ୍ଟି ଦିଆଯାଉ ନଥିବାରୁ ପରବର୍ତ୍ତି କାଳରେ ତ୍ରୁଟି ବିଚ୍ୟୁତି ରହିଯାଇଛି । ବିଶ୍ୱବିଦ୍ୟାଳୟ ସ୍ତରରେ ଶିକ୍ଷାଦାନର ମାଧମ ମାତୃଭାଷା ହୋଇଥିଲେ ହେଁ ବିଜ୍ଞାନ ତଥା ବୈଷୟିକ ଶିକ୍ଷା ଏବଂ ଯାନ୍ତ୍ରିକ କୌଶଳ ଶିକ୍ଷାଦାନ ପାଇଁ ମାତୃଭାଷାକୁ ମାଧମରୂପେ ବ୍ୟବହାର କରାଯାଇପାରୁ ନାହିଁ । ଚୀନ, ଜାପାନ ପରି ବିଜ୍ଞାନକ୍ଷେତ୍ରରେ ଆଗୁଆ ଦେଶମାନଙ୍କରେ ତାଙ୍କ ଦେଶର ଭାଷାରେ ତ ଶିକ୍ଷା ଦିଆଯାଇପାରୁଛି । ଅର୍ଥବୋଧକ ପରିଭାଷା ଏବଂ ସଂଜ୍ଞା ପ୍ରୟୋଗ ନିମନ୍ତେ କେତେକ ବୈଦେଶିକ ଶବ୍ଦର ଯଥାର୍ଥ ଭାଷାନ୍ତର କରାଯାଇ ପାରିନାହିଁ । କେତେକ କ୍ଷେତ୍ରରେ ଯେଉଁ ପରିଭାଷା ସୃଷ୍ଟି କରାଯାଇଛି ତାହା ଦୁର୍ବୋଧ ଓ ଅତିଶୟ କ୍ଲିଷ୍ଟ ଯୋଗୁଁ ସାଧାରଣ ଲେକେ ତାହା ଗ୍ରହଣ କରିପାରୁ ନାହାନ୍ତି । ଏହି ଦୁର୍ବଳତାର ସୁଯୋଗ ନେଇ ବୈଦେଶିକ ଭାଷା ଆମ ଭାଷାକୁ ଅତିକ୍ରମ କରି ନିଜର ଆସ୍ଥାନ ମଜଭୂତ କରି ଚାଲିଛି । ସରକାରୀ ଓ ବେସରକାରୀ କାର୍ଯ୍ୟାଳାୟମାନଙ୍କରେ ନଥିପତ୍ରରେ ଓଡ଼ିଆ ଭାଷାରେ ଲେଖିବାପାଇଁ ହୁକୁମ୍‌ନାମା ଜାରି ହୋଇଥିଲେ ହେଁ ତାହା କେବଳ ଆଦେଶନାମାରେ ହିଁ ରହିଯାଇଛି । ଇଂରାଜି ଭାଷା ତାର ପକ୍ଷ ବିସ୍ତାର କରି ଚାଲିଛି । ଆଦେଶ ପରାମର୍ଶ ପ୍ରସ୍ତାବନା ଉପଦେଶ ଓ ସନ୍ତକ ମଧ ଇଂରାଜିରେ କରାଯାଉଛି । କାର୍ଯ୍ୟାଳୟମାନଙ୍କର ଓଡ଼ିଆ କଳଲେଖା ଯନ୍ତ୍ରଗୁଡ଼ିକ ଅକାମି ହୋଇ ପଡ଼ିରହିଛି । ସରକାରୀ ବେସରକାରୀ ବିଶ୍ୱବିଦ୍ୟାଳୟଠାରୁ ପ୍ରାଥମିକ ବିଦ୍ୟାଳୟ ପର୍ଯ୍ୟନ୍ତ ସମସ୍ତ ନାମ ଫଳକ ଇଂରାଜିରେ ଲେଖାଯାଇଛି ଏବେ ଲେଖାଯାଉଛି ମଧ ।

ସ୍ୱଭାବ କବି ଗଙ୍ଗାଧର, ଭକ୍ତିକବି ମଧୁସୂଦନ, ବ୍ୟାସକବି ଫକୀରମୋହନ, ଉତ୍କଳ ଗୌରବ ମଧୁସୂଦନ, ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ, କବିବର ରାଧାନାଥ, ପଲ୍ଲିକବି ନନ୍ଦକିଶୋର ସେମାନଙ୍କର କବିତାରେ ମାତୃଭୂମି ମାତୃଭାଷା, ସ୍ୱଦେଶ ପ୍ରୀତି ଉପରେ ପ୍ରେରଣାଦାୟକ ରଚନାମାନ କରିଯାଇଥିଲେ ହେଁ ସେଥିପ୍ରତି ଆଧୁନିକତା ଛାପରେ ସୁସଜ୍ଜିତ ପଣ୍ଡିତମାନଙ୍କ ଦୃଷ୍ଟି ପଡୁନାହିଁ । ମାତୃଭାଷାରେ ବହୁ ପୁସ୍ତକ ପ୍ରକାଶିତ ହେଉଥିଲେହେଁ ଆମେ ଇଂରାଜି ଲେଖକଙ୍କ ପୁସ୍ତକ ପଢ଼ିବାରେ ବିଶେଷ ଆଗ୍ରହ ପ୍ରକାଶ କରୁଅଛୁଁ । ଦୈନନ୍ଦିନ ସାମାଜିକ କ୍ଷେତ୍ରରେ ଇଂରାଜି ଭାଷାକୁ ପ୍ରାଧାନ୍ୟ ଦିଆଯାଇ ସହର ଗ୍ରାମ ସବୁଠାରେ ଇଂରାଜି ମାଧ୍ୟମରେ ପ୍ରାରମ୍ଭିକ ଶିକ୍ଷା ଦିଆଯାଉଛି । ଏହି ବିଦ୍ୟାଳୟମାନଙ୍କୁ ନିଜର ସନ୍ତାନମାନଙ୍କୁ ପଠାଇ ବହୁ ଓଡ଼ିଆ ନିଜକୁ ଗୌରବାନ୍ୱିତ ମନେ କରନ୍ତି । ତାଙ୍କ ପିଲା ଡାଡି ମାମି ଡାକୁଛି ଓ ଅତି ଚଳ ଚଞ୍ଚଳ କୋଟ ମୋଜା ଟାଇ ଭିଡ଼ି ଇଂରାଜି କହୁଥିବା ବେଳେ ବାପା ମା'ଙ୍କର ଛାତି ଫୁଲି ଉଠୁଛି । କେତେକ ଲୋକ ଇଂରାଜି ଜାଣି ନଥିଲେ ମଧ୍ୟ ବିଭାଘର, ବ୍ରତଘର, ସଭାସମିତି ଖେଳକୁଦ ଆଦି ପାଇଁ ଇଂରାଜିରେ ନିମନ୍ତ୍ରଣ ପତ୍ର ଛାପି ଚାଲିଛନ୍ତି । ମାତୃଭାଷା ପ୍ରତି ସାମାନ୍ୟତମ ଆଦର ନାହିଁ । ଇଂରାଜି ନୂଆବର୍ଷରେ ଆମେ ଅଭିନନ୍ଦନ ପତ୍ର ପଠାଉଛେ । ବିଷୁବ ସଂକ୍ରାନ୍ତି ବା ପୁନିଆ ଆମର ନବବର୍ଷ ତାହ ଆମେ ଭୁଲି ଗଲେଣି ।

ଆମର ପଡ଼ୋଶୀ ରାଜ୍ୟ ପଶ୍ଚିମବଂଗକୁ ଦୃଷ୍ଟି ନିକ୍ଷେପ କଲେ ଭାଷାପ୍ରତି, ବେଶଭୂଷା ପ୍ରତି ସେମାନଙ୍କର ଯେଉଁ ମମତ୍ୱବୋଧ ରହିଛି, ତାହା ଆମକୁ ଦେଖାଯାଉନାହିଁ । ବ୍ରିଟିଶ ସରକାର ପ୍ରତ୍ୟକ୍ଷ ସଂପର୍କରେ ବଂଗାଳୀମାନେ ଆସିଥିଲେ ହେଁ ବଂଗାଳୀମାନେ ନିଜ ମଧ୍ୟରେ ନିଜ ମାତୃଭାଷାର ହିଁ ଆଳାପ ଆଲୋଚନା କରିଥାଆନ୍ତି । ସଚିବାଳୟକୁ ଗଲେ ଦେଖିବେ ଦୁଇଜଣ ଓଡ଼ିଆ ଅଧିକାରୀ, କିରାଣୀ ଆଦି ଇଂରାଜିରେ କଥାବାର୍ତ୍ତା ହେଉଛନ୍ତି । ଆମ୍ଭେମାନେ ମାତୃଭାଷାର ବିକାଶ ଘଟାଇବା ଦୂରେ ଥାଉ ତାର ବିନାଶକୁ ନିମନ୍ତ୍ରଣ କରିଆଣୁଛୁ । ଏବେ ମଧ୍ୟ ସମୟ ଅଛି । ଓଡ଼ିଆ କାବ୍ୟ, କବିତା, ଉପନ୍ୟାସ, ଗଳ୍ପ ଆଦି ଆଦୌ ଅନ୍ୟଭାଷା ଅପେକ୍ଷା ନ୍ୟୂନ ନୁହେଁ । ଓଡ଼ିଆ ବହି କିଣନ୍ତୁ । ଓଡ଼ିଆ ପରି ଉପହାର ଦିଅନ୍ତୁ । ନିଜର ସ୍ୱାକ୍ଷର ଓଡ଼ିଆରେ କରନ୍ତୁ ଓ ଅନ୍ୟକୁ କରିବାକୁ ପରାମର୍ଶ ଦିଅନ୍ତୁ ।

# ସାମ୍ବାଦିକ,
ସଭାପତି : ଉତ୍କଳ ସମ୍ମିଳନୀ, ଖୋରଦା ଶାଖା,
ଖୋରଧା

''ସଂପ୍ରତି ଖରସୁଆଁ-ସିଂହଭୂମର ଅଧିବାସୀମାନେ ମାତୃଭାଷା ହରାଇ ଦୀର୍ଘକାଳଯାବତ୍ କଷ୍ଟ ଭୋଗ କରୁଛନ୍ତି । ଆସନ୍ତୁ, ଆମ୍ଭେମାନେ ସେହି ବିଚ୍ଛିନ୍ନ ଭ୍ରାତାମାନଙ୍କୁ କୋଳକୁ ନେବା ସକାଶେ ଯତ୍ନ କରିବା ।''

**—ବ୍ୟାସକବି ଫକୀରମୋହନ ସେନାପତି**

# ଓଡ଼ିଆ ଭାଷାର ପ୍ରଚାର ଓ ପ୍ରସାରରେ ଯାତ୍ରାଦଳର ଅବଦାନ

ଡକ୍ଟର ପଦ୍ମଲୋଚନ ମହାକୁଡ଼

**ଭା**ଷା ସାହିତ୍ୟକୁ ସମୃଦ୍ଧ କରେ । ଓଡ଼ିଆ ସାହିତ୍ୟର ବିଭିନ୍ନ ବିଭାଗରେ, ଓଡ଼ିଆ ଭାଷା ଆରମ୍ଭରୁ ଏ ପର୍ଯ୍ୟନ୍ତ,ନିଜକୁ ପ୍ରାଧାନ୍ୟ ଦେଇ, ଅନ୍ୟ ଭାଷାକୁ ନିଜ ମଧ୍ୟରେ କିଛି ମାତ୍ରାରେ ବାଧ୍ୟ ବାଧକତାରେ ଗ୍ରହଣ କରିବାରେ ଲାଗିଛି । ଠିକ୍ ସେମିତି ଅନ୍ୟ ଭାଷାକୁ ଓଡ଼ିଆ ଭାଷା ମଧ୍ୟ ପ୍ରଭାବିତ କରିବାରେ ଲାଗିଛି । ଓଡ଼ିଆ ଭାଷାର ପ୍ରଚାର ଓ ପ୍ରସାର ଅନ୍ୟ ଭାଷାଭାଷୀ ଅଂଚଳରେ ଧୀର ମନ୍ଥର ଗତିରେ ଆଗେଇ ଚାଲିଛି । ଲୋକ ସାହିତ୍ୟର ଏକ ଲୋକପ୍ରିୟ ବଳିଷ୍ଠ ବିଭାଗ ଯାତ୍ରା । ଯାତ୍ରାଦଳ ଓଡ଼ିଆ ଭାଷା ସାହିତ୍ୟର ପ୍ରଚାର ପ୍ରସାର ଦିଗରେ, ନିଜ ପ୍ରଦେଶ ବ୍ୟତୀତ, ଭାରତର ବିଭିନ୍ନ ପ୍ରାନ୍ତରରେ ନିଜ ନାଟକ ମାନ ମଞ୍ଚସ୍ଥ କରି, କିଛି ମାତ୍ରାରେ ଓଡ଼ିଆ ଭାଷାକୁ ଭାସ୍ୱର କରିବାରେ ସହାୟକ ହେଉଛନ୍ତି ।

ଅନେକ ଓଡ଼ିଆ ଲୋକେ ବାହାରକୁ ଗଲେ, ବାହାର ଭାଷାରେ କଥା ହୁଅନ୍ତି । ମାତ୍ର ଓଡ଼ିଆ ଯାତ୍ରାଦଳ ଓଡ଼ିଶା ବାହାରକୁ ଗଲେ, ଓଡ଼ିଆ ଭାଷାରେ ନାଟକ ପରିବେଷଣ କରନ୍ତି । ଅବଶ୍ୟ ଅର୍ଦ୍ଧାଧିକ ପ୍ରବାସୀ ଓଡ଼ିଆ ଯାତ୍ରା ଦେଖୁଥିଲେ ହେଁ, ଅନ୍ୟ ଲୋକେ ନାଟକ ଉପଭୋଗ କରନ୍ତି । କିଛି ବୁଝନ୍ତି-କିଛି ଠଉର କରି ଜାଣି ପାରନ୍ତି-କିଛି ଅଭିନୟରୁ ସାରକଥା ଗ୍ରହଣ କରନ୍ତି ।ଓଡ଼ିଆ ଯାତ୍ରା ସଂସ୍କୃତି ପରଂପରାରୁ ଜଣାପଡ଼େ ଯାତ୍ରାଦଳ ଲୋକଙ୍କର ମନୋରଂଜନ କରୁଥିଲା ବେଳେ, ଉତ୍କଳର କଳା ଉତ୍କର୍ଷତାକୁ, କଳା ପରିବେଷଣ ବେଳେ ପରିପ୍ରକାଶ କରେ ।

ମିଳୁଥିବା ତଥ୍ୟକୁ ଭିତ୍ତିକରି କୁହାଯାଇପାରେ ଯେ ପାଖାପାଖି ଏକଶହ ବର୍ଷ ଆଗରୁ 'ଗୋପାଳ ଦାଶ ଯାତ୍ରା ଦଳ' ବଂଗ ବିହାର ଦେଶରେ ନିଜର ପ୍ରାଧାନ୍ୟ ବିସ୍ତାର କରିଥିଲା ଓ ଓଡ଼ିଆ ଜାତିର ମହତ୍ତ୍ୱ ପ୍ରତିପାଦିତ କରିଥିଲା । ଅନ୍ୟଦେଶରେ ସେ ପରିଚିତ ଥିଲେ 'ଗୋପାଳ ଉଡ଼େ'ନାମରେ । ଏହା ପୂର୍ବରୁ ରୂପଚାନ୍ଦ ପକ୍ଷୀଙ୍କ ଯାତ୍ରାଦଳ ବଂଗ ଦେଶରେ ପ୍ରଭାବ ବିସ୍ତାର କରିଥିଲା । ବୈଷ୍ଣବ ପାଣିଙ୍କ ଯାତ୍ରାଦଳ ବଂଗଦେଶରେ ନାଟକ ମଂଚସ୍ଥ କରି ସୁନାମ ଅର୍ଜ୍ଜନ କରିଥିଲେ । ଅଙ୍ଗ, ବଙ୍ଗ, କଳିଙ୍ଗର ଲୋକପ୍ରିୟ ଯାତ୍ରା ନାଟ୍ୟାଚାର୍ଯ୍ୟ ରଘୁନାଥ ପଣ୍ଡା ନିଜର ନାଟକ ଦଳ ମାଧ୍ୟମରେ ଓଡ଼ିଶା ବାହାରେ ନିଜ ଭାଷା ସଂସ୍କୃତିକୁ ପ୍ରସାରିତ କରାଇଥିଲେ । ତାଙ୍କ 'ରାମରାଜ୍ୟ' ଯାତ୍ରା ନାଟକ ବାହାର ଦେଶରେ ଉଚ୍ଚ ପ୍ରଶଂସିତ । ବଙ୍ଗଳା ସାହିତ୍ୟର ଇତିହାସରେ ନାଟ୍ୟାଚାର୍ଯ୍ୟ ରଘୁନାଥ ପଣ୍ଡାଙ୍କ ଯାତ୍ରାକୃତି ସ୍ଥାନିତ । ଓଡ଼ିଶା ବିଚ୍ଛିନ୍ନାଞ୍ଚଳ ମାନଙ୍କରେ ନାନା ପର୍ବ ପର୍ବାଣୀରେ ଏବେ ସୁଦ୍ଧା ଓଡ଼ିଆ ଯାତ୍ରା ନାଟ୍ୟକାର ମାନଙ୍କର ନାଟକ ସଗୌରବେ ଅଭିନୀତ ହେବାର ବହୁ ଦୃଷ୍ଟାନ୍ତ ରହିଛି । ଓଡ଼ିଆ ଯାତ୍ରାର ପାଖାପାଖି ଆଦି ଯାତ୍ରାକାର କୃପାସିନ୍ଧୁ ମିଶ୍ରଙ୍କ ଯାତ୍ରାଦଳ ବଂଗଦେଶ ପାଇଁ ଓଡ଼ିଆ ଭାଷା ପ୍ରଚାର ପ୍ରସାର କ୍ଷେତ୍ରରେ ଅଧିକ ଭୂମିକା ନେଇଥିଲା ।

ସାଂପ୍ରତିକ ସ୍ଥିତିରେ ଓଡ଼ିଶାର ବହୁ ପ୍ରତିଷ୍ଠିତ 'କ' ଶ୍ରେଣୀୟ ଯାତ୍ରାଦଳ ଓଡ଼ିଶା ବାହାରେ ଯାତ୍ରାକରି ବେଶ୍ ଲାଭବାନ ହେବାରେ ଲାଗିଛନ୍ତି । ଓଡ଼ିଆ ଯାତ୍ରା ଉପରେ ଯିଏ ଯେତେ ମନ୍ତବ୍ୟ ନାନା ଦିଗରେ ଦେଲେ ମଧ୍ୟ ଏହି ଯାତ୍ରାଦାଳ ମାନଙ୍କ କଲିକତା, ଟାଟା, ଗୁଜରାଟର ସୁରାଟ, ଦିଲ୍ଲୀ ପ୍ରଭୃତିରେ ନାଟକ ମଂଚସ୍ଥ କରି ସଫଳତା ହାସଲ କରିବାରେ ଓଡ଼ିଆ ଭାଷା ସାହିତ୍ୟର ପ୍ରଚାର ପ୍ରସାର ହେଉ ନାହିଁକି ? ଏଠାରେ ଦୃଢ଼ଯୁକ୍ତି ବଳରେ ମୁଁ କହି ପାରିବି ହଁ । ଯେଉଁ ଯାତ୍ରାଦଳ ବାହାରେ ଯାତ୍ରା କରନ୍ତି ସେମାନଙ୍କ ନାମ ଏଠାରେ ଉଲ୍ଲେଖ କରାଯାଇପାରେ -ତୁଳସୀ ଗଣନାଟ୍ୟ, ଗୌରୀ ଗଣନାଟ୍ୟ, ପାର୍ବତୀ

ଗଣନାଟ୍ୟ, ତ୍ରିନାଥ ଗଣନାଟ୍ୟ, ଶିବାନୀ ଗଣନାଟ୍ୟ, କଳିଙ୍ଗ ଗଣନାଟ୍ୟ, ବାଘାଯତୀନ ଲୋକନାଟ୍ୟ, ଯାତ୍ରା ତ୍ରିରଙ୍ଗା, ଯାତ୍ରା ମହିମା, ସାହାଣୀ ଅପେରା, କୋଣାର୍କ ଗଣନାଟ୍ୟ ପ୍ରଭୃତି ।

ଏତତ୍ ଭିନ୍ନ ଉତ୍ତର ବାଲେଶ୍ୱରର ସୌଖିନ ଦାୟାଦର ଯାତ୍ରାଦଳଗୁଡ଼ିକ ପଶ୍ଚିମ ବଂଗର ନାନା ସ୍ଥାନରେ ନାନା ପର୍ବପର୍ବାଣୀରେ ଓଡ଼ିଆ ନାଟକ ମଂଚସ୍ଥ କରନ୍ତି । ଏ ଧାରା ଚାଲୁରହିଛି । ଏହି ଯାତ୍ରାଦଳ ଭିତରୁ କିଛି ଯାତ୍ରାଦଳର ନାମ ହେଲା -ଲକ୍ଷ୍ମୀନାରାୟଣ ଯାତ୍ରାସଂସ୍ଥା, ଚନ୍ଦନେଶ୍ୱର ଅପେରା, ପାରିଜାତ ଅପେରା, ଜଳେଶ୍ୱର ଅପେରା, ମଧୁବାସନ୍ତୀ ଗଣନାଟ୍ୟ, ବାସନ୍ତୀ ଗଣନାଟ୍ୟ । ଗୋଟିଏ କଥା ଏଠାରେ ଆଲୋଚନା କରାଯାଇପାରେ ଯେ ଓଡ଼ିଆ ଭାଷାରେ ଯାତ୍ରା ନାଟକ ରଚିତ ହେଲେ ମଧ୍ୟ ବେଶି ନାଟକ ମଂଚସ୍ଥ ହୁଏ ବଂଗ ଭାଷୀ ଅଂଚଳରେ । କଥାଟି ହେଲା ବଂଗର ମେଦିନୀପୁର ଅଂଚଳ ଓଡ଼ିଆ ଜାଣନ୍ତି, କିଛି ମଧ୍ୟ କହିପାରନ୍ତି, କିଛି ବି ବୁଝି ପାରନ୍ତି । କାରଣ ଏହା ଓଡ଼ିଶାର ପୂର୍ବରୁ ଥିଲା । ଏବେ ଓଡ଼ିଆ ଭାଷାକୁ ସେଠାରେ ଉଜ୍ଜୀବୀତ କରି ରଖିବାରେ ଓଡ଼ିଆ ଯାତ୍ରାଦଳର ଅବଦାନ କମ୍ ନୁହେଁ ।

ସାହିତ୍ୟରେ ଏମିତି ଏକ ବିଭାଗ ହେଉଛି ଏହି ଯାତ୍ରା, ଯାହାକି ଅତି ସହଜ ଓ ସରଳ ଭାବେ ଅନ୍ୟ ଭାଷାଭାଷୀ ଲୋକମାନଙ୍କ ହୃଦୟକୁ ବେଶ୍ ଛୁଇଁ ପାରୁଛି । ଅବଶ୍ୟ ଯାତ୍ରାଦଳ ସମସ୍ତ ବେସରକାରୀ ଅନୁଷ୍ଠାନ । ଓଡ଼ିଆ ଯାତ୍ରାଦଳ ଏମିତି ବର୍ଷକୁ ବର୍ଷ କେତେ ଭାଂଗୁଛି ଏବଂ ଗଢ଼ି ଉଠୁଛି । ସମସ୍ତଙ୍କ ଉଦ୍ଦେଶ୍ୟ କଳାର ପରିବେଷଣ ତଥା ବଂଚିବାର ଆୟୋଜନ । ଓଡ଼ିଆ ଭାଷାର ପ୍ରଚାର ପ୍ରସାର କେବଳ ବ୍ୟବସାୟୀ କାରଣରେ ବାହାରକୁ ଗଲାବେଳେ କିଛି ମାତ୍ରାରେ ହୋଇ ପାରୁଛି ମାତ୍ର । ଓଡ଼ିଆ ଭିନ୍ନ ଅନେକ ଲୋକ ଯାତ୍ରା ନାଟକର ନାମ ଜାଣିଛନ୍ତି, ସି.ଡି. କିଣି ଦେଖୁଛନ୍ତି, ଦୂରଦର୍ଶନର ଯାତ୍ରାବଜାର ଉପଭୋଗ କରୁଛନ୍ତି, କ୍ୟାସେଟ୍ ବଜାଉଛନ୍ତି ।

ପରିଶେଷରେ ଏତିକିମାତ୍ର କୁହାଯାଇପାରେ, ଓଡ଼ିଆ ଯାତ୍ରାଦଳ ନିଜର ପରିସ୍ଥିତି ଭିତ୍ତିକ ପରିବେଶରେ ଥାଇ, ଓଡ଼ିଆ ଭାଷାର ପ୍ରଚାର ପ୍ରସାର ଦିଗରେ ଯେଉଁ କାର୍ଯ୍ୟପନ୍ଥା ଗ୍ରହଣ କରିଛି, ଓଡ଼ିଆ ଭାଷା ସୁରକ୍ଷା ପାଇଁ ତାହାର ଅବଦାନ ଅତୁଳନୀୟ,ଏଥିରେ ସନ୍ଦେହ ନାହିଁ ।

# ବରିଷ୍ଠ ଓଡ଼ିଆ ଅଧ୍ୟାପକ, ବେଳାଭୂମି ମହାବିଦ୍ୟାଳୟ,
ଅଭଣା, ବାଲେଶ୍ୱର

# କବିତାର ସ୍ୱରୂପ

ଶ୍ରୀ ହରିଶଂକର ଷଡ଼ଙ୍ଗୀ

ଆଜିକାଲି ଓଡ଼ିଆ ସାହିତ୍ୟ ଜଗତରେ ଅଗଣିତ କବି, ଅଗଣିତ କବିତା ଏବଂ ଅଗଣିତ ପାଠକ । ଓଡ଼ିଆ ସାହିତ୍ୟର ଏ ପ୍ରବାହ ନିଶ୍ଚିତ ଭାବରେ ସ୍ୱାଗତଯୋଗ୍ୟ ବୋଲି ବିବେଚନା କରିବା ଯେ କୌଣସି ଗୁଣଗ୍ରାହୀ ସାହିତ୍ୟପ୍ରେମୀ ପାଇଁ ଏକ ପରମାନନ୍ଦ ! କିନ୍ତୁ ଏ ପରିବେଶରେ ଭବିଷ୍ୟତ ପୀଢ଼ୀ ପାଇଁ ଏ କବିତାର ସ୍ୱରୂପକୁ ସମାର୍ଜିତ କରି ତାଂକ ପାଇଁ କିଛି ଖୋରାକ ଯୋଗାଇ ଦେଲେ ସମସ୍ତେ ଉପକୃତ ହେବେ । ସାହିତ୍ୟ ଓ ସମାଜ ପାଇଁ ଏହା ଏକ ଅନୁପମ ଉପଲବ୍ଧ ହେବ ବୋଲି ଅନୁଭୂତ ହୁଏ । ସୁସାହିତ୍ୟ ସୃଷ୍ଟି ପାଇଁ ଏପରି ଏକ ସମାଲୋଚନା ଯେ ନିଶ୍ଚିତ ଭାବରେ ଆଦର ଲାଭ କରିବ ଏଥିରେ ସଂଦେହର ଅବକାଶ ନାହିଁ ।

ଚିତ୍ରକଳ୍ପନାର କାବ୍ୟଲୋକରେ କବିଟିଏ ନିଜେ ନିଖୋଜ ହେବା ଏବଂ ଅତୀତକୁ ସାଉଁଟି ବର୍ତ୍ତମାନ ଓ ଆସନ୍ତାକାଲିର ରଂଗରାଗରେ ମନର ଅକୁହା କଥା ଦି'ପଦକୁ ଅତି ମାର୍ମିକ ଓ ହୃଦୟସ୍ପର୍ଶୀ ଭାଷାରେ ଜୀବନ୍ୟାସ ଦେବା ହିଁ କବିତା । ପ୍ରକୃତ କବିଟିଏ ଯିଏ, ସିଦ୍ଧଯୋଗୀଟିଏ ସିଏ । ଏ ପୃଥିବୀରେ ସେ ଏମିତି ମିଶିଯିବାକୁ ଚାହେଁ ଯେ ଯେଉଁଠି ମିଶିବା ପରେ ଆଉ ଫେରିବା ହୁଏନି । ସମୟର ଶଂଖନାଦର ସଂପାଦକ ଲେଖନ୍ତି ''ମଣିଷ ମନରେ ସୂକ୍ଷ୍ମ ଅନୁଭୂତିର କଳାତ୍ମକ ପରିପ୍ରକାଶ ହେଉଛି କବିତା, ଯହିଁରେ ଅନୁଭବ ହେଉଛି ପ୍ରାଣ, ଆଉ ଆବେଗ ଯାହା ତା'ର ନିଃଶ୍ୱାସ । ଏହି ଆବେଗ ଓ ଅନୁଭବର ମଝିରେ ହିଁ ଥାଏ କବିତାର ସ୍ପନ୍ଦନ । ଯେଉଁ କବିତାରେ ପ୍ରଗାଢ଼ ଅନୁଭବ ଓ ଅନ୍ତର୍ମୁଖୀ ଆବେଗର ସଠିକ ଚିତ୍ର ପ୍ରତିଫଳିତ ହୋଇଥାଏ, ତାହା ସୃଜନୀ ଶକ୍ତିର ଶ୍ରେଷ୍ଠ ନିଦର୍ଶନ ରୂପେ ଜନମାନସରେ ତଥା ସାହିତ୍ୟ ଜଗତରେ କାଳଜୟୀ ହୋଇଥାଏ ।''

''କବିତା ଲେଖିବାରେ ଯେଉଁ ପରମାନନ୍ଦ, ଆପଣେଇ ହୁଏ ନାହିଁ ତା'ର ଅନ୍ତଃସ୍ୱରକୁ ବୁଝି କବିପ୍ରାଣଟିଏ ହେବାରେ ଅନନ୍ତ ଆନନ୍ଦ ଉପଲବ୍‌ଧ ହୁଏ । ଅନେକ କବି ହୋଇ ପାରନ୍ତି କିନ୍ତୁ କବିପ୍ରାଣ ନୁହଁନ୍ତି । ଅନେକ କବିପ୍ରାଣ, କିନ୍ତୁ କବି ନୁହଁନ୍ତି, କାରଣ କବି ହେବା ଏବଂ କବିପ୍ରାଣ ହେବା ଏକା କଥା ନୁହେଁ । କାବ୍ୟପ୍ରାଣ ନହୋଇ ଜଣେ ବ୍ୟକ୍ତି କବିତା ଲେଖିବା ଯେପରି ସମ୍ଭବ; ଜଣେ ପ୍ରକୃତ କାବ୍ୟପ୍ରାଣ ବ୍ୟକ୍ତି ସେହିପରି ଗୋଟିଏ କବିତା ନ ଲେଖିବା ବି ସମ୍ଭବ ! ଚିତ୍ରକଳ୍ପନାରୁ କବିତାର ଜନ୍ମହୁଏ । କିବତାଟିଏ ଲେଖି ପାରିଲିନି ବୋଲି କବିର 'ବିଚିତ୍ରବୋଧ' ହିଁ ତା'କୁ ସଫଳାତର ଚରମ ସୀମାରେ ପହଞ୍ଚାଇ ପାରିବାର ଦମ୍ଭରଖେ ।'' ତେବେ ପ୍ରଶ୍ନ ଉଠେ ଯେ କବିତାର ସ୍ୱରୂପ କ'ଣ ? ପ୍ରକୃତ କବିତାର ସ୍ୱରୂପ ଭାଷାରେ ବର୍ଣ୍ଣନା କରିବା ଅତି କଠିଣ, କିନ୍ତୁ 'କବିପ୍ରାଣ' ପାଠକଟିଏ ତା'କୁ ଚିହ୍ନିବାର ମନ୍ତ୍ରଟିଏ ଗଢ଼ିପାରେ । ଏ ଚିହ୍ନିବାର ଇଲାକାରେ କବି ଓ ପାଠକ ପ୍ରାୟ ଏକ ହୋଇ ଯାଆନ୍ତି -ଏପରି କବିତାହିଁ ସାର୍ଥକ ହୁଏ -କାଳଜୟୀ ହୁଏ । କାବ୍ୟପ୍ରାଣ କବି କେବଳ ନିଜକୁ ଅନୁଭବି ନଥାଏ, ବରଂ ସେ ଚିହ୍ନେ ସମାଜକୁ, ସଂସ୍କୃତିକୁ, ସଂସ୍କାରକୁ ଚେତନାରୁ ଆହୁରି ମହତ୍ତମ ବିସ୍ତୃତ ଇଲାକାରେ ନିଜକୁ ନିଜ ବାହାରେ ଥିବା ଅନନ୍ତ ସତ୍ୟ ସହିତ; ଈଶ୍ୱରଂକ ସହିତ ସଂଯୁକ୍ତ ହେବାର ଦୁର୍ବାର ଭକ୍ତିଭାବ ସହିତ; ଭୌତିକରୁ ଆଧିଭୌତିକ ଅନୁଭବ ସହିତ; ମାଟିରୁ ଆକାଶ, ଆକାଶରୁ ମହାକାଶ, ମହାକାଶରୁ ଅନନ୍ତ ବ୍ରହ୍ମାଣ୍ଡ ସହିତ ସଂଯୁକ୍ତ ହେବାର ଇଚ୍ଛା ସହିତ !! ଏ ପ୍ରୀତିମ ଅନୁଭବ ହିଁ ଜନ୍ମରୁ

ମୃତ୍ୟୁ ପର୍ଯ୍ୟନ୍ତ କବିକୁ ଭାବାବେଶ କରି ବାନ୍ଧିରଖେ ଏବଂ ନିଜସ୍ୱ ଅନୁଭବରୁ ତଥା ଏକ ସର୍ଜନଶୀଳ ଚେତନାରୁ ଭାବ, ଶବ୍ଦ, ଆବେଗରୁ ତାର କବିତାର ଜନ୍ମହୁଏ ।

'କାବ୍ୟପ୍ରାଣ' ପାଠକ ଗୋଷ୍ଠୀଟିଏ ସୃଷ୍ଟି ପାଇଁ ଏକ କଳା କବିତା ଭିତରେ / କବି ଭିତରେ ଅନ୍ତର୍ଲୀନ ସ୍ୱରୂପ ସମାହିତ ହେବା ଆବଶ୍ୟକ । ଏହାର ସ୍ଥୂଳ ଅର୍ଥ ଏହା ଯେ' କବି ଯାହା କି କହିବାକୁ ଚାହେଁ, ତାହା ସ୍ପଷ୍ଟ ଭାବରେ ସାବଲୀଳ ଭାଷା ସଂଯୋଜନା ମାଧ୍ୟମରେ କହିବା ଉଚିତ । କବିତା ଛନ୍ଦଯୁକ୍ତ ବା ଛନ୍ଦମୁକ୍ତ ହେବା ବଡ଼ କଥା ନୁହେଁ କିନ୍ତୁ କବିର ପାଠକମାନଂକ ପାଖରେ ଯେଉଁ ସଂଦେଶଟିଏ ଅନ୍ତର୍ନିହିତ ଥାଏ ତାହା ସ୍ପଷ୍ଟ ହେବା ଆବଶ୍ୟକ ନଚେତ୍ ବିଚିତ୍ର ଏବଂ ଅମାନବୀୟ ଚିତ୍ରକଳ୍ପନାକୁ ନେଇ କବିତା ପ୍ରକଶନ ପାଠକକୁ କାବ୍ୟବିମୁଖ କରିବା ଅବଶ୍ୟମ୍ଭାବୀ !

ବର୍ତ୍ତମାନ ପ୍ରଶ୍ନ ଉଠେ ଯେ' କବି କିଏ ? କବିର ଧର୍ମ କଣ ?? ଏ କଥା ବିଚାରକୁ ନେବାବେଳେ କବିର ସଜ୍ଞା ଦେବାକୁ ଯାଇଛନ୍ତି ମହର୍ଷି ମହାକବି ବ୍ୟାସଦେବ ତାଂକର ପୂଣ୍ୟ ପବିତ୍ର ମହାଗ୍ରନ୍ଥ ଶ୍ରୀମଦ୍ ଭାଗବତରେ । ତାହା ଆରମ୍ଭ ହଏ ଏପରି :

''କୃପାଳୁରକୃତଦ୍ରୋହସ୍ତିତିକ୍ଷୁ ସର୍ବଦେହିନାମ୍...'' ଏବଂ ଶେଷଧାଡ଼ିରେ 'ଅମାନୀମାନଦଃକଳ୍ପୋ ମୈତ୍ରଃକାରୁଣିକ କବିଃ'' ଏପରି କବି ଅଠେଇଶ ଗୁଣଧାରକ ହେବା ଉଚିତ । ତନ୍ମଧ୍ୟରୁ ସେ ନିଜେ ସ୍ୱଗୁଣରେ କୃପାଳୁ, ଅଳ୍ପାହାରୀ, ଦୁଃଖସୁଖରେ ସମାନୁଭାବି, ଧୈର୍ଯ୍ୟବାନ୍, ମଣିଷ ପରି ମଣିଷଟିଏ ହେବା ଆବଶ୍ୟକ । କଥାରେ ଅଛି କବି ତ ଯଶକାଂଗାଳ-ଏ ଜନ୍ମରେ କବି ହୋଇ ଜନ୍ମିଛି ବୋଲି ପରଜନ୍ମରେ ବି ସେ କବିଟିଏ ହୋଇ ଜନ୍ମ ନିଅନ୍ତା : ଏ ଆକାଂକ୍ଷାଂରେ ସିଏ ବଞ୍ଚେ-ତାର କବିତା ବି ବଞ୍ଚେ !! '

କବି ତ ବୈଷ୍ଣବଟିଏ-ସଚ୍ଚା ବୈଷ୍ଣବ !! ସନ୍ଥକବି ନାରସି ମେହେଟାଂକ ଲିଖିତ ଏବଂ ମହାତ୍ମାଗାଂଧୀଙ୍କ ପ୍ରିୟ ଭଜନ ''ବୈଷ୍ଣବଜନ ତୋ ତେଣେ କହିଏ ଯୋ ପୀଡ଼ା ପାରାଇ ଜାଣେରେ'' ତେଣୁ କବି ସଚ୍ଚା ବୈଷ୍ଣବ ଭଳି ଅନ୍ୟର ପୀଡ଼ାକୁ, ଅନ୍ୟର ଦୁଃଖକୁ ଅନ୍ୟର ଅଶ୍ରୁକୁ ବୁଝିପାରେ !

ଏତେ ଗୁଣର ଧାରକ କିବିଟିଏ ତେବେ ଆଶ୍ରା କରିବ କାହାକୁ ? ମହାକବି ଗେଟେ କହନ୍ତି ''Nature is the living visible garment of God. '' ଅନନ୍ତ ବିସ୍ମୟ ପରମେଶ୍ୱରଂକୁ ଅନୁଭବ ନ କରିବା ପର୍ଯ୍ୟନ୍ତ କବିର କବିତା ପ୍ରାଣ ପରାଗରେ ପରାଜିତ ହୋଇ ପାରେନାହିଁ । ପରଂବ୍ରହ୍ମକୁ ଅନୁଭବ କରିବାକୁ ହେଲେ ପ୍ରକୃତିକୁ ଆପଣେଇବାକୁ ହେବ କାରଣ ପ୍ରକୃତି ହିଁ ପରଂବ୍ରହ୍ମଂକ ବିଚିତ୍ର ଅଚ୍ଛାଦନ ଯାହା ଜଡ଼ ନୁହେଁ ଜୀବନ୍ତ !! ଏଠି ବୀଜରୁ ଅଂକୁରୋଦ୍‌ଗମ ହୁଏ । ପତ୍ର ଫୁଟେ, ଗଛ ଉଠେ, ଫୁଲ ଫୁଟେ, ଫଳ ଧରେ, ଫଳ ପାଚି ମଞ୍ଜି ଖସେ ପୁଣି ଅଂକୁରିତ ହେବାପାଇଁ । ଏ ଜୀବନ ପ୍ରକ୍ରିୟାର ପ୍ରାଣପୁରୁଷ ହିଁ ପରଂବ୍ରହ୍ମ । ତାଂକୁ ଅନୁଭବ କଲେ ହିଁ ପ୍ରକୃତିକୁ ଚିହ୍ନିହେବ । ମନ, ମୁନ, ଚଇତନରେ ଅନନ୍ତ ଆଧାତ୍ମ ଭାବଟିଏ ଜନ୍ମନେବ ଏବଂ କବି ହେବାପାଇଁ ବ୍ୟାସଦେବଂକ ନିର୍ଧାରିତ ପୁଣ୍ୟ ସବୁ ଆଶିର୍ବାଦ ହୋଇ କବିର ଭାଗ୍ୟରେ ଆଜାଡ଼ି ହେବ । ଏହାହିଁ କବିକୁ, ତା'ର ଚିତ୍ରକଳ୍ପନାକୁ ମାର୍ଜିତ, ଶାଣିତ, ଭାବପ୍ରେମରେ ପ୍ରେମାୟିତ କରି -ଅମୃତମୟ,ଅମୃତପାୟ କାବ୍ୟ ଗଂଗୋତ୍ରିର ଧାରାରେ ଅବଗାହିତ କରି କାଳଜୟୀ କାବ୍ୟଧାରାର ସର୍ଜନଶୀଳତାରେ ଯଶୋଭୂଷିତ କରିବ ।

କବି, ମା, ମାତୃଭାଷା, ମାତୃଭୂମିକୁ ପ୍ରାଣଠାରୁ ଭଲପାଏ । ସ୍ୱଭାବ କବି ଗଂଗାଧର ମେହେରଂକ 'ଅର୍ଘ୍ୟଥାଳୀ'ରେ ଏ ପଂକ୍ତିଟି ସର୍ବଜନ ବିଜିତ :

''ମାତୃଭୂମି ମାତୃଭାଷାରେ ମମତା
ଯା' ହୃଦେ ଜନମି ନାହିଁ

ତାକୁ ଯେବେ ଜ୍ଞାନୀଗଣରେ ଗଣିବା
ଅଜ୍ଞାନ ରହିବେ କାହିଁ ।''

ମା, ମାତୃଭାଷା, ମାତୃଭୂମି ପ୍ରତି ଯାହାର ମମତା ନାହିଁ ସିଏ ତ ସ୍ୱତଃ ଅଜ୍ଞାନ-ସଚ୍ଚା କବିଟିଏ ଏ ମମତାର ସଦାସର୍ବଦା ଧାରକ- ତା'ରି ପ୍ରଚାରକ ଏବଂ ଏଥିରେ ମନ୍ତ୍ରସିଦ୍ଧ ।

ମାଟି ପ୍ରତି ଅତୁଟ ମମତା ରଖିଥିବା କବି ରାଜେନ୍ଦ୍ର କିଶୋର ପଣ୍ଡା ତାଂକର 'ଜିଆ' କବିତାରେ ଲେଖିଛନ୍ତି :

''ଜିଆ: ଆତ୍ମା ପରି କୋମଳ, ପବିତ୍ର ।
ମାଟିକୁ ଏତେ ଭଲ ପାଏ ଯେ'

x x x

ଉଠି ପାରେନା, ଛାଡ଼ି ପାରେନା
ଯଦି ପୁନର୍ଜନ୍ମ ଦିଅ, ପ୍ରଭୁ !
ଆରଥରକୁ
ମଣିଷ ନୁହଁ, ଜିଆଟିଏ ହୁଅନ୍ତି ।''

ବିଷୟା ବିଷରେ ପ୍ରମତ୍ତ ଆଜିକାର ମଣିଷଟିଏର କ୍ଷଣଭଂଗୁର ଜୀବନ ଏମିତି ବିଷମୟ ଯେ ମାଟିକୁ ଭଲ ପାଇବା ତୁଳନାରେ ସିଏ ଜିଆଠାରୁ ବି ନଗଣ୍ୟ !

ଆମ ସମୟର ଜଣେ ବରିଷ୍ଠ କବି ବ୍ରଜନାଥ ରଥ 'ମାଟିକୁ ମୁଁ କରେ ନମସ୍କାର' କବିତାରେ ଲେଖନ୍ତି :

''ମାଟି ହିଁ ଚରମ ସୁଖ
ମାଟି ଆଦ୍ୟ, ମାଟି ହିଁ ଅନ୍ତିମ
ମାଟି ମୋର ସର୍ବସଂହା ଜନନୀ ଧରିତ୍ରୀ
ମାଟି ମୋର ପୁଣ୍ୟ ସ୍ୱର୍ଗଧାମ''

ତେଣୁ ମାଟି ହିଁ ମା', ମାଟିହିଁ ଚରମ ସତ୍ୟ । ଗାଁ ମାଟିକୁ ଅତି ଭଲ ପାଉଥିବା ପ୍ରଥିତ ଯଶା କବି ସଚ୍ଚି ରାଉତରାୟଂକ ଭାଷାରେ

''ଛୋଟ ମୋର ଗାଁଟି
ଭୂଗୋଳ ପୋଥି ପତରେ ପଛେ ନ ଥାଉ ତା'ର ନାଁଟି ।''

ଏବଂ ଶେଷରେ କାବ୍ୟଲୋକରେ ଭାସି ଯାଉଥିବା କବିଟିଏ ସ୍ୱତଃ ଗୁଂଜରି ଗାଇଯାଏ ଏପରି :

''ଉଷାର ଆକାଶରେ ଆଶାର ଆଲୁଅ ନେଇ
ଫୁଲରୁ ଫୁଲରେ ମଧୁଲିଟ ସାଜି
ଓଁକାର ଭିତରେ ବ୍ରହ୍ମନାଦ ହୋଇ
ତୁମେ ହିଁ ତ ଆସ, ଅନୁଚିନ୍ତନ ମୋର ପୃଥିବୀରେ
ସମର୍ପିତ କାରଅ ମୋତେ, କାବ୍ୟଲୋକରେ ଭସାଇ ଦିଅ ମୋତେ
ତୁମେ ହିଁ ତ ସ୍ୱୟଂସିଦ୍ଧ, ମା, ବସୁଧା !!

(ବସୁଧାର କାବ୍ୟ)

ମା, ମାଟି, ମାତୃଭାଷାକୁ ଏପରି ଭଲ ପାଉଥିବା ସ୍ୱୟଂ ସମର୍ପିତ ଈଶ୍ୱର ଅନୁରାଗିତ କବିଟିଏ ସ୍ୱତଃ କାବ୍ୟଲୋକରେ ଜ୍ୟୋତିର୍ମୟ ହୋଇଯାଏ । ପ୍ରକୃତି ଭିତରେ ଅନନ୍ତ ପ୍ରେମର, ପ୍ରାଣ ଭିତରେ ଅନନ୍ତ

ପ୍ରୀତିର ଗୀତ ଗାଏ; ଅନୁଭୂତି ଭିତରେ ଅନୁପମ ପରିବେଷଣର କବିତା ଲେଖି କାଳଜୟୀ ସାହିତ୍ୟ ସୃଷ୍ଟି କରିବାର ଦମ୍ଭ ରଖେ । ସାହିତ୍ୟରେ କବିତା ହେଉ, କଥା ହେଉ-ଉପନ୍ୟାସ ହେଉ ଅଥବା ନାଟକ ହେଉ, ଅଥବା ସାହିତ୍ୟର ଯେ କୌଣସି ସର୍ଜନା ହେଉ ସେ ସବୁରେ ଗୋଟିଏ ସ୍ୱର ହିଁ ସବୁଠି ଥାଏ ବିଦ୍ୟମାନ-ମଧୁମୟର ମାନବପ୍ରେମ, ମଣିଷ ପରି ମଣିଷଟିଏ ହେବାପାଇଁ କବି ଓ ଲେଖକର ଜିଜ୍ଞାସା ଯାହା 'କବିପ୍ରାଣ' ପାଠକଟିଏ ସେ ଅଦେଖା ଅନ୍ତର୍ସ୍ୱରକୁ ଶୁଣିପାରେ । ସତ୍‌କର୍ମ, ସଦାଚାର, ସତ୍‌ଧ୍ୟାନ, ସତ୍‌ଚିନ୍ତନ ହିଁ କବିର ପ୍ରାଣ-ପରାଗ, ଯେଉଁଠି ବିମଳ, ବିଶୁଦ୍ଧ କବିତାର ସର୍ଜନା ସ୍ୱତଃ ଗୁଂଜରି ଯାଏ ।

ଆଜି ପ୍ରତ୍ୟେକ ଲେଖକ, କବି, ଚିନ୍ତାନାୟକ ମାତୃଭାଷାର ମମତାରେ ତଲ୍ଲୀନ ହୋଇ ଏପରି ସାହିତ୍ୟ/କାବ୍ୟ ସୃଷ୍ଟି କରନ୍ତୁ ଯାହା କାଳଜୟୀ ହୋଇଯାଉ କାଳ କାଳକୁ । ମହାନ ସନ୍ଥ କବୀରଜୀଙ୍କ ଗୋଟିଏ ଦୋହାକୁ ଆସନ୍ତୁ ଏଠାରେ ସ୍ମରଣ କରିବା ।

"ଯବ ତୁମ୍ ପୈଦା ହୋଏ
ଜଗ୍ ହସା ତୁମ୍ ରୋଏ
କରଲୋ ଐସି କରନି
ତୁମ୍ ହସୋ ଜଗ୍ ରୋଏ ।"

ଅର୍ଥାତ୍ ନିଜ ଜୀବନକାଳରେ ଏମିତ କର୍ମକର ଯେ ତୁମରି ଅବର୍ତ୍ତମାନରେ ବି ତୁମ କୀର୍ତ୍ତି, ତୁମ ନୀତି; ତୁମ ବୃତ୍ତି, ତୁମ ସ୍ମୃତି ସବୁଦିନ ପାଇଁ ଅମ୍ଳାନ ରହୁ ଏବଂ ଚିର ଅମରତ୍ୱ ଲାଭ କରୁ ।

# ବାଣୀଶ୍ରୀ ବିହାର, ଆନନ୍ଦ ନଗର,
ବଲାଙ୍ଗୀର - ୭୬୭ ୦୦୨

# ସର୍ବଭାରତୀୟ ପରିପ୍ରେକ୍ଷୀରେ ଉତ୍କଳର ସାଂସ୍କୃତିକ ପରମ୍ପରା

ଡକ୍ଟର ଗଙ୍ଗାଧର ବଳ

(ଏକ)

**ସଂସ୍କୃତିର ସ୍ୱରୂପ :**

ଚକ୍ରବର୍ତ୍ତୀ ରାଜଗୋପାଳଚାରୀଙ୍କ ପ୍ରଦତ୍ତ ସଂଜ୍ଞା ଅନୁଯାୟୀ ସଂସ୍କୃତି ହେଉଛି 'ସାଫଲ୍ୟଆଉ ସଂଯମର ଅଭ୍ୟାସ' [୧] । ଦେହ ଓ ମନର ଆବଶ୍ୟକତାର ପୂରଣ ପରେ ସଂସ୍କୃତି ହେଉଛି ତୃତୀୟ ପରିସର, ଯାହା ମଣିଷର ବ୍ୟକ୍ତିତ୍ୱର ଗଭୀରତା ସମ୍ପାଦନ କରେ ।

ଆଚାର୍ଯ୍ୟ କ୍ଷିତିମୋହନ ସେନ୍‌ଙ୍କ ମତରେ, 'ଇହଲୋକକୁ ନେଇ ସାଧନା ହେଲା ସଂସ୍କୃତି, ଅନନ୍ତ ଲୋକକୁ ନେଇ ସାଧନା ହେଲା ଧର୍ମ [୨] । ପ୍ରକୃତ ସଂସ୍କୃତି ପ୍ରକୃତ ଧର୍ମଠାରୁ ପୃଥକ୍ ନୁହେଁ । ମୂଳତଃ ସଂସ୍କୃତି ଓ ଧର୍ମ ଗୋଟିଏ ଲକ୍ଷ୍ୟ ଦିଗରେ ପ୍ରଧାବିତ, ତାହା ହେଉଛି ପୂର୍ଣ୍ଣତା (Perfection) । ପୂର୍ଣ୍ଣତାର ସ୍ୱରୂପ କ'ଣ ? ତାହା ଯଦିଓ କହିହେବ ନାହିଁ, କିନ୍ତୁ ତାହା ଜୀବନର ଲକ୍ଷ୍ୟ ହୋଇଥିଲେ ମଧ୍ୟ ସେ ଦିଗରେ ମଣିଷର ଅଗ୍ରସର ହେବାର ପ୍ରଚେଷ୍ଟା ରହିଥାଏ ।

ମାଥ୍ୟୁ ଆର୍‌ନଲ୍‌ଡ଼ଙ୍କ ମତରେ, ସଂସ୍କୃତି ହେଉଛି ପୂର୍ଣ୍ଣତା ଦିଗରେ ମଣିଷର ଅଗ୍ରଗତି । ସଂସ୍କୃତିର ମଣିଷର ସାଧାରଣ ବ୍ୟବହାର, ଭାଷା ଓ ଆଚରଣ ସହ ସମ୍ପର୍କ, ଏହି ସୁ ଓ କୁ ଚରିତ୍ରଠାରୁ ପୃଥକ୍ । ଚରିତ୍ର ମରିଷର ଅନ୍ତର୍ଲୋକର ବିଷୟ ହୋଇଥିଲାବେଳେ ସଂସ୍କୃତି ହେଉଛି ବାହାରର ବିଷୟ; କିନ୍ତୁ ବାହ୍ୟ ହେଲେ ମଧ୍ୟ ଏହାର ଚରିତ୍ର ସହ କିଛି ସମ୍ପର୍କ ରହିଛି ।

ସଭ୍ୟତା ହେଉଛି ସଂଯମର ବିକାଶ । ବ୍ୟକ୍ତିଗତ ସୁଖପାଇଁ ଇନ୍ଦ୍ରିୟଗୁଡ଼ିକୁ ସୀମା ମଧ୍ୟରେ ରଖି ସଂଯତ କରିବାର ପ୍ରଚେଷ୍ଟା ହେଉଛି ସଭ୍ୟତାର ଲକ୍ଷଣ । କେବଳ ପ୍ରଯୁକ୍ତିବିଦ୍ୟା ଓ ଜୀବନର ବସ୍ତୁତାନ୍ତ୍ରିକ ଦିଗର ବିକାଶ ସଭ୍ୟତା ନୁହେଁ । ଏହା ଏକ ଗୁଣବାଚକ ବିଶେଷ୍ୟ । ଏହା ଜୀବନ ବଞ୍ଚିବାର ଧରାକୁ ସୂଚିତ କରେ । ମୁଖ୍ୟତଃ ମଣିଷର ଆରଣ୍ୟକ ସ୍ୱଭାବ, ବର୍ବରତା, କାମନା, ବାସନା ଓ କ୍ଷୁଧାର ଅତ୍ୟଧିକ ଆସକ୍ତି ସଂଯତ କରିବାକୁ ସଭ୍ୟତା କୁହାଯାଏ ।

ମଣିଷର ଇନ୍ଦ୍ରିୟଜ ପ୍ରବୃତ୍ତି ଓ ଅତ୍ୟଧିକ ଆସକ୍ତିକୁ ପ୍ରତିହତ କରିବା ଦିଗରେ ସଭ୍ୟତାର ଦୁଇଟି ଅସ୍ତ୍ର ରହିଛି; ସେଥିରୁ ଗୋଟିଏ ଅସ୍ତ୍ର ହେଉଛି ଶାସନସଂସ୍ଥା ବା ସରକାର । ଲୋକମାନଙ୍କ ସମ୍ମତିରେ ସେମାନଙ୍କର ବ୍ୟକ୍ତିଗତ ପ୍ରବୃତ୍ତିକୁ ସଂଯତ ରଖିବାପାଇଁ ରାଷ୍ଟ୍ରକୁ ଶକ୍ତି ଓ କ୍ଷମତା ଦିଆଯାଇଥାଏ । ସବୁ ପ୍ରକାର ମାତ୍ରାଧିକ୍ୟକୁ ଆଇନର ନିୟନ୍ତ୍ରଣାଧୀନ କରାଯାଇଥାଏ ।

ସଭ୍ୟତାର ଅନ୍ୟ ଅସ୍ତ୍ରଟି ହେଲା ସଂସ୍କୃତି, ଯାହା ପାରିବାରିକ ତାଲିମ୍, ପରମ୍ପରା, ଧର୍ମ ବିଶ୍ୱାସ, ସାହିତ୍ୟ, ସଂଗୀତ ଓ ଶିକ୍ଷା ମାଧ୍ୟମରେ ଗଢ଼ିଉଠିଥାଏ । ସରକାର ଓ ଆଇନ ଦୈହିକ ଶକ୍ତି ପ୍ରୟୋଗ କରନ୍ତି ଏବଂ ଲୋକଙ୍କୁ ସଂଯତ ରହିବାକୁ ବାଧ କରନ୍ତି; କିନ୍ତୁ ସଂସ୍କୃତି ହେଉଛି ଗୋଟିଏ ସୂକ୍ଷ୍ମ ଅସ୍ତ୍ର, ଯାହା ନୀରବରେ କାର୍ଯ୍ୟ କରିଥାଏ । ଏହାକୁ ମାନିବାକୁ ଲୋକେ ବାଧ୍ୟ ନୁହନ୍ତି: କିନ୍ତୁ ସ୍ୱତଃପ୍ରବୃତ୍ତ ହୋଇ ସେମାନେ ଏହା ମାନିଥାନ୍ତି । ଉତ୍ତମ ବ୍ୟବହାର ପ୍ରଦର୍ଶନରେ ସେମାନଙ୍କ ମନରେ ଏକ ଗର୍ବବୋଧ ଜାତ ହୁଏ । ଯଦି କେହି ସାଧାରଣ ଇଚ୍ଛାର ନିମ୍ନମାନର ପ୍ରତିକୂଳ ଆଚରଣ କରନ୍ତି, ଲୋକେ ତା'ର ନିନ୍ଦା କରିଥାନ୍ତି । ଲୋକେ ଉପଲବ୍ଧି କରନ୍ତି ଏଇ ସାଂସ୍କୃତିକ ଅନୁମୋଦନ କେତେ ବଳିଷ୍ଠ, ଯାହାକି ମଣିଷକୁ ସଂଶୋଧିତ କରିଥାଏ, ଯେଉଁଠି ରାଷ୍ଟ୍ରଶକ୍ତି ସଂଶୋଧନ କରିପାରେ ନାହିଁ: ରାଷ୍ଟ୍ରବଳ ବରଂ ମଣିଷକୁ

ପ୍ରତିକ୍ରିୟାଶୀଳ କରି ଅବାଧ କରିଥାଏ । କିନ୍ତୁ ସମାଜର ଅସନ୍ତୋଷର ସୂକ୍ଷ୍ମରୂପ ଭାରି ଶକ୍ତିଶାଳୀ: ତାହା ଲୋକଙ୍କୁ ପ୍ରତିକ୍ରିୟାଶୀଳ କରେ ନାହିଁ ।

ସ୍ୱତଃପ୍ରବୃତ୍ତ ହୋଇ ଯଦି କେହି ଆତ୍ମସଂଯମ ଆଚରଣ କରେ, ତାହାକୁ କୁହାଯାଏ ତପସ୍ୟା । ତପସ୍ୟାରେ କଷ୍ଟ ସ୍ୱୀକାର ରହିଥିଲେ ମଧ୍ୟ ଏହା ମନୁଷ୍ୟକୁ ଯନ୍ତ୍ରଣା ନ ଦେଇ ବରଂ ଦିଏ ଆନନ୍ଦ। ଚାରୁକଳା, ସଙ୍ଗୀତ, ନୃତ୍ୟ, ସ୍ଥାପତ୍ୟ, ଚିତ୍ରବିଦ୍ୟା ଏବଂ ବିଭିନ୍ନ ପ୍ରକାର ଆମୋଦପ୍ରମୋଦ ହେଉଛନ୍ତି ସାଂସ୍କୃତିକ ମାଧ୍ୟମ । ଏଗୁଡ଼ିକ ଆନନ୍ଦ ଦେବା ସଙ୍ଗେ ସଙ୍ଗେ ଇନ୍ଦ୍ରିୟସୁଖକୁ ସଂଯତ କରନ୍ତି ।

ଧର୍ମ ବିଶେଷତଃ ଭକ୍ତିଧର୍ମ ମଣିଷକୁ ଗଭୀର ଆନନ୍ଦ ଦେବା ସଙ୍ଗେ ସଙ୍ଗେ ଆତ୍ମସଂଯମରେ ସହାୟକ ହୋଇଥାଏ । ମଣିଷର ଆଭ୍ୟନ୍ତରୀଣ ଚରିତ୍ରସହ ସାମଞ୍ଜସ୍ୟ ନ ରହିଲେ ସଂସ୍କୃତି ଛଳନାର ନାମାନ୍ତର ହୋଇଯାଏ । ଅଭିବ୍ୟକ୍ତି ଓ ଆଚରଣରେ ଆତ୍ମ-ସଂଯମ ସଂସ୍କୃତିର ପ୍ରୟୋଜନୀୟ ସଂକେତ ।

ସଂସ୍କୃତିର ସର୍ବୋଚ୍ଚ ନିଦର୍ଶନ ହେଉଛି ସମଦୃଷ୍ଟି । ନିଜ ସଙ୍ଗେ ତୁଳନା କରି ଯେଉଁ ବ୍ୟକ୍ତି ସବୁ ପ୍ରାଣୀଙ୍କଠାରେ ସୁଖ ବା ଦୁଃଖକୁ ସମାନ ଦେଖନ୍ତି ତାଙ୍କୁ ଶ୍ରେଷ୍ଠ ଯୋଗୀ କୁହାଯାଏ (୩) । ବିନୟ ସଂସ୍କୃତିର ଅପରିହାର୍ଯ୍ୟ ବୈଶିଷ୍ଟ୍ୟ । ସେଥିପାଇଁ ଶ୍ରୀଗୀତାରେ ଅନ୍ୟତ୍ର କୁହାଯାଇଛି–

ବିଦ୍ୟା ବିନୟ ସଂପଚନ୍ନ ବ୍ରାହ୍ମଣେ ଗବି ହସ୍ତିନି
ଶୁନି ଚୈବ ଶ୍ୱପାକେ ଚ ପଣ୍ଡିତାଃ ସମଦର୍ଶନଃ ।।

(ଶ୍ରୀଗୀତା, ୫ / ୧୮)

ଆତ୍ମାତତ୍ତ୍ୱଜ୍ଞ ଜ୍ଞାନୀମାନେ ବିଦ୍ୟା ବିନୟଯୁକ୍ତ ବ୍ରାହ୍ମଣ, ଗୋରୁ, ହସ୍ତୀ, ଶ୍ୱାନ ଓ ଚଣ୍ଡାଳଠାରେ ସମଦୃଷ୍ଟିସମ୍ପନ୍ନ ହୋଇଥାନ୍ତି । ସଂସ୍କୃତି ସମ୍ପନ୍ନ ବ୍ୟକ୍ତିର ପ୍ରକୃତ ମୂଲ୍ୟବୋଧ ଓ ଅନ୍ୟ ପ୍ରତି ସମ୍ମାନବୋଧ ରହିଥାଏ । ନୀଚତା, ଅସାଧୁତା ଓ ନିଷ୍ଠୁରତା ଏ ତିନୋଟି ସଂସ୍କୃତିର ପରିପନ୍ଥୀ । ସଂସ୍କୃତିସମ୍ପନ୍ନ ବ୍ୟକ୍ତିର ବଚନରେ ସ୍ନେହ, ଶ୍ରଦ୍ଧା ଓ ସତ୍ୟ ରହିଥାଏ ।

କୁଳଧର୍ମ, ଦେବଧର୍ମ, ଏକାନ୍ନବର୍ତ୍ତୀ ପରିବାର ଏବଂ ହୋମପୂତ ଧର୍ମାନୁଷ୍ଠାନ ସମ୍ପନ୍ନ ବିବାହ ଆମ ଭାରତୀୟ ସାଂସ୍କୃତିକ ଜୀବନଧାରାର ବୈଶିଷ୍ଟ୍ୟ । ପରିବାର ଓ ରାଷ୍ଟ୍ର ମଧ୍ୟରେ ରିହଥିବା ଜାତି ବା ଗୋଷ୍ଠୀ (community) ମଧ୍ୟରେ ପାରସ୍ପରିକ ସାହାଯ୍ୟ, ସହାନୁଭୂତି ଓ ସମ୍ମାନବୋଧ ଲକ୍ଷିତ ହୁଏ । ଅରାଜକତା କାଳରେ ଏକାନ୍ନବର୍ତ୍ତୀ ପରିବାର, ଜାତି ବା ଗୋଷ୍ଠୀ ସମାଜରେ ଶୃଙ୍ଖଳା ରଖୁଥିଲା । ବାଣିଜ୍ୟ ବ୍ୟବସାୟ ଚାଲିବା ସଙ୍ଗେ ସଙ୍ଗେ ଶିଳ୍ପ ଓ କଳାର ବିକାଶ ଘଟୁଥିଲା । ଦାତବ୍ୟ ଅନୁଷ୍ଠାନମାନ ମଧ୍ୟ ପ୍ରତିଷ୍ଠିତ ହେଉଥିଲା । ଆଇନ ନଥିଲେ ମଧ୍ୟ ସଂସ୍କୃତି ହେତୁ ଧନ ଓ ଜୀବନ ପ୍ରତି ନିରାପତ୍ତା ରହିଥିଲା ।

ଆମ ସଂସ୍କୃତି ଉପରେ ଧର୍ମଶାସ୍ତ୍ର, ଦର୍ଶନ ଓ ଆଧ୍ୟାତ୍ମିକତାର ପ୍ରଭାବ ଅପରିସୀମ । ଭକ୍ତିଧର୍ମ, କର୍ମବାଦ, ଜନ୍ମାନ୍ତର ବିଶ୍ୱାସ, ବଦାନ୍ୟତା, ଜୀବେଦୟା, ବିଶ୍ୱରେ ଏକ ଅଚିନ୍ତନୀୟ ଶକ୍ତିର ସର୍ବବ୍ୟାପକତାରେ ବିଶ୍ୱାସ ଆମ ସଂସ୍କୃତିକୁ ମହିମାମୟ କରିଛି । ପାଶ୍ଚାତ୍ୟର ଶିଳ୍ପ ସଭ୍ୟତା ଓ ଶିକ୍ଷାର ପ୍ରଭାବ ହେତୁ ବସ୍ତୁତାନ୍ତ୍ରିକ ଓ ସ୍ୱାର୍ଥପରତା ଦେଖାଦେଇଥିଲେ ମଧ୍ୟ ଆମର ପ୍ରାଚୀନ ବିଶ୍ୱାସ ଓ ସଂସ୍କୃତି ହେତୁ ଆଜି ମଧ୍ୟ ସାଧୁତା, ଅତିଥିପରାୟଣତା, ଲୋକହିତ, ନାରୀର ସତୀତ୍ୱରେ ଆସ୍ଥା, ମୂକ ପ୍ରାଣୀପ୍ରତି ଶ୍ରଦ୍ଧା ଓ ଦୟା, ମନ୍ଦକାର୍ଯ୍ୟ ପ୍ରତି ଘୃଣା ଏବଂ ମହତ୍ କାର୍ଯ୍ୟ କରିବାପାଇଁ ଶ୍ରଦ୍ଧା ଲକ୍ଷିତ ହୁଏ ।

## (ଦୁଇ)

**ଭାରତୀୟ ସଂସ୍କୃତି :**

ଭାରତ ବହୁ ଭାଷା, ବହୁ ଧର୍ମ ଓ ଜାତିର ଏକ ଉପମହାଦେଶ । ବିଭିନ୍ନ ପ୍ରାନ୍ତରେ ଜାତି, ଭାଷା, ସଂସ୍କୃତି ଓ ଆର୍ଥନୀତିକ କାରଣରୁ ବିଭେଦ ଓ ବୈଷମ୍ୟ ରହିଛି । ଆଞ୍ଚଳିକ ସଂସ୍କୃତି ଓ ସାମ୍ପ୍ରଦାୟିକ ବିଭେଦ ତଥା ବୈଷମ୍ୟ ସତ୍ତ୍ୱେ ଏ ଦେଶରେ ମୂଳତଃ ଏକ ଅଖଣ୍ଡ ଐକ୍ୟ[୩] ଏଇ ପ୍ରାଚୀନ ଉପମହାଦେଶକୁ

ସମଗ୍ର ବିଶ୍ବରେ ମର୍ଯ୍ୟାଦବନ୍ତ କରି ରଖିଛି । ଏହା ସମ୍ଭବ ହୋଇପାରିଛି ଏ ଦେଶର ଉର୍ଜସ୍ୱଳ ଆର୍ଯ୍ୟ ପରମ୍ପରା ଓ ତ୍ୟାଗଭିତ୍ତିକ ଆଧ୍ୟାତ୍ମିକ ସଂସ୍କୃତି ହେତୁ ।

ନେଗ୍ରିଟୋ, ପ୍ରୋଟୋଅଷ୍ଟ୍ରୋଲୟେଡ୍ ଓ ଅଷ୍ଟ୍ରିକ୍ ପ୍ରଭୃତି ଭାରତର ଆଦିମ ଅଧିବାସୀଙ୍କୁ ଛାଡ଼ିଦେଲେ ବିଭିନ୍ନ ସମୟରେ ଦ୍ରାବିଡ଼ ଓ ଆର୍ଯ୍ୟମାନେ ଏ ଦେଶରେ ପ୍ରବେଶ କରି ସ୍ଥାୟୀଭାବରେ ବସବାସ କରିଛନ୍ତି । କୃଷି ଓ ବାଣିଜ୍ୟର ଆଶ୍ରୟ ନେଇଛନ୍ତି । ଉନ୍ନତ ସଭ୍ୟତା ଓ ସଂସ୍କୃତି ଗଢ଼ି ଏ ଦେଶକୁ ଆପଣାର କରିଛନ୍ତି । ଯାଯାବର ସ୍ୱଭାବ ହେତୁ ଏହାର ଆଦିମ ଅଧିବାସୀଙ୍କ ସହ ହୁଏତ ପ୍ରାଥମିକ ଅବସ୍ଥାରେ ସଂଘର୍ଷ ହୋଇଛି; କିନ୍ତୁ କାଳକ୍ରମେ ସେମାନଙ୍କ ସମ୍ପର୍କରେ ସହାବସ୍ଥାନ ନୀତି ଗ୍ରହଣ କରି ନେଇଛନ୍ତି । ବିବାହ ପ୍ରଭୃତି ସାମାଜିକ ସମ୍ପର୍କ ବଢ଼ିଉଠିଛି । ଭାଷା, ଧର୍ମ, ସଭ୍ୟତା, ସଂସ୍କୃତିର ଗଠନ ଓ ବିକାଶ କ୍ଷେତ୍ରରେ ପରସ୍ପର ହାତ ମିଳାଇଛନ୍ତି । ଏ ନଦୀମାତୃକ ଦେଶର ରମଣୀୟ ପ୍ରାକୃତିକ ଦୃଶ୍ୟରେ ମୁଗ୍ଧ ହୋଇ ପ୍ରକୃତିଠାରେ ଦେବତ୍ୱ ଆରୋପ କରିଛନ୍ତି । ସେହି କଳ୍ପିତ ଦେବତାମାନଙ୍କ ପ୍ରତି ଭୟ, ଭକ୍ତି ଓ କୃତଜ୍ଞତା ପ୍ରକାଶ କରିବାକୁ ଯାଇ ହୃଦୟର ଅନୁଭବକୁ ବେଦ, (ବୈଦିକ ସଂହିତା) ଓ ବ୍ରାହ୍ମଣରେ ବାଙ୍‌ମୟରୂପ ଦାନ କରିଛନ୍ତି[୪] । ବିଭିନ୍ନ ଗୋଷ୍ଠୀ ପରସ୍ପରସହ ହାତ ମିଳାଇ ଏ ଦେଶର ସଂସ୍କୃତିକୁ ଗଠନ କରିବା ସଙ୍ଗେ ସଙ୍ଗେ ସମଗ୍ର ବିଶ୍ୱପାଇଁ ଚିନ୍ତା କରିବା ନିମିତ୍ତ ଏ ଭୂମିରୁ ପ୍ରେରଣା ପାଇଛନ୍ତି। ପରବର୍ତ୍ତୀକାଳର ଉପନିଷଦ, ବେଦାନ୍ତ; ଯୋଗ ଓ ଅନ୍ୟାନ୍ୟ ଦର୍ଶନ, ଧର୍ମଶାସ୍ତ୍ର, ଶ୍ରୀମଦ୍ ଭଗବଦ୍‌ଗୀତା ଓ ଶ୍ରୀମଦ୍ ଭାଗବତ ଏ ଦେଶର ମହାନ୍ ଆଧ୍ୟାତ୍ମିକ ସଂସ୍କୃତିର ଭାସ୍ୱର ଦୀପ୍ତିରେ ସମଗ୍ର ବିଶ୍ୱକୁ ଆଲୋକିତ କରିଛି ।

ଭାରତର ଧର୍ମ ହେଉଛି ସନାତନ ଧର୍ମ- ଏ ଧର୍ମ ସମଗ୍ର ବିଶ୍ୱର ଧର୍ମ । ବିଶ୍ୱର ସମସ୍ତ ଜାତି, ସମ୍ପ୍ରଦାୟ ଓ ଭାଷାର ମଣିଷଙ୍କ ପ୍ରତି ଏହାର ଆବେଦନ ସାର୍ବକାଳିକ । ଏ ଭୂମିର ଆର୍ଯ୍ୟଋଷି ବିଶ୍ୱବାସୀଙ୍କୁ ମୈତ୍ରୀ ଓ ପ୍ରୀତି ଦୃଷ୍ଟିରେ ଦେଖିଛନ୍ତି । ବିଶ୍ୱର ମାନବ ଜାତିକୁ ସେ ଅମୃତପୁତ୍ର (ଶୃଣ୍ୱନ୍ତୁ ବିଶ୍ୱେ ଅମୃତସ୍ୟ ପୁତ୍ରାଃ) ବୋଲି ସମ୍ବୋଧନ କରିଛନ୍ତି । ଜାତି, ସମ୍ପ୍ରଦାୟ, ମତବାଦ ଓ ଭାଷା ନିର୍ବିଶେଷରେ ସମଗ୍ର ବିଶ୍ୱର କଲ୍ୟାଣ ଚାହିଁଛନ୍ତି । ଆର୍ଯ୍ୟଋଷି ମାନବିକତାର ଶିଖର ଆରୋହଣ କରି କହିଛନ୍ତି–

ମିତ୍ରସ୍ୟ ମା ଚକ୍ଷୁଷା ସର୍ବାଣି ଭୂତାନି ସମୀକ୍ଷନ୍ତାମ୍ ।
ମିତ୍ରସ୍ୟାହଂ ଚକ୍ଷୁଷା ସର୍ବାଣି ଭୂତାନି ସମୀକ୍ଷେ ।
ମିତ୍ରସ୍ୟ ଚକ୍ଷୁଷା ସମୀକ୍ଷାମହେ ।[୫]

ଅର୍ଥାତ୍ ସମସ୍ତ ପ୍ରାଣୀ ମୋତେ ମିତ୍ର ଚକ୍ଷୁରେ ଦେଖନ୍ତୁ; ମୁଁ ସବୁ ପ୍ରାଣୀଙ୍କୁ ମିତ୍ର ଚକ୍ଷୁରେ ଦେଖେଁ; ଆମେ ସମସ୍ତେ ପରସ୍ପରକୁ ମିତ୍ରଚକ୍ଷୁରେ ଦେଖୁଁ ।

ଆମ ବେଦଗୁଡ଼ିକରେ ପୃଥିବୀର ସୌନ୍ଦର୍ଯ୍ୟ ଓ ମହିମା ଏବଂ ଜୀବନର ବିସ୍ମୟ ସମ୍ପର୍କରେ ଚମତ୍କାର ଉଲ୍ଲେଖ ରହିଛି । ଅଥର୍ବ ବେଦରେ ପୃଥିବୀ ସମ୍ପର୍କୀୟ ଜୟ-ଗୀତି ବିଶ୍ୱ ସାହିତ୍ୟରେ ସବୁଠାରୁ ମହାନ୍ କାବ୍ୟିକ ଅଭିବ୍ୟକ୍ତି; ଯଥା–

ଗିରୟନ୍ତେ ପର୍ବତା ହିମବନ୍ତୋଃ
ରଣ୍ୟଂ ତେ ପୃଥିବୀ ସ୍ୟୋନମସ୍ତୁ ।
(ଅଥର୍ବ ବେଦ, ୧୨/୧/୧୬

---

(୩) ଆତ୍ମୌପମ୍ୟେନ ସର୍ବତ୍ର ସମଂ ପଶ୍ୟତି ଯୋଽର୍ଜୁନ ।
ସୁଖଂ ବା ଯଦି ବା ଦୁଃଖଂ ସ ଯୋଗୀ ପରମୋ ମତଃ ।।
ଶ୍ରୀମଦ୍ ଭଗବତ୍ ଗୀତା, ୬/୩୨

ଅର୍ଥାତ୍ ହେ ପୃଥିବୀ । ତୋର ଗିରି, ତୁଷାରାଚ୍ଛନ୍ନ ପର୍ବତ ଏବଂ ଅରଣ୍ୟ ଆନନ୍ଦଦାୟକ ହେଉ ।

ପୁଣି ବହୁ ଭାଷାଭାଷୀ ବିଭିନ୍ନ ଜାତି ଧର୍ମର ଲୋକଙ୍କୁ ଧାରଣ କରିଥିବା ଧରିତ୍ରିଙ୍କୁ ପ୍ରାର୍ଥନା କରି ବୈଦିକ ଋଷି ଗାଇଛନ୍ତି–

ଜନଂ ବିଭତୀ ବହୁଧା ବିବାଚସଂ
ନାନା ଧର୍ମାଣଂ ପୃଥିବୀ ଯଥୌକମସ୍ ।
ସହସ୍ରଂ ଧାରା ଦ୍ରବିଣସ୍ୟ ମେ ଦୁହାଂ
ଧ୍ରୁବେବ ଧେନୁରନପ ସ୍ଫୁରନ୍ତୀ ।"

(ଅ.ବେ. ୧୨/୧/୪୫)

ଅର୍ଥାତ୍ ବହୁବିଧ ଭାଷାଭାଷୀ, ବାସସ୍ଥାନ ଅନୁଯାୟୀ ନାନାଧର୍ମୀ ଲୋକମାନଙ୍କୁ ଧାରଣ କରିଥିବା ଏଇ ଧରିତ୍ରୀ ଦୁଗ୍ଧବତୀ ଗାଈପରି ସହସ୍ରଧାରାରେ ମୋତେ ଐଶ୍ୱର୍ଯ୍ୟରେ ସମୃଦ୍ଧ କରୁ । ମନ୍ତ୍ରଟିରେ ବୈଦିକଧର୍ମର ଉଦାର ଦୃଷ୍ଟିଭଙ୍ଗୀ ପରିସ୍ଫୁଟ ହୋଇଛି । ପୃଥିବୀରେ ବିଭିନ୍ନ ଜାତି, ଭାଷା ଓ ଧର୍ମର ସ୍ୱୀକୃତିଦ୍ୱାରା ଏହା ବୈଚିତ୍ର୍ୟ ମଧ୍ୟରେ ଐକ୍ୟ ଆନୟନର ପ୍ରେରଣା ଦେଇଛି । ସେଥିପାଇଁ ଭାରତରେ ବିଭିନ୍ନଜାତି (ଗୋଷ୍ଠୀ) ଓ ଶ୍ରେଣୀର ଲୋକ ସଭ୍ୟତାର ବିଭିନ୍ନ ସ୍ତରରେ ରହିଥିଲେ ମଧ୍ୟ ନିଜ ନିଜ ମାର୍ଗରେ ବିକାଶଲାଭ କରିଛନ୍ତି[୬] । ଆର୍ଯ୍ୟଋଷି ବିଶ୍ୱମାନବଙ୍କ ପ୍ରତି ସମଦୃଷ୍ଟି ନିକ୍ଷେପ କରିବା ସଙ୍ଗେ ସଙ୍ଗେ ଶ୍ରଦ୍ଧା ଓ ସମ୍ମାନ ଦେଖାଇଛନ୍ତି ।

ଖ୍ରୀଷ୍ଟଜନ୍ମ ପରଠାରୁ ଅଷ୍ଟାଦଶ ଶତକ ଯାଏ ବହୁ ବୈଦେଶିକ ଜାତି ରତ୍ନଗର୍ଭା ଭାରତପ୍ରତି ଆକୃଷ୍ଟ ହୋଇ ଆସିଛନ୍ତି । କେତେକ ଏ ଦେଶକୁ ଲୁଣ୍ଠନ କରି ନିଜ ଦେଶକୁ ଫେରିଯାଇଛନ୍ତି । ତୁର୍କି, ପଠାଣ ଓ ମୋଗଲମାନେ ଏ ଦେଶକୁ ଲୁଣ୍ଠନ କରିବା ସଙ୍ଗେ ସଙ୍ଗେ ଶାସନ କରିଛନ୍ତି । ପର୍ତ୍ତୁଗୀଜ୍, ଦୀନାମାର, ଫରାସୀ ଓ ଇଂରେଜମାନେ ବାଣିଜ୍ୟ କରିବା ପାଇଁ ଆସି ବାଣିଜ୍ୟ କୋଠି ସ୍ଥାପନ କରିଛନ୍ତି । ଇଂରେଜମାନେ ଦୀର୍ଘକାଳଧରି ଏ ଦେଶକୁ ଶାସନ ଓ ଶୋଷଣ କରିଛନ୍ତି ।

ରାଜନୈତିକ ଝଡ଼ଝଞ୍ଜା ଓ ବହୁ ଉତ୍ଥାନ ପତନ ସତ୍ତ୍ୱେ ଭାରତୀୟ ସଂସ୍କୃତି ତା'ର ଅସ୍ତିତ୍ୱ ବଜାୟ ରଖିଛି । ଏ ସଂସ୍କୃତି ପୃଥିବୀର ଅନ୍ୟାନ୍ୟ ସଂସ୍କୃତି ଓ ସଭ୍ୟତାପରି କ୍ଷଣସ୍ଥାୟୀ ନୁହେଁ, ଅସହିଷ୍ଣୁ କିମ୍ବା ସର୍ବଗ୍ରାସୀ ନୁହେଁ[୭] । ଏ ଦେଶର ସଂସ୍କୃତି ଅନ୍ୟଧର୍ମ ଓ ସଂସ୍କୃତି ସହ ସହାବସ୍ଥାନ କରିଛି, ସମ୍ମାନ ଦେଖାଇଛି । କେବଳ ଭାରତର ସଂହତି ନୁହେଁ, ବିଶ୍ୱଶାନ୍ତି ଓ ସଦ୍ଭାବ ପ୍ରତିଷ୍ଠା ଦିଗରେ ଭାରତର ସଂସ୍କୃତି, ତା'ର ସନାତନ ଧର୍ମ ଏବେ ବିଶ୍ୱର ଆଲୋକସ୍ତମ୍ଭ ପ୍ରାୟ ଦେଦୀପ୍ୟମାନ । ଆମର ମୁନିଋଷିଙ୍କ ଦୃଷ୍ଟିରେ ସମଗ୍ର ବସୁଧା ହେଉଛି ଆମର କୁଟୁମ୍ବ ।

ଧର୍ମ ସାଧନା ଓ ସଂସ୍କୃତି କ୍ଷେତ୍ରରେ ଭାରତ ହେଉଛି ଏକ ସମନ୍ୱୟର ଭୂମି । ଧର୍ମ ସାଧନାର ଏଇ ସମନ୍ୱୟକୁହିଁ ମହାତ୍ମା କବୀର ଭାରତର ତପସ୍ୟା ବୋଲି କହିଛନ୍ତି । ମନୁଷ୍ୟର ମନୁଷ୍ୟତାର ଉଦ୍ଭବ ହୁଏ ତା'ର ସଂସ୍କୃତିରେ; ତେଣୁ ଭୌତିକ ଜଗତର ଉର୍ଦ୍ଧ୍ୱରେ ଚିନ୍ମୟ ଜଗତ୍‌ରେ ମଣିଷର ପୂର୍ଣ୍ଣ ପରିଚୟ ।

---

(୪) ଐତରେୟ ବ୍ରାହ୍ମଣରେ ଆର୍ଯ୍ୟ ଓ ଅନାର୍ଯ୍ୟ ସଂସ୍କୃତିର ମିଳନର ଚମତ୍କାର ନିଦର୍ଶନ ରହିଛି । ଆର୍ଯ୍ୟମାନେ ଭାରତର ଆଦିମ ଅଧିବାସୀ ଓ ଦ୍ରାବିଡ଼ଙ୍କର ବହୁସଂସ୍କାର (ଶ୍ରାଦ୍ଧ, ତର୍ପଣ, ଗଙ୍ଗା ବା ତୀର୍ଥରେ ଅସ୍ଥି ବିସର୍ଜନ, ଯୋଗ ଓ ଭକ୍ତିମାର୍ଗ; ଆସୁର, ପୈଶାଚ ଓ ରାକ୍ଷସ ବିବାହ, ଦୋଳ, ଦୁର୍ଗୋତ୍ସବ, ତାନ୍ତ୍ରିକୀ ଦୀକ୍ଷା; ଶିବ, ଦୁର୍ଗା ଓ ଗଣେଶ ପୂଜା ଆଦି ଗ୍ରହଣ କରିଥିବାର ସଙ୍କେତ ରହିଛି ।

(ଭାରତରେ ସଂସ୍କୃତି, ପୃ.୧୦)

ସ୍ଥୂଳତଃ, ସଂସ୍କୃତିର ଦୁଇଟିରୂପ ଲକ୍ଷିତ ହୁଏ– ଆଧ୍ୟାତ୍ମିକ ଓ ଭୌତିକ । ଉଭୟ ରୂପରେ ପାରସ୍ପରିକ ବିରୋଧ ନାହିଁ । ଆଧ୍ୟାତ୍ମିକ ସ୍ୱରୂପଦ୍ୱାରା ଭୌତିକ ରୂପ ସଂଶୁଦ୍ଧ ଓ ଉତ୍ତରିତ ହୁଏ । ଆଧ୍ୟାତ୍ମିକ ସ୍ୱରୂପ ମଧ୍ୟରେ ମଣିଷର ସୃଷ୍ଟି, ଜଗତ୍ ଓ ଈଶ୍ୱରଙ୍କ ସମ୍ପର୍କରେ ଗଭୀର ଚିନ୍ତା, ଆତ୍ମାର ଉତ୍କର୍ଷପାଇଁ ସାଧନା ଆସିଥାଏ । ଭୌତିକ ସ୍ୱରୂପ ମଧ୍ୟରେ ଭୌତିକ ଜଗତ୍‌ର ମଣିଷର ବିଭିନ୍ନ କ୍ରିୟାକଳାପ, ସାଧନା, ସିଦ୍ଧି, ଶିଳ୍ପ, କଳା ନୃତ୍ୟ, ସାହିତ୍ୟ, ସଂଗୀତ, ସ୍ଥାପତ୍ୟ, କୃଷି, ବାଣିଜ୍ୟ, ସାମାଜିକ ଆଚାର ବା ଚଳଣି, ବିବାହ, ବ୍ରତ, ତୀର୍ଥ, ନାନା ସଂସ୍କାର, ସ୍ୱାଧ୍ୟାୟ, ବୀରତ୍ୱ, କର୍ମକୁଶଳତା, ଶାସନଦକ୍ଷତା, ସେବାକୁଶଳତା, ଜାତକର୍ମ ଆଦି ଅନ୍ତର୍ଭୁକ୍ତ ।

**ଉତ୍କଳୀୟ ସଂସ୍କୃତି :**

ଉତ୍କଳୀୟ ସଂସ୍କୃତି ଭାରତୀୟ ସାଂସ୍କୃତିକ ପ୍ରବାହରୁ ବିଚ୍ଛିନ୍ନ ନୁହେଁ । ଉତ୍କଳୀୟ ସଂସ୍କୃତିର ଆର୍ଯ୍ୟ ଓ ଆର୍ଯ୍ୟେତର ସଭ୍ୟତା ଓ ସଂସ୍କୃତିର ଅପୂର୍ବ ସମନ୍ୱୟ ଘଟିଛି । ଦକ୍ଷିଣ କୋଶଳ ନାମରେ ଓଡ଼ିଶାର ଉତ୍ତରପଶ୍ଚିମାଞ୍ଚଳ ମଧ୍ୟଦେଇ ଆର୍ଯ୍ୟ ସଭ୍ୟତା ଓଡ଼ିଶାରେ ପ୍ରବେଶ କରିଥିବାର ଅନୁମାନ କରାଯାଏ । ବୌଦ୍ଧସଭ୍ୟତା ଏହି ଦକ୍ଷିଣ-କୋଶଳ ଦେଇ ଉତ୍କଳରେ ପ୍ରବେଶ କରିଛି । ସମ୍ବଲପୁର, ବଲାଙ୍ଗୀର, ସୋନପୁର, ବୌଦ ପ୍ରଭୃତି ପୂର୍ବର ଗଡ଼ଜାତ ପଥରେ ମହାନଦୀ କୂଳେ କୂଳେ ବହୁ ବୌଦ୍ଧ ଭିକ୍ଷୁ ଓଡ଼ିଶାକୁ ଆଗମନ କରି ବହୁ ବୌଦ୍ଧ-ବିହାର ନିର୍ମାଣ କରିଥିଲେ । ବୈତରଣୀ, ବ୍ରାହ୍ମଣୀ, ଋଷିକୂଲ୍ୟା, ମହେନ୍ଦ୍ରତନୟା ଓ ପ୍ରାଚୀ ପ୍ରଭୃତି ନଦୀ ତୀରମାନଙ୍କରେ ବହୁ ପ୍ରାଚୀନ କୀର୍ତ୍ତି ପରିଲକ୍ଷିତ ହୁଏ । ଏ ରାଜ୍ୟର ଆଦିବାସୀ ଶବର-ପୂଜିତ ନୀଳମାଧବଙ୍କୁ ଦାରୁରୂପୀ ଜଗନ୍ନାଥରୂପେ ଇନ୍ଦ୍ରଦ୍ୟୁମ୍ନ ପ୍ରତିଷ୍ଠା କରିଥିବା କିଂବଦନ୍ତୀ ପ୍ରଚଳିତ ଅଛି । ଓଡ଼ିଶାର ଅନ୍ୟତମ ଶକ୍ତି ପୀଠ ପ୍ରସିଦ୍ଧ ତୀର୍ଥ ଯାଜପୁର ନାଭିଗୟାରୂପେ ଏବଂ ଏକାମ୍ର ବା ଭୁବନେଶ୍ୱର ଦକ୍ଷିକାଶୀରୂପେ ପରିଚିତ ଥିବାରୁ ଉତ୍ତର ଦିଗରୁ ଆର୍ଯ୍ୟସଭ୍ୟତା ଓଡ଼ିଶାରେ ପ୍ରବେଶ କରିଥିବାର ଅନୁମାନ କରାଯାଏ । ମହାଭାରତରୁ ଜଣାଯାଏ ଯେ, ପବିତ୍ର ପୁରୁଷୋତ୍ତମକ୍ଷେତ୍ର (ପୁରୀ) ମହାଭାରତ ଯୁଗରେ 'ମହାଦେବୀ' ନାମରେ ଖ୍ୟାତ ଥିଲା । ସେ ସମୟରେ ମହାବେଦୀ, ମହେନ୍ଦ୍ରଗିରି, ବିରଜା, ବୈତରଣୀ ଓ ଏକାମ୍ର ପ୍ରଭୃତି ଉତ୍କଳରେ ବହୁ ତୀର୍ଥକ୍ଷେତ୍ର ଥିଲା । ସ୍କନ୍ଦ, ବ୍ରହ୍ମ ଓ ନାରଦୀୟ ପ୍ରଭୃତି ପ୍ରାଚୀନ ପୁରାଣମାନଙ୍କରୁ ଉତ୍କଳର ଉଚ୍ଚକୋଟୀର ସଭ୍ୟତାର ନିଦର୍ଶନ ମିଳେ । ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀଠାରୁ ସପ୍ତମଶତାବ୍ଦୀ ପର୍ଯ୍ୟନ୍ତ ଓଡ଼ିଶାରେ ବହୁ ବୌଦ୍ଧଭିକ୍ଷୁ ଓ ପଣ୍ଡିତ ଥିଲେ । ବହୁ ବୌଦ୍ଧ ପ୍ରଚାରକ ତିବ୍‌ବତ ଓ ଚୀନ୍‌କୁ ଯାଇ ବୌଦ୍ଧଧର୍ମ ପ୍ରଚାର କରିଥିଲେ । ଜାଭା ସୁମାତ୍ରାରେ କଳିଙ୍ଗର ଶୈଳେନ୍ଦ୍ର ବଂଶ ଉପନିବେଶ ସ୍ଥାପନ କରି ରାଜସ୍ୱ କରୁଥିଲେ । ଓଡ଼ିଶାର ଜନୈକ ରାଜା ଇନ୍ଦ୍ରଭୂତି ଏବଂ ତାଙ୍କର ପୁତ୍ର ପଦ୍ମସମ୍ଭବ ଓ କନ୍ୟା ଲକ୍ଷ୍ମୀଙ୍କରା ବୌଦ୍ଧଧର୍ମର ବଜ୍ରଯାନ ପ୍ରବର୍ତ୍ତନ କରିଥିଲେ ଏବଂ ତିବ୍‌ବତରେ ସେହି ଶାଖାର ପ୍ରଚାର କରିଥିଲେ । ପ୍ରାଚ୍ୟଖଣ୍ଡରେ ଓଡ଼ିଶାର ରତ୍ନଗିରିରେ ଏକ ବିଶ୍ୱବିଦ୍ୟାଳୟ (ପୁଷ୍ପଗିରି ବିଶ୍ୱବିଦ୍ୟାଳୟ ବା ରତ୍ନଗିରି ମହାବିହାର) ପ୍ରତିଷ୍ଠିତ ଥିଲା ଯେଉଁଠାକୁ ତନ୍ତ୍ର-ଶିକ୍ଷାପାଇଁ ଭାରତର ବିଭିନ୍ନ ପ୍ରାନ୍ତରୁ ଛାତ୍ରମାନେ

---

(୬) A. C. Bose, The Call of the Vedas, Bharatiya Vidya Bhavan, Introduction. 11-7-13.

(୭) ପାଶ୍ଚାତ୍ୟ ସଭ୍ୟତାର ଇତିହାସରେ ଦେଖାଯାଏ; ଯେଉଁଠିକି ସେ ଯାଇଛି, ସ୍ଥାନୀୟ ପୁରାତନ ସଭ୍ୟତାକୁ ଧ୍ୱଂସ କରିଦେଇଛି । ଅଷ୍ଟ୍ରେଲିଆ, ନିଉଜିଲାଣ୍ଡ ଓ ଆମେରିକା ସୁସଭ୍ୟ 'ମାୟା' ଓ 'ଆଜ୍‌ଟେକ୍' ସଭ୍ୟତାର ଉଚ୍ଛେଦ ଘଟିଛି । କିନ୍ତୁ ଭାରତରେ ଆର୍ଯ୍ୟପୂର୍ବ ଦ୍ରାବିଡ଼ ସଭ୍ୟତାକୁ ଆର୍ଯ୍ୟମାନେ ନଷ୍ଟ କରି ନାହାନ୍ତି । (ଭାରତେର ସଂସ୍କୃତି, ପୃ ୭/୮)

ଆସୁଥିଲେ । ଓଡ଼ିଶାରେ ବହୁ ବୌଦ୍ଧପୀଠ (ଧଉଳିଗିରି, ରତ୍ନଗିରି, ଲଳିତଗିରି, ଉଦୟଗିରି, କୁଳଣଗିରି, ରାମେଶ୍ୱର, ଚୌଦ୍ୱାର, ନରାଜ ପ୍ରଭୃତି) ଓ ଜୈନପୀଠ (ଖଣ୍ଡଗିରି) ସହ ବହୁ ଦେବଦେବୀଙ୍କର ମନ୍ଦିର ଥିଲା । ଏଥିରୁ ଜଣାଯାଏ; ଅତି ପ୍ରାଚୀନ କାଳରୁ ଉତ୍କଳରେ ଏକ ଉନ୍ନତ ସଭ୍ୟତାର ଧାରା ଅଖଣ୍ଡଭାବରେ ପ୍ରବାହିତ ହୋଇଆସୁଥିଲା । ଉତ୍କଳର ଆଦିବାସୀ ଓ ଦ୍ରାବିଡ଼ମାନଙ୍କ ସହ ଆର୍ଯ୍ୟମାନଙ୍କର ସଂଘର୍ଷ ଘଟିଥିଲେ ମଧ୍ୟ ଆର୍ଯ୍ୟ ସଭ୍ୟତାର ପ୍ରବାହ ପ୍ରତିହତ ହୋଇପାରି ନାହିଁ । ଆଦିବାସୀଙ୍କ ସହ ସହାବସ୍ଥାନ ଫଳରେ ସାମାଜିକ, ରାଜନୈତିକ, ଆର୍ଥନୀତିକ ଓ ଆଧ୍ୟାତ୍ମିକ କ୍ଷେତ୍ରରେ ପାରସ୍ପରିକ ଆଦାନପ୍ରଦାନ ବଢ଼ିଉଠିଛି । ଉଭୟ ସଭ୍ୟତା ପରସ୍ପରକୁ ପ୍ରଭାବିତ କରିଛି । ଆର୍ଯ୍ୟ ଓ ଆର୍ଯ୍ୟେତର ସଭ୍ୟତା ଓ ସଂସ୍କୃତିର ମୂର୍ତ୍ତପ୍ରତୀକ ହେଉଛନ୍ତି ସମଗ୍ର ବିଶ୍ୱବିଦିତ ଶ୍ରୀଜଗନ୍ନାଥ ।

**ଶ୍ରୀଜଗନ୍ନାଥ :**

ଜଗନ୍ନାଥ କୌଣସି ସାମ୍ପ୍ରଦାୟିକ ଦେବତା ନୁହନ୍ତି । ଦୀର୍ଘକାଳଧରି ବିଭିନ୍ନ ସଭ୍ୟତା, ସଂସ୍କୃତି ଓ ଧର୍ମର ସେ ହେଉଛନ୍ତି ଏକ ପ୍ରତୀକ, ଏକ ମିଳନ ବିନ୍ଦୁ । ଜଗନ୍ନାଥ ଓ ନୀଳାଚଳ କ୍ଷେତ୍ର ସମଗ୍ର ଓଡ଼ିଶାର ଯେପରି ଏକ ସୂକ୍ଷ୍ମରୂପ । ଜଗନ୍ନାଥ ପୁଣି ପତିତପାବନ ଓ ଜଗନ୍ନାଥ ଧର୍ମ ଭାରତୀୟ ସଂସ୍କୃତି, ସନାତନ ଧର୍ମ, ଅନ୍ୟଭାବରେ କହିଲେ ବିଶ୍ୱଧର୍ମର ପ୍ରତୀକ । ଜଗନ୍ନାଥ ବିଗ୍ରହ, ପୁରୁଷୋତ୍ତମକ୍ଷେତ୍ର ଓ ଜଗନ୍ନାଥତତ୍ତ୍ୱ ସାର୍ବଜନୀନ ସମନ୍ୱୟର ପ୍ରତୀକ । ଶ୍ରୀକ୍ଷେତ୍ର ପ୍ରତିଷ୍ଠିତ ମୂର୍ତ୍ତିତ୍ରୟ ସର୍ବମାନ୍ୟ ବିଶ୍ୱ-ବିଶ୍ରୁତ ଶ୍ରୀମଦ୍‌ଭଗବଦ୍‌ଗୀତା ବର୍ଣ୍ଣିତଧର, କ୍ଷର ଅକ୍ଷର ଓ ପୁରୁଷୋତ୍ତମଙ୍କର ପ୍ରତିମା କହିଲେ ଅତ୍ୟୁକ୍ତି ହେବ ନାହିଁ ।

**ଜଗନ୍ନାଥକୈନ୍ଦ୍ରିକ ଓଡ଼ିଶାର ବୈଷ୍ଣବ ଧର୍ମଧାରା :**

ଜଗନ୍ନାଥ କୈନ୍ଦ୍ରିକ ଓଡ଼ିଶାର ବୈଷ୍ଣବ ଧର୍ମଧାରା ତଥା ସଂସ୍କୃତି ଓଡ଼ିଶାର ନିଜସ୍ୱଧର୍ମ ଓ ସଂସ୍କୃତି । ଏହାର ଶାନ୍ତି, ମୈତ୍ରୀ ଓ ପ୍ରୀତିର ବାଣୀ ସମଗ୍ର ବିଶ୍ୱର ଦୃଷ୍ଟି ଆକର୍ଷଣ କରିଛି । ପୁରୁଷୋତ୍ତମକ୍ଷେତ୍ରରେ ବୌଦ୍ଧ, ଜୈନ୍, ଶୈବ, ଶାକ୍ତ, ସୌର, ଗାଣପତ୍ୟ, ନାଥ ଓ ବୈଷ୍ଣବ ପ୍ରଭୃତି ଯେତେ ଧର୍ମର ପ୍ରବାହ ଛୁଟିଛି, ସମସ୍ତେ ଜଗନ୍ନାଥଙ୍କୁ ସ୍ୱୀକାର କରିଛନ୍ତି; ଜଗନ୍ନଥତତ୍ତ୍ୱରେ ନିଜ ଧର୍ମର ସତ୍ତା ଉପଲବ୍ଧି କରିଛନ୍ତି । ପୁରୁଷଷାତ୍ତମକ୍ଷେତ୍ର, ଜଗନ୍ନାଥତତ୍ତ୍ୱ ସମସ୍ତଙ୍କୁ ଉଦାର ଦୃଷ୍ଟିରେ ସ୍ୱାଗତ କରିଛି; କିନ୍ତୁ ନିଜସ୍ୱ ହରାଇ ନାହିଁ । ବହୁ ମତର ଦେବଦେବୀଙ୍କୁ ନିଜ ତତ୍ତ୍ୱର ମଧ୍ୟରେ ବାନ୍ଧି ରଖିଛି । ବହୁ ସମ୍ପ୍ରଦାୟର ସାଧକ ଓ ଭକ୍ତଙ୍କୁ ନିଜ ଆଡ଼କୁ ଆକର୍ଷଣ କରିଆଣିଛି । ତାଙ୍କ କ୍ଷେତ୍ରରେ ଜାତିଭେଦ ନାହିଁ; ଅସ୍ପୃଶ୍ୟତା ନାହିଁ ।

ବିଭିନ୍ନ ସମ୍ପ୍ରଦାୟର ସାଧକ ଓ ଭକ୍ତ ତାଙ୍କଠାରେ ରାମ, କୃଷ୍ଣ, ବୁଦ୍ଧ ଓ ନାରାୟଣଙ୍କର ସନ୍ଧାନ ପାଆନ୍ତି । ସେ ପୁଣି ବୌଦ୍ଧ ମହାଯାନ ଶାଖାର ଶୂନ୍ୟ, ଅଦ୍ୱୈତବାଦର ବ୍ରହ୍ମ ଓ ତନ୍ତ୍ରର ଭୈରବ । ତାଙ୍କର ସେବକ ହେଉଛନ୍ତି, ବ୍ରାହ୍ମଣ ଓ ବ୍ରାହ୍ମଣେତର ଦଇତାମାନେ । ତାଙ୍କର ଆଦିମ ସ୍ଥୂଳମୂର୍ତ୍ତି ଯେପରି ଅନ୍ୟ ପରିଚିତ ଦେବ ଦେବୀଙ୍କର ମୂର୍ତ୍ତିର ବିରାଟ ବ୍ୟତିକ୍ରମ, ତାଙ୍କର ତତ୍ତ୍ୱ ମଧ୍ୟ ସେହିପରି ବହୁ ବିରୋଧାତ୍ମକ ତତ୍ତ୍ୱର ଏକ ବିଚିତ୍ର ଓ ଅପୂର୍ବ ସମନ୍ୱୟ[୮] । ବିଭିନ୍ନ ସମ୍ପ୍ରଦାୟ, ଧର୍ମ ଓ ସଂସ୍କୃତି ଜଗନ୍ନାଥଙ୍କଠାରେ ନିଜନିଜର ବିଭିନ୍ନତାକୁ ଭୁଲିଯାଇଛନ୍ତି । ଭାରତୀୟ ସଂସ୍କୃତିର ମହାସମନ୍ୱୟର ସେ ହେଉଛନ୍ତି ମୂର୍ତ୍ତପ୍ରତୀକ, ତ୍ୟାଗ ଓ ମିଳନର, ଅସୀମ ମମତାର ଏକ ମହିମାମୟ ମୂର୍ତ୍ତି । ଜଗନ୍ନାଥ ଧର୍ମ ଭାରତୀୟ ଧର୍ମଧାରା, ଦର୍ଶନ, ସାହିତ୍ୟ, ସଙ୍ଗୀତ, ଶିଳ୍ପ ଓ ସାମାଜିକ ସ୍ତରକୁ ନାନାଭାବରେ ପ୍ରଭାବିତ କରିଆସିଛି ।

ବାରାଣସୀ, ମିଥିଳା, କାଞ୍ଚି ଓ ଉଜ୍ଜୟିନୀପରି ଭାରତର ପୂର୍ବଖଣ୍ଡରେ ନୀଳାଚଳକ୍ଷେତ୍ର (ପୁରୀ) ସଂସ୍କୃତ ଶିକ୍ଷା ଓ ଜ୍ଞାନର ଏକ ବିଖ୍ୟାତ ପୀଠ । ସଂସ୍କୃତି ପ୍ରୋଜ୍ଜ୍ୱଳ ସାର୍ବଜନୀନ ଏହି ଜ୍ଞାନ ଓ ଧର୍ମପୀଠର ଶିକ୍ଷା ଓ ଆଦର୍ଶରେ ଅନୁପ୍ରାଣିତ ହୋଇ ବହୁ କବି, ନାଟ୍ୟକାର, ସଙ୍ଗୀତଜ୍ଞ, ଆଳଙ୍କାରିକ, ଦାର୍ଶନିକ, ସ୍ମୃତିକାର, ତାନ୍ତ୍ରିକ ଓ ଶିଳ୍ପତତ୍ତ୍ୱବିତ୍ ସଂସ୍କୃତ ସାହିତ୍ୟ କ୍ଷେତ୍ରରେ ସ୍ୱ-ସାଧନା ଓ ମନୀଷାର କାଳଜୟୀ

ସଙ୍କେତ ଛାଡ଼ିଯାଇଛନ୍ତି । ସଂସ୍କୃତ ଓ ଅପଭ୍ରଂଶରେ ରଚିତ ଶିଳାଲେଖ ଓ ତାମ୍ରଶାସନକୁ ଛାଡ଼ିଦେଲେ ନିମ୍ନୋକ୍ତ କବି, ନାଟ୍ୟକାର, ଆଳଙ୍କାରିକ ଓ ସ୍ମୃତିକାରଙ୍କର ସଂସ୍କୃତ ସାହିତ୍ୟ ପ୍ରତି ଅବଦାନ ଅବିସ୍ମରଣୀୟ; ଯଥା– ଜୟଦବ (ଗୀତଗୋବିନ୍ଦ), କବିଚନ୍ଦ୍ର ଦିବାକର, (ଅଭିନବ ଗୀତଗୋବିନ୍ଦ), ରାୟରାମାନନ୍ଦ (ଜଗନ୍ନାଥବଲ୍ଲଭ ନାଟକ), ରଘୁଉତ୍ତମତୀର୍ଥ (ମୁକୁନ୍ଦ ବିଳାସ), ନିତ୍ୟାନନ୍ଦ (କୃଷ୍ଣ ଲୀଳାମୃତ, ଶିବଲୀଳାମୃତ), ପ୍ରବୋଧାନନ୍ଦ (ସଙ୍ଗୀତ ମାଧବ), କବିରତ୍ନ ପୁରୁଷୋତ୍ତମ ମିଶ୍ର (ଗୋପ ଗୋବିନ୍ଦମ୍), କବିଭୂଷଣ ଗୋବିନ୍ଦ ସାମନ୍ତରାୟ (ସମୃଦ୍ଧ ମାଧବ ନାଟକମ୍), କବିଚନ୍ଦ୍ର କମଳଲୋଚନ ଖଡ୍‌ଗରାୟ (ସଙ୍ଗୀତ ଚିନ୍ତାମଣି, ଗୀତମୁକୁଳମ୍), ଯତୀନ୍ଦ୍ର ନାରାୟଣ ତୀର୍ଥ (ଶ୍ରୀକୃଷ୍ଣ ଲୀଳା ତରଙ୍ଗିଣୀ), କୃଷ୍ଣାନନ୍ଦ ଦାଶ (ସ୍ୱହୃଦୟାନନ୍ଦ), ବିଶ୍ୱନାଥ କବିରାଜ (ସାହିତ୍ୟ ଦର୍ପଣ, ରାଘବ ବିଳାସ, ନରସିଂହ ବିଜୟ) କବିଚନ୍ଦ୍ର ଦିବାକର ମିଶ୍ର (ଭାରତାମୃତ ମହାକାବ୍ୟ, ଭକ୍ତି ଭାଗବତ ମହାକାବ୍ୟ), କବିଚନ୍ଦ୍ର ମାର୍କଣ୍ଡେୟ ମିଶ୍ର (ଦଶଗ୍ରୀବ ବଧ ମହାକାବ୍ୟ), କବି ଡ଼ିଣ୍ଡିମ ଜୀବଦେବ (ଭକ୍ତିଭାଗବତ), ଜଗନ୍ନାଥ ମିଶ୍ର (ରସକଳ୍ପଦ୍ରୁମ), ସାମନ୍ତ ଚନ୍ଦ୍ରଶେଖର (ସିଦ୍ଧାନ୍ତ ଦର୍ପଣ), ଚକ୍ରପାଣି ପଟ୍ଟନାୟକ (ଗୁଣ୍ଡିଚା ଚମ୍ପୁ), କବିସୂର୍ଯ୍ୟ ବଳଦେବ ରଥ (କିଶୋର ଚନ୍ଦ୍ରାନନ ଚମ୍ପୁ) ପ୍ରଭୃତି । ଏତଦ୍‌ବ୍ୟତୀତ ସଂସ୍କୃତରେ ବହୁ ନାଟକ, ମୁରାରି ମିଶ୍ରଙ୍କ (ଅନର୍ଘରାଘବ), ବିଶ୍ୱନାଥଙ୍କ (ଚନ୍ଦ୍ରକଳା, ପ୍ରଭାବତୀ), ଜୀବଦେବାଚାର୍ଯ୍ୟଙ୍କ (ଭକ୍ତି ବୈଭବମ୍ ଅଳଂକାରଗ୍ରନ୍ଥ, ସଂଗୀତ ଶାସ୍ତ୍ର), କୃଷ୍ଣ ଦାସ ବଡ଼ଜେନାଙ୍କ (ଗୀତପ୍ରକାଶ), ହଳଧର ମିଶ୍ରଙ୍କର (ସଂଗୀତ କଳ୍ପଲତା), ଶାର୍ଙ୍ଗ ଦେବଙ୍କର (ସଙ୍ଗୀତ ରତ୍ନାକର), ଜଗନ୍ନାଥ ନାରାୟଣଦେବଙ୍କ (ସଂଗୀତ ନାରାୟଣ); କୋଷକାବ୍ୟ, ଦର୍ଶନ, ସ୍ମୃତି, ଜ୍ୟୋତିଷ, ଆୟୁର୍ବେଦ, ତନ୍ତ୍ର, ସ୍ଥାପତ୍ୟ କଳା ଓ ପୁରାଣ ସମ୍ପର୍କିତ ଗ୍ରନ୍ଥ ରଚିତ ହୋଇଛି ।

ଓଡ଼ିଶାରେ ବଜ୍ରଯାନ ଓ ସହଜଯାନ, ନାଥ ଓ ଶୈବଧର୍ମ, ଶାକ୍ତ ଧର୍ମ ଓ ବୈଷ୍ଣବଧର୍ମ (ଶୁଦ୍ଧା ଓ ଜ୍ଞାନ ମିଶ୍ରା) ଭିତ୍ତିରେ ବହୁ କାବ୍ୟ, ଗୀତ, ସଂହିତା, ଚମ୍ପୁ, ବୋଲି, ଚଉତିଶା ଓ ପୁରାଣ ଆଦି ରଚିତ ହୋଇଛି । ଓଡ଼ିଶାର ବିଭିନ୍ନ ଧର୍ମଧାରାର ରଚନା, ମୁଖ୍ୟତଃ ଜଗନ୍ନାଥ ଧର୍ମ ଓ ଜଗନ୍ନାଥ ସଂସ୍କୃତିମୂଳକ ।

ଜଗନ୍ନାଥ କୈନ୍ଦ୍ରିକ ଓଡ଼ିଶାର ବୈଷ୍ଣବଧାରା ତଥା ସଂସ୍କୃତି ଓଡ଼ିଶାର ନିଜସ୍ୱ ଧର୍ମ ଓ ସଂସ୍କୃତି । ଯୁଗ ଯୁଗ ଧରି ଓଡ଼ିଶାର ଏଇ ନିଜସ୍ୱ ବୈଷ୍ଣବଧାରାରେ ଶାବର, ବୈଦିକ, ବ୍ରାହ୍ମଣ୍ୟ, ବୌଦ୍ଧ, ଜୈନ, ଶୈବ, ଶାକ୍ତ, ନାଥ ଓ ଶୁଦ୍ଧାଭକ୍ତି ଧାରାର ସଙ୍କେତ ରହିଥିଲେ ମଧ୍ୟ ଜଗନ୍ନାଥ ଏକକଭାବରେ ବ୍ରାହ୍ମଣ୍ୟ, ବୌଦ୍ଧ ବା ତାନ୍ତ୍ରୀକଧାରାର ଦେବତା ହୋଇ ରହି ନାହାନ୍ତି । ସମନ୍ୱୟାତ୍ମକ ସାର୍ବଜନୀନ ଆଦର୍ଶ ହେତୁ ପୁରୁଷୋତ୍ତମ ଜଗନ୍ନାଥ ବିଭିନ୍ନ ସମ୍ପ୍ରଦାୟର ସାଧକମାନଙ୍କର ନମସ୍ୟରୂପେ ସମଗ୍ର ବିଶ୍ୱରେ ପ୍ରତିଷ୍ଠିତ ।

ଓଡ଼ିଶାରେ ଶ୍ରୀଜଗନ୍ନାଥ, ରାମ ଓ କୃଷ୍ଣଙ୍କୁ କେନ୍ଦ୍ରକରି ମୁଖ୍ୟତଃ ଯେଉଁ ଦୁଇଟି ବୈଷ୍ଣବଧାରା ବିକାଶଲାଭ କରିଛି, ସେ ଦୁଇଟି ହେଉଛି : ଜ୍ଞାନ ଓ ଯୋଗ ମିଶ୍ରିତ ଭକ୍ତିଧାରା, ଅନ୍ୟଟି ଶୁଦ୍ଧା ଭକ୍ତିଧାରା । ଉଭୟଧାରା ମଧ୍ୟରେ ଦାର୍ଶନିକ ଦୃଷ୍ଟିଭଙ୍ଗୀ ଓ ସାଧନଗତ ପାର୍ଥକ୍ୟ ସତ୍ତ୍ୱେ କେତେକ ସାଧାରଣ ସାମଞ୍ଜସ୍ୟ ରହିଛି । ସେଗୁଡ଼ିକ ହେଉଛି : ବୈରାଗ୍ୟ, ବିଷୟପ୍ରତି ଅନାସକ୍ତି, ତ୍ୟାଗ, ସଂଯମ, ଅହିଂସା, ଜୀବେ ଦୟା, ସେବା, ପ୍ରୀତି, ଭାତୃଭାବ, ନାରୀପ୍ରତି ଜନନୀ ଜ୍ଞାନ, ନିଜର ନିମିତ୍ତତ୍ୱ ଏବଂ ଭଗବତ୍ ଦାସତ୍ୱ ଇତ୍ୟାଦି । ଉଭୟଧାରାର ବୈଷ୍ଣବ ମତର ଅଜସ୍ର ରଚନା ଓଡ଼ିଶାରେ ପରିଲକ୍ଷିତ ହୁଏ, ଯେଉଁଗୁଡ଼ିକରେ ସେମାନଙ୍କର ତାତ୍ତ୍ୱିକ ବୈଶିଷ୍ଟ୍ୟ ସ୍ପଷ୍ଟ ହୋଇଉଠିଛି । ଓଡ଼ିଶୀ ବୈଷ୍ଣବଧାରାର ତାତ୍ତ୍ୱିକ ବୈଶିଷ୍ଟ୍ୟଗୁଡ଼ିକ ହେଉଛି : ସୃଷ୍ଟିତତ୍ତ୍ୱ, ଶୂନ୍ୟବାଦ, ସଗୁଣ ଓ ନିର୍ଗୁଣ, ନାମ ଓ ବ୍ରହ୍ମତତ୍ତ୍ୱ, ଜ୍ଞାନମିଶ୍ରା ଭକ୍ତି, ଯୋଗ; ଯନ୍ତ୍ର ମନ୍ତ୍ର ତନ୍ତ୍ର; ଛାୟା, ଅବାଡ଼ ଜ୍ୟୋତି ସାଧନ ସହଜ ସାଧନା, ସମାଧି, ଷଡ଼ଚକ୍ର ସାଧନା, ହଂସ ସାଧନା ଓ ଅଜପା ମନ୍ତ୍ର, ନାଡ଼ୀ ବିଜ୍ଞାନ, ନାଦତତ୍ତ୍ୱ (ଅନାହତ ଧ୍ୱନି), ରସଗୁଣ, ମୋକ୍ଷ, ଦାସ୍ୟଭାବ ବା ଶୂଦ୍ରତ୍ୱ,

ସହସ୍ରାରରେ ରାଧାକୃଷ୍ଣ ଲୀଳାତତ୍ତ୍ୱର ଉପଲବ୍ଧି, ଜାତିଭେଦ ଶୂନ୍ୟତା, ସମାଜର ନିମ୍ନବର୍ଗ ପ୍ରତି ମାନବିକତା ତଥା ସମ୍ମାନବୋଧ ଇତ୍ୟାଦି । ଶୁଦ୍ଧା ଭକ୍ତିଧାରାର ତାତ୍ତ୍ୱିକ ବୈଶିଷ୍ଟ୍ୟ ହେଉଛି : ନିତ୍ୟଧାମତତ୍ତ୍ୱ, ଭକ୍ତି ଓ ପ୍ରେମର ରସରୂପତା, ଶକ୍ତିତତ୍ତ୍ୱ, ଅଚିନ୍ତ୍ୟ ଭେଦାଭେଦବାଦ; ରାଗାତ୍ମିକା ଓ ରାଗାନୁଗା ଭକ୍ତି ତଥା ପ୍ରେମତତ୍ତ୍ୱ; ସଖୀ ଓ ମଞ୍ଜରୀତତ୍ତ୍ୱ, ନବଧାଭକ୍ତି, ସେବାପରାୟଣତା, ମୁକ୍ତି କୈତବତା, ଭଗବତ୍ ସେବାପାଇଁ ଜନ୍ମାନ୍ତର ଲାଳସା, ନାମତତ୍ତ୍ୱ ଇତ୍ୟାଦି ।

ଉଭୟଧାରାରେ ଉପାସ୍ୟମନ୍ତ୍ର ଓ ଧାମକ୍ଷେତ୍ରରେ ପାର୍ଥକ୍ୟ ଲକ୍ଷିତ ହୁଏ । ଓଡ଼ିଶା ବୈଷ୍ଣବଧାରାରେ ନୀଳାଚଳ ନିତ୍ୟକ୍ଷେତ୍ର । ଜଗନ୍ନାଥ ଅବତାରୀ, ମହାମନ୍ତ୍ରର ପ୍ରଥମପାଦର ମୂଳ ହେଉଛି: 'ହରେ ରାମ'; କିନ୍ତୁ ଶୁଦ୍ଧାଭକ୍ତିଧାରାରେ ଗୋଲୋକର ପ୍ରତୀକ ବୃନ୍ଦାବନ ନିତ୍ୟଧାମ; ଶ୍ରୀକୃଷ୍ଣ ଅବତାରୀ; ମହାମନ୍ତ୍ରର ପ୍ରଥମ ପଙ୍‌କ୍ତିର ମୂଳ ହେଉଛି: 'ହରେକୃଷ୍ଣ' । ଶ୍ରୀମଦ୍‌ଭାଗବତର ରାସ ପଞ୍ଚାଧ୍ୟାୟୀରେ ରାଧାଙ୍କର ନାମୋଲ୍ଲେଖ ନଥିଲେ ମଧ୍ୟ ଗୌଡ଼ୀୟ ଟୀକାକାର ଏକ ନିର୍ଦ୍ଦିଷ୍ଟ ଶ୍ଳୋକର ବ୍ୟାଖ୍ୟାରେ 'କାଚିଦ୍ ଗୋପୀ ସ୍ଥାନରେ ଯେପରି ରାଧାଙ୍କୁ ଆଣି ଉପସ୍ଥାପନ କରିଛନ୍ତି, ଜ୍ଞାନମିଶ୍ରା ଭକ୍ତିଧାରାର ଶ୍ରେଷ୍ଠଗ୍ରନ୍ଥ ଓଡ଼ିଆ ଶ୍ରୀମଦ୍ ଭାଗବତରେ ଜଗନ୍ନାଥ ଦାସ ପୂର୍ବୋକ୍ତ ଶ୍ଳୋକର ମର୍ମାନୁବାଦରେ ରାଧା ନାମର ଉଲ୍ଲେଖ ନକରି ବ୍ୟାଖ୍ୟାରେ ବୃନ୍ଦାବତୀ ନାମ ଉଲ୍ଲେଖ କରିଛନ୍ତି ।

ଶୁଦ୍ଧାଭକ୍ତି ଧାରାର ଧର୍ମ ଓ ଦର୍ଶନ ଯେପରି ପାରମ୍ପରିକ ଶ୍ରୁତି, ଉପନିଷଦ, ବେଦାନ୍ତ ଓ ପୁରାଣ ଭିତ୍ତିରେ ଆଲୋଚନା କରାଯାଇଛି: ବୈଷ୍ଣବ ପୁରାଣ (ବିଷ୍ଣୁ, ବ୍ରହ୍ମବୈବର୍ତ୍ତ, କୂର୍ମ, ଗରୁଡ଼, ବ୍ରହ୍ମ ଇତ୍ୟାଦି) ବିଶେଷତଃ ଶ୍ରୀମଦ୍ ଭାଗବତକୁ ପ୍ରାମାଣିକଭାବରେ ଗ୍ରହଣ କରାଯାଇଛି ଏବଂ ଶ୍ରୁତି ପରମ୍ପରାରେ ବୃନ୍ଦାବନର ଷଡ଼ ଗୋସ୍ୱାମୀଙ୍କଦ୍ୱାରା ଏହି ଧାରାର ଧର୍ମ ଦର୍ଶନ ସମ୍ପର୍କିତ ପ୍ରାମାଣିକ ଗ୍ରନ୍ଥ [୯] ପୁଣି କାବ୍ୟ, ନାଟକ, ଭାଣିକା, ଚମ୍ପୂ ଆଦି ରଚନା କରାଯାଇଛି ଓଡ଼ିଶୀ ବୈଷ୍ଣବଧାରାର ଧର୍ମ ଓ ଦର୍ଶନ ସମ୍ପର୍କରେ ସଂସ୍କୃତରେ ସେପରି ରଚନା ଲକ୍ଷିତ ନହେଲେ ମଧ୍ୟ ଓଡ଼ିଆରେ ବହୁ ପୁରାଣ, ଗୀତା, ସଂହିତା, ପଟଳ ଇତ୍ୟାଦି ରଚିତତ ହୋଇ ଜ୍ଞାନଯୋଗ ଓ ଭକ୍ତିଭାବ ସମ୍ବଳିତ ଅଜସ୍ର ଜଣାଣ, କୋଇଲି, ପୋଇ, ବୋଲି, ପଦୀ, ଚଉତିଶା ଆଦି ରଚିତ ହୋଇ ଜନସାଧାରଣଙ୍କ ମଧ୍ୟରେ ଏଇ ଜୀବନନିଷ୍ଠ ବୈଷ୍ଣବଧାରାକୁ ଲୋକପ୍ରିୟ କରିଛି ।

ବିଭିନ୍ନ ଧର୍ମମତବାଦର ମିଳନ ପର୍ଯ୍ୟାୟରେ ଆମର ପଞ୍ଚସଖା ବିଭିନ୍ନ ଧର୍ମମତ ସମ୍ପର୍କରେ ଆସି ସେଗୁଡ଼ିକର ଆଚାର ସ୍ୱୀକାର କରିନେଇଥିଲେ ମଧ୍ୟ ନିଜନିଜର ମତ ଓ ନିଷ୍ଠାରେ ଦୃଢ଼ ରହିଥିଲେ ଶ୍ରୀଜଗନ୍ନାଥଙ୍କୁ ତତ୍ତ୍ୱ ଓ ସାଧନାର ସ୍ଥୁଳ ପ୍ରକାଶରୂପେ ଗ୍ରହଣ କରି । ସେମାନଙ୍କର ପିଣ୍ଡବ୍ରହ୍ମାଣ୍ଡ କଳ୍ପନା କେନ୍ଦ୍ରୀଭୂତ ହୋଇଛି ଜଗନ୍ନାଥଙ୍କଠାରେ । ସେମାନଙ୍କ ସାଧନା-ଦୃଷ୍ଟିରେ ବୌଦ୍ଧ ମତର ନିରଞ୍ଜନ ବୁଦ୍ଧ, ହିନ୍ଦୁତନ୍ତ୍ରର ଶକ୍ତି, ଧ୍ୟାନର ଶୂନ୍ୟପୁରୁଷ, ଯୋଗଶାସ୍ତ୍ରର ସହସ୍ରାର ଜଗନ୍ନାଥଙ୍କ ବିଗ୍ରହରେ ମୂର୍ତ୍ତିମନ୍ତ ହୋଇଉଠିଛି[୧୦] ।

ଉଭୟ ମିଶ୍ରାଜ୍ଞାନଭକ୍ତିଧାରା ଓ ଶୁଦ୍ଧାଭକ୍ତି ଧାରାର କବିଙ୍କ ସାଧନ, ଭଜନ ଓ ରଚନା ଗଢ଼ିଉଠିଛି ଜଗନ୍ନାଥଙ୍କୁ କେନ୍ଦ୍ରକରି । ଯେ ଯେଉଁ ମାର୍ଗରେ ଯାଆନ୍ତୁ ପଛକେ୍ ବହୁ ସ୍ରୋତସ୍ୱିନୀର ଧାର ଜଗନ୍ନାଥରୂପୀ ମହୋଦଧିରେ ମିଳିତ ହୋଇଛନ୍ତି; ଭକ୍ତ ଓ ସାଧକମାନେ ପାଇଛନ୍ତି ମୁକ୍ତି ଓ ପ୍ରେମାନନ୍ଦର ସ୍ୱାଦ । ସେ

---

(୯) ସନାତନ ଗୋସ୍ୱାମୀଙ୍କର ବୃହତ୍‌ଭାଗବତାମୃତମ୍, ହରିଭକ୍ତି ବିଳାସ, ବୈଷ୍ଣବ ତୋଷଣି, ରୂପ ଗୋସ୍ୱାମୀଙ୍କର ଲଘୁଭାଗବତାମୃତମ୍, ଭକ୍ତିରସାମୃତ ସିନ୍ଧୁ, ଉଜ୍ଜ୍ୱଳ ନୀଳମଣି, ରାଧାକୃଷ୍ଣ ଗଣୋଦ୍ଦେଶ ଦୀପିକା; ଜୀବ ଗୋସ୍ୱାମୀଙ୍କର ଷଟ୍‌ସନ୍ଦର୍ଭ (ତତ୍ତ୍ୱ, ଭଗବତ୍, ପରମାତ୍ମ, କୃଷ୍ଣ, ଭକ୍ତି ଓ ପ୍ରୀତି), ସର୍ବସମ୍ବାଦିନୀ, ଗୋପାଳ ତାପନୀ ଉପନିଷଦ୍, କ୍ରମସନ୍ଦର୍ଭ ଇତ୍ୟାଦି ।

୧୦) ଚିତ୍ତରଞ୍ଜନ ଦାସ, ଅଚ୍ୟୁତାନନ୍ଦ ଓ ପଞ୍ଚସଖାଧର୍ମ, ପୃ ୧୦୯ ।

ସେମାନଙ୍କ ଦୃଷ୍ଟିରେ ହୋଇଛନ୍ତି ଏକ ବିଶ୍ୱଜନୀନ ଅନୁଷ୍ଠାନ । ଧର୍ମ ଓ ଦର୍ଶନ ଦୃଷ୍ଟିରୁ ଜଗନ୍ନାଥ ଯେତେ ରହସ୍ୟମୟ ହେଲେ ମଧ୍ୟ ଭକ୍ତ ଓ ସାଧକର ଭାବ ଦୃଷ୍ଟିରୁ ସେ ତାଙ୍କର ଅତି ନିକଟର, ଅତି ଆପଣାର । ଓଡ଼ିଆ ଭକ୍ତକବି ତାଙ୍କୁ ଆପଣାର କରିଛି, ନିକଟରେ ପାଇଛି ଭାବ-ରଜ୍ଜୁରେ ବନ୍ଧନକରି ।

**ଜଗନ୍ନାଥକୈନ୍ଦ୍ରିକ ରଚନା :**

ଶ୍ରୀଜଗନ୍ନାଥ ଓ ନୀଳାଚଳକ୍ଷେତ୍ର ଓଡ଼ିଶାର ଧର୍ମ, ସମାଜ, ସଂସ୍କୃତି ଓ ଜାତୀୟଜୀବନର ପ୍ରାଣକେନ୍ଦ୍ର ହୋଇଥିବାରୁ ତାଙ୍କ ଚରିତ ତତ୍ତ୍ୱ ଓ କ୍ଷେତ୍ର ମହିମା ବିଭିନ୍ନ ଶତାବ୍ଦୀର ବିଭିନ୍ନ ରଚନାରେ; ଯଥା– ଲୋକଗୀତ, ବିଭିନ୍ନ କାବ୍ୟ (ଛାନ୍ଦ ସାହିତ୍ୟ), ନାଟକ; ସଞ୍ଚସଖା ଓ ତଦନୁପନ୍ଥୀଙ୍କ ଭଜନ, ଜଣାଣ, ଚଉତିଶା, ଗୀତା, ସଂହିତା ଓ ପୁରାଣରେ ପ୍ରତିଫଳିତ । ଷୋଡ଼ଶ ଶତାବ୍ଦୀରେ ଶୁଦ୍ଧାଭକ୍ତି ଧାରାର ବୈଷ୍ଣବାଗ୍ରଣୀ ରାୟରାମାନନ୍ଦ ରାଧାକୃଷ୍ଣ ଲୀଳାକୁ ଭିତ୍ତିକରି ସଂସ୍କୃତରେ ଯେଉଁ ନାଟକ ରଚନା କରିଛନ୍ତି ତା'ର ନାମ ଜଗନ୍ନାଥବଲ୍ଲଭ ନାଟକ । ନାଟକଟିରେ ଶ୍ରୀକୃଷ୍ଣଙ୍କପାଇଁ ଜଗନ୍ନାଥଙ୍କ ନାମ ସନ୍ନିବେଶ କରିଛନ୍ତି । ପୁରୁଷୋତ୍ତମ ଦାସଙ୍କର କାଞ୍ଚିକାବେରୀ କାବ୍ୟରେ ଜଗନ୍ନାଥ ଓ ବଳଭଦ୍ର ଚରିତ୍ରର ଅନ୍ତର୍ଭୁକ୍ତ । ଚକ୍ରପାଣି ପଟ୍ଟନାୟକଙ୍କ ସଂସ୍କୃତରେ ରଚିତ 'ଗୁଣ୍ଡିଚା ଚମ୍ପୂ' ଏବଂ ହିନ୍ଦୀ (ଖୋରଠା)ରେ ରଚିତ ବ୍ରଜନାଥ ବଡ଼ଜେନାଙ୍କର 'ଗୁଣ୍ଡିଚା ବିଜେ' ଜଗନ୍ନାଥ ମାହାତ୍ମ୍ୟ ପ୍ରଖ୍ୟାପକ । ଜଗନ୍ନାଥ ମାହାତ୍ମ୍ୟ ଓ କ୍ଷେତ୍ରମାହାତ୍ମ୍ୟ ଅପୂର୍ବ କାବ୍ୟିକଛଟାରେ ବର୍ଣ୍ଣିତ ହୋଇଛି ଦେବଦୁର୍ଲଭ ଦାସଙ୍କର ରହସ୍ୟମଞ୍ଜରୀ, ଦୀନକୃଷ୍ଣ ଦାସଙ୍କ ରସବିନୋଦ, ରସକଲ୍ଲୋଳ, ଉପେନ୍ଦ୍ର ଭଞ୍ଜଙ୍କ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ, ରସିକ ହାରାବଳୀ, ସୁଭଦ୍ରା ପରିଣୟ, ଦାସରଥି ଦାସଙ୍କ ବ୍ରଜବିହାର, ପଦ୍ମନାଭ ଶ୍ରୀଚନ୍ଦନଙ୍କ ଶଶିରେଖା ଓ ବଳଦେବ ରଥଙ୍କ ଚନ୍ଦ୍ରକଳାରେ ।

ଜଗନ୍ନାଥ ଓ ଶ୍ରୀକ୍ଷେତ୍ରର ଉତ୍ପତ୍ତି ସମ୍ପର୍କୀୟ କିଂବଦନ୍ତୀମୂଳକ, ମାହାତ୍ମ୍ୟ ପ୍ରଖ୍ୟାପକ ରଚନାଗୁଡ଼ିକ ହେଉଛି– ସାରଳା ମହାଭାରତର ମୂଷଳୀ ପର୍ବ ଓ ବନ ପର୍ବରେ ଦାରୁବ୍ରହ୍ମଙ୍କ ଆବିର୍ଭାବ ସମ୍ପର୍କୀୟ ବର୍ଣ୍ଣନା; ଜଗନ୍ନାଥ ଦାସଙ୍କ ଦାରୁବ୍ରହ୍ମ ଗୀତା, ଶିଶୁ କୃଷ୍ଣଦାସ ଓ ନୀଳାମ୍ବର ଦାସଙ୍କ ଦେଉଳ ତୋଳା, ମହାଦେବ ଦାସଙ୍କ ନୀଳାଦ୍ରି ମହୋଦୟ, ପୀତାମ୍ବର ଦାସଙ୍କ ନୃସିଂହ ପୁରାଣରେ (ସପ୍ତମ ରତ୍ନାକର) ନୀଳଗିରି ସାହାତ୍ମ୍ୟ ଇତ୍ୟାଦି । ଜଗନ୍ନାଥଙ୍କୁ କେନ୍ଦ୍ରକରି ରଚିତ ଅଜସ୍ର ଭଜନ, ଜଣାଣ, ଚଉତିଶା ଓ ଚଉପଦୀ ମଧ୍ୟରେ ସାଲବେଗଙ୍କ ଭଜନ, ବନମାଳୀଙ୍କ ଚଉପଦୀ, ଦୀନକୃଷ୍ଣଙ୍କ ଚଉତିଶା; ଉପେନ୍ଦ୍ର ଭଞ୍ଜ, ଚନ୍ଦନ ହଜୁରୀ ଓ ବଳଦେବ ରଥଙ୍କ ଜଣାଣ ବିଶେଷ ଲୋକପ୍ରିୟ ।

ପ୍ରାକ୍‌ସାରଳା, ସାରଳା, ସଞ୍ଚସଖା ଓ ତଦନୁପନ୍ଥୀଙ୍କ ବିଭିନ୍ନ ରଚନାରେ ଚରିତ, ଉପାଖ୍ୟାନ ଓ ବିଭିନ୍ନ ତତ୍ତ୍ୱର କେନ୍ଦ୍ରବିନ୍ଦୁରୂପେ ଜଗନ୍ନାଥଙ୍କ ବୈଚିତ୍ର୍ୟମୟୀ ଅଭିବ୍ୟକ୍ତି ପାଠକ ଚିତ୍ତରେ କମ୍ ଆନନ୍ଦ ଦିଏ ନାହିଁ । ଯୋଗସମାଧି ପ୍ରସଙ୍ଗରେ ବଳରାମ ଦାସ ତାଙ୍କ ଗୁପ୍ତଗୀତାରେ ସାଧକର ଚକ୍ଷୁଡୋଳା ମଧ୍ୟରେ ତ୍ରିମୂର୍ତ୍ତିର ସନ୍ଧାନ ଦେଇ କହିଛନ୍ତି–

ଡୋଳା ଭିତରେ ଧଳାଯେହ୍ନୁ, ଶ୍ରୀବଳଭଦ୍ର ଅଟେ ସେହୁ ।
ତଥି ଉପରେ କଳା ଯେହ୍ନୁ, ସୁଭଦ୍ରା ଠାକୁରାଣୀ ସେହୁ ।
ତହିରେ ପିତୁଳା ଯେ ଜାଣ, ଶ୍ରୀଜଗନ୍ନାଥ ତାଙ୍କ ଚିହ୍ନ ।

(ଗୁପ୍ତଗୀତା, ୮ମ. ଅ.)

ଅଚ୍ୟୁତାନନ୍ଦ କହିଛନ୍ତି–

ହ୍ଲାଁ ବଳଭଦ୍ର କହି । ଶ୍ଲାଁ ସେ ସୁଭଦ୍ରା ଅଟଇ ।।
କ୍ଲାଁ ଅଟଇ ଜଗନ୍ନାଥ । ଦାମ ସୁଦର୍ଶନ ସମ୍ଭୂତ ।।

ସାରଳା ଦାସ ସାରଳାଚଣ୍ଡୀଙ୍କର ଉପାସକ ହେଲେ ମଧ୍ୟ ଓଡ଼ିଶାର ନିଜସ୍ୱ ବୈଷ୍ଣବ ଧର୍ମର ସମନ୍ୱୟଧର୍ମୀ ଆଦର୍ଶ ତାଙ୍କର ବିଭିନ୍ନ ରଚନାରେ ପ୍ରତିଫଳିତ ହୋଇଛି । ଲକ୍ଷ୍ମୀନାରାୟଣ ବଚନିକା, ବିଚିତ୍ର ରାମାୟଣ ଓ ବିଲଙ୍କା ରାମାୟଣ ରଚନା, ବୈଷ୍ଣବ ଶାସ୍ତ୍ର ଓ ପୁରାଣମାନଙ୍କର ବିଶେଷତଃ ବିଷ୍ଣୁପୁରାଣର

ପ୍ରଶଂସା; ପୁଣି ନୀଳମାଧବ, ଶବରୀ ନାରାୟଣ, ଜଗନ୍ନାଥ, ଗୋମୁଖୀ ବିଷ୍ଣୁ ଓ ନୀଳଗିରି ପ୍ରଭୃତି ପ୍ରସଙ୍ଗର ଉଲ୍ଲେଖ ତା'ର ଦୃଷ୍ଟାନ୍ତ ।

**ଜ୍ଞାନ ଓ ଯୋଗମିଶ୍ରିତ ଭକ୍ତି ବା ଓଡ଼ିଶା ବୈଷ୍ଣବ ଧାରାର ରଚନା :**

ପଞ୍ଚସଖା ଓ ତଦନୁପନ୍ଥୀ ବହୁସାଧକ ଓ ଭକ୍ତ କବିଙ୍କ ପୁରାଣ, ଗୀତା, ସଂହିତା, ପଟଳ, ଚଉତିଶା ଓ ଭଜନରେ ଉଡ଼ିାର ବୈଷ୍ଣବ ସାହିତ୍ୟ ପରିପୁଷ୍ଟ ହୋଇ ଶତାବ୍ଦୀ ଶତାବ୍ଦୀ ଧରି ଓଡ଼ିଶାର ଅଗଣିତ ଜନସାଧାରଣଙ୍କର ଆଧ୍ୟାତ୍ମିକ କ୍ଷୁଦା ନିବାରଣ କରିବା ସଂଗେ ସଂଗେ ଉତ୍କଳର ଆଧ୍ୟାତ୍ମିକ ସଂସ୍କୃତିର ପରିଚୟ ପ୍ରଦାନ କରିଛି । ରଚନାଗୁଡ଼ିକ ମଧ୍ୟରେ ବଳରାମ ଦାସଙ୍କ ଅମରକୋଷ ଜୀତା, ବ୍ରହ୍ମାଣ୍ଡ ଭୂଗୋଳ, ସପ୍ତାଙ୍ଗ ଯୋଗସାର ଟୀକା, ଦାଣ୍ଡୀ ରାମାୟଣ; ଜଗନ୍ନାଥ ଦାସଙ୍କ ଅମରକୋଷ ଗୀତା, ବ୍ରହ୍ମାଣ୍ଡ ଭୂଗୋଳ, ସପ୍ତାଙ୍ଗ ଯୋଗସାର ଟୀକା, ଦାଣ୍ଡୀ ରାମାୟଣ; ଜଗନ୍ନାଥ ଦାସଙ୍କରତୁଳାଭିଣା, ଅର୍ଥକୋଇଲି ଓ ଶ୍ରୀମଦ୍‌ଭାଗବତ; ଯଶୋବନ୍ତ ଦାସଙ୍କ ପ୍ରେମଭକ୍ତି ବ୍ରହ୍ମଗୀତା, ଗାଥାଧର୍ମୀ ଗୋବିନ୍ଦଚନ୍ଦ୍ର; ଅଚ୍ୟୁତାନନ୍ଦଙ୍କର ଶୂନ୍ୟ ସଂହିତା, ଶବ୍ଦବ୍ରହ୍ମ ସଂହିତା, ଗୁରୁଭକ୍ତି ଗୀତା, ଗୋପାଳଙ୍କ ଓଗାଳ, ବର୍ଣ୍ଣଟୀକା ପୁରାଣ, ନିତ୍ୟରାହାସ ଓ ହରିବଂଶ; ଦ୍ୱାରକା ଦାସଙ୍କର ପରଚେ ଗୀତା, ଛତିଶଗୁପ୍ତ ଗୀତା; ନନ୍ଦ ଦାସଙ୍କର ଅଣାକାର ସଂହିତା; ଦୀନକୃଷ୍ଣ ଦାସଙ୍କର ସୁଧାସାର ଗୀତା; ଚୈତନ୍ୟ ଦାସଙ୍କର ନିର୍ଗୁଣ ମାହାତ୍ମ୍ୟ, ବିଷ୍ଣୁଗର୍ଭ ପୁରାଣ, ଅରକ୍ଷିତ ଦାସଙ୍କର ମହାମଣ୍ଡଳ ଗୀତା, ଭୀମଭୋଇଙ୍କର ବ୍ରହ୍ମନିରୂପଣ ଗୀତା, ସ୍ତୁତି ଚିନ୍ତାମଣି ଉଲ୍ଲେଖଯୋଗ୍ୟ ।

ଜଗନ୍ନାଥକୈନ୍ଦ୍ରିକ ଉଡ଼ିଶୀ ବୈଷ୍ଣବଧାରାର ସାର୍ଥକ ପ୍ରତିନିଧି ହେଉଛନ୍ତି ପଞ୍ଚସଖା । ଏମାନଙ୍କ ରଚନାରେ ଶ୍ରୁତି, ଉପନିଷଦ୍, ବେଦାନ୍ତ, ଗୀତା, ଭାଗବତ ବିଭିନ୍ନ ପୁରାଣ; ମହାଯାନ ବୌଦ୍ଧ ଶାଖାର ବଜ୍ରଯାନ, ସହଜ ଯାନ ଓ ମନ୍ତ୍ର ଯାନ ପୁଣି ନାଥ, ଶୈବ ଓ ଶାକ୍ତ ଧର୍ମର ନାନା ସଙ୍କେତ ରହିଥିଲେ ମଧ୍ୟ ଆହରଣ ମଧ୍ୟରେ ନିଜସ୍ୱ ସତ୍ତା ଦୃଢ଼ ରଖିଛନ୍ତି । ଏମାନେ ଶୂନ୍ୟର ଉପାସନା କରିଥିଲେ ମଧ୍ୟ ବୌଦ୍ଧର ଶୂନ୍ୟବାଦଠାରୁ ଏମାନଙ୍କ ଶୂନ୍ୟ ଧାରଣା ପୃଥକ୍ । ଏମାନଙ୍କ ରଚନାରେ ଅଦ୍ୱୈତବାଦର ବ୍ୟଞ୍ଜନା; ଯନ୍ତ୍ର, ମନ୍ତ୍ର, ତନ୍ତ୍ର ଓ ଯୋଗର ତାତ୍ତ୍ୱିକ ସଙ୍କେତ ରହିଛି । ପୁରାଣର ରାମ ଓ କୃଷ୍ଣଙ୍କୁ ଗ୍ରହଣ କରିଛନ୍ତି ସ୍ୱକୀୟ ତାତ୍ତ୍ୱିକ ଅନ୍ତର୍ଦୃଷ୍ଟରେ । ଏମାନେ ନିରାକାର, ନିରଞ୍ଜନ ବ୍ରହ୍ମଙ୍କର ଉପାସନା ପ୍ରସଙ୍ଗରେ ସଗୁଣ, ନିର୍ଗୁଣ ବା ନାମ ଓ ବ୍ରହ୍ମର ବର୍ଣ୍ଣନା କଲେ ମଧ୍ୟ ନିର୍ଗୁଣ ବ୍ରହ୍ମହିଁ ସେମାନଙ୍କର ସାଧନା ଓ ଉପାସନାର କେନ୍ଦ୍ରବିନ୍ଦୁ । ଏମାନେ ରୂପ ମଧ୍ୟରେ ଅରୂପର ସାଧନା କରିଛନ୍ତି । ଅଚ୍ୟୁତାନନ୍ଦଙ୍କ ଭାଷାରେ–

ଲୟ ଅଙ୍ଗନେଇ ଲୀଳା ଅଙ୍ଗରେ ତୁ ଭର,
ଲାବଣ୍ୟମୂର୍ତ୍ତିକି ହେତୁ ଅଙ୍ଗେ ଠାବ କର । (୧୧)

ଲୟ ବା ଧ୍ୟେୟ ରୂପରେ ପହଞ୍ଚିବାଯାଇଁ ଲୀଳା ହେଉଛି ସେମାନଙ୍କ ପକ୍ଷରେ ଏକମାତ୍ର ମାର୍ଗ । ତାଙ୍କର ସାଧନ ପରମ୍ପରାରେ ମନକୁ ଅମନ କରିବାକୁ, ଯୋଗସହ ଆତ୍ମାର ସାଧନା କରିବାକୁ ସେମାନେ ସଙ୍କେତ ଦେଇଛନ୍ତି । ଅନାହତ ନାଦ ବା ଶବ୍ଦବ୍ରହ୍ମରୁ ଅନ୍ୟ ସମସ୍ତ ଶବ୍ଦର ସୃଷ୍ଟି । ଶବ୍ଦରୂପୀ ପରଂବ୍ରହ୍ମଙ୍କର ପ୍ରତୀକ ବା ବୀଜମନ୍ତ୍ର ହେଉଛି ନାମ । କଳି ଯୁଗରେ ଏହି ନାମ ସାହାଯ୍ୟରେ ବ୍ରହ୍ମଙ୍କର ଉପାସନା ସମ୍ପର୍କରେ ପଞ୍ଚସଖା ଗୁରୁତ୍ୱ ଦେଇଛନ୍ତି । ସେମାନଙ୍କ ମତରେ, ଏହି ନାମ ହେଉଛି ଏକାକ୍ଷର ପ୍ରଣବ ବା ଅଜପା ଗାୟତ୍ରୀ । ଅଚ୍ୟୁତାନନ୍ଦଙ୍କ ଅଣାକାର ସଂହିତାରେ ଏହି ଅଜପା ଗାୟତ୍ରୀ ବା ନାମର ମହତ୍ତ୍ୱ ବିଶେଷଭାବରେ ବର୍ଣ୍ଣିତ ହୋଇଛି(୧୨) ।

ପଞ୍ଚସଖା ଶୁଦ୍ଧାଭକ୍ତି ଧାରାର ରାଧାକୃଷ୍ଣ ଯୁଗଳ ଉପାସନାକୁ ଗ୍ରହଣ କରି ପିଣ୍ଡବ୍ରହ୍ମାଣ୍ଡ ଓ ଷଡ଼ଚକ୍ର ଭେଦ ତତ୍ତ୍ୱସହ ସମନ୍ୱିତ କରିଛନ୍ତି । ଅଚ୍ୟୁତାନନ୍ଦ ସହସ୍ରାର ପଦ୍ମ ମଧ୍ୟରେ ନିତ୍ୟ ରାଧାକୃଷ୍ଣଙ୍କର ଅନନ୍ତକାଳର ଲୀଳା ବର୍ଣ୍ଣନା କରିବାକୁ ଯାଇ କହିଛନ୍ତି –

ସୁଷୁମ୍ନାର ଚକ୍ର ପରେ ଅନେକ ଅ଼ତରେ,
ଅଛନ୍ତି ରାହାସେ ମଜ୍ଜି ଅନାମ ଅନ୍ତରେ ।
ଚୌରାଶି ସହସ୍ର କ୍ରୋଶ ଭୂମି ଆୟତନ,
ସେ ଭୂମିରେ ଲୀଳା କରୁଛନ୍ତି ବେନିଜନ ।
କୋଟି ଯୁଗ ଗଲେ ତାଙ୍କ ନ ଟଳଇ ଲୀଳା,
ନୟନେ ନୟନ ମିଶି ଭୁଜେ ଭୁଜ ଗଳା ।

(ଶୂ. ସଂ. ୪ର୍ଥ ଅ.)

ଓଡ଼ିଶୀ ବୈଷ୍ଣବଧର୍ମ ବା ଜଗନ୍ନାଥ ଧର୍ମର ପ୍ରତିନିଧି ପଞ୍ଚସଖାଙ୍କର ଧର୍ମୀୟ ଚେତନା ଥିଲା ଜୀବନ ତଥା ସମାଜମୁଖୀ । ସମାଜରେ ଲୋକସାଧାରଣଙ୍କର ବାସ୍ତବ ଜୀବନରେ ଆଧ୍ୟାତ୍ମିକ ଉତ୍ତରଣ ଘଟାଇ ମଣିଷଭାବରେ ସେମାନଙ୍କ ପ୍ରାଣରେ ଏକ ଜାତୀୟ ଚେତନା ଓ ସମ୍ମାନବୋଧ ସୃଷ୍ଟି କରିବା ଥିଲା ସେମାନଙ୍କର ଅନ୍ତର୍ନିଷ୍ଠ ସାଧନାର ଲକ୍ଷ୍ୟ । ଲୋକମୁଖୀ ଧାରାରେ (ଭାଷାରେ) ରଚିତ ଭଜନ, ଚଉତିଶା, କୋଇଲି, ପୋଇ ପ୍ରଭୃତି ରଚନା ଆଜି ବି ଲୋକ ଚିତ୍ତରେ ଆଲୋଡ଼ନ ସୃଷ୍ଟି କରନ୍ତି । ଜଟିଳ ଦୁର୍ବୋଧ ତତ୍ତ୍ୱରାଜିକୁ ସେମାନେ ଲୋକଭାଷା, ଅନୁଭବ ଓ ପ୍ରତୀକ ସାହାଯ୍ୟରେ ସରଳ କରି ଲୋକଚିତ୍ତରେ ସଂକ୍ରମିତ କରାଇ ସେମାନଙ୍କୁ ଭକ୍ତିଭାବରେ ନିମଜ୍ଜିତ କରାଇପାରିଥିଲେ । ସେମାନେ ସାମାଜିକ ଉତ୍କର୍ଷ ତଥା ଉତ୍ତରଣର ପରିପନ୍ଥୀ ଜାତିଭେଦ ଓ ଅସ୍ପୃଶ୍ୟତା ମାନିନାହାନ୍ତି । ସେ ସମୟରେ ସମାଜରେ ଅବହେଳିତ ନିମ୍ନବର୍ଗଙ୍କ ପ୍ରାଣରେ ଆତ୍ମବିଶ୍ୱାସ ସଞ୍ଚାର କିରବାପାଇଁ ଅଚ୍ୟୁତାନନ୍ଦ ତାଙ୍କର କୈବର୍ତ୍ତ ଗୀତା, ବର୍ଣ୍ଣଟୀକା ପୁରାଣ ଓ ଗୋପାଳଙ୍କ ଓଗାଳ ରଚନା କରି ନିଜର ସମାଜ ସଚେତନତା ଓ ସାହସିକତାର କମ ପରିଚୟ ଦେଇନାହାନ୍ତି । ଭକ୍ତି କ୍ଷେତ୍ରରେ ଶୂଦ୍ରଭାବ ବା ସେବାଭାବ ଉପରେ ସେ ଗୁରୁତ୍ୱ ପ୍ରଦାନ କରିଛନ୍ତି ।

ପଞ୍ଚସଖା, ତାଙ୍କ ପୂର୍ବ ଓ ପରବର୍ତ୍ତୀ କାଳରେ ଓଡ଼ିଶାର ବୈଷ୍ଣବ ଧର୍ମର ସଙ୍କେତ ବହନ କରିଥିବା ଅନ୍ୟ ବହୁ କାବ୍ୟ, ଗାଥା, ଚଉତିଶା ଓ ପୁରାଣମାନ ରଚିତ ହୋଇଛି । ବିଷ୍ଣୁ, ନୃସିଂହ ଓ ଶ୍ରୀକୃଷ୍ଣଙ୍କର ଚରିତ ହୋଇଛି ତନ୍ମଧ୍ୟରେ ଜଗନ୍ନାଥ ଦାସଙ୍କ ରଚିତ ଶ୍ରୀମଦ୍ ଭାଗବତ ବେଦ, ଉପନିଷଦ, ବେଦାନ୍ତ, ମନ୍ତ୍ରତନ୍ତ୍ର, ସଂହିତା ଓ ଅନ୍ୟ ସତରଟି ପୁରାଣର ନିର୍ଯ୍ୟାସରେ ଋଦ୍ଧିମନ୍ତ ହୋଇଥିବାରୁ ଜଗନ୍ନାଥ ଦାସ ଓଡ଼ିଆରେ ଏହାର ମର୍ମାନୁବାଦ କରି ବିଗତ ପ୍ରାୟ ପାଞ୍ଚଶହ ବର୍ଷ ଧରି ଓଡ଼ିଶାର ବ୍ୟକ୍ତି, ପାରିବାରିକ, ସାମାଜିକ, ଜାତୀୟ ଓ ନୈତିକ ତଥା ଆଧ୍ୟାତ୍ମିକ ଜୀବନକୁ ପରିପୁଷ୍ଟ କରି ଓଡ଼ିଆ ଜାତି ପ୍ରାଣରେ ପ୍ରେମ, ମୈତ୍ରୀ ଓ ଭ୍ରାତୃତ୍ୱର ବନ୍ଧନ ଦୃଢ଼ କରିବା ସଙ୍ଗେ ସଙ୍ଗେ ଓଡ଼ିଆର ସାମାଜିକ ଓ ଜାତୀୟ ଜୀବନରେ ସଂହତି ବା ଐକ୍ୟ ପ୍ରତିଷ୍ଠା କରି ଆସିଛନ୍ତି । ସେ ବିଷ୍ଣୁଙ୍କର ବିଭିନ୍ନ ଅବତାରର ଲୀଳା ବିଶେଷତଃ ଶ୍ରୀକୃଷ୍ଣଙ୍କର ବୈଚିତ୍ର୍ୟମୟୀ ଲୀଳାର ଚିତ୍ର ଅଙ୍କନ କରି ବିଭିନ୍ନ ଆଶ୍ରମର ବିଶେଷତଃ ଗୃହସ୍ଥାଶ୍ରମର ଲୋକଙ୍କପାଇଁ ଜ୍ଞାନ, ନିଷ୍କାମକର୍ମ ଓ ଯୋଗଭିତ୍ତିକ ଭକ୍ତିମାର୍ଗର ଆଦର୍ଶ ଉପସ୍ଥାପନ କରିଛନ୍ତି । ଶ୍ରୀମଦ୍ ଭାଗବତର ନିତ୍ୟପାଠ ଓ ଆଦର୍ଶର ଆଚରଣ ନିମିତ୍ତ ଓଡ଼ିଶାର ପୁରପଲ୍ଲୀ ଓ ସହରମାନଙ୍କରେ ପ୍ରତିଷ୍ଠିତ ଭାଗବତ ଗାଦି ଓ ଭାଗବତ ଟୁଙ୍ଗି ଓଡ଼ିଶା ତଥା ସମଗ୍ର ଭାରତରେ ବିଲକ୍ଷଣ ସାଂସ୍କୃତିକ ଅନୁଷ୍ଠାନ ।

ଦାଣ୍ଡୀବୃତ୍ତରେ ରଚିତ ଜଗମୋହନ ରାମାୟଣ ଭାବ, ଭାଷେ, ରସ, ଚରିତ୍ରଚିତ୍ରଣ ଓ ବର୍ଣ୍ଣନା ଦୃଷ୍ଟିରୁ ଓଡ଼ିଶାରେ କମ୍ ଲୋକପ୍ରିୟ ନୁହେଁ । ରାମାୟଣ ପ୍ରସଙ୍ଗକୁ ଭିତ୍ତିକରି ରଚିତ ହୋଇଥିବା ବହୁ ଓଡ଼ିଆ କାବ୍ୟ ମଧ୍ୟରେ ବର୍ଣ୍ଣନା, ଭାଷା, ବିଭିନ୍ନ ଛନ୍ଦ, ଆଳଙ୍କାରିକତା ଓ ବିଦଗ୍ଧ ଭଙ୍ଗୀ ଦୃଷ୍ଟିରୁ ବୈଦେହୀଶ

(୧୧) ଚଟୈବୃ. ପୃ. ୧୨୦ ରୁ ଉଦ୍ଧୃତ

(୧୨) ଚଟୈବୃ. ପୃ. ୧୨୧ ରୁ ୧୨୨

ବିଳାସ ଏକ ଅଭିଜାତ ମହାକାବ୍ୟର ଗୌରବ ଅର୍ଜନ କରିଥିଲେ ମଧ୍ୟ ସରଳ ପ୍ରାଣସ୍ପର୍ଶୀ ଭାଷା, ଭାବ, ରସ, ସାବଲୀଳ ଛନ୍ଦ, ପ୍ରକାଶଭଙ୍ଗୀ, ନାଟ୍ୟଧର୍ମିତା ଓ ସୁଗେୟତା ହେତୁ ବିଶ୍ୱନାଥ ଖୁଣ୍ଟିଆଙ୍କର ବିଚିତ୍ର ରାମାୟଣ ଓ କେଶବ ପଟ୍ଟନାୟକଙ୍କର କେଶବ ରାମାୟଣ ଓଡ଼ିଶାରେ ବିଶେଷ ଲୋକପ୍ରିୟ । ଓଡ଼ିଆ ରାମକାବ୍ୟ ଓ ରାମାୟଣଗୁଡ଼ିକରେ ରାମସୀତାଙ୍କର ସ୍ୱକୀୟ ପ୍ରେମନିଷ୍ଠ ଦାମ୍ପତ୍ୟ ଜୀବନର ଯେଉଁ ଉଚ୍ଚାଙ୍ଗ ଚିତ୍ର ପାଇଁ ଓଡ଼ିଆର ପାରିବାରିକ ଓ ସାମାଜିକ ଜୀବନଗଠନ ଦୃଷ୍ଟିରୁ ତା'ର ଭୂମିକା କମ୍ ଗୌରବପୂର୍ଣ୍ଣ ନୁହେଁ । ରାମଙ୍କୁ ଜଗନ୍ନାଥ ଓ ସୀତାଙ୍କୁ ମହାଲକ୍ଷ୍ମୀରୂପେ କଳ୍ପନା କରିବା ମୂଳରେ ଯେ ପୁରୁଷୋତ୍ତମ ଜଗନ୍ନାଥ ଓ ମହାଲକ୍ଷ୍ମୀ ରହିଛନ୍ତି ଏପ୍ରକାର ଅନୁମାନ ଅମୂଳକ ନୁହେଁ । ରାମବିଭାର କବି ଅର୍ଜୁନ ଦାସଙ୍କର ବର୍ଣ୍ଣନାରେ ରାମଚନ୍ଦ୍ର ଓ ଜଗନ୍ନାଥ ହେଉଛନ୍ତି ଅଭିନ୍ନ ।

ଓଡ଼ିଆ ସାହିତ୍ୟରେ ରହସ୍ୟମଞ୍ଜରୀ ଓଡ଼ିଶୀ ବୈଷ୍ଣବଧାରା ଓ ଶୁଦ୍ଧାଭକ୍ତିଧାରାର ସମନ୍ୱୟାତ୍ମକ ଏକ ଅପୂର୍ବ କାବ୍ୟ । ଗୋପୀପ୍ରେମର ଉତ୍କର୍ଷ ପ୍ରତିପାଦକ ଅନ୍ୟ ଏକ ବଶିଷ୍ଟ କାବ୍ୟ ହେଉଛି ଦୀନକୃଷ୍ଣ ଦାସଙ୍କର ରସକଲ୍ଲୋଳ । ରସକଲ୍ଲୋଳରେ କୃଷ୍ଣଙ୍କର ଗୋପ ଓ ମଥୁରାଲୀଳାର ଚିତ୍ର ଅଙ୍କିତ ହୋଇଥିଲେହେଁ କବି କାବ୍ୟର ପ୍ରଥମଛାନ୍ଦରେ ଚିତ୍ର ଅଙ୍କିତ ହୋଇଥିଲେହେଁ କବି କାବ୍ୟର ପ୍ରଥମଛାନ୍ଦରେ ଜଗନ୍ନାଥଙ୍କର ସ୍ତୁତିକରି କୃଷ୍ଣଙ୍କୁ ଜଗନ୍ନାଥଙ୍କର ଅବତାରଭାବରେ ଚିତ୍ରଣ କରିଛନ୍ତି । ଅତିବଡ଼ୀ ସମ୍ପ୍ରଦାୟର ଚୈତନ୍ୟ ଦାସଙ୍କର ଶିଷ୍ୟ ଭୂପତି ପଣ୍ଡିତ ତାଙ୍କର ପ୍ରେମ ପଞ୍ଚାମୃତରେ ଶୁକ ପରୀକ୍ଷିତ ସମ୍ବାଦ ଛଳରେ ଗୋପନାରୀଙ୍କର ଚାରିବିଭାଗ (ବେଦକନ୍ୟା, ଦେବକନ୍ୟା, ମୁନିକନ୍ୟା ଓ ବ୍ରଜକନ୍ୟା) ଏବଂ ରାସଲୀଳାରେ ସେମାନଙ୍କର ସ୍ଥାନ ସମ୍ପର୍କରେ ବର୍ଣ୍ଣନା କରି ଅହୈତୁକୀ ଶୁଦ୍ଧାଭକ୍ତି ବା ନିର୍ଗୁଣ ଭକ୍ତିକୁ କୃଷ୍ଣ ପ୍ରାପ୍ତିର ମାର୍ଗରୂପେ ସୂଚିତ କରିଛନ୍ତି । କାବ୍ୟଟିରେ କବି ଜଗନ୍ନାଥଙ୍କର ଅବତାରିତ୍ୱ ଏବଂ ବୃନ୍ଦାବନ, ମଥୁରା ଓ ଦ୍ୱାରକା ଅପେକ୍ଷା ନୀଳାଚଳଧାମର ଶ୍ରେଷ୍ଠତ୍ୱ ପ୍ରତିପାଦନ କରିଛନ୍ତି ।

**ଶୁଦ୍ଧାଭକ୍ତି ଧାରା :**

ଓଡ଼ିଶାର ଧର୍ମ ଓ ସଂସ୍କୃତିକୁ ଶୁଦ୍ଧାଭକ୍ତି ଧାରାର ଅବଦାନ କମ୍‌ନୁହେଁ । ଷୋଡ଼ଶ ଶତାବ୍ଦୀରେ ଚୈତନ୍ୟଙ୍କର ଉତ୍କଳ ଆଗମନ ପୂର୍ବରୁ ଓଡ଼ିଶାରେ ଶୁଦ୍ଧାଭକ୍ତି ଧାରାର ସଙ୍କେତ ରହିଥିଲା । ବିଗ୍ରହ ନିର୍ମାଣ କରାଯାଇ ରାଧାକୃଷ୍ଣ ଯୁଗଳମୂର୍ତ୍ତିର ଉପାସନା ପରେ ବର୍ଣ୍ଣିତ ହୋଇଥିଲେ ମଧ୍ୟ ଗୋପୀପ୍ରେମ, ରାଧାକୃଷ୍ଣ ପ୍ରେମତତ୍ତ୍ୱ ଓଡ଼ିଶାର ବୈଷ୍ଣବ କବିଙ୍କୁ ଅବିଦିତ ନଥିଲା । କୃଷ୍ଣଦାସ କବିରାଜ ଚୈତନ୍ୟ ଚରିତାମୃତରେ ଚୈତନ୍ୟଙ୍କ ସମକ୍ଷରେ ରାୟ ରାମାନନ୍ଦ ପ୍ରେମର ତାତ୍ତ୍ୱିକ ବିଶ୍ଳେଷଣ କରି ରାଧାପ୍ରେମର ଉତ୍କର୍ଷ ପ୍ରତିପାଦନ କରିଛନ୍ତି । ଓଡ଼ିଶାରେ ବୈଷ୍ଣବ ଧର୍ମର ପ୍ରାଚୀନତା ସମ୍ପର୍କରେ ବିଭିନ୍ନ ଆଲୋଚକ ବୈଦିକ ବ୍ରାହ୍ମଣ୍ୟଧର୍ମ ଓ ବୈଷ୍ଣବ ଧର୍ମର ଏକାତ୍ମକତା ସମ୍ପର୍କରେ ସୂଚନା ଦେଇ ବିଷ୍ଣୁ ଜଗନ୍ନାଥରୂପୀ ବାସୁଦେବ, ନାରାୟଣ, ମାଧମ, ଗୋପୀନାଥ; ଦାକ୍ଷିଣାତ୍ୟର ବିଷ୍ଣୁ, କୃଷ୍ଣ ଓ ନାରାୟଣ ମହିମା ପ୍ରଖ୍ୟାପକ ଆଲ୍‌ବାର ମତ, ଜଗନ୍ନାଥଙ୍କ ଲକ୍ଷ୍ମୀ ନାରାୟଣ ସ୍ୱରୂପ ଏବଂ ପୁରୁଷୋତ୍ତମ କ୍ଷେତ୍ରରେ ରାମାନୁଜ, ମଧ୍ୱ, ବିଷ୍ଣୁସ୍ୱାମୀ, ବଲ୍ଲଭାଚାର୍ଯ୍ୟ ଓ ନିମ୍ବାର୍କ ପ୍ରମୁଖଙ୍କ ମତର ପ୍ରଭାବ, ସମ୍ପର୍କରେ ଆଲୋଚନାକରି ଦ୍ୱୈତବାଦୀ ମଧ୍ୱାଚାର୍ଯ୍ୟ ଧର୍ମ ଓ ଦର୍ଶନ କ୍ଷେତ୍ରରେ ରାଧାଙ୍କୁ ପ୍ରଥମ ପ୍ରବେଶ କରାଇଥିବା ଭେଦାଭେଦବାଦୀ ନିମ୍ବାର୍କଙ୍କ ମତ ଉପରେ ଗୁରୁତ୍ୱ ପ୍ରଦାନ କରିଛନ୍ତି । ପୂର୍ବୋକ୍ତ ପରମ୍ପରାସହ ଲୀଳାଶୁକଙ୍କର ଶ୍ରୀକୃଷ୍ଣ କର୍ଣ୍ଣାମୃତ ଓ ଜୟଦେବଙ୍କର ରାଧାକୃଷ୍ଣ ଲୀଳାତ୍ମକ ଅପୂର୍ବ ସଙ୍ଗୀତଧର୍ମୀ କାବ୍ୟ (ଗୀତାଗୋବିନ୍ଦ) ଏବଂ ଆଚାର୍ଯ୍ୟ ଓ ବୈଷ୍ଣବ ଗୋସ୍ୱାମୀଙ୍କ ମତ ଯେ ଓଡ଼ିଶାରେ ଶୁଦ୍ଧାଭକ୍ତି ବୈଷ୍ଣବଧାରା ଓ ତା'ର ସାହିତ୍ୟକୁ ପ୍ରଭାବିତ କରିଛି, ଏଥିରେ ସନ୍ଦେହ ନାହିଁ ।

ମୁଖ୍ୟତଃସନାତନ, ରୂପ ଓ ଜୀବଗୋସ୍ୱାମୀଙ୍କର ସଂସ୍କୃତ ଭାଷାରେ ଲିଖିତ ରଚନାକୁ ଭିତ୍ତି କରି ଶୁଦ୍ଧାଭକ୍ତି ବୈଷ୍ଣବମତର ଦାର୍ଶନିକ ତତ୍ତ୍ୱ ଗଢ଼ିଉଠିଛି । ରୂପ ଗୋସ୍ୱାମୀଙ୍କ ସଂକ୍ଷେପ ଭାଗବତାମୃତ ଓ ଉଜ୍ଜ୍ୱଳ ନୀଳମଣି ଗ୍ରନ୍ଥର ଅନୁସରଣରେ ରଚିତ ଶ୍ରୀକୃଷ୍ଣ ସନ୍ଦର୍ଭ ଓ ପ୍ରୀତି ସନ୍ଦର୍ଭରେ ଜୀବଗୋସ୍ୱାମୀ ସାହିତ୍ୟ ଓ ବୈଷ୍ଣବ ରସଶାସ୍ତ୍ର ମଧ୍ୟ ଦେଇ ରାଧାତତ୍ତ୍ୱ ସମ୍ପର୍କରେ ଆଲୋଚନା କରିଛନ୍ତି । ଗୋସ୍ୱାମୀବୃନ୍ଦଙ୍କ ଆଲୋଚିତ ବ୍ରହ୍ମତତ୍ତ୍ୱ, ପରମାତ୍ମ ତତ୍ତ୍ୱ ଓ ଭଗବତ୍ ତତ୍ତ୍ୱ ଉପରେ ପ୍ରତିଷ୍ଠିତ ହୋଇଛି ସେମାନଙ୍କର ଶକ୍ତିତତ୍ତ୍ୱ ଏବଂ ରାଧାତତ୍ତ୍ୱ । ଏଇ ଶକ୍ତିତତ୍ତ୍ୱଉପରେ ପ୍ରତିଷ୍ଠିତ ଯା'ର ବୀଜ ନିହିତ ରହିଛି ଭାରତୀୟ ଶକ୍ତିବାଦର ଆଦି ମିଥୁନ-ତତ୍ତ୍ୱ ଉପରେ (୧୩)

ଭଗବାନ୍ ଶ୍ରୀକୃଷ୍ଣଙ୍କର ସ୍ୱରୂପ ଶକ୍ତିର ସାରଭୂତା ହ୍ଲାଦିନୀ ଶକ୍ତି; ତା'ର ମୂର୍ତ୍ତିମନ୍ତ ବିଗ୍ରହ ହେଉଛନ୍ତି ଶ୍ରୀରାଧା । ସେ ନିତ୍ୟପ୍ରେମରୂପିଣୀ ପୁଣି ନିତ୍ୟ ପ୍ରେମଦାତ୍ରୀ । ଅନନ୍ତ ହ୍ଲାଦିନୀ ଶକ୍ତିରୂପିଣୀ ରାଧା ପୂର୍ଣ୍ଣ ଭଗବାନ୍ ଶ୍ରୀକୃଷ୍ଣଙ୍କଠାରେ ଅବସ୍ଥାନ କରିଥା'ନ୍ତି । ସେଇ ହ୍ଲାଦିନୀ ଶକ୍ତିର କଣିକାମାତ୍ର ଜୀବଠାରେ ପତିତ ହୋଇ ତାକୁ ପ୍ରେମ ଭକ୍ତିରେ ନିମଜ୍ଜିତ କରିଥାଏ ।

ଓଡ଼ିଶାରେ ଶୁଦ୍ଧାଭକ୍ତି ବୈଷ୍ଣବଧାରା ସଂସ୍କୃତରେ ରଚିତ ଗୋସ୍ୱାମୀ ଗ୍ରନ୍ଥକୁଡ଼ିକର ପଦ୍ୟାନୁବାଦ, ଚରିତଗ୍ରନ୍ଥ, କାବ୍ୟ, ଚମ୍ପୂ, ଚଉତିଶା, ବୋଲି, ଭକ୍ତିଗୀତିକା ବା ପଦ୍ୟାବଳୀ ପରିଲକ୍ଷିତ ହୁଏ; ଏପରିକି ଓଡ଼ିଆ କବିଙ୍କଦ୍ୱାରା ବଙ୍ଗଳାରେ ରଚିତ ତାତ୍ତ୍ୱିକ ରଚନା ଓ ପଦାବଳୀ ମଧ୍ୟ ଦେଖାଯାଏ । ରାୟ ରାମାନନ୍ଦ, ଶିଖି ମହାନ୍ତି, ମାଧବୀ ଦାସୀ, ବଳରାମ ଦାସ (୨ୟ), ପ୍ରତାପରୁଦ୍ର, ସାଲବେଗ ପ୍ରମୁଖ ବ୍ରଜବୁଲିରେ ରାଧା, କୃଷ୍ଣ ଓ ଚୈତନ୍ୟ ଲୀଳା ସମ୍ପର୍କିତ ପଦାବଳୀ ରଚନା କରିଛନ୍ତି ।

କୃଷ୍ଣ ଦାସ କବିରାଜଙ୍କ ଚୈତନ୍ୟଚରିତାମୃତ ଅବଲମ୍ବନରେ ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା ଶ୍ରୀକୃଷ୍ଣ ଚୈତନ୍ୟ ଚରିତାମୃତ ସାର ଭାଗବତ ବୃତ୍ତରେ ରଚନା କରିବା ସହିତ ଚତୁର୍ଦ୍ଦଶାକ୍ଷରୀ ବୃତ୍ତରେ ଚୈତନ୍ୟଙ୍କ ବାଲ୍ୟଲୀଳା ସମ୍ପର୍କରେ ବ୍ରହ୍ମାଣ୍ଡ ମଙ୍ଗଳ ରଚନା କରିଥିଲେ । ବୈଷ୍ଣବକବି ପଦ୍ମଚରଣ ଦାସ (ସାରୋ) ଚୈ.ଚ.ମୃ.ର. ପଦ୍ୟାନୁବାଦ କରିଥିଲେ । ମାଧବ ପଟ୍ଟନାୟକ ଚୈତନ୍ୟ ବିଳାସ, ଈଶ୍ୱର ଦାସ (କ୍ଷିତି ବଂଶୀ) ଚୈତନ୍ୟ ଭାଗବତ ଓ ଭଗବାନ ଦାସ ଗୌରାଙ୍ଗ ଭାଗବତର ରଚୟିତା । କହ୍ନେଇ ଖୁଣ୍ଟିଆଙ୍କର ମହାଭାବ ପ୍ରକାଶ ଐତିହାସିକ ତଥ୍ୟ ଦୃଷ୍ଟିରୁ ମୂଲ୍ୟବାନ୍ ।

ଓଡ଼ିଶାରେ ଶୁଦ୍ଧାଭକ୍ତି ଧାରାର କୋଇଲି ଓ ଚଉତିଶା ମଧ୍ୟରେ ମାର୍କଣ୍ଡ ଦାସଙ୍କ କେଶବ କୋଇଲି, ଗୋପାଳକୃଷ୍ଣଙ୍କର ଯଶୋଦା କଇଲି, ଦାମୋଦର ଦାସଙ୍କର ରସକୋଇଲି ଚଉତିଶା, ଗୋପେନ୍ଦ୍ର କବିଙ୍କ ମଧୁପ ଚଉତିଶା, ବଳରାମ ଦାସଙ୍କର ଦୂତୀ ଚଉତିଶା, ଭୂପତି ପଣ୍ଡିତଙ୍କର ଉଦ୍ଧବ ଚଉତିଶା, ଦୀନକୃଷ୍ଣଙ୍କର ରାଧାଦର୍ଶନ ଚଉତିଶା, ଭକ୍ତଚରଣଙ୍କର ମଧୁପ ଚଉତିଶା ଓ କଳାକଳେବର ଚଉତିଶା ବିଶେଷ ଲୋକପ୍ରିୟ ।

ପଦାବଳୀ (ଚଉପଦୀ, ଭଜନ, ପୋଇ ଆଦି) ରଚନା ମଧ୍ୟରେ ସାଲବେଗଙ୍କର ଭଜନ, କଣ୍ଢ ଦାସ ଓ ବ୍ରଜନାଥଙ୍କର ପୋଇ; ସଦାନନ୍ଦ, ବନମାଳୀ, ଅଭିମନ୍ୟୁ, ବଳଦେବ, ଗୋପାଳକୃଷ୍ଣ, ଯଦୁମଣି, ହରିବନ୍ଧୁ, ଗୌରଚରଣ ପ୍ରଭୃତିଙ୍କର ପଦାବଳୀ ବିଶେଷତଃ ସାଲବେଗ, ବନମାଳୀ ଓ ଗୋପାଳକୃଷ୍ଣଙ୍କ ପଦାବଳୀ ନୈସର୍ଗିକ କବିତ୍ୱ, ଭକ୍ତିମତ୍ତା, ସରଳ ଭାବ, ଭାଷା ଓ ଛନ୍ଦୋମାଧୁର୍ଯ୍ୟ ହେତୁ ବିଶେଷ ଲୋକପ୍ରିୟ ।

ବିଭିନ୍ନ ଧାମରେ ଶ୍ରୀକୃଷ୍ଣଙ୍କର ବିଭିନ୍ନ ଲୀଳା ବିଶେଷତଃ ବୃନ୍ଦାବନରେ ରାଧାକୃଷ୍ଣଙ୍କ ପ୍ରେମଲୀଳା, ଗୋପୀ (ସଖୀ, ମଞ୍ଜରୀ) ଓ ସଖାମାନଙ୍କ ସହ ଲୀଳା ବୈଚିତ୍ର୍ୟକୁ ଭିତ୍ତିକରି ଅଜସ୍ର ଶୁଦ୍ଧାଭକ୍ତି ଧାରାର କାବ୍ୟ ରଚିତ ହୋଇଛି । ସେଗୁଡ଼ିକ ମଧ୍ୟରେ ଚାନ୍ଦକବିଙ୍କର ଗୋପୀଚନ୍ଦନ, ନରସିଂହ ସେଣଙ୍କର ଗୋପକେଳି, ଦନାଇ ଦାସଙ୍କର ଗୋପୀଭାଷା, ବୃନ୍ଦାବନ ଦାସଙ୍କ ରସବାରିଧି, କାର୍ତ୍ତିକ ଦାସଙ୍କ ନବାନୁରାଗ,

(୧୩) ଡଃ ଶଶିଭୂଷଣ ଦାଶଗୁପ୍ତ, ଶ୍ରୀରାଧାର କ୍ରମବିକାଶ, ପୃ. ୯/୧୦

ବଜରି ଦାସଙ୍କ ଅର୍ଥ ଗୋବିନ୍ଦ, ଦୀନକୃଷ୍ଣଙ୍କର ମଧୁମଙ୍ଗଳ, ବୃନ୍ଦାବତୀ ଦାସୀଙ୍କର ପୂର୍ଣ୍ଣତମ ଚନ୍ଦ୍ରୋଦୟ, କବିସୂର୍ଯ୍ୟ ବ୍ରହ୍ମାଙ୍କର ଯୁଗଳରସାମୃତ ଲହରୀ, ଯୁଗଳ ରସାମୃତ ଭଉଁରୀ, ପ୍ରେମତରଙ୍ଗିଣୀ, ବ୍ରଜ ଲୀଳାମୃତ ସମୁଦ୍ର, ଚୌରଚିନ୍ତାମଣି; ଦାସରଥି ଓ କୃପାସିନ୍ଧୁଙ୍କର ବ୍ରଜବିହାର, ପିଣ୍ଡିକ ଶ୍ରୀଚନ୍ଦନଙ୍କର ବସନ୍ତ ରାହାସ, ବ୍ରଜନାଥ ବଡ଼ଜେନାଙ୍କର ଶ୍ୟାମ ରାସୋତ୍ସବ, କେଳିକଳାନିଧି, ଅଭିମନ୍ୟୁ ସାମନ୍ତସିଂହାରଙ୍କ ବିଦଗ୍ଧ ଚିନ୍ତାମଣି ଓ ପ୍ରେମଚିନ୍ତାମଣି, ଶ୍ୟାମସୁନ୍ଦର ଦେବଙ୍କର ଅନୁରାଗ କଳ୍ପଲତା, ଭକ୍ତଚରଣଙ୍କର ମଥୁରାମଙ୍ଗଳ, ବଳଦେବ ରଥଙ୍କର କିଶୋର ଚନ୍ଦ୍ରାନନ୍ଦ ଚମ୍ପୂ ପ୍ରଭୃତି ଉଲ୍ଲେଖଯୋଗ୍ୟ ।

ଅପ୍ରାକୃତ ଚିନ୍ମୟ ପ୍ରେମମୂର୍ତ୍ତି ରାଧା ହରିଙ୍କର ପ୍ରାକୃତ ମାନବରୂପ ଧାରଣ ଜୀବଜଗତର କଲ୍ୟାଣ ଓ ଆନନ୍ଦପାଇଁ । ରାଧାକୃଷ୍ଣଙ୍କର ପାରସ୍ପରିକ ନାମ ଶ୍ରବଣ ଓ ଦର୍ଶନାବଧି ମିଳନ ପର୍ଯ୍ୟନ୍ତ ବାଧା ପ୍ରତିବନ୍ଧକ ମଧ୍ୟରେ କବିମାନେ ସେମାନଙ୍କର ମାନସିକ ଉଦ୍‌ବେଗ, ଉତ୍କଣ୍ଠା ଓ ବିରହାନୁଭୂତିକୁ ମାନବିକତାର ସ୍ପର୍ଶ ଦେଇ ବର୍ଣ୍ଣନା କରିଥାନ୍ତି । ଅଭିମନ୍ୟୁ, ବନମାଳୀ ଓ ଗୋପାଳକୃଷ୍ଣଙ୍କର ରାଧାକୃଷ୍ଣ ଲୀଳାଚିତ୍ର ମାନବ ଜୀବନର ବହୁ ବାସ୍ତବ କରୁଣ ଅନୁଭୂତିରେ ଅନନ୍ତଗର୍ଭା ।

ଓଡ଼ିଆ ସାହିତ୍ୟ ବୈଷ୍ଣବୀୟ ରଚନା ସମ୍ଭାରରେ ପରିପୂର୍ଣ୍ଣ । ଉଭୟ ଜ୍ଞାନମିଶ୍ରା ଭକ୍ତି ଓ ଶୁଦ୍ଧାଭକ୍ତି ଧାରାର ରଚନା ଦୀର୍ଘକାଳ ଧରି ଶ୍ରଦ୍ଧାଳୁ ଉତ୍କଳବାସୀଙ୍କ ଜୀବନରେ ବହୁ ଆଶା, ଆଶ୍ୱାସନା ଓ ଆତ୍ମବିଶ୍ୱାସ ଭରିଦେବା ସଙ୍ଗେ ସଙ୍ଗେ ସେମାନଙ୍କର ଆଧ୍ୟାତ୍ମିକ ଉତ୍ତରଣ ଘଟାଇ ଆସିଛି । ଉଭୟଧାରାର ମୂର୍ତ୍ତ ପ୍ରତୀକ, ସମନ୍ୱିତ ବିଗ୍ରହ ପୁରୁଷୋତ୍ତମ ଜଗନ୍ନାଥ ଓଡ଼ିଆ ବୈଷ୍ଣବ କବିଙ୍କ ରଚନା ମାଧ୍ୟମରେ କେବଳ ଓଡ଼ିଶାବାସୀ ବା ଭାରତବାସୀ ନୁହେଁ, ସମଗ୍ର ବିଶ୍ୱବାସୀଙ୍କୁ ସାମ୍ୟ, ମୈତ୍ରୀ ଓ ପ୍ରୀତିର ବାଣୀ ଶୁଣାଇ ଜୀବନରେ ମାନବିକ ତଥା ଆଧ୍ୟାତ୍ମିକ ଉତ୍କର୍ଷର ଶାଶ୍ୱତ ପ୍ରେରଣା ସଞ୍ଚାର କରିଆସୁଛନ୍ତି ।

ସଂସ୍କୃତିର ଆଦର୍ଶାନ୍ୱିତ, ଲୌକିକ ପ୍ରତିଚ୍ଛବିର ବହୁ ଦୃଷ୍ଟାନ୍ତ ଓଡ଼ିଆ ସାହିତ୍ୟର ବିଭିନ୍ନ ଯୁଗର ରଚନାମାନଙ୍କରୁ ଦିଆଯାଇପାରେ । ବିଭିନ୍ନ ପ୍ରକାର ରଚନାରେ ଚିତ୍ରିତ ବର୍ଣ୍ଣାଶ୍ରମ ଧର୍ମ, ବିବାହ, ଦାମ୍ପତ୍ୟ ଜୀବନ, ଶାସ୍ତ୍ରାନୁମୋଦିତ ଜୀବନଯାତ୍ରା, ନାୟକର ଚାରିତ୍ରିକ ଉତ୍କର୍ଷ, ପାଣ୍ଡିତ୍ୟ, ବୀରତ୍ୱ; ନାୟିକାର ଶିକ୍ଷା, ବିଦୂଷିତା, ପାତିବ୍ରାତ୍ୟନିଷ୍ଠା, ସୌନ୍ଦର୍ଯ୍ୟବୋଧ, ନେପଥ୍ୟବିଧାନ, ନୃତ୍ୟ, ସଙ୍ଗୀତ, ପତ୍ରଲିଖନ, ବ୍ରତ, ତୀର୍ଥଯାତ୍ରା, ଉତ୍ସବ, ଯାନିଯାତ୍ରା, ସାମାଜିକ ଚଳଣି; ନୌଯାତ୍ରା, ବାଣିଜ୍ୟ, ଶିଳ୍ପ, ପଣ୍ୟଦ୍ରବ୍ୟ, ସ୍ଥାପତ୍ୟ, ପଶୁପକ୍ଷୀ ପାଳନ, ସମାଜର ବିଭିନ୍ନ ବର୍ଗର (ଆଦିବାସୀ, ନିଷାଦ, ଶବର, ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଶୂଦ୍ର, ବଣିକ, ସାଧବ, ଯୋଗୀ, ବ୍ରାହ୍ମଚାରୀ, ନପୁଂସକ ଆଦି) ଚରିତ୍ରରୁ ଏହାର ବିଚାର କରାଯାଇପାରେ ।

ସଂସ୍କୃତ, ଅପଭ୍ରଂଶ ଓ ଓଡ଼ିଆ ସାହିତ୍ୟର ବିଭିନ୍ନ ଯୁଗର ରଚନାବଳୀ ଯେ ଏକ ଉନ୍ନତ ସାଂସ୍କୃତିକ ପରମ୍ପରାର ପ୍ରତିଚ୍ଛବି ବହନ କରିଛି, ପୂର୍ବୋକ୍ତ ଆଲୋଚନାରୁ ଏହା ସ୍ପଷ୍ଟ ହେବ ।

ଯୁଗଭେଦରେ ସାଂସ୍କୃତିକ ଧାରାର ପରିବର୍ତ୍ତନ ତଥା ରୂପାନ୍ତର ଚାଲିଛି । ଭାରତ ତଥା ବିଶ୍ୱର ସାମ୍ପ୍ରତିକ ପରିପ୍ରେକ୍ଷୀରେ ଯେପରିଭାବରେ ଦେହାତ୍ମବାଦ, ବସ୍ତୁତାନ୍ତ୍ରିକତା ବଢ଼ିଚାଲିବା ସଙ୍ଗେ ସଙ୍ଗେ ବ୍ୟକ୍ତି ଓ ସାମାଜିକ ସ୍ତରରେ ଲୋଭ, ସ୍ୱାର୍ଥପରତା, ଅବିଚାର, ମୂଲ୍ୟବୋଧର ଅବକ୍ଷୟ ଓ ଚାରିତ୍ରିକ ଅଧୋଗତି ଉଦଗ୍ରଭାବରେ ବଢ଼ିଚାଲିଛି; ଦିନକୁ ଦିନ ଜୀବନଯାତ୍ରା ଯେପରି ଦୁର୍ବହ ହୋଇପଡୁଛି, ଏପରି ସମୟରେ ଉତ୍କଳର ଅଧ୍ୟାତ୍ମଭିତ୍ତିକ ମହାନ୍ ସଂସ୍କୃତି ବିଶ୍ୱବାସୀଙ୍କ ପକ୍ଷରେ ଯେ ଆଶା ଓ ସାନ୍ତ୍ୱନାର ଉତ୍ସ; ଏହା କହିଲେ ଅତ୍ୟୁକ୍ତି ହେବ ନାହିଁ ।

# ଅବସରପ୍ରାପ୍ତ ପ୍ରଫେସର, ଆଶାବଳୀ ଲେନ୍, ଶ୍ରୀ ବିହାର କଲୋନି, କଟକ-୮

# ଉତ୍ତରପୂର୍ବ ଉପାନ୍ତ ଓଡ଼ିଶାର ଇତିବୃତ୍ତ

ଡଃ ଶ୍ରୀକାନ୍ତ ଚରଣ ପାତ୍ର

ଗଙ୍ଗବଂଶର ରାଜତ୍ୱ କାଳରୁ ଉତ୍କଳରେ ପ୍ରଚଳିତ ଥିବା ଶାସନ ବ୍ୟବସ୍ଥା ମୋଗଲମାନଙ୍କ ସମୟରେ ପ୍ରାୟ ଅକ୍ଷୁଣ୍ଣ ରହିଥିଲା ।

ଆଗଙ୍ଗା ଗୋଦାବରୀ ବିସ୍ତୃତ ବିଶାଳ ଉତ୍କଳ ସାମ୍ରାଜ୍ୟକୁ ପାଞ୍ଚଟି ସରକାରରେ ବିଭକ୍ତ କରାଯାଇଥିଲା । ଉତ୍ତରରେ ଦାମୋଦର ନଦୀଠାରୁ ଦକ୍ଷିଣରେ କାଂସବାଂସ ନଦୀଯାଏଁ ପରିବ୍ୟାପ୍ତ 'ଜଳେଶ୍ୱର ସର୍କାର' ଥିଲା ତନ୍ମଧ୍ୟରୁ ବୃହତ୍ତମ । ଅର୍ଥାତ୍ ଏଥିରେ ଏବର ବାଲେଶ୍ୱର ଓ ମେଦିନୀପୁର ଜିଲା ତଥା ବାଙ୍କୁଡ଼ା, ହୁଗୁଳି ଓ ବର୍ଦ୍ଧମାନ ଜିଲା ମାନଙ୍କର ବିସ୍ତୃତ ଅଞ୍ଚଳ ଅଙ୍ଗୀଭୂତ ହୋଇଥିଲା । କିନ୍ତୁ ୧୫୬୮ ଖ୍ରୀ:ରେ ମୁକୁନ୍ଦଦେବଙ୍କ ନିଧନ ପରେ ଏହା ବଙ୍ଗର ଆଫଗାନମାନଙ୍କ ଶାସନାଧୀନ ହେଲା । ମୁର୍ଶିଦ କୁଲିଖାଁ (ଖ୍ରୀ.୧୭୦୩-୧୭୧୦ଖ୍ରୀ.) ଶାସନ କାଳରେ ତତ୍‌କାଳୀନ ମେଦିନୀପୁର ଜିଲ୍ଲାର ବିସ୍ତୃତ ଅଞ୍ଚଳକୁ ବଙ୍ଗରେ ମିଶାଇ ଦିଆଯାଇଥିଲା ବେଳେ ମହମ୍ମଦ ତକୀ ଖାଁ (ଖ୍ରୀ.୧୭୨୭-୧୭୩୪ଖ୍ରୀ.) ଙ୍କ ସମୟରେ ମେଦିନୀପୁର ଜିଲାର ଅବଶିଷ୍ଟ ଭୂଭାଗକୁ ବଙ୍ଗର ଶାସନାଧୀନ କରାଗଲା । ଫଳରେ ସୁବର୍ଣ୍ଣରେଖା ନଦୀ ଓଡ଼ିଶାର ଉତ୍ତର ଓ ଉତ୍ତରପୂର୍ବ ଦିଗରେ ବଙ୍ଗ ଓଡ଼ିଶାର ସ୍ଥାୟୀ ସୀମାରେଖାରେ ପରିଣତ ହେଲା । ସମୟ କ୍ରମେ ମୋଗଲ, ମରହଟ୍ଟା ଓ ଇଂରେଜମାନେ ଉତ୍କଳକୁ ଅଧିକାର କରି ଶାସନଗତ ସୁବିଧା ନାଆଁରେ ଏହାର ଉତ୍ତର ସୀମାକୁ ସଂକୋଚନ କରି ପଡ଼ୋଶୀ ରାଜ୍ୟମାନଙ୍କ ସାଥୀରେ ମିଶାଇ ଦେଇଛନ୍ତି ।

ଏସବୁ ସତ୍ତ୍ୱେ ସୀମାନ୍ତର ଉଭୟ ଅଞ୍ଚଳରେ ଥିବା ଅଧିବାସୀମାନଙ୍କର ଭାଷା ଓ ପରମ୍ପରା ଏକା ପ୍ରକାରର । ଏବେ ପ୍ରଥମଥର ପାଇଁ ଏ ଅଞ୍ଚଳରେ ଅନୁଷ୍ଠିତ ହେଉଥିବା ଉତ୍କଳ ସମ୍ମିଳନୀର ବାର୍ଷିକ ଅଧିବେଶନ ପରିପ୍ରେକ୍ଷୀରେ ଏଠାକାର ଐତିହ୍ୟ ଓ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ସଂପର୍କରେ ସମ୍ୟକ୍ ସୂଚନା ଏ ପ୍ରବନ୍ଧରେ ଉପସ୍ଥାପନ କରାଯାଇଛି ।

ଉତ୍କଳର ଉତ୍ତର ସୀମାନ୍ତର ସୁରକ୍ଷା ନିମିତ୍ତ ନରସିଂହ ଦେବ ୧ମ (୧୨୩୮ ଖ୍ରୀ.-୧୨୬୪ ଖ୍ରୀ.) ତତ୍‌କାଳୀନ ଜଗନ୍ନାଥ ସଡ଼କ ଓ ସୁବର୍ଣ୍ଣରେଖା ନଦୀର ଉଭୟ ପାର୍ଶ୍ୱରେ ସାମରିକ ଦୃଷ୍ଟିରୁ ଗୁରୁତ୍ୱପୂର୍ଣ୍ଣ ସ୍ଥାନମାନଙ୍କରେ ସେତେବେଳେ ପ୍ରଚଳିତ ଥିବା ଅଠର ଦୁର୍ଗ ପରମ୍ପରା ଭିତ୍ତିରେ ଅନେକ ଦୁର୍ଗ ନିର୍ମାଣ କରିଥିଲେ ଯଥା - ରେମୁଣା, ଗଡ଼ପଦା, ବନ୍‌ସଦା (ବସ୍ତା), ଅମରଦନ(ଅମର୍ଦ୍ଧା), ରାଜଘାଟ, ବରଡିହା, ରାଇବଣିଆ, ଫୁଲଣଗଡ଼ସାହି, ହାତୀଗଡ଼, ଦେଉଳଗାଁ, ଜଳେଶ୍ୱର, ଦାନ୍ତୁନ୍, ନାରାୟଣ ଗଡ଼, କୋଶିଆଡ଼ି, ନୟାଗ୍ରାମ, ବାଣିଦା, ଖଡ଼୍ଗପୁର, ମେଦିନୀପୁର ଓ ତାମ୍ରଲିପ୍ତ ଇତ୍ୟାଦି । ତନ୍ମଧ୍ୟରୁ ତିନିଦିଗରୁ ସୁବର୍ଣ୍ଣରେଖା ନଦୀ ଦ୍ୱାରା ଆବଦ୍ଧ ଓ କେବଳ ପଶ୍ଚିମ ଦିଗରେ ଘନଜଙ୍ଗଲ ପରିପୂର୍ଣ୍ଣ ସ୍ଥଳଭାଗ ଦ୍ୱାରା ବାହାର ଦୁନିଆ ସହିତ ସଂଯୁକ୍ତ ରାଇବଣିଆ ଅଞ୍ଚଳରେ ସମଗ୍ର ପୂର୍ବ ଭାରତର ବୃହତ୍ତମ ରାଇବଣିଆ ଦୁର୍ଗ ଅବସ୍ଥିତ । ଏହାର ଉତ୍ତର ଓ ପୂର୍ବ ଦିଗର ପାଚେରୀ ପ୍ରତ୍ୟେକ ୧୬୫୦ ଗଜ, ଉତ୍ତର ପଶ୍ଚିମ ଓ ଦକ୍ଷିଣ ଦିଗର ପାଚେରୀ ୮୮୦ ଗଜ ଓ ଦକ୍ଷିଣ ପଶ୍ଚିମ ପ୍ରାଚୀର ୧୫୫୦ ଗଜ । ଏ ଦୁର୍ଗର ମୂଳ ପତ୍ତନ ୧୧୨ଫୁଟ ଥିବାବେଳେ ଉଚ୍ଚତା ଥିଲା ୫୦ ଫୁଟ ଓ ଏହା ଉପରେ ୪ ଫୁଟ ବହଳର ମାଟିର ଲେପ ବାଢ଼ାବ ଦିଆଯାଇଆଇଥିଲା । ମାଙ୍କଡ଼ା ପଥରରେ ନିର୍ମାଣ କରାଯାଇଥିବା ଦୁର୍ଗର ଚତୁର୍ଦ୍ଦିଗରେ ଗୋଟିଏ ଓ ତାଠୁଁ ଅଧ ମାଇଲ ଦୂରରେ ଅନ୍ୟ ଏକ ସୁଗଭୀର ଓ ବିପଦସଂକୁଳ ଗଡ଼ଖାଇ ରହିଥିଲା । ଏହି ପଞ୍ଚକୋଶୀ ଦୁର୍ଗର ଆୟତନ ୦୬ ବର୍ଗ କି.ମି. ଥିଲାବୋଲି ଜନ୍ ବୀମ୍‌ସ ମତ ପୋଷଣ କରନ୍ତି ।

ଦୁର୍ଗର ଅଭ୍ୟନ୍ତରରେ ଉତ୍ତରପୂର୍ବ ଦିଗରେ ରାଜପ୍ରସାଦ, ପଶ୍ଚିମ ପାର୍ଶ୍ୱରେ ଶ୍ରୀ କିଚକେଶ୍ୱରୀ ମନ୍ଦିର, ଜୟଚଣ୍ଡୀ ବନ, ନିରୀକ୍ଷଣ ସ୍ତମ୍ଭ, ଦକ୍ଷିଣପୂର୍ବ ଦିଗରେ ଭଣ୍ଡାର ଦେଉଳ ଓ ସାତଗମ୍ଭୀରା ଅଟ୍ଟାଳିକା ଇତ୍ୟାଦି ରହିଥିଲା ବେଳେ ଦୁର୍ଗର ବାହାର ପାର୍ଶ୍ୱରେ ଏବେ ବି ଯୋଡ଼ା ହଳିଆ କୁଅକବାଟୀ ଘାଟୀ, ହାତୀଗଡ଼, ଫୁଲହଡା ଗଡ଼ସାହି, କ୍ଷେତ୍ରପାଳ ପାଉତି ବହୁ ଗୁରୁତ୍ୱପୂର୍ଣ୍ଣ ସ୍ଥାନମାନ ରହିଅଛି । ଦୁର୍ଗର ପୂର୍ବ ଦ୍ୱାରକୁ ସିଂହଦ୍ୱାର, ବା ଘଣ୍ଟଦ୍ୱାର, ପଶ୍ଚିମ ଦ୍ୱାରକୁ 'ହସ୍ତୀଦ୍ୱାର', ବା 'ହାତୀବନ୍ଧା ଦ୍ୱାର' ଏବଂ ଦକ୍ଷିଣ ଦ୍ୱାରକୁ 'ସୁଳାମୁଖୀ ଦ୍ୱାର' ବୋଲି କୁହାଯାଉଛି । ପୂର୍ବ ଓ ପଶ୍ଚିମ ଦ୍ୱାର ଗୁଡ଼ିକର ଧ୍ୱଂସାବଶେଷ ଆଜି ବି ଦର୍ଶକମାନଙ୍କୁ ବିମୁଗ୍ଧ କରୁଥିବାବେଳେ ଦକ୍ଷିଣଦ୍ୱାର ଓ ପ୍ରାଚୀର ସମୂଳେ ଧ୍ୱଂସ ହୋଇ ଯାଇଛି । ଉତ୍ତର ଦିଗରେ କୌଣସି ଦ୍ୱାର ନଥିଲା । ଫକୀରମୋହନ ସେନାପତିଙ୍କ 'ଲଛମା' ଉପନ୍ୟାସରୁ ଜଣାଯାଏ ଯେ ମରହଟ୍ଟାମାନେ ଏହି ଦିଗରେ ଥିବା ପାଚେରୀକୁ ବାରୁଦ ସୁଡ଼ଙ୍ଗ (ମାଇନ) ଦ୍ୱାରା ନଷ୍ଟ କରିଦେଇ ଦୁର୍ଗ ମଧ୍ୟରେ ପ୍ରବେଶ କରିଥିଲେ ।

ବୈଦେଶିକ ଶାସନ ଯଥା ଆଫଗାନ, ମୋଗଲ, ମରହଟ୍ଟା ଓ ଇଂରେଜମାନଙ୍କ ରାଜତ୍ୱ କାଳରେ ଓଡ଼ିଶାର ସୀମା ସଂକୋଚନ କରି ଦିଆଯିବା ସହିତ ରାଇବଣିଆ ଭଳି ଅନେକ ଦୁର୍ଗକୁ ନଷ୍ଟ କରି ଦିଆଯାଇଛି ଏବଂ ପ୍ରାଚୀନ ସମୟର କଳା କୌଶଳରେ ନିର୍ମିତ ଏହି ଦୁର୍ଗଗୁଡ଼ିକ କାଳକ୍ରମେ ଅଦରକାରୀ ବିବେଚିତ ହୋଇ ପରେ ପରିତ୍ୟକ୍ତ ହୋଇଛି । ଏପରିକି ଇଂରେଜ ଅମଳରେ ରାଇବଣିଆ ଦୁର୍ଗ ମଧ୍ୟରେ ନୀଳଚାଷ କରାଯାଉଥାଏ । ଦୁର୍ଗ ଅଭ୍ୟନ୍ତରରେ 'ନନ୍ଦିକା' ପୋଖରୀ ନିକଟରେ ନୀଳକୋଠୀର ଭଗ୍ନାବଶେଷ ଏବେବି ବିଦ୍ୟମାନ ।

ତଥାପି ଧ୍ୱଂସପ୍ରାୟ ରାଇବଣିଆ ଦୁର୍ଗର ବିଶାଳତା, ପ୍ରାଚୀର ଶ୍ରେଣୀର ଉଚ୍ଚତା ଓ ପରିଖା ତଥା ଜଳଯନ୍ତ୍ର ଓ କୌଶଲ୍ୟା ଭଳି ବିଶାଳ ପୁଷ୍କରଣୀ ଗୁଡ଼ିକର ଗଭୀରତା ଆଜି ବି ଦର୍ଶକମାନଙ୍କ ମନରେ ଭୀତି ସଞ୍ଚାର କରେ । ଏବେ ଏହାର ଅଭ୍ୟନ୍ତରରେ ଜନବସତିମାନ ଗଢ଼ି ଉଠିଲାଣି । ଏହାର ପ୍ରତ୍ନତାତ୍ତ୍ୱିକ ଖନନ କରାଯିବା ସହିତ ଅବଶିଷ୍ଟ ଥିବା ବିଭବର ସୁରକ୍ଷା ଦିଗରେ ପଦକ୍ଷେପ ନିଆଯିବା ଆବଶ୍ୟକ ।

ଏ ଦୁର୍ଗରେ ଅଦୂରରେ ପୂର୍ବଦିଗରେ ସୁବର୍ଣ୍ଣରେଖା ନଦୀକୂଳରେ ରହିଛି 'କବିଡିହ'-ଅଷ୍ଟାଦଶ ଶତାବ୍ଦୀରେ ରସ ବିନୋଦ, ରସକଲ୍ଲୋଳ, ଜଗମୋହନ ଛାନ୍ଦ, ଆର୍ତ୍ତତ୍ରାଣ ଚଉତିଶା, ନାମରତ୍ନ ଗୀତା ଓ ବୈଦ୍ୟଶାସ୍ତ୍ର ଆଦି ଅସଂଖ୍ୟ ଗ୍ରନ୍ଥର ପ୍ରଣେତା ଦୀନକୃଷ୍ଣ ଦାସଙ୍କ ଜନ୍ମପୀଠ । ଊନବିଂଶ ଶତାବ୍ଦୀର ଶେଷଭାଗରେ ଓଡ଼ିଆ ଭାଷା ବିଲୋପ ଆନ୍ଦୋଳନ କାଳରେ ଓଡ଼ିଆ ଭାଷାର ସ୍ୱତନ୍ତ୍ରତା ଓ ପ୍ରାଚୀନତା ପ୍ରମାଣ କରିବା ନିମନ୍ତେ ତତ୍କାଳୀନ ବାଲେଶ୍ୱର ଜିଲାର କଲେକ୍ଟର ଜନ୍ ବିମ୍ସ 'ରସକଲ୍ଲୋଳ' କାବ୍ୟକୁ ଇଂରେଜୀରେ 'The waves of Delight' ନାମରେ ନାମିତ କରି ଅଭିମତ ଉପସ୍ଥାପନ କରିଥିଲେ ଯେ 'xxx because of the time Dinakrushna write the Bengali language did not exist in its present form' ଅର୍ଥାତ୍ ଦୀନକୃଷ୍ଣ ଦାସଙ୍କ ସମୟରେ ଓଡ଼ିଆ ଭାଷା ଯେଉଁ ସ୍ତରରେ ପହଞ୍ଚିଥିଲା ବଙ୍ଗଳା ଭାଷା ସେ ସ୍ତରରେ ପହଞ୍ଚିନଥିଲା ଅର୍ଥାତ୍ ବହୁତ ନିମ୍ନରେ ରହିଥିଲା । କହିବାକୁ ଗଲେ ଏଇ ଭାଷା ତାର ଏନ୍ତୁଡ଼ି ଶାଳରେ ରହିଥିଲା ।

କବି ଦୀନକୃଷ୍ଣ ଦାସଙ୍କ ଜନ୍ମପରେ ନିର୍ମିତ ହୋଇଛି 'ସ୍ମୃତି ମନ୍ଦିର' । ଏହାର ଉନ୍ନତି କରାଯାଇ କବିଙ୍କ କୃତିର ଉପଯୁକ୍ତ ମୂଲ୍ୟାୟନ କରାଯିବା ନିମନ୍ତେ ଆବଶ୍ୟକ ଭିତ୍ତିଭୂମି, ଯଥା ତାଙ୍କର ସମସ୍ତ ସାରସ୍ୱତ ସୃଷ୍ଟିର ପ୍ରକାଶନ, ଗବେଷଣା ଇତ୍ୟାଦି କରାଯିବା ଦରକାର ।

ପୁନଶ୍ଚ ସେଇ ଦୁର୍ଗ ଓ ଦୀନକୃଷ୍ଣ ଦାସଙ୍କ ଜନ୍ମସ୍ଥାନ ମୁଣ୍ଡୁଡୁଣିଆ ଗ୍ରାମର ଉତ୍ତରକୁ ରହିଛି ମାଙ୍କିଡ଼ିଆ ଓ କୁଆଁରପୁର ଗ୍ରାମ ଦୁଇଟି ଯେଉଁଠି କି ପୃଥିବୀ ପ୍ରସିଦ୍ଧ ଟସରବସ୍ତ୍ର ଉତ୍ପାଦନ କରାଯାଏ ।

ଏହି ସ୍ଥାନର ଅଳ୍ପ ଉତ୍ତରକୁ ସୁବର୍ଣ୍ଣରେଖା କୂଳରେ ଶ୍ରୀ ଶ୍ୟାମାନନ୍ଦ ପ୍ରଭୁ, ଶ୍ରୀ ରସିକାନନ୍ଦ ପ୍ରଭୁଙ୍କ

ସ୍ଥାପିତ ଶ୍ରୀ ଶ୍ରୀ ରାଧାଗୋବିନ୍ଦ ଜୀଉ ବିଗ୍ରହ ଗୋପୀବଲ୍ଲଭପୁର ଗ୍ରାମରେ (ଏବେ ପଶ୍ଚିମ ବଙ୍ଗ) ବିଜେ କରୁଛନ୍ତି । ଶ୍ରୀ ଶ୍ୟାମାନନ୍ଦୀ ପରିବାରଭୁକ୍ତ ବୈଷ୍ଣବମାନଙ୍କ ନିମନ୍ତେ ଏହା ଅବଶ୍ୟ ଦର୍ଶନୀୟ ତୀର୍ଥସ୍ଥଳୀ ଅଟେ । ସେହିଭଳି ମୁଣ୍ଡୁତୁଣିଆ ଗ୍ରାମର ଦକ୍ଷିଣକୁ କୁଣ୍ଡଳୀ ଗ୍ରାମରେ ଶ୍ରୀ ରସିକାନନ୍ଦ ପ୍ରଭୁଙ୍କ ସ୍ତ୍ରୀ ଶ୍ରୀ ଶ୍ୟାମଦାସୀଙ୍କ ଲୀଳାକ୍ଷେତ୍ର / ସମାଧିପୀଠ ଓ ତାଙ୍କ ସ୍ଥାପିତ ଶ୍ରୀ କୃଷ୍ଣ ଚୈତନ୍ୟ ବିଗ୍ରହ ବିରାଜମାନ କରୁଅଛି ।

ଜଳେଶ୍ୱର ଠାରୁ ୧୦ କି.ମି. ଉତ୍ତରକୁ ଲକ୍ଷ୍ମଣନାଥ ଗ୍ରାମରେ ପୂର୍ବତନ ଜମିଦାର ରାୟ ମହାଶୟ ବଂଶର ବିରାଟ ପ୍ରାସାଦ, ଅଷ୍ଟଶମ୍ଭୁ ଲିଙ୍ଗ, ମା ଶ୍ୟାମାକାଳୀଙ୍କ ମନ୍ଦିରର ମାର୍ବଲ ଦେହରେ ଖୋଦିତ ସୂକ୍ଷ୍ମ କାରୁକାର୍ଯ୍ୟ ଭ୍ରମଣେଚ୍ଛୁ ମଣିଷଙ୍କୁ ଆକୃଷ୍ଟ କରେ । ସେହିଭଳି ଦାନ୍ତୁନ (ପ.ବଂଗ)ଠାରେ ଶ୍ୟାମଳେଶ୍ୱର, ସାହାଡାପିକ ଗ୍ରାମରେ ଶ୍ରୀ ତିଳେଶ୍ୱର (ପ.ବଙ୍ଗ) କମର୍ଦ୍ଧା ଗ୍ରାମରେ ଦ୍ୱାଦଶ ଶିବଲିଙ୍ଗ ଓ ପ୍ରାଚୀନ ଜଗନ୍ନାଥ ମନ୍ଦିର ରହିଥିବାବେଳେ ଚନ୍ଦନେଶ୍ୱର ଠାରେ ବିଖ୍ୟାତ ଶୈବପୀଠରେ ଶ୍ରୀ ଚନ୍ଦନେଶ୍ୱର ଦେବ ନିଜର ମହିମା ଦ୍ୱାରା ଲକ୍ଷଲକ୍ଷ ଭକ୍ତଙ୍କୁ ଆକୃଷ୍ଟ କରନ୍ତି ।

ସୁବର୍ଣ୍ଣରେଖା ନଦୀ ଯେଉଁଠି ସାଗର ସହିତ ମିଶିଯାଇ ନିଜର ସତ୍ତାକୁ ବିଲୀନ କରିଦେଇଛି ସେଇ ମୁହାଣ ନିକଟରେ ଏସିଆର ବୃହତ୍ତମ ଶିବଲିଙ୍ଗ ଶ୍ରୀ ଶ୍ରୀ ଭୁଷଣ୍ଡେଶ୍ୱର ମହାଦେବଙ୍କ ଆସ୍ଥାନ ରହିଛି । ଏହାର ଉଚ୍ଚତା ୧୨ ଫୁଟ ୬ ଇଞ୍ଚ ଓ ମୋଟେଇ ୧୪ ଫୁଟ ହୋଇ ଥିବାବେଳେ ଶକ୍ତିର ପରିସର ୩୭ଫୁଟ ଓ ଜଳାଧାର ୫ ଫୁଟ ଅଟେ । ଶୁଣାଯାଏ ଇଂରେଜ ଶାସନ କାଳରେ ଏହି ଶିବଲିଙ୍ଗଙ୍କୁ ସ୍ଥାନାନ୍ତରିତ କରିବା ଦିଗରେ ଉଦ୍ୟମ ହୋଇଥିଲେ ବି କରାଯାଇ ପାରିନଥିଲା । ଏବେ ସମୁଦ୍ର ସେଠାରୁ ଦୂରକୁ ଘୁଞ୍ଚିଯାଇ ସ୍ଥଳଭାଗ ସୃଷ୍ଟି ହୋଇଛି ଓ ଯାତାୟାତ ନିମନ୍ତେ ରାସ୍ତାର ମଧ୍ୟ ସୁବିଧା ହେଲାଣି । ଭୋଗରାଇର ବାଟଗ୍ରାମଠାରୁ କୋଷ୍ଟକେନାଲରେ ମୋଟର ଲଞ୍ଚରେ ବା ନୌକାରେ ମୁହାଣ ଯାଏଁ ଯାଇ ଦେବତାଙ୍କୁ ଦର୍ଶନ କଲେ ଏକ ବିରଳ ଅନୁଭୂତି ଉପଲବ୍ଧ ହୁଏ ।

ନଦୀର ଅପର ପାର୍ଶ୍ୱରେ ଜାମୁକୁଣ୍ଡାଠାରେ ଏକ ପ୍ରାଚୀନ ଗଡ଼ର ଭଗ୍ନାବିଶେଷ ରହିଅଛି । ଏଠାରେ ମଧ୍ୟ ବିଜେ କରିଛନ୍ତି ଶ୍ରୀ ମାଧବଜୀଉ । ଜାମୁଶୂଳୀ ଠାରୁ ପ୍ରାୟ ଦଶ କି.ମି. ଦକ୍ଷିଣରେ ପୂଜିତ ଶ୍ରୀ ଶ୍ରୀ ଲଙ୍ଗଳେଶ୍ୱର ମହାଦେବ ଭାରତୀୟ କୃଷି ସଭ୍ୟତାର ପ୍ରତୀକ । ତାଙ୍କର ମନ୍ଦିର ଗାତ୍ରରେ ସୂର୍ଯ୍ୟଦେବ, ଦଶଭୁଜା ଦୁର୍ଗା ଓ ନାନାବିଧ ମୂର୍ତ୍ତି ଶୋଭା ପାଉଛନ୍ତି । ମନ୍ଦିରର ଦକ୍ଷିଣରେ ପାର୍ବତୀ ନଦୀ ପ୍ରବାହିତ । ଜନଶ୍ରୁତି କହେ ଯେ ମହାଦେବ ମନ୍ଦିର ସଂଲଗ୍ନ 'ଷୋଳଶା ପାଣ୍ଡ'ରେ କୃଷିକାର୍ଯ୍ୟ କରୁଥିଲେ । ଏ ପାଣ୍ଡର ଲମ୍ବ ପୂର୍ବରୁ ପଶ୍ଚିମକୁ ପ୍ରାୟ ୮ ମାଇଲ ଓ ଉତ୍ତର ଦକ୍ଷିଣକୁ ପ୍ରସ୍ଥ ପ୍ରାୟ ୨ ମାଇଲ । ଆଉ ଏକ ଲୋକ କଥା ଅନୁସାରେ ଏଠାରେ ଉତ୍କଳ ନରେଶଙ୍କର ଏକ ନୌବାହିନୀ କେନ୍ଦ୍ର ରହିଥିଲା ଏବଂ ପୂର୍ବେ ଏହା ସମୁଦ୍ର ସହିତ ସଂଯୁକ୍ତ ଥିଲା ।

ଅନ୍ୟ କେତୋଟି ଚିତ୍ତ ଉଲ୍ଲାସକ ଓ ମନୋମୁଗ୍ଧକର ସ୍ୱାସ୍ଥ୍ୟକର ସ୍ଥଳୀହେଲା ଲଙ୍ଗଳେଶ୍ୱର ଠାରୁ ୧୭ କି.ମି. ଦୂରରେ ଚଉମୁଖ-ଡଗରା; ଚନ୍ଦନେଶ୍ୱର ନିକଟବର୍ତ୍ତୀ ଉଦୟପୁର ଓ ତାଳସାରି ବେଳାଭୂମି । ସମୁଦ୍ରକୂଳେ କୂଳେ ବିସ୍ତୀର୍ଣ୍ଣ ଝାଉଁବଣର ସବୁଜିମା, ଢେଉଢେଉକା ବାଲିକୁଦ, ନାଲିଗୁଲୁଗୁଲୁ ସାଧବବୋହୂ ରୂପେ ପରିଚିତ ନାଲି କଙ୍କଡ଼ାର କୌତୁକିଆ ଦୌଡ଼, ଜ୍ୟୋତ୍ସ୍ନାବିଧୌତ ରଜନୀରେ ସମୁଦ୍ରର ତରଙ୍ଗରାଜିର ରଜତଶୁଭ୍ର ବର୍ଣ୍ଣ ଧାରଣ ଓ ସୂର୍ଯ୍ୟୋଦୟ-ସୂର୍ଯ୍ୟାସ୍ତ ସମୟରେ ସମୁଦ୍ର ଦିଗ୍‌ବଳୟର ଅପୂର୍ବ ରକ୍ତିମ ଆଭା ଜନମାନସକୁ ବିମୋହିତ କରିବା ସହିତ ଜାଗତିକ ଦୁଃଖଜଞ୍ଜାଳରୁ ମୁକ୍ତ କରି କଳ୍ପଲୋକକୁ ନେଇଯାଏ । ସେହିଭଳି ସମୁଦ୍ର ଓ ସୁବର୍ଣ୍ଣରେଖା କୂଳରେ ରହିଛି ଅନେକ 'ବଣଭୋଜୀସ୍ଥଳୀ' ବା ପିକ୍‌ନିକ୍ ସ୍ପଟ୍ ଯାହା ରାଜ୍ୟ ଓ ରାଜ୍ୟ ବାହାରର ଅସଂଖ୍ୟ ଲୋକଙ୍କୁ ଆକୃଷ୍ଟ କରେ । ଏସବୁ ସତ୍ତ୍ୱେ ଭିତ୍ତିଭୂମିର ବିକାଶ ଘଟି ନଥିବାରୁ ପର୍ଯ୍ୟଟନ କେନ୍ଦ୍ରଗୁଡ଼ିକ ସ୍ଥାନୀୟ ଅଧିବାସୀଙ୍କୁ ଓ ରାଜ୍ୟର ଅର୍ଥନୀତିକୁ ସମୃଦ୍ଧ କରି ପାରୁନି ।

ପୂର୍ବେ ସୁବର୍ଣ୍ଣରେଖା ମୁହାଣରେ ଥିଲା 'ପିପିଲି' ବନ୍ଦର ଏବଂ ସେଠାରେ ଗଢ଼ି ଉଠିଥିଲା ବନ୍ଦର ନଗରୀ ।

ଏଠାରେ ପର୍ତ୍ତୁଗୀଜ, ଡଚ ଓ ଇଂରେଜମାନେ ବାଣିଜ୍ୟ କୋଠୀମାନ ସ୍ଥାପନ କରିଥିଲେ । ମାତ୍ର ଏବେ ତାହା ଅବଲୁପ୍ତ । ସେହିଭଳି ନୌବାଣିଜ୍ୟରେ ସହାୟତା କରୁଥିବା ସୁବର୍ଣ୍ଣରେଖା ନଦୀର ଗର୍ଭ ଆଦି ପୋତିହୋଇ ପଡ଼ିଛି ।

ଆଗେ ସୁବର୍ଣ୍ଣରେଖା ନଦୀ ଓ ନିକଟବର୍ତ୍ତୀ ସମୁଦ୍ରରୁ ମିଳୁଥିଲା ପ୍ରଚୁର ମାଛ । ମାତ୍ର ସାଗର ବକ୍ଷରେ ଅନ୍ୟ ପ୍ରଦେଶର ଓ ବିଦେଶୀ ମତ୍ସ୍ୟଜୀବିମାନଙ୍କର ଅନୁପ୍ରବେଶ ତଥା ସୁବର୍ଣ୍ଣରେଖା ନଦୀଗର୍ଭ ପୋତି ହୋଇଥିବା ଯୋଗୁଁ, ସ୍ଥାନୀୟ ମତ୍ସ୍ୟଜୀବିମାନଙ୍କର ଆର୍ଥିକ ମାନଦଣ୍ଡ ଦୋହଲି ଯାଇଛି ।

ଆମ ପ୍ରଦେଶର ଅର୍ଥନୀତିକୁ ସମୃଦ୍ଧ କରୁଥିବା ବିଶ୍ୱବିଖ୍ୟାତ ବୀରକୁଳ ପାନ, ଚିତ୍ରିତ ମସିଣା ଓ ସୁସ୍ୱାଦୁ ନାରିକେଳ ଫଳ ସ୍ଥାନୀୟ ଅଧିବାସୀମାନଙ୍କର ଅକ୍ଳାନ୍ତ ପରିଶ୍ରମର ଫଳଶ୍ରୁତି ।

ମହାତ୍ମାଗାନ୍ଧୀଙ୍କର ଆହ୍ୱାନରେ ଏବଂ ଡଃ ହରେକୃଷ୍ଣ ମହତାବଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଦେଶର ସ୍ୱାଧୀନତା ଆନ୍ଦୋଳନରେ ଏ ମାଟିର ବରପୁତ୍ରମାାନେ ଅଂଶ ଗ୍ରହଣ କରିଛନ୍ତି । ସୁବର୍ଣ୍ଣରେଖା କୂଳସ୍ଥ ଝାଡ଼ପିମ୍ପଳ ଓ ଚମାରଗାଁ ଗ୍ରାମରେ ପ୍ରତିଷ୍ଠିତ ହୋଇଥିଲା ଯଥାକ୍ରମେ 'କର୍ମ ମନ୍ଦିର' ଏବଂ କର୍ମୀତାଲିକା ଓ ସୂତାକଟା କେନ୍ଦ୍ର ।'' ପ୍ୟାରୀମୋହନ ଦାସ, ଦୁର୍ଗା ଦାସ, କୃଷ୍ଣପ୍ରସାଦ ଜେନା, ଜଗନ୍ନାଥ ଦାସ ଅଧିକାରୀ, ପଦ୍ମନାଭ କାସ୍ତ, ସତ୍ୟେନ୍ଦ୍ର ନାଥ ଡଗର, କିଣାରାମ ଦାସ, ଫଣୀ ଭୂଷଣ ଦାସ, ଗଙ୍ଗା ନାରାୟଣ ଦାସ, ଶ୍ରୀନାଥ ରାଜ, ବୃନ୍ଦାବନ ରାଜ, ଶ୍ରୀକାନ୍ତ ପାଳ, ପୂର୍ଣ୍ଣଚନ୍ଦ୍ର ସେନାପତି, ଶ୍ରୀନାଥ ଚନ୍ଦ୍ର କର ଓ ଆଦିବାସୀ ନେତା ରାଖାଲ ସିଂ, କୁଆଁରିଆ ସାନ୍ତାଳ ତଥା କୈଳାସ ସିଂ ପ୍ରଭୃତିଙ୍କର ତ୍ୟାଗ ଓ ତିତିକ୍ଷାର ପଟାନ୍ତର ନାହିଁ ।

ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତିର ପ୍ରସାର ଓ ସଂରକ୍ଷଣ ପାଇଁ ଜଳେଶ୍ୱର 'ଦୀନକୃଷ୍ଣ ସ୍ମୃତି ପରିଷଦଥ, 'ରାଇବଣିଆ ଦୁର୍ଗ ଓ ଆଞ୍ଚଳିକ ଉନ୍ନୟନ କମିଟି', ଭୋଗରାଇର 'ଡଃ ହରେକୃଷ୍ଣ ମହତାବ ଏକାଡେମୀ', ଜଳେଶ୍ୱର 'ଶିଶୁ ସାହିତ୍ୟ ସଂସଦ', 'ବାପୁ ସ୍ମାରକ ନିକେତନ', ସୁନାରୁଇର 'ରାଧାମାଧବ ଗିରି ପୂଜ୍ୟପୂଜା ସଂସଦ', ବାଲିଆପାଳର 'ସୁବର୍ଣ୍ଣରେଖା ସାଂସ୍କୃତିକ ବିକାଶ ପରିଷଦ' ପ୍ରଭୃତି ଅନୁଷ୍ଠାନଗୁଡ଼ିକ ସତତ କାର୍ଯ୍ୟରତ ।

ଆମ ପୂର୍ବପୁରୁଷଙ୍କର ଶ୍ରମ ଓ ସାଧନାରେ ସମୃଦ୍ଧ ମେଦିନୀପୁର ଜିଲ୍ଲା ଆଜି ପଶ୍ଚିମବଙ୍ଗର ଅନ୍ତର୍ଭୂକ୍ତ । ସେଠାକାର ଅଧିବାସୀ ମାନଙ୍କର ବଦଳିଯାଉଥିବା ଚଳଣି ଓ ଅପମିଶ୍ରିତ ହେଉଥିବା ଭାଷା ସହିତ ତାଳଦେଇ ଲୋପ ପାଇଯାଉଥିବା ସେ ଅଞ୍ଚଳରେ ବିଶେଷତଃ ମୋହପୁରର ଓ ଦେଉଳଗ୍ରାମର ପ୍ରାଚୀନ ଜଗନ୍ନାଥ ମନ୍ଦିର ଏବଂ ଅନ୍ୟତ୍ର ଅବସ୍ଥିତ ଭାଗବତ ଟୁଙ୍ଗୀ ଗୁଡ଼ିକର ପୁନରୁଦ୍ଧାର ନତୁବା ନୂତନ କରି ସ୍ଥାପନ କରାଯିବା ନିହାତି ଆବଶ୍ୟକ । ଓଡ଼ିଆ ଭାଷା ଶିକ୍ଷାଦାନପାଇଁ ବିଛିନ୍ନାଞ୍ଚଳରେ ଓଡ଼ିଆ ମାଧ୍ୟମ ବିଦ୍ୟାଳୟ ପ୍ରତିଷ୍ଠା ସାଙ୍ଗକୁ ନଷ୍ଟ ହୋଇଯାଉଥିବା ଓଡ଼ିଆ ତାଳପତ୍ର ପୋଥୀଗୁଡ଼ିକର ସଂଗ୍ରହ ଓ ସଂରକ୍ଷଣ ଦିଗରେ ଉଭୟ ଓଡ଼ିଶା ସରକାର ଏବଂ ଉତ୍କଳ ସମ୍ମିଳନୀ ଆଶୁ ପଦକ୍ଷେପ ନେବା ଦରକାର । ସେ ଅଞ୍ଚଳ ଆଉ ଓଡ଼ିଶାକୁ ଫେରି ଆସିବାର ସମ୍ଭାବନା ନଥିବା ବେଳେ ଆଉ ଅଧିକ ଅଞ୍ଚଳ ଯେମିତି ପଶ୍ଚିମ ବଙ୍ଗକୁ ଚାଲିନଯାଏ ଏ ଦିଗରେ ଓଡ଼ିଶା ସରକାର ଦୃଷ୍ଟି ଦେବା ନିହାତି ଜରୁରୀ । ସୀମାନ୍ତରଗ ଅଶୀଖଣ୍ଡ ଗାଁ ବର୍ତ୍ତମାନ ବିବଦମାନ ସ୍ଥିତିକୁ ଆସିଗଲାଣି । ଶଙ୍ଖମେଦୀ ଗ୍ରାମ, ମାଙ୍କଡ଼ିଆ ଓ ବିଳାସପୁର ମୌଜାର ନୌକାଘାଟ ଭଳି ଅନେକ ସଂପୂର୍ଣ୍ଣ ଓଡ଼ିଶାରେ ଥିବା ଗ୍ରାମଗୁଡ଼ିକ ଏବେ ପଶ୍ଚିମବଙ୍ଗ ସରକାର ନିଜ ଦଖଲକୁ ନେଇ ଯାଉଛନ୍ତି । ସ୍ଥାନୀୟର ସଚେତନ ନାଗରିକମାନଙ୍କର ପ୍ରତିବାଦ ସମସ୍ୟା ସମାଧାନରେ ଓଡ଼ିଶା ସରକାରଙ୍କର ନିଷ୍କ୍ରିୟତାରୁ ସୁଫଳ ଦେଇ ପାରୁନି ।

ଏକଦା 'ଉତ୍କଳ ସମ୍ମଳନୀ'ର ପତାକାତଳେ ଉତ୍କଳର ବରପୁତ୍ରମାନେ ଏକତ୍ରିତ ହୋଇ ଏକନିଷ୍ଠ ଭାବରେ କାର୍ଯ୍ୟ କରିଥିବାରୁ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ସମ୍ଭବ ହୋଇଥିଲା । ଆଜି ଓଡ଼ିଶାର ଅଖଣ୍ଡତା ଏବଂ ବିଚ୍ଛିନ୍ନାଞ୍ଚଳରେ ଆମ ଭାଷା, ସାହିତ୍ୟ ଓ ସଂସ୍କୃତିର ସୁରକ୍ଷା ଦିଗରେ ସେହି ଅନୁଷ୍ଠାନ ଯତ୍ନଶୀଳ ହେବବୋଲି ଆଶା ।

ଜୟ ଜଗନ୍ନାଥ, ଜୟ ଉତ୍କଳବାସୀ, ଜୟ ଉତ୍କଳ ସମ୍ମିଳନୀ ।

# ଅବସରପ୍ରାପ୍ତ ଅଧ୍ୟକ୍ଷ, ସା/ଡାକ-ଚମାର ଗାଁ, ମାଧ୍ୟମ-ଜଳେଶ୍ୱର, ଜିଲା-ବାଲେଶ୍ୱର- ୭୫୬ ୦୩୨

# ଓଡ଼ିଶାର ଉତ୍ତର ଉପାନ୍ତ ଭୋଗରାଇ : ଐତିହ୍ୟର ଆଲେଖ୍ୟ

ଡ. ରମାକାନ୍ତ ବେହେରା

ଉତ୍କଳ ସମ୍ମିଳନୀ ପ୍ରତିଷ୍ଠାର ଶହେ ବର୍ଷପରେ ଭୋଗରାଇରେ ତା'ର ଏକ ବାର୍ଷିକ ଅଧିବେଶନ ସମାରୋହରେ ଅନୁଷ୍ଠିତ ହେଉଛି । ଏହା ଏ ଅଞ୍ଚଳକୁ ଉତ୍ସବ ମୁଖର କରିଛି । ଅବଶ୍ୟ ବର୍ତ୍ତମାନ ବିଶ୍ୱ ଏକ ପରିବାରରେ ପରିଣତ, ସେ ଦୃଷ୍ଟିରୁ ଆଞ୍ଚଳିକ ଭାବନାର ଊର୍ଦ୍ଧ୍ୱରେ ବିଶ୍ୱଭାବନା ପ୍ରତି ଆମର ଧେୟ ହେବା ଉଚିତ । ବହୁ ଆଗରୁ ଆମର ସଂସ୍କୃତି ବିଶ୍ୱକୁ ଏ ବାର୍ତ୍ତା ଶୁଣାଇଛି-'ଯୋ ବୈ ଭୂମା ତତ୍ ସୁଖମ୍, ନାଲ୍ପେ ସୁଖମସ୍ତି' (ଛନ୍ଦୋଗ୍ୟ-୮/୧୨) ।

ତା' ସତ୍ତ୍ୱେ ସିନ୍ଧୁର ପୂର୍ଣ୍ଣତାରେ ବିନ୍ଦୁର ଅର୍ଘ୍ୟ ତ ଉପେକ୍ଷିତ ନୁହେଁ, ଏ ମହାସମ୍ମେଳନ ତ ସେଇ ସିନ୍ଧୁ (ମଧୁସୂଦନ), ତେଣୁ ଏ ପ୍ରବନ୍ଧରେ ଭୋଗରାଇର ପ୍ରାଣବିନ୍ଦୁର ସ୍ୱରୂପ କଳନାର ଏ ପ୍ରୟାସ ।

ଓଡ଼ିଶାର ଉତ୍ତର ସୀମାନ୍ତ ସୁବର୍ଣ୍ଣରେଖାର ପୂର୍ବଦିଗକୁ ବଙ୍ଗ ସୀମାଯାଏଁ ବିସ୍ତୃତ ଅଞ୍ଚଳ ହେଉଛି ଭୋଗରାଇ ଥାନା ବା ବ୍ଲକ୍ । ଏହାର ପୂର୍ବରେ ପଶ୍ଚିମ ବଙ୍ଗର ମେଦିନୀପୁର ଜିଲ୍ଲା, ଉତ୍ତରରେ ଜଳେଶ୍ୱର, ପଶ୍ଚିମରେ ସୁବର୍ଣ୍ଣରେଖା ଓ ବାଲିଆପାଳ ଏବଂ ଦକ୍ଷିଣରେ ସମୁଦ୍ର । ଏଇ ବିଶାଳ ପଲ୍ଲିଭୂଇଁ ଉଭୟ ଆୟତନ ଓ ଜନସଂଖ୍ୟା ଦୃଷ୍ଟିରୁ ଓଡ଼ିଶାର ବୃହତ୍ତମ ବ୍ଲକ୍ ।

ଭୋଗରାଇର ନାମକରଣ ତଥା ଏହାର ଇତିହାସ ବିଶେଷଭାବେ ଜଣାନାହିଁ । ଜନଶ୍ରୁତି ତଥା ମୋ ଦ୍ୱାରା ସଂକଳିତ ଫକୀରମୋହନଙ୍କ ସମକାଳର ଭୋଗରାଇର ଔପନ୍ୟାସିକ ସ୍ୱର୍ଗତ ଅବଦୁଲ ରହିମ୍‌ଙ୍କ ଗ୍ରନ୍ଥାବଳୀରୁ ଅନେକ କଥା ଜଣାଯାଏ ।

ଯେତେବେଳେ ମାନବ ବସତି ତଥା ସଭ୍ୟଗତ ଓ ସଂସ୍କୃତିର ପ୍ରସାର ଶ୍ରେଷ୍ଠ ମାଧ୍ୟମ ନଦୀ/ସମୁଦ୍ରକୂଳ ଥିଲା ହୁଏତ ସେତେଦିନରୁ ଏହା ପ୍ରତିଷ୍ଠା ଲାଭ କରିଥିବ । ସୁବର୍ଣ୍ଣରେଖାର ବାଲିରେଣୁରେ ସ୍ୱର୍ଣ୍ଣକଣା ଥିବାର ଜନଶ୍ରୁତି ସତ୍ୟ ମିଥ୍ୟା ଯା' ହେଉ, ଅନ୍ତତଃ ତା' କୂଳର ଉର୍ବରତା ଏତେ ଅଧିକ ଥିଲା ଯେ ଉଭୟ ତଟର ସବୁଜ ଶସ୍ୟର ସମୃଦ୍ଧ ସମ୍ଭାର ତାଙ୍କୁ ତା'କୂଳରେ 'ସୁନା ଫଳେ'ର ଗୌରବ ଦେଇଥିବ ଏବଂ ସେବେଠୁ ଏହା ସ୍ୱର୍ଣ୍ଣନଦୀ ବା ସୁବର୍ଣ୍ଣରେଖା ହୋଇଥାଇ ପାରେ । ପୃଥିବୀର ବହୁ ନଦୀର ବୈଶିଷ୍ଟ୍ୟପୂର୍ଣ୍ଣ ନାମ ଅଛି । କିନ୍ତୁ ମଣିଷର ସବୁଠୁ ପ୍ରିୟ ଧାତୁ ସ୍ୱର୍ଣ୍ଣ ନାମରେ ଅଭିହିତ ହେବାର ଗୌରବ କେବଳ ଏହି ନଦୀର ରହିଛି ।

ଜନବସତିର ପ୍ରାକ୍‌କାଳରେ ନଦୀର ବନ୍ୟା ଓ ସମୁଦ୍ରର ଜୁଆର ଅଧୁଷିତ ଏ ଅଞ୍ଚଳ ହିଂସ୍ର ଜୀବଜନ୍ତୁ ପରିପୂର୍ଣ୍ଣ ରହିଥିବ । ପ୍ରଥମେ ଗଛପତ୍ର କାଟି କିଛି ଚାଷଯୋଗ୍ୟ ଜମି ପ୍ରସ୍ତୁତ ହୋଇଥିବ, ଏବଂ ଉଚ୍ଚ ସ୍ଥାନମାନଙ୍କରେ ଚାଷଘର ହୋଇ କ୍ରମେ ଗାଁରେ ପରିଣତ ହୋଇଥିବ । ପରେ ଏହାର ପାର୍ଶ୍ୱବର୍ତ୍ତୀ ଅଞ୍ଚଳ ଏହି କ୍ରମରେ ବାସଯୋଗ୍ୟ ହୋଇଥିବ ।

ସେ କେଉଁ ଅଜ୍ଞାତ ଅତୀତର କ୍ରମବର୍ଦ୍ଧ୍ୟ ଖ୍ୟାତି କ୍ରମେ ଉତ୍ତରର ଜଳେଶ୍ୱର ପୂର୍ବର ବଙ୍ଗସୀମାନ୍ତରୁ ପଶ୍ଚିମରେ ସୁବର୍ଣ୍ଣରେଖାର ପରପାରି ବାଲିଆପାଳ ଅଞ୍ଚଳକୁ ଅତିକ୍ରମ କରିଥିବ । ସୁବର୍ଣ୍ଣରେଖାର ମାଛ (ମତ୍ସ୍ୟମୟୀ ଚାରୁଚକ୍ରବାଳିନୀ-ରାଧାନାଥ) ବିଶେଷତଃ ଇଲିସି, ତୀରବର୍ତ୍ତୀ ବିସ୍ତୃତ ପାହିମାଳର ସବୁଜ ଚାରଣଭୂମିରେ ପାଳିତ ଗାଈ ମହିଷଙ୍କ ଦୁଗ୍ଧ, ଉର୍ବରମାଟିର ଶସ୍ୟ ଓ ପନିପରିବାର ପ୍ରାଚୁର୍ଯ୍ୟ ତଥା ନଦୀପଥରେ ଗମନାଗମନ ଓ ବୋଇତବଣିଜର କେନ୍ଦ୍ରରୂପେ ଅନ୍ତତଃ ମାନବ ବସତିର ଆଦ୍ୟକାଳରେ

ପାର୍ଶ୍ୱବର୍ତ୍ତୀ ଅଞ୍ଚଳର ଲୋକଙ୍କ ଦୃଷ୍ଟିରେ ଏହା ଭୋଗର ଭୂମିରୂପେ ଖ୍ୟାତ ହୋଇଥିବ ଏବଂ କ୍ରମେ ଜନଶ୍ରୁତିରେ ଅତି ଭୋଗେ ଭୋଗରାଇରେ ପରିଣତ ହୋଇଥିବ ।

ସ୍ୱର୍ଗତ ରହିମ ତାଙ୍କ ଗ୍ରନ୍ଥାବଳୀରେ 'ଭୋଗରାଇର କଥା' ଶୀର୍ଷକରେ ଏହାର ନାମକରଣ ନେଇ ଏକ ଐତିହାସିକ କିମ୍ବଦନ୍ତୀ ଉଲ୍ଲେଖ କରିଛନ୍ତି । ବଙ୍ଗର ନବାବ ବକ୍ତିଆର ଖିଲିଜ୍‌ଙ୍କ ସେନାପତି କାଲୁଖାଁ ଭୋଗରାଇ ଆସି ବାଶୁଳୀ ଠାକୁରାଣୀଙ୍କ ମୂର୍ତ୍ତି ଦେଖି ଆଶ୍ଚର୍ଯ୍ୟ ହେଲେ । ଠାକୁରାଣୀଙ୍କ ଆଗରେ ପର୍ବତ ପ୍ରମାଣ ଫଳମୂଳ ଭୋଗ ଜମା ହୋଇଥିଲା, କାଲୁ ଖାଁ ପଣ୍ଡାମାନଙ୍କୁ ଏ ସ୍ଥାନର ନାଁ ପଚାରିଲେ, ପଣ୍ଡାମାନେ ଭାବିଲେ ଭୋଗକଥା ପଚାରୁଛନ୍ତି । ସେମାନେ କହିଲେ ଏସବୁ ଭୋଗରାଶି, କାଲୁ ଖାଁ ଓଡ଼ିଆ ବୁଝି ପାରୁ ନଥିଲେ, ସେ ବୁଝିଲେ ଏ ସ୍ଥାନର ନାମ ଭୋଗରାଇ (ପୃ୭୯୨), କିନ୍ତୁ ସେହି ବହିରେ ଅନ୍ୟତ୍ର ବାଶୁଳୀ ମନ୍ଦିର ନିର୍ମାଣ ପୂର୍ବରୁ ଏ ସ୍ଥାନର ନାମ ଭୋଗରାଇ ଥିବାର ଉଲ୍ଲେଖ ଅଛି (ପୃ୭୯୪) ସୁତରାଂ ବାଶୁଳୀ ମା'ଙ୍କ 'ଭୋଗରାଶି' ପାଇଁ 'ଭୋଗରାଇ' ନାମ ହୁଏତ ହୋଇ ପାରିଥିଲେ ବି 'କାଲୁ ଖାଁ'ର ଆଖ୍ୟାନର ସତ୍ୟତା ହୁଏତ ଥାଇ ନପାରେ ।

ଭୌଗୋଳିକ ଦୃଷ୍ଟିରୁ ଭୋଗରାଇ ଉତ୍ତର ଦକ୍ଷିଣ ଭାବେ ଦୁଇ ଭାଗରେ ବିଭକ୍ତ । ନଦୀ ମୁହାଣଠୁ ପୂର୍ବପଟେ ନଦୀର ଧାରେଧାରେ ଉତ୍ତରକୁ ଭୋଗରାଇ ଲକ୍‌ଯାଏଁ ଏବଂ ସେଇଠୁ ସିଧା ପୂର୍ବକୁ ବଙ୍ଗସୀମା ଭିତରକୁ ଏକ ବିଶାଳ ବନ୍ଧ ମରହଟ୍ଟା ଅମଳରୁ ନିର୍ମିତ, ଏହା 'ଭୂଆବନ୍ଧ' ନାମରେ ଖ୍ୟାତ । ବନ୍ଧର ଉଭୟ ପାର୍ଶ୍ୱ ଦକ୍ଷିଣ ଭୋଗରାଇ ଏବଂ ଉତ୍ତର ଭୋଗରାଇ ରୂପେ ପରିଚିତ । ଉତ୍ତର ଭୋଗରାଇକୁ ସମୁଦ୍ରର ଲୁଣି ଜୁଆର ତଥା ପ୍ଳାବନରୁ ରକ୍ଷା କରିବା ପାଇଁ ବନ୍ଧଟି ନିର୍ମିତ ହୋଇଥିଲା କିନ୍ତୁ ଏବେ ତାହା ସୁବର୍ଣ୍ଣରେଖା ବନ୍ୟା ଦାଉରୁ ଦକ୍ଷିଣ ଭୋଗରାଇକୁ ରକ୍ଷା କିରବାର 'ଲକ୍ଷ୍ମଣରେଖା' ହୋଇ ରହିଛି ।

ବନ୍ୟା ଅଧୁଷିତ ଉତ୍ତର ଭୋଗରାଇରେ ପ୍ରବାହିତ ଏକ କ୍ଷୁଦ୍ର ନଦୀ ଚିତେଇ ବା ଚିତ୍ରରେଖା ସୁବର୍ଣ୍ଣରେଖାରେ ମଶିଛି । ପଶ୍ଚିମବଙ୍ଗର ବର୍ଷା ଓ ବନ୍ୟା ଜଳରେ ଏହା ଭୟଙ୍କର ରୂପ ଧାରଣ କରେ ଏବଂ ଦୀର୍ଘଦିନ ଦଳ ଭଣ୍ଡାରରେ ପରିଣତ ହୁଏ, ଫଳରେ ଉତ୍ତର ଭୋଗରାଇର ତଳମାଳର ମୃତ୍ତିକା ଅଧିକାଂଶ ସମୟ କର୍ଦ୍ଦମାକ୍ତ ରହେ, ବୋଧହୁଏ କର୍ଦ୍ଦମାରୁ ଏହାର ଏକ ବିସ୍ତୃତ ଅଞ୍ଚଳର ନାମ 'କମର୍ଦ୍ଦା' ହୋଇ ଥାଇପାରେ, ଏ ଅଞ୍ଚଳରେ ପ୍ରଚୁର ଅର୍ଜୁନ ବୃକ୍ଷ ଜନ୍ମେ, କବିବର ରାଧାନାଥ 'ଉଷା' କାବ୍ୟରେ ଏ ଅଞ୍ଚଳର ଶୋଭା ବର୍ଣ୍ଣନାକରି ଲେଖିଛନ୍ତି -'କୁମରଦ ଆଦିସ୍ଥଳୀ ବୀରଦ୍ରୁମ ନିକୁଞ୍ଜେ ନୀଳ, ସୁବର୍ଣ୍ଣ ତଟିନୀ ପଟୁସ୍ତରେ ଯା'ର ତନୁ ପଙ୍କିଳ ।'

ଏ ପଙ୍କୁଆ ମାଟିରେ ପ୍ରଚୁର ତୃଣ (ବେଣା, ଖଡ଼ି) ଜନ୍ମୁ ଥିବାରୁ ଏ ଅଞ୍ଚଳ ଲୋକ ମୁଖରେ ତଣିଆ ରୂପେ ପରିଚିତ । ଏ ପଙ୍କିଳ ଭୂମି ଏବେ ବେଶ୍ ସମୃଦ୍ଧ, କମର୍ଦ୍ଦା ଏବେ ଏକ ନୂତନ ଥାନାରେ ପରିଣତ, ତାହା ସ୍ୱତନ୍ତ୍ର ବ୍ଲକ୍ ହେବା ଅପେକ୍ଷାରେ ଅଛି । ଏ ଅଞ୍ଚଳରେ ପୁଟିଣା, ମହାଗବ, ମନ୍ଦାରୁଣୀ, କୁଳିଦା ଆଦି ବହୁ ସମୃଦ୍ଧ ଜନବସତି ଗଢ଼ି ଉଠିଛି, ଶିକ୍ଷା, ବଣିଜ, ରାଜନୀତି ସର୍ବକ୍ଷେତ୍ରରେ ଏ ଅଞ୍ଚଳର ଅଗ୍ରଗତି ଯୁଗସହ ତାଳ ଦେଇ ଚାଲିଛି ।

ବନ୍ୟା ସମୟରେ 'ଭୂଆବନ୍ଧ' ଉପରୁ ଉଭୟପଟର ପରସ୍ପର ବିପରୀତଧର୍ମୀ ଦୃଶ୍ୟ ହୃଦୟକୁ ମନ୍ଥିଦିଏ । ବନ୍ଧର ଉତ୍ତର ଦିଗ ସମୁଦ୍ର ମଧ୍ୟସ୍ଥ ଟାପୁ ଭଳି ଦିଶେ, ଲକ୍ଷଲକ୍ଷ ଅଧିବାସୀ ଦୀର୍ଘକାଳ ଜଳବନ୍ଦୀ ହୋଇ ରହନ୍ତି । ବନ୍ଧ ଉପରେ ଛିଡ଼ାହେଲେ ଏକ ପଟରେ ଜଳପ୍ରଳୟର କରୁଣ ହାହାକାର ସହିତ ଘର ସମେତ ମଣିଷ ଗୋରୁଗାଈ ଭାସିଯିବାର ଦୃଶ୍ୟ ଏବଂ ଅପରପଟେ ଶ୍ୟାମକାନ୍ତ ଶୋଭାଶ୍ରୀ ସହିତ ଶାନ୍ତି ଓ ସ୍ୱସ୍ତିରେ ଚଳମାନ ମଣିଷର କୋଳାହଳ ଆଖିରେ ପଡ଼େ, ଏ ଦୃଶ୍ୟ ମନରେ ଯେଉଁ ବିଚିତ୍ର ଭାବନା ଖେଳାଏ ତାହା ଭାଷାର ନୁହେଁ ଅନୁଭବୀର ହୃଦୟହିଁ ବୁଝେ ।

ଶିକ୍ଷିତ ଚାକିରିଆଙ୍କ ବ୍ୟତୀତ ସାଧାରଣ ଲୋକଙ୍କ ମୁଖ୍ୟ ଜୀବିକା କୃଷି । ଜଳସେଚନ ଓ ନିଷ୍କାସନର ସ୍ଥାୟୀ ବ୍ୟବସ୍ଥା ନାହିଁ । ବନ୍ୟାରେ ଚାଷ ପ୍ରାୟ ନଷ୍ଟହୁଏ । ତଥାପି ଚାଷୀ ନିଜ ଚେଷ୍ଟାରେ ବର୍ଷରେ ଦୁଇ ଫସଲି ଧାନ ଉତାରିବାକୁ ଚେଷ୍ଟାକରେ । ପ୍ରକୃତି ଦୟାକଲେ କିଛିପାଏ । ନହେଲେ ମୁଣ୍ଡରେ ହାତଦିଏ । ଅବଶ୍ୟ ଦୈବାତ୍ ବନ୍ୟା ବ୍ୟୁତ୍ପାତ ବା ଲୁଣି କୁଆର ନଥିଲେ ସୁବର୍ଣ୍ଣରେଖାର ମୁହାଣ ଶଯ୍ୟା (ପାହିମାଳ) ରେ ପ୍ରଚୁର ଧାନ ଫଳେ, ସେତେବେଳେ ଭୋଗରାଇ ରାଜ୍ୟର ଭାତହାଣ୍ଡି ହୋଇ ଉଠେ । କିନ୍ତୁ ପ୍ରାୟ ପ୍ରତିବର୍ଷ ନଦୀ ଓ ସମୁଦ୍ର ଭୋଗରାଇର ଭାଗ୍ୟ ଧୋଇ ଦିଅନ୍ତି ।

ତେଣୁ ଧାନଠାରୁ ପାନଚାଷ ଓ ବ୍ୟବସାୟର ଗୁରୁତ୍ୱ ବେଶି । ସମୁଦ୍ରତୀରବର୍ତ୍ତୀ ବାଲୁକାମୟ ଅଞ୍ଚଳର ଫଳୁଥିବା ପାନ ଦେଶେ ମଧ୍ୟରେ ଶ୍ରେଷ୍ଠ । ଏହା ବୀରକୁଳ ପାନ ରୂପେ ଖ୍ୟାତ । ବୀରକୁଳ କବିବର ରାଧାନାଥଙ୍କ ଲେଖନୀରେ ଧନ୍ୟ ହୋଇଛି -

''ବୀରକୁଳ ଯାର ବୀର ପରି ପୂର୍ଣ୍ଣସ୍ଥଳୀ କଥିତ,
ପୂଗ ଷଣ୍ଡ ଯହିଁ ନାଗବଲ୍ଲୀଦଳେ ଗାଢ଼େ ଜଡ଼ିତ ।'' (ଉଷା)

ବୀରକୁଳ ପାନର ଚାହିଦା ସୁଦୂର ଦିଲ୍ଲୀ, ମୋମ୍ବାଇ, ବନାରସ୍‌ରେ ଅଧିକ । କୋଟି କୋଟି ଟଙ୍କାର ପାନ ବ୍ୟବସାୟ ଏ ଅଞ୍ଚଳରେ ଅର୍ଥନୀତିର ମେରୁଦଣ୍ଡ କୁହାଯାଇପାରେ । କିନ୍ତୁ ପାନଚାଷର ପ୍ରଧାନ ସହାୟକ ଖଡ଼ି ଯାହା ଉତ୍ତର ଭୋଗରାଇରେ ପ୍ରଚୁର ଜନ୍ମେ, ଖଡ଼ି ବିନା ପାନଚାଷ ଅସମ୍ଭବ, ପାନଚାଷ ବିନା ଖଡ଼ି ମଧ୍ୟ ମୂଲ୍ୟହୀନ, ତେଣୁ ପାନବରଜ ଭଳି 'ଖଡ଼ିବାଡ଼ି' ମଧ୍ୟ ଏକଏକ ଧନଭଣ୍ଡାର ରୂପେ ବନ୍ୟା ପୀଡ଼ିତ ତଣିଆ ଅଞ୍ଚଳକୁ ସାମର୍ଥ୍ୟର ହିମ୍ମତ ଦେଇଛି, ଏହା ଯେମିତି ଉତ୍ତର ଦକ୍ଷିଣ ଭୋଗରାଇର ହୃଦ୍ୟ ବନ୍ଧନର ଏକ ଐଶୀ ଆଶୀର୍ବାଦ ।

କାଜୁ, ବାଲୁକା ଅଞ୍ଚଳର ଅନ୍ୟ ଏକ ଅର୍ଥକାରୀ ଫସଲ, କିନ୍ତୁ ଅର୍ଥ ଅପେକ୍ଷା ଏହାର ଦୃଶ୍ୟ ସମ୍ଭାର କବି ଦୃଷ୍ଟିରେ ଅଧିକ ଆକର୍ଷଣୀୟ । ଗ୍ରୀଷ୍ମ ମଧ୍ୟାହ୍ନରେ ତାତିଲା ବାଲିରେ ଆତଯାତ ହେଉଥିବା ତୃଷାର୍ତ୍ତ ବାଟୋଇକୁ କାଜୁବୃକ୍ଷ ପରି ସୁନା ଫଳତୁଲ୍ୟ ରସଭରା ପାଚିଲା ଲଙ୍କାଆମ୍ବର ପ୍ରଲୋଭନ ଦେଖାଇ ଶ୍ୟାମ ପତ୍ରାବଳୀର ଶାଖା ବିଞ୍ଚି ଆମନ୍ତ୍ରିତ କରେ ।

ରାଧାନାଥଙ୍କ ଲେଖନୀରେ-

''ହେମ ଫଳେ ନମ୍ର ହୋଇ ଲଙ୍କା-ଆମ୍ର ପାଦପପନ୍ତି,
ତୃଷାର୍ତ୍ତ ପଥିକେ ଶାଖା ସଞ୍ଚାଳନ ଛଳେ ଡାକନ୍ତି ।''
(ଉଷା)

କାଜୁ ସହ ନଡ଼ିଆ ଗୁଆ ମଧ୍ୟ ପ୍ରଚୁର ଫଳେ । ପଟୁ ଉର୍ବର ପାଳ ଅଞ୍ଚଳରେ ରବିଋତୁରେ ପନିପରିବା ବେଶ୍ ଉତୁରେ । ସୁବର୍ଣ୍ଣରେଖା ନାମରେ ସାର୍ଥକତା ଏଇଠି । ତେବେ ଭୋଗରାଇର ସପ ମସିଣା ଜଗତ ପ୍ରସିଦ୍ଧ । ସୂକ୍ଷ୍ମ ସୂତାର ସରୁ ମସିଣା ଦେଶବିଦେଶକୁ ରପ୍ତାନି ହୁଏ । ଏହା ଏକ ଉତ୍କୃଷ୍ଟ ହସ୍ତଶିଳ୍ପ । ନଦୀସମୁଦ୍ରରୁ ମାଛଧରି ବାହାରକୁ ରପ୍ତାନି କରିବା ମଧ୍ୟ ଅନ୍ୟ ଏକ ମୁଖ୍ୟ ଜୀବିକା । ପାହି ଅଞ୍ଚଳ ଏବେ ଧାନ ଚାଷଠାରୁ 'ଚିଙ୍ଗୁଡ଼ି ଚାଷ'ର ମୁଖ୍ୟସ୍ଥଳୀ ହୋଇ ଉଠିଛି । ଏହା କିନ୍ତୁ ପରିବେଶ ପ୍ରଦୂଷଣ ପାଇଁ ମୁଣ୍ଡବ୍ୟଥାର କାରଣ ହୋଇଛି । ଚିଙ୍ଗୁଡ଼ି ମାଫିଆଙ୍କ ଉତ୍ପାତ ପ୍ରବଳ । ପ୍ରତିଷ୍ଠିତ ରାଜନୀତି-ମଙ୍ଗୁଆଳମାନେ ନିଜର ବା ପ୍ରିୟ ପରିଜନଙ୍କ ନାମରେ ଏ ଚାଷର ବିଶାଳ ଜାଲ ବିସ୍ତାର କରିଛନ୍ତି, ସେମାନଙ୍କ କବଳରୁ ସମୁଦ୍ରକୂଳ ଏବଂ ନଦୀମୁହାଣର ରମ୍ୟ ପ୍ରକୃତିକୁ ମୁକ୍ତ କରିବା ପ୍ରଶାସନଙ୍କ ପାଇଁ ଏକ ଚାଲେଞ୍ଜ୍ ହୋଇ ଉଠିଛି ।

ଭୋଗରାଇରେ କୌଣସି ଏକ କାରଖାନା ନାହିଁ । ନବ ପ୍ରତିଷ୍ଠିତ ଚମଡ଼ା ଓ ନଡ଼ିଆକତା କାରଖାନା ରାଜନୀତିକ ଦୁଷ୍କୃତିରୁ ନଷ୍ଟପ୍ରାୟ । କିନ୍ତୁ ସୁବର୍ଣ୍ଣରେଖାର ବନ୍ୟା, ସମୁଦ୍ର କୁଆର ବା ଝଡ଼

ଦୁର୍ବିପାକ ଠାରୁ ବଡ଼ ଅଭିଶାପ ହେଲା ରାସ୍ତାଘାଟର ଦୁର୍ଦ୍ଦଶା । ଓଡ଼ିଶାର ସୀମାନ୍ତ ଅଞ୍ଚଳ ହୋଇଥିବାରୁ ଏବଂ ରେଳରାସ୍ତା ବା ଜାତୀୟ ରାଜପଥ ନଥିବାରୁ ସେ ସବୁକୁ ଅବରୁଦ୍ଧ କରି ଜନ ଆନ୍ଦୋଳନ ହେବାର ସମ୍ଭାବନା ନଥିବାରୁ ଏବଂ ପ୍ରାୟ ସମସ୍ତ ବନ ପ୍ରତିନିଧି ଅତି ମାତ୍ରାରେ ଆତ୍ମସ୍ୱାର୍ଥପ୍ରବଣ ହୋଇଥିବାରୁ ସରକାରୀ ଉଦାସୀନତା ଏ ଅଞ୍ଚଳକୁ ଅର୍ଦ୍ଧ ଶତାବ୍ଦୀ ଧରି ଶୋଇଲା ପୁଅର ଭାଗ ନଥିବାର ଲାଞ୍ଛନା ଦେଇ ଆସିଛି ।

ଅବଶ୍ୟ ଏ ଅଞ୍ଚଳରେ ଶିକ୍ଷିତ ବୁଦ୍ଧିଜୀବୀ ଏବଂ ପ୍ରଭାବଶାଳୀ ପ୍ରତିଭାବାନ ପୁରୁଷ କିଛି କମ୍ ନାହାନ୍ତି, ସେମାନେ ଦେଶବିଦେଶରେ ସ୍ୱକୀର୍ତ୍ତିରେ ବେଶ୍ ପ୍ରତିଷ୍ଠିତ । ଅନେକେ ନିଜ ସ୍ୱାର୍ଥର ଶୀର୍ଷ ସିଡ଼ିରେ ପହଞ୍ଚି ଆତ୍ମପ୍ରତିଷ୍ଠାରେ ସ୍ୱର୍ଗ ସ୍ପର୍ଶ କରିଛନ୍ତି । ଅନ୍ତରରେ ଜନ୍ମମାଟି ପାଇଁ ବେଦନା ଥିଲେ ବି ଆପଣା ଭାବମୂର୍ତ୍ତିରେ କାଳେ ଆଞ୍ଚ ଆସିବ, କାଳେ ଧୋବ ଫରଫର ଲୁଗାରେ କାଦୁଅ ଛିଟା ଲାଗିଯିବ ତେଣୁ କୌଣସି ପ୍ରତିକ୍ରିୟା ପ୍ରତିବାଦ ଭିତରକୁ ନ ଆଁସି ସମସ୍ତଙ୍କ ଗେହ୍ଲାପୁଅ ସାଜିବାର ନପୁଂସ ଖୋଳସ ପିନ୍ଧି ବୃହନ୍ନଳା ସାଜିଛନ୍ତି । କର୍ମ ସାଧନାର ସ୍ତର ରାଜ୍ୟ ଦେଶ ବା ବିଶ୍ୱ ବ୍ୟାପ୍ତ ଥିବା ଭୋଗରାଇର ଭାଗ୍ୟଧାରମାନେ ନିଃସୀମ ବ୍ୟାପ୍ତି ମଧ୍ୟରେ ଏପରି ଆତ୍ମ ମଗ୍ନ ଯେ ନିଜର ଏକୁଡ଼ିଶାଳର ରୁଗ୍ଣା ମା'ର କାରୁଣ୍ୟ ସେମାନଙ୍କ ନବଶୁନ୍ୟୀ ପ୍ରତିଷ୍ଠାର ପ୍ରକୋଷ୍ଠରେ ପହଞ୍ଚୁ ନାହିଁ । ତେଣୁ ଏ ଦୁର୍ଦ୍ଦଶା !!

ତେଣୁ ରାକ୍ଷସବଂଶୀ ରାଜନୀତି ମାଫିଆମାନଙ୍କର କପାଳ ଫିଟି ଯାଉଛି, ସାଧାରଣ ଅଭାବୀଙ୍କ ଚିତ୍କାରକୁ ଫୁତ୍କାର୍‌ରେ ଉଡ଼ାଇ ଦେଇ ସେମାନେ ଅର୍ଦ୍ଧଶତାବ୍ଦୀ ଧରି ଭୋଗରାଇର ରକ୍ତମାଂସ ଅସ୍ଥିକଙ୍କାଳକୁ ମନଇଚ୍ଛା ଚୋବାଉଛନ୍ତି ।

x x x x x x

ଏତ ଗଲା ଭୋଗରାଇ ଭୌତିକ ପରିଚୟ । ତା'ର ଆତ୍ମିକ ଐତିହ୍ୟ କିନ୍ତୁ ଅନନ୍ୟ । ତାର ନୈସର୍ଗିକ ଶୋଭାଶ୍ରୀ ବିଶେଷତଃ ଐଶ୍ୱର୍ଯ୍ୟମୟ ବେଳାଭୂମିର ଗାରିମା, ସାହିତ୍ୟ ସଂସ୍କୃତିର ବୈଭବ ଏବଂ ସ୍ମୃତିମୟ ଜଣାଅଜଣା ଅତୀତ ସାମଗ୍ରିକ ଭାବେ ଏମାଟିର ଗୌରବକୁ ଅନନ୍ୟତା ଦେଇଛି !

ସ୍ୱାଧୀନତା ଅନ୍ଦୋଳନରେ ଏ ମାଟିର ଯୋଗ୍ୟ ଅବଦାନ ଥିଲା । ସ୍ୱର୍ଗତ ହରେକୃଷ୍ଣ ମହତାବ ଏବଂ ତାଙ୍କ ସ୍ତ୍ରୀ ସୁଭଦ୍ରା ମହତାବ ଏବଂ ଯୋରର ନୀଳାମ୍ବର ଦାସ ତଥା କରୁଣା କର ପାଣିଗ୍ରାହୀ ଆଦି ଏ ଅଞ୍ଚଳର ସ୍ୱାଧୀନତା ଆନ୍ଦୋଳନକୁ ତୀବ୍ରତର କରାଇଥିଲେ । ନୀଳାମ୍ବର ଦାସଙ୍କ ଆତ୍ମଜୀବନୀ ଏବଂ ଭୋଗରାଇର ପ୍ରଥିତଯଶା ସ୍ୱାଧୀନତା ସଂଗ୍ରାମୀ ଶ୍ରୀ ଦୁର୍ଗା ଶଙ୍କର ଦାସଙ୍କ ଆତ୍ମଜୀବନୀ 'ଅମୃତ ସ୍ୱାକ୍ଷର'ରେ ଏ ସଂପର୍କରେ ବିଶେଷ ବର୍ଣ୍ଣନା ରହିଛି । ଏ କ୍ଷେତ୍ରରେ ପୂର୍ବତନ ବିଧାୟକ ୰ ପ୍ୟାରୀମୋହନ ଦାସ, ୰ ସୁଦର୍ଶନ ବେହେରା, ୰ ସୁଧାଂଶୁ ଶେଖର ପଟ୍ଟନାୟକ ତଥା ମୃତ୍ୟୁଞ୍ଜୟ ଜେନାଙ୍କ ଭୂମିକା ଅନବଦ୍ୟ ଥିଲା, ଆତ୍ମ ପ୍ରତିଷ୍ଠାର କୂଟ ସଂଗ୍ରାମଠୁଁ ସତତ ଦୂରରେ ଥିବା ଅନେକ ସମର୍ପିତ ପ୍ରାଣ, ତ୍ୟାଗୀ ସଂଗ୍ରାମୀ ବର୍ତ୍ତମାନ ବିସ୍ମୃତ ପ୍ରାୟ ।

ଓଡ଼ିଆ ଓ ବଙ୍ଗଳାର ସୀମାନ୍ତର ମିଳନସ୍ଥଳୀ ହୋଇଥିବାରୁ ଏ ଅଞ୍ଚଳ ଭାଷା ସଂସ୍କୃତିରେ ବଙ୍ଗଳାର ପ୍ରଭାବ ରହିବା ସ୍ୱାଭାବିକ, ମାତ୍ର ଓଡ଼ିଶାର ଅନ୍ୟ ସମସ୍ତ ଅଞ୍ଚଳ ପଡ଼ୋଶୀ ଅପ ପ୍ରଭାବରେ ଯେଭଳି ବିପନ୍ନ ଏଠାରେ ଅବସ୍ଥା ତା ନୁହେଁ ବରଂ ବିପରୀତ, ଓଡ଼ିଆ ଭାଷା, ସଂସ୍କୃତି ବଙ୍ଗଳାର ବହୁ ଭିତର ଅଞ୍ଚଳକୁ ଏବେବି ପ୍ରଭାବିତ କରି ରଖିଛି । ବହୁ ସରକାରୀ ପ୍ରଚେଷ୍ଟା ସତ୍ତ୍ୱେ ଅନ୍ତପୁରୀରେ ଓଡ଼ିଆ ଭାଷା ମାତୃ-ମମତାର ହୃଦ୍ୟ ସ୍ପର୍ଶ ନେଇ ଏବେବି ସାଧାରଣ ଜନତାଙ୍କ କଣ୍ଠରେ ଜୀଇଁ ରହିଛି ।

ସୂର୍ଯ୍ୟସ୍ତ ଆଇନ ଯୋଗୁଁ ଅଜଣା ବଙ୍ଗବାସୀ ଓଡ଼ିଆଙ୍କ ଜମିଦାର ସାଜିଥିଲେ । ଭୋଗରାଇରେ ଅତ୍ୟନ୍ତ ଜନପ୍ରିୟ ଦେହୁର୍ଦ୍ଧା ରାୟ ମହାଶୟ ଏବଂ ପଞ୍ଚେଟ୍‌ଗଡ଼ର ଦାସ ମହାପାତ୍ର ବଂଶ ଏ ସୂତ୍ରରେ ଜମିଦାର

ଥିଲେ । ସେଇ ସୂତ୍ରରେ ବହୁ ବଙ୍ଗ ପରିବାର ଏ ଅଞ୍ଚଳରେ ସ୍ଥାୟୀ ବାସିନ୍ଦା ହୋଇ ରହିଛନ୍ତି । ଓଡ଼ିଆ ବଙ୍ଗାଳୀ ଉଭୟଙ୍କ ମଧ୍ୟରେ ବହୁ ଜାତି ଉପଜାତି, ହରିଜନ ତଥା ମୁସଲମାନ ସଂପ୍ରଦାୟ ଏଠାରେ ଶାନ୍ତିରେ ବସବାସ କରି ରହି ଆସୁଛନ୍ତି । ସମସ୍ତଙ୍କ ମଧ୍ୟରେ ରାଜୁ ଜାତିର ଲୋକେ ବିଶେଷ ସମୃଦ୍ଧ ଏବଂ ପ୍ରଭାବଶାଳୀ; ଏମାନେ ରାଜପୁତ୍‌ରୁ 'ରାଜୁ' ହୋଇଛନ୍ତି । ବଙ୍ଗର ମୁସଲମାନ ଆକ୍ରମଣରୁ ଓଡ଼ିଶାକୁ ରକ୍ଷା କିରବା ପାଇଁ ମାନସିଂ ଏବଂ ତୋଡ଼ରମଲ୍ଲ ସେମାନଙ୍କ ସେନା ବାହିନୀରୁ ବିପୁଳ ସଂଖ୍ୟକ ସୈନ୍ୟଙ୍କ ପାଇଁ ପ୍ରଚୁର ଜମି ଖଞ୍ଜି ଦେଇ ସୁବର୍ଣ୍ଣରେଖାର ଉଭୟ ପାର୍ଶ୍ୱରେ ଅବସ୍ଥାପିତ କରାଇଥିଲେ । ଗୋପାଳ ପ୍ରହରାଜଙ୍କ ପୂର୍ଣ୍ଣଚନ୍ଦ୍ର ଭାଷାକୋଷ ଏବଂ ରୁଦ୍ର ନାରାୟଣ ଷଡ଼ଙ୍ଗୀ (ନାମ୍ନୋ ୧୮୬୪-୧୯୩୩) ଙ୍କ ବିରାଟ ନଗର ଓ ସ୍ୱର୍ଣ୍ଣରେଖା (ପୃ ୧୪-୧୫) ପୁସ୍ତକରେ ଏହାର ବିଶଦ ବର୍ଣ୍ଣନା ରହିଛି । ପୂର୍ବର ସାଂପ୍ରଦାୟିକ ସଂପ୍ରୀତି ଏବଂ ଶାନ୍ତିପୂର୍ଣ୍ଣ ସହବସ୍ଥାନ କ୍ରମେ ରାଜିନୀତିଖୋରଙ୍କ ବିଦ୍ୱେଷ ବିଷରେ କ୍ଷୁଣ୍ଣ ହେବାରେ ଲାଗିଛି ।

ଶିକ୍ଷା ସଂସ୍କୃତିରେ ଏହା ଓଡ଼ିଶାର ଏକ ସମୃଦ୍ଧ ଅଞ୍ଚଳ । ଭୋଗରାଇର ବହୁ କୃତୀ ସନ୍ତାନ ରାଜ୍ୟ ତଥା ଦେଶର ଗୌରବ । ବନ୍ୟାବାତ୍ୟାଧ୍ୱସ୍ତ ରାସ୍ତାଘାଟ ସହିତ ଓଡ଼ିଶା ଓ ବଙ୍ଗର ରାଜଧାନୀଠାରୁ ସବୁଠୁ ଦୂରରେ ଥିବା ଏ ନିପଟ ଗ୍ରାମାଞ୍ଚଳ ଆଧୁନିକ ଉନ୍ନତ ସ୍କୁଲ କଲେଜ ନିକଟରେ ନଥିବା ଯୁଗରେ କି ଭଳି ଶିକ୍ଷାର ଏତେ ଅଗ୍ରଗତି କଲା ତାହା ଗବେଷକଙ୍କ ପାଇଁ ଏକ ବିସ୍ମୟ । ବର୍ତ୍ତମାନ ଅବଶ୍ୟ ସ୍କୁଲ କଲେଜ ସର୍ବତ୍ର ମାଳମାଳ, ତଥାପି ଭୋଗରାଇ ବିଦ୍ୟାନଗରୀ ରୂପେ ଏବେ ବି ଟେକ ରଖିଛି । ଶିକ୍ଷା କାରଣରୁ ଭୋଗରାଇବାସୀ ଓଡ଼ିଶାର ପ୍ରାୟ ସମସ୍ତ ପ୍ରମୁଖ ଅଞ୍ଚଳରେ ପରିବ୍ୟାପ୍ତ । ବିଶେଷତଃ କଟକ, ଭୁବନେଶ୍ୱର, ରାଉରକେଲା, ବାଲେଶ୍ୱର ତଥା ସୁଦୂର କଲିକତା, ମୋମ୍ବାଇରେ ସାଧାରଣ ଏବଂ ଉଚ୍ଚପଦରେ ଅଧିଷ୍ଠିତ ଅଛନ୍ତି । ଏମାନେ ଦେଶଦେଶାନ୍ତରରେ ମଧ୍ୟ ପରିବ୍ୟାପ୍ତ ।

ସାହିତ୍ୟ କଳା ସଂସ୍କୃତି ଇତ୍ୟାଦି କ୍ଷେତ୍ରରେ ଭୋଗରାଇର ଅବଦାନ ଅନବଦ୍ୟ । ଓଡ଼ିଶା ସଂଗ୍ରହାଳୟରେ ଥିବା ଭୋଗରାଇ (ପିଠାପୁର)ର ସ୍ୱର୍ଗତ ଜାନକୀ ବଲ୍ଲଭ କରଙ୍କ ଶ୍ରୀମଦ୍ ଭାଗବଦଗୀତା ଏବଂ ଜଗନ୍ନାଥ ଦାସଙ୍କ ଭାଗବତର ସଂଶୋଧିତ ପାଣ୍ଡୁଲିପି ୧୭୫୧ରୁ ୧୭୫୪ ମଧ୍ୟରେ ରଚିତ । ପଣ୍ଡିତ ରୁଦ୍ର ନାରାୟଣ ଷଡ଼ଙ୍ଗୀଙ୍କ ମତରେ 'ସେ ସୁବର୍ଣ୍ଣରେଖା ଓ କପିଶା ନଦୀର ମଧ୍ୟବର୍ତ୍ତୀ ସ୍ଥାନରେ ବୈଜୟନ୍ତୀ ପତାକା ଥିଲେ ।' ଏ ସମ୍ବନ୍ଧରେ ଅଧିକ ଗବେଷଣାର ଅପେକ୍ଷା ରହିଛି । ଫକୀରମୋହନଙ୍କ ସମକାଳରୁ ଉପନ୍ୟାସ ଲେଖି ସଂପୂର୍ଣ୍ଣ ଅଜ୍ଞାତ ରହିଥିବା ଭୋଗରାଇ ଗ୍ରାମର ସ୍ୱର୍ଗତ ଅବଦୁଲ ରହିମଙ୍କ ଗ୍ରନ୍ଥାବଳୀ ଏବେ ମୋ ଦ୍ୱାରା ସଂକଳିତ ହୋଇ ପ୍ରକାଶିତ ହୋଇଛି । ଆମ ସାହିତ୍ୟରେ ସେ ହେଲେ ଏକମାତ୍ର ମୁସଲମାନ ସାରସ୍ୱତ ସାଧକ ଯାହାଙ୍କ ଗ୍ରନ୍ଥାବଳୀ ପ୍ରକାଶିତ । ହିନ୍ଦୁ ମୁସଲମାନ ସାଂପ୍ରଦାୟିକ ସଂପ୍ରୀତିରେ ତାଙ୍କ ରଚନାବଳୀର ଭୂମିକା ଏ ଯୁଗ ପାଇଁ ଅନନ୍ୟ । ବିଶ୍ୱବିଖ୍ୟାତ ଐତିହାସିକ ଡ. ମନ୍ମଥ ନାଥ ଦାସଙ୍କ ସାରସ୍ୱତ କୀର୍ତ୍ତି ମଧ୍ୟ ଅବିସ୍ମରଣୀୟ, ତେବେ ତାଙ୍କ ଅନୁଜ ମନୋଜ ଦାସଙ୍କ ପ୍ରତିଭା ତ ବିଶ୍ୱବ୍ୟାପ୍ତ- ଏ ଯୁଗରେ ଆମ ସାରସ୍ୱତ କୋଣାର୍କର ଚୂଡ଼ାରୂପେ ତାହାଙ୍କୁ ଅଭିହିତ କରାଯାଇପାରେ । ସାହିତ୍ୟ ଏକାଡେମୀର ପୂର୍ବତନ ସଂପାଦକ ଶ୍ରୀ ଇନ୍ଦୁ ଭୂଷଣ କର ନାଟକ ଏବଂ ବିବିଧ ତତ୍ତ୍ୱ ମୂଳକ ପ୍ରବନ୍ଧ ରଚୟିତା ଭାବେ ପ୍ରତିଷ୍ଠା ପାଇଛନ୍ତି । କବିଭାବେ ମୁରାରୀମୋହନ ସାହୁ ହେଲେ ଆଧୁନିକ କବିତାର ମେହେର, ଆଧୁନିକ କାବ୍ୟଧାରାରେ ଆଧ୍ୟାତ୍ମ ଓ ସଂସ୍କୃତିର ଉଚ୍ଚାଙ୍ଗ ଉତ୍ତରଣ ତାଙ୍କ କବିତାର ବିଶେଷତ୍ୱ । ରାଜନୀତିର ପଙ୍କରେ ସତତ ନିମଜ୍ଜିତ ଡ. କାର୍ତ୍ତିକେଶ୍ୱର ପାତ୍ର ପଦ୍ମର ଆଦର୍ଶରେ ସାରସ୍ୱତ ସୂର୍ଯ୍ୟର ଉପାସନାରେ ମଧ୍ୟ ନିଜକୁ ଓ ସାହିତ୍ୟ କୃତିକୁ ଧନ୍ୟ କରିଛନ୍ତି । ଏକ ବିସ୍ମୟ ପ୍ରତିଭା ଅସିତ ପଣ୍ଡାଙ୍କ ସାରସ୍ୱତ କୀର୍ତ୍ତି ମଧ୍ୟ ସ୍ମରଣୀୟ ।

ଓଡ଼ିଶା ସଂଗ୍ରହାଳୟର ପ୍ରଥମ ଅଧ୍ୟକ୍ଷ ଡ. ହରିଶ ଚନ୍ଦ୍ର ଦାସଙ୍କ ସମେତ ବହୁ କୀର୍ତ୍ତିମାନ ସାଧକଙ୍କ ଗବେଷଣା ପୁସ୍ତକ ଓ ନିବନ୍ଧମାନ ଦେଶ ତଥା ଆନ୍ତର୍ଜାତିକ ଗୌରବ ଲାଭ କରିଛି । ଅଧ୍ୟାପକ ମଧୁସୂଦନ

କବିତା, ରମ୍ୟରଚନାରେ ବେଶ୍ ଯଶସ୍ୱୀ, ଚିକିତ୍ସାବୀତ୍ ଡାଃ ହରୀଶ ଦାଶ ସଂସ୍କୃତି, ଆଧ୍ୟାତ୍ମ ପ୍ରବନ୍ଧ ରଚନାରେ ସିଦ୍ଧହସ୍ତ । ବିଶେଷତଃ କ୍ଷୁଦ୍ରଗଳ୍ପ ଜଗତରେ ଉଲ୍କାବିତ୍ ଆବିର୍ଭୂତ ହୋଇ ସ୍ୱକୀର୍ତ୍ତିରେ ଚତୁର୍ଦ୍ଦିଗକୁ ଝଲସିତ କରି ଅକାଳରେ ଝଡ଼ି ଯାଇଥିବା ଏ ମାଟି (ଦହମୁଣ୍ଡା)ର ଅମର ସନ୍ତାନ ସ୍ୱର୍ଗତ କନ୍ହେଇଲାଲ ଦାସ 'କ୍ଷଣିକଂ ଜ୍ୱଳନଂଶ୍ରେୟ ନଚଧୂମାୟିତ ଚିରମ୍' ଆପ୍ତବାଣୀକୁ ସାର୍ଥକ କରିଛନ୍ତି ।

ପ୍ରାବନ୍ଧିକ ୰ ଶ୍ରୀଚରଣ ମହାନ୍ତି, ଔପନ୍ୟାସିକ ୰ ମନ୍ମଥ କୁମାର ଦାସ, କବି ଶ୍ରୀ ସୁକୁମାର ଦାସ, କବି ଶ୍ରୀକୁମାର ତଥା ଶ୍ରୀ କାହ୍ନୁ ଗୋପାଳ ଶତପଥୀଙ୍କ ବୌଦ୍ଧିକ ପ୍ରବନ୍ଧ ମଧ୍ୟ ଏ କ୍ଷେତ୍ରରେ ଉଲ୍ଲେଖଯୋଗ୍ୟ ।

ଉଦୀୟମାନ ଲେଖକଙ୍କ ମଧ୍ୟରେ ରମ୍ୟ ବ୍ୟଙ୍ଗକାର ଶ୍ରୀମାନ ଅଞ୍ଜନ ଚାନ୍ଦଙ୍କ ପ୍ରତିଭା ଉଜ୍ଜ୍ୱଳ ପ୍ରତିଶ୍ରୁତି ବହନ କରେ । ଅନେକ ଖ୍ୟାତ ଅଖ୍ୟାତ ସ୍ରଷ୍ଟା ସାଧକଙ୍କ ତାଲିକା ଲମ୍ବିପାରେ, ମାତ୍ର ବର୍ତ୍ତମାନର ଜୀବିକା ଜ୍ୱାଳା ଜର୍ଜରିତ ଯୁବପିଢ଼ିଙ୍କ କୃତିରେ ସାରସ୍ୱତ ସାଧନ ପରମ୍ପରାର ବଳିଷ୍ଠ ସ୍ୱାକ୍ଷରକୁ ଏବେବି ଅପେକ୍ଷା ରହିଛି ।

ଭୋଗରାଇର ଯଶସ୍ୱୀ ଚିତ୍ରଶିଳ୍ପୀ ଗୌରାଙ୍ଗ ସୋମ (ମହାଗବ), ଅସୀମ ବସୁ (କଖଡ଼ା) ଏବଂ ଅନନ୍ତ ପଣ୍ଡାଙ୍କ ସିଦ୍ଧି ଆନ୍ତର୍ଜାତିକ ଗୌରବ ଲାଭ କରିଛି । ସଙ୍ଗୀତ ନାଟକକ୍ଷେତ୍ରରେ ପ୍ରତିଭାଧର କଳାକାରଙ୍କ କୀର୍ତ୍ତି ମଧ୍ୟ ଅନନ୍ୟ ।

ସଙ୍ଗୀତ ନାଟ୍ୟଶିଳ୍ପୀ ଭାବେ ୰ରାଧାନାଥ ଶତପଥୀ, ୰ ଫଣି ଭୂଷଣ ଦେ, ଶ୍ରୀ ଫଣି ଭୂଷଣ ପଣ୍ଡା, ୰ କେଦାର ନାଥ ଦାସମହାପାତ୍ର. ୰ ଗଙ୍ଗାଧର ପ୍ରଧାନ, ୰ ମନ୍ମଥ ନାଥ କର, ୰ ଅରୁଣ ବେହେରା, ମନ୍ମଥ କୁମାର ମହାନ୍ତି, ଶ୍ରୀ କମଳ ଲୋଚନ ବେହେରା, ଶ୍ରୀ ପଦ୍ମଲୋଚନ ଜେନା, ଶ୍ରୀ ରୋହିଣୀ ମହାନ୍ତି ଅଞ୍ଚଳ ତଥା ରାଜ୍ୟରେ ଅସାମାନ୍ୟ ପ୍ରତିଷ୍ଠା ଲାଭ କରିଛନ୍ତି । ଏକଦା ଚନ୍ଦନେଶ୍ୱର ହରଗୌରୀ ଗଣନାଟ୍ୟ, ଶ୍ରଦ୍ଧାପୁର ଗଣନାଟ୍ୟ, ନାଟକ ଜଗତରେ ଓଡ଼ିଶା ଓ ବଙ୍ଗଳାରେ ଚହଳ ସୃଷ୍ଟି କରିଥିଲା । ୧୯୨୨ରେ ପ୍ରତିଷ୍ଠିତ ଭୋଗରାଇର ଶ୍ୟାମସୁନ୍ଦର ରଙ୍ଗମଞ୍ଚ ଏ ଯାବତ୍ ନିରବଚ୍ଛିନ୍ନ ଭାବେ ପ୍ରତିବର୍ଷ ନାଟକମାନ ପ୍ରଦର୍ଶନ କରି ଆସୁଛି, ଏବେ ପୂର୍ବର ସେ ଗୌରବ ନାହିଁ କିନ୍ତୁ ସେ ଉଷ୍ମତା କମିନାହିଁ ।

ଆଧ୍ୟାତ୍ମିକ ପୀଠ ରୂପେ ପ୍ରାଚୀନ କାଳରୁ ସ୍ଥାପିତ ମନ୍ଦିରମାନ ଭୋଗରାଇର ସମ୍ଭ୍ରାନ୍ତ ଅତୀତର ସାକ୍ଷ୍ୟ ବହନ କରେ । ସେ ସବୁ ମଧ୍ୟରେ ଭୋଗରାଇର ବାଶୁଳୀ ମନ୍ଦିର, ବାରଦେଉଳୀ, ଶ୍ୟାମସୁନ୍ଦର ଓ ଗୋପିମୋହନ ମନ୍ଦିର, ଚନ୍ଦନେଶ୍ୱର ମନ୍ଦିର, କମର୍ଦ୍ଧାର ବାରଦେଉଳୀ, ପୁଟିଣେଶ୍ୱର ମନ୍ଦିର, ଦୁଡ଼ପଳର ବାସୁଦେବ ମନ୍ଦିର, ଫୁଲବଣୀର 'ଗଡ଼ ନାଇକାଣୀ', ଭୂଷଣ୍ଡେଶ୍ୱର ଉତ୍ୟାଦି ଉଲ୍ଲେଖଯୋଗ୍ୟ ।

ବାଶୁଳୀ ମନ୍ଦିର ଦୂରରୁ ଠିକ୍ ଛୋଟ କୋଣାର୍କ ଭଳି ଦିଶେ । ଭାସ୍କର୍ଯ୍ୟ ନାହିଁ ମାତ୍ର ସ୍ଥାପତ୍ୟ ଉତ୍କଳୀୟ ପିଢ଼ ଶୈଳୀରେ ନିର୍ମିତ । ଠାକୁରାଣୀଙ୍କ ଖଡ୍ଗ ଧାରିଣୀ ଦ୍ୱିଭୁଜା କାଷ୍ଠ ନିର୍ମିତ ମୂର୍ତ୍ତି ଅସୁର ଉପରେ ଦଣ୍ଡାୟମାନ, ଉଚ୍ଚତା ପ୍ରାୟ ଆଠଫୁଟ । ସାଧାରଣତଃ ଦେବୀ ମୂର୍ତ୍ତି ପଥର ବା ଧାତୁରେ ଅନ୍ୟତ୍ର ରହିଛି । ଏଭଳି ନିମ କାଠର ଦୀର୍ଘ ମୂର୍ତ୍ତି ଦେଶରେ ବିରଳ । ଜଗନ୍ନାଥଙ୍କ ଭଳି ଏହାଙ୍କ ନବକଳେବର ହୁଏ । ଏଠାରେ ଜୀବବଳୀ ଓ ଅସ୍ପୃଶ୍ୟତା ନାହିଁ । ଭୂସମ୍ପତ୍ତି ଓଡ଼ିଶାରେ ଅଦ୍ୱିତୀୟ, ତୋଡ଼ରମଲ୍ଲ ଅଢ଼େଇ ହଜାର ଏକର ନିଷ୍କର ଜମି ଖଞ୍ଜିଥିଲେ; ସରକାରଙ୍କ ଉଦାସୀନତା ତଥା ରାଜିନୀତି ମାଫିଆଙ୍କ ଉତ୍ପାତରେ ମନ୍ଦିରର ପୂର୍ବଶ୍ରୀ ଲୁଣ୍ଠିତ । ବାଲିଆପାଳର ଐତିହାସିକ ୰ ହୋସେନ୍ ଦାରୋଗା ଏବଂ ଭୋଗରାଇର ରାଜାରାମ ସେନ୍‌ଗୁପ୍ତଙ୍କ ଲିଖିତ 'ପାର୍‌ସି ଇତିହାସ'ରେ ଏ ମନ୍ଦିରର ବୃତ୍ତାନ୍ତ ରହିଛି ।

ଆଉ ଏକ ସାତ୍ତ୍ୱିକ ପରିବେଶ ହେଲା ଭୋଗରାଇର ବାର ଦେଉଳୀ ମନ୍ଦିର । ବାରଶିବଙ୍କ ପାଇଁ ମୁହାଁମୁହିଁ ଦୁଇଧାଡ଼ିରେ ନିର୍ମିତ ୧୨ଟି ଶିବ ମନ୍ଦିର ମଧ୍ୟ ଭାଗରେ ବକୁଳକୁଞ୍ଜର ଶ୍ୟାମଶୋଭା, ପୂର୍ବ ତଟର ବିଶାଳ ପୁଷ୍କରିଣୀ ତଥା ପ୍ରାଙ୍ଗଣ ମଧ୍ୟରେ ଓଡ଼ିଶାର ଅନ୍ୟତମ ପ୍ରାଚୀନ ସଂସ୍କୃତ ମହାବିଦ୍ୟାଳୟର ଅନ୍ତେବାସୀଙ୍କ ସୁଲଳିତ ମନ୍ତ୍ରଧ୍ୱନି ଆମ ବିସ୍ମୃତ ଋଷିକୁଳ ସଂସ୍କୃତିର ଜୀବନ୍ତ ସ୍ମୃତି ହୋଇ ରହିଛି ।

ପାରିବେଶିକ ଏ ଅନନ୍ୟତା ଏ ଯୁଗରେ ଯଥାର୍ଥରେ ଏକ ଦୁର୍ଲଭ ଅନୁଭବ । ସେହିଭଳି ଅନ୍ୟତମ ଶୈବକ୍ଷେତ୍ର ଚନ୍ଦନେଶ୍ୱରଙ୍କ ଆଧାତ୍ମିକ ମହତ୍ତ୍ୱ ଅନନ୍ୟ । ଏହା ଏକ ଆନ୍ତରାଜ୍ୟ ତୀର୍ଥକ୍ଷେତ୍ର । ଚୈତ୍ର ଚଡ଼କ ଯାତ୍ରା ବେଳେ ଏଠାରେ ବ୍ରତଧାରୀ ଭକ୍ତଙ୍କ ସଂଖ୍ୟା ବେଳେବେଳେ ଲକ୍ଷେକୁ ବଳେ । ହିନ୍ଦୁଧର୍ମ ଜଗତରେ ଶୈବକ୍ଷେତ୍ରର ଏ ଗୌରବ କେବଳ ଚନ୍ଦନେଶ୍ୱରଙ୍କର ରହିଛି ।

କିନ୍ତୁ ଭୋଗରାଇ ମାଟିର ସବୁଠୁ ବଡ଼ ସଂପଦ ହେଲା ବେଳାଭୂମିର ଗୌରବ । ଯୁଗେଯୁଗେ ସମୁଦ୍ର ବେଳା ମଣିଷର ଚିତ୍ତଜୟ କରି ଆସିଛି । ମାତ୍ର ଏହାର ସ୍ପର୍ଶ ସୌଭାଗ୍ୟ ପୃଥିବୀର ସମସ୍ତ ଭୂଖଣ୍ଡର ନାହିଁ । ଭାରତର ଏ ଗୌରବ ରହିଛି । ଭୋଗରାଇର ବେଳାଭୂମି ସାଗରର ସେଇ ଅପାର ଐଶ୍ୱର୍ଯ୍ୟର ଏକ ଅଂଶୀଦାର ରୂପେ ଭାଗ୍ୟବାନ ହୋଇ ରହିଛି ।

ସୁବର୍ଣ୍ଣରେଖା ମୁହାଣଠାରୁ ଓଡ଼ିଶାର ସୀମାନ୍ତ ଗାଁ ଉଦୟପୁର ପର୍ଯ୍ୟନ୍ତ ବିସ୍ତୃତ ଭୋଗରାଇର ବେଳାଭୂମିର ଗୁରୁତ୍ୱ ବିଭିନ୍ନ ଦୃଷ୍ଟିରୁ ଉଲ୍ଲେଖନୀୟ । ଅବଶ୍ୟ ଆଜି ତାର ପୂର୍ବ ବିସ୍ତୃତି ନାହିଁ । ଦିନେ ଏହା ପୂର୍ବକୁ ପଶ୍ଚିମବଙ୍ଗର ଗଙ୍ଗାଯାଏଁ ବିସ୍ତୃତ ଥିଲା । ଏଲ୍‌ଫିନ୍ ଷ୍ଟୋନ୍‌ଙ୍କ 'ହିଷ୍ଟ୍ରି ଅଫ୍ ଇଣ୍ଡିଆ' (୭ମ ସଂ, ପୃ୨୪୩) ଅନୁସାରେ "The Ganga Vansha were the Rajas of a country on the Ganges answering to what is now Tamluk and Midnapur."

ଆଇନ୍-ଇ-ଆକ୍‌ବରୀକୁ ଆଧାର କରି ବଙ୍ଗୀୟ ଐତିହାସିକ ରାଜେନ୍ଦ୍ର ଲାଲ ମିତ୍ର ମଧ୍ୟ ସ୍ୱୀକାର କରନ୍ତି "Orissa consisted of five Sirkars or district and Jaleswar was one of them and that the Sirkar of Jeleswar included Midnapur." ପୁଣି ଓଡ଼ିଶାର ସୀମା ଏବଂ ଓଡ଼ିଆ ଭାଷାର ବ୍ୟବହାର ସମ୍ବନ୍ଧରେ ସେ ଲେଖିଛନ୍ତି -

"A little before the time, when the East India company assumed the Dewany of Bengal, Bihar and Orissa, the northen boundary of Orissa was the south of Rupnarayan and that was probably its extreme limti of the north, for it is upto that line that the Uriya dialect was always current..." Antiquities of Orissa.

(ଓ.ସା. ଆଦିପର୍ବ-ପୃ ୧୪, ସୁରେନ୍ଦ୍ର ମହାନ୍ତି)

ଐତିହାସିକ F.E. Pangiter, I.C.S.ଙ୍କ ଲେଖାରୁ ଜଣାଯାଏ "In formar times the Udra territory consisted of western part of Midnapur, the modern district of Manbhum, the eastern part of Singbhum and perhaps the southern portion of Bankura. (The land of my Sires (B.C. Roy Mahasay 1952, P-37)."

ବଙ୍ଗଳାର 'ଶ୍ରୀଚୈତନ୍ୟ ଭାଗବତ'ରୁ ମଧ୍ୟ ଜଣାଯାଏ ଗଙ୍ଗାର ପଶ୍ଚିମ ତଟ ଘାଟର ନାମ ଶ୍ରୀ ପ୍ରୟାଗ ଥିଲା, ଏବଂ ସେଇଠୁ ଉତ୍କଳ ବା ଉଡ୍ରଦେଶ ଆରମ୍ଭ । କବି ଶ୍ରୀଚୈତନ୍ୟଙ୍କ ପୁରୀ ଅଭିମୁଖେ ଗଙ୍ଗା ପାରି ପ୍ରସଙ୍ଗରେ ଲେଖିଛନ୍ତି -

''ସେଇ କ୍ଷଣେ ହରିବଲି ଶ୍ରୀଗୌରସୁନ୍ଦର ।
ଉଠିଲେନ ଗିୟା ପ୍ରଭୁ ନୌକାର ଉପର ।।
ହେନ ମତେ ମହାପ୍ରଭୁ ସଂକୀର୍ତ୍ତନ ରସେ ।
ପ୍ରବେଶ ହଇଲା ଆସି ଶ୍ରୀଉତ୍କଳ ଦେଶେ ।।
ଉତ୍ତରିଲା ଗିୟା ନୌକା ଶ୍ରୀପ୍ରୟାଗ ଘାଟେ ।
ନୌକା ହୈତେ ମହାପ୍ରଭୁ ଉଠିଲେନ୍ ତଟେ ।।
ପ୍ରବେଶ କରିଲା ଗୌରଚନ୍ଦ୍ର ଉଡ୍ରଦେଶେ ।
ଇହା ଯେ ଶୁନୟେ ସେ ଭାସୟେ ପ୍ରେମରସେ ।।

(ଅନ୍ତଖଣ୍ଡ-ଦ୍ୱିତୀୟ ଅଧ୍ୟାୟ)

କଲିକତା ହାଇକୋର୍ଟର ପୂର୍ବତନ ବିଚାରପତି ସାରଦା ଚରଣ ମିତ୍ର ତାଙ୍କର 'ଉତ୍କଳେ ଶ୍ରୀକୃଷ୍ଣ ଚୈତନ୍ୟ' ଗ୍ରନ୍ଥରେ ମଧ୍ୟ ଲେଖିଛନ୍ତି -''ନଦୀର ପଶ୍ଚିମ ତୀରେ ଶ୍ରୀ ପ୍ରୟାଗ ଘାଟ୍, ତାର ଏକ ସ୍ଥାନୀୟ ନାମ ଗଙ୍ଗାଘାଟ, ତଥାୟ ପାଣ୍ଡବ ରାଜ ଯୁଧିଷ୍ଠିର ସ୍ଥାପିତ ଶିବଲିଙ୍ଗ ଛିଲ । ଇହାତେ ବେଶ୍ ବୁଝିତେ ପାରା ଯାୟ ଯେ ବର୍ତ୍ତମାନ ଚବିଶ ପରଗଣାର କତକ ଅଂଶ ଏବଂ ମେଦିନୀପୁରେର ଦକ୍ଷିଣାଂଶ ଉତ୍କଳ ବା ଉଡ୍ରଦେଶେର ଅନ୍ତର୍ଭୂକ୍ତ ଛିଲ ।''

ଶ୍ରୀ ଦିଲ୍ଲୀପ କୁମାର ମୁଖାର୍ଜୀଙ୍କ 'ଶ୍ରୀ ଚୈତନ୍ୟ' ଗ୍ରନ୍ଥ ଅନୁସାରେ ଖ୍ରୀ ୧୫୧୦ରେ ଶ୍ରୀଚୈତନ୍ୟ କଲିକତା ଠାରୁ ୨୫ ମାଇଲ ଦୂରବର୍ତ୍ତୀ ଗଙ୍ଗାନଦୀର ମୁହାଣ ଓ ବଙ୍ଗୋପସାଗରର ସଙ୍ଗମସ୍ଥଳ ଡାଇମଣ୍ଡ ହାରବାରର ନିକଟବର୍ତ୍ତୀ 'ଛତ୍ର ଭୋଗ' ଠାରେ ବଙ୍ଗ ସୀମା ଅତିକ୍ରମ କରି ଉତ୍କଳ ଭୂମିରେ ପାଦ ଦେଲେ (NBT India-1971-P-22-23) ।

ଐତିହାସିକ ରାଖାଲ ଦାସ ବାନାର୍ଜୀ ମଧ୍ୟ ମେଦିନୀପୁରର ହିନ୍ଦୁ ଜମିଦାରଗଣ ଓଡ଼ିଶାର ପୂର୍ବତନ ରାଜାଙ୍କ ଅଧୀନ ଥିବାର ଲେଖିଛନ୍ତି -

"x x Even now the majority of the Hindu Zamindars of Midnapur prove that they were land holders and fudatories of the Hindu Kings of Orissa at no distinct date (History of Orissa-R.D. Benerjee, Vol-1, P-2)"

ଏଇ ବିସ୍ତୃତ ଭୂଖଣ୍ଡର ସମୁଦ୍ରବେଳା ମୂଳତଃ ଓଡ଼ିଶାର ଅଙ୍ଗୀଭୂତ ଥିଲା, କିନ୍ତୁ ଆଜି ଓଡ଼ିଶାର ସେ ଗୌରବ ନାହିଁ । ବିଶାଳ ବେଳାଭୂମିର ବ୍ୟାପ୍ତି ପରବର୍ତ୍ତୀ ରାଜନୀତିକ ପୁନର୍ଗଠନରେ ଓଡ଼ିଶାରୁ ଛିନ୍ନ ହୋଇଗଲା । ଓଡ଼ିଆ ଭାଗବତ, ସାରଳା ମହାଭାରତ ଇତ୍ୟାଦିର ତାଳପତ୍ର ପୋଥି, କୋଷ୍ଠୀ, ଓଡ଼ିଆ ଦଲିଲ ଏବେ ବି ସେ ଅଞ୍ଚଳରେ ଦୁଷ୍ପ୍ରାପ୍ୟ ନୁହେଁ । ଓଡ଼ିଆ ପଦପଦବୀ ମହାନ୍ତି, ବେହେରା, ଜେନା, ସାମଲ, ଦେଓ ଇତ୍ୟାଦି ମାଇତି, ବେରା, ଜାନା, ସାସମଲ ଦେ ଇତ୍ୟାଦିରେ ବିକୃତ ହୋଇଛି । ଅଙ୍ଗଚ୍ଛେଦର ଜ୍ୱାଳା ଶହଶହ ବର୍ଷପରେ ବି ସ୍କଟ୍‌ଙ୍କ ମର୍ମରେ ଗୁଞ୍ଜରି ଉଠେ -

'Land of my Sires, what a mortal hand
can ever unite the filial band
that knits me to thy rugged strand.'

ତମଲୁକେଶ୍ୱରୀ ମନ୍ଦିର ଓଡ଼ିଶା ରାଜାଙ୍କ କୀର୍ତ୍ତି, ମନ୍ଦିରରେ ଥିବା ସେ ଶିଳାଲେଖ ସିମେଣ୍ଟ ଦ୍ୱାରା ବନ୍ଦ କରାଯାଇଛି । ସେ ଭଳି ଅନେକ ସ୍ମୃତି ବିଲୁପ୍ତ । ସେତେବେଳର ତାମ୍ରଲିପ୍ତ ଓଡ଼ିଆ ସାଧବଙ୍କ ସମୁଦ୍ରପାରି ବଣିଜର ଏକ ମୁଖ୍ୟ ବନ୍ଦର ଥିଲା । ହୁଏନସାଂଙ୍କ ଭ୍ରମଣ ସହ ଏହାର ସଂପର୍କ ଏକ ଐତିହାସିକ ଦଲିଲ । ଅଶୋକଙ୍କ ପୁତ୍ର କନ୍ୟା ଉତ୍କଳର ଏହି ବନ୍ଦର ଦେଇ ବୌଦ୍ଧଧର୍ମ ପ୍ରଚାର ପାଇଁ ସିଂହଳ ଯାତ୍ରା କରିଥିଲେ । ଏହି ବେଳାଭୂମି ବଙ୍କିମ ଚନ୍ଦ୍ରଙ୍କ ପ୍ରଖ୍ୟାତ ଉପନ୍ୟାସ 'କପାଳ କୁଣ୍ଡଳା'ର ପୃଷ୍ଠଭୂମି । ଏହାର ପରିବେଶ ବର୍ଣ୍ଣନା କ୍ରମରେ ସେ ଲେଖିଛନ୍ତି -

'ରସଲପୁରେର ମୁଖ ହଇତେ ସୁବର୍ଣ୍ଣରେଖା ପର୍ଯ୍ୟନ୍ତ ଅବାଧେ କୟେକ ଯୋଜନ ପଥ୍ ବ୍ୟାପିତ କରିୟା ଏକ ବାଲୁକା ସ୍ତୂପ ଶ୍ରେଣୀ ବିରାଜିତ ଆଛେ, ଆର କିଛୁ ଉଚ୍ଚ ହୋଇଲେ ଐ ବାଲୁକା ସ୍ତୂପ ଶ୍ରେଣୀକେ ବାଲୁକାମୟ କ୍ଷୁଦ୍ର ପର୍ବତଶ୍ରେଣୀ ବଲାଯାଇତେ ପାରିତ । ଏକ୍ଷଣେ ଲୋକେ ଉହାକେ ବାଲିଆଡ଼ି ବଲେ । ଐ ସକଲ ବାଲିଆଡ଼ିର ଧବଲ ଶିଖରମାଳା ମଧ୍ୟାହ୍ନ ସୂର୍ଯ୍ୟକିରଣେ ଦୂର ହଇତେ ଅପୂର୍ବ ଶୋଭା ବିଶିଷ୍ଟ ଦେଖାୟା ଉହାର ଉପର ଉଚ୍ଚ ବୃକ୍ଷ ଜନ୍ମାୟ ନା, ସ୍ତୂପତଲେ ସାମାନ୍ୟ କ୍ଷୁଦ୍ର ବନଝାଉଁ ଜନ୍ମିୟା ଥାକେ । ଅଧୋଭାଗେ ମଣ୍ଡନକାରୀ ବୃକ୍ଷାଦିର ମଧ୍ୟେ ଝାଟି ଝାଉଁ ଏବଂ ବନପୁଷ୍ପଇ ଅଧିକ ।'

କିଛି ପରିବର୍ତ୍ତନ ସତ୍ତ୍ୱେ ଆଜି ମଧ ଏ ଭୌଗୋଳିକ ସ୍ଥିତି ଲକ୍ଷ୍ୟ କରା ଯାଇପାରେ ? ବିଶ୍ୱକବିଙ୍କ ଭାଷାରେ ଏହା 'ନୀଲ ସମୁଦ୍ର ଜଲ୍ ଧୌତ ଚରଣ ତଲ୍' ରୂପେ ଖ୍ୟାତ ।

ଆଧୁନିକ ଓଡ଼ିଆ କାବ୍ୟଧାରାର ଜନକ କବିବର ରାଧାନାଥଙ୍କ କାବ୍ୟଭାଷାରେ ଏ ବର୍ଣ୍ଣନା ଆହୁରି ଐଶ୍ୱର୍ଯ୍ୟମୟ -ଆମ ବେଳାଭୂମିର ଶୋଭା ବର୍ଣ୍ଣନା ତାଙ୍କ ଲେଖନୀରେ-

'ଭୋଗରାଇ ଯା'ର ଦିଗନ୍ତ ବିସ୍ତାରୀ ବାଲୁକାରାଶି
ଶିରେ ଖେଳୁଥିଲା ରଙ୍ଗେ ଦିନେ ସିନ୍ଧୁ ତରଙ୍ଗ ଆସି,
ଏବେ ପଦେ ଯା'ର ଚକ୍ରବାଳ ବ୍ୟାପ୍ତି ଶାଳିକେଦାର
ଶରତେ ଧରଇ ବାତାହତ ସିନ୍ଧୁ ତରଙ୍ଗାକାର ।
ସେ ଶାଳି କେଦାରେ ଦୂରୁଁ ଦିଶେ ଶତ ସିକତାକୁଦ
ପାରାବାରେ ଯେହ୍ନେ ଜଳଦେବତାଙ୍କ ଶଙ୍ଗ-ସଉଧ ।'

ସାଗର ସହ ସୁବର୍ଣ୍ଣରେଖାର ମିଳନ ବର୍ଣ୍ଣନା ଆହୁରି ଚମତ୍କାର । ଯାମକୁଣ୍ଡାର ଘନ ତାଳବନପୂର୍ଣ୍ଣ ଶ୍ୟାମଳ ବେଳାଭୂମିରେ ସୁବର୍ଣ୍ଣରେଖା ସିନ୍ଧୁ ସହ ଏକାତ୍ମ ହୋଇଛି, ଏ ମିଳନର କଳଧ୍ୱନି ସତତ ବିଶ୍ୱ ବିଖ୍ୟାତ ଶିବଲିଙ୍ଗ ଭୂଷଣ୍ଡେଶ୍ୱରଙ୍କର ପ୍ରୀତି ସମ୍ପାଦନ କରେ-କବିଙ୍କ ଭାଷାରେ

'ଯାମକୁଣ୍ଡ ଯାର ଘନ ତାଳବନ ଶାମଳ-ତୀରା
ସୁବର୍ଣ୍ଣ ତଟିନୀ ସିନ୍ଧୁ ଅଙ୍ଗେ ଅଙ୍ଗ ଢାଳେ ଗଭୀରା
ବେନିଙ୍କର ଯହିଁ ଜଳ ସଂଘର୍ଷଜ ଧୀର ନିର୍ଘୋଷ
ଜନମାଏ ଦେବ ଭୂଷଣ୍ଡ ଈଶ୍ୱରେ ନିରତେ ତୋଷ ।।'

ବିଶ୍ୱସାଗର ବେଳାର ସୌନ୍ଦର୍ଯ୍ୟ ମେଳାରେ ଏହି ବେଳାଭୂମିର ଦୃଶ୍ୟସମ୍ଭାର ମଧ ସମ୍ଭ୍ରାନ୍ତ ଗୌରବ ଲାଭ କରିଛି । ସୌନ୍ଦର୍ଯ୍ୟ ବିଜ୍ଞାନୀଙ୍କ ମତରେ ଏ ଦୃଶ୍ୟ ଅନ୍ୟତ୍ର ଦୁର୍ଲଭ । ହୁଏତ କେବଳ ଆମେରିକାର କାଲିଫର୍ଣ୍ଣିଆ ବେଳାଭୂମି ଏହାର ସମକକ୍ଷ ହୋଇପାରେ -In many respects this sea shore is stated to be the best in the world and has only a parallel in the deona beach of California in U.S.A. (Amrit Bazar Patrika-Calcutta-Dak Edn. -30.09.1951)

ଏଇ ବେଳାଭୂମିହିଁ ତଅପୋଇ କିମ୍ବଦନ୍ତୀର ପୃଷ୍ଠଭୂମି । ଅର୍ଥାତ୍ ଆମ ସାଧବ ପୁଅ ଏ ସମୁଦ୍ର ପାରି ବଣିଜ କରି ବାଲି ଜାଭା ବର୍ଣ୍ଣିଓ ସୁମାତ୍ରା ଭଳି ଦୀପଦେଶରେ ଏକଦା ଆମ ସଂସ୍କୃତିର ଯେଉଁ ସାମ୍ରାଜ୍ୟ ବିସ୍ତାର କରିଥିଲେ ସେଥିପାଇଁ ଏ ବେଳାଭୂମିର ଭୂମିକା ମଧ ଇତିହାସର ଏକ ବିସ୍ମୃତ ସ୍ୱର୍ଣ୍ଣ ଅଧ୍ୟାୟ ।

ଏହାର ମୁହାଣରେ ଅଧୁନା ଅବଲୁପ୍ତ ପିପିଲି ବନ୍ଦର ସେଇ ବିସ୍ମୃତ ଗୌରବର ମୂକ ସ୍ମୃତି ହୋଇ ରହିଛି । ପରବର୍ତ୍ତୀ କାଳରେ ୧୫୧୪ ଖ୍ରୀ.ରେ ଏଠାରେ ପର୍ତ୍ତୁଗୀଜ୍ ବଣିଜ ପୀଠ ସ୍ଥାପିତ ହୋଇଥିଲା । ଭାରତରେ ଇଉରୋପୀୟ ବାଣିଜ୍ୟର ଆରମ୍ଭ କାଳରେ ପିପିଲି ବନ୍ଦରର ଗୁରୁତ୍ୱ ସବୁଠୁ ଅଧିକ ଥିଲା । ବଙ୍କିମ ଚନ୍ଦ୍ରଙ୍କ 'କପାଳ କୁଣ୍ଡଳା'ରେ ତାର ସୂଚନା ସାହିତ୍ୟ ଛଟାରେ ପ୍ରକାଶ ପାଇଛି -'ଅଦୂରରେ କୋନ୍ ଇଉରୋପୀୟ ବଣିକ ତରିର୍ ସମୁଦ୍ର ପୋତ ଶ୍ୱେତପକ୍ଷ ବିସ୍ତାର କରିୟା ବ୍ରିହତ୍ ପକ୍ଷୀର ନ୍ୟାୟ ଜଲଧି ହ୍ରିଦୟେ ଉଡ଼ିତେ ଛିଲ ।' Mr. D.H. Kingsford, I.C.S. ଲେଖିଛନ୍ତି-The site is now lost and the only trace of European colonisation is found in the names of Paragana SahaSunder. Pipili was abandoned in 1642 (Land of my Sires-B.C. Roy Mohasay-P-5).

ସମୁଦ୍ର ପାରୀ ନୌଚାଳନାରେ ଚରମ ଉତ୍କର୍ଷର ଦୁଇଟି ଉଜ୍ଜ୍ୱଳ ଦୃଷ୍ଟାନ୍ତ ହେଲା -ଭୂଷଣ୍ଡେଶ୍ୱର ଶିବଲିଙ୍ଗ ଏବଂ ବାସୁଳୀ ମନ୍ଦିର । ଶିବଲିଙ୍ଗର ଉଚ୍ଚତା ୧୬ ଫୁଟ ୬ ଇଞ୍ଚ, ଗୋଲେଇ ୧୪ ଫୁଟ୍, ଶକ୍ତିର

ପରିମିତି ୩୭ ଫୁଟ, ଢ଼ଳଧାରୀ ୫ ଫୁଟ, ଗୋଟିଏ ବିଶାଳ ମୁଗୁନୀ ପଥରରେ ଏହା ନିର୍ମିତ, ତଥା ବାସୁଳୀ ମନ୍ଦିରର ବିଶାଳ ମାଙ୍କଡ଼ା, ମୁଗୁନି ଏବଂ ଶଙ୍ଖମଲ ପଥର ସୁଦୂର ଜଳପଥରେ ଅଣା ଯାଇଛି । ଏହା ଏ ଯୁଗରେ ତ ଅସମ୍ଭବ, ରାସ୍ତାଘାଟ ନଥିବା ଯୁଗରେ ଏ କୀର୍ତ୍ତିସ୍ଥାପନ ଆମ ସମୁଦ୍ରପାରି ବଣିକର ଚମତ୍କାରିତା ଛଡ଼ା ଆଉ କ'ଣ ?

ଆମ ବେଳାଭୂମିର ସନ୍ନିକଟ ଚନ୍ଦ୍ରାବାଲି, କୀର୍ତ୍ତନିଆ, ତାଳସାରି, ଫୁଲବଣୀ, ରଣକୋଠା, ବିଚିତ୍ରପୁର, ଶ୍ରଦ୍ଧାପୁର, ଶଙ୍ଖାରି, ପଦ୍ମପୁର, ଉଦୟପୁର, ଶ୍ୟାମାନନ୍ଦିପୁର, ଚନ୍ଦନେଶ୍ୱର (ହୁଗୁଳି) ଇତ୍ୟାଦି ନାମ ମଧ୍ୟ ଐତିହ୍ୟ ବହନ କରନ୍ତି । ଏସବୁର ଉଚ୍ଚାରଣ ମଧ୍ୟରେ ସତେ ଅବା ବେଳାଭୂମିର ଅତୀତ ଗୌରବ ଗୁଞ୍ଜରି ଉଠେ ।

ପୌର୍ଣ୍ଣମାସୀ ରଜନୀରେ ଶୁଭ୍ର ବାଲୁକାବେଳାର ଶୋଭା (ଚନ୍ଦ୍ରାବାଲି), ଭଗବତ୍ ନାମର ପବିତ୍ର ଝଙ୍କାର (କୀର୍ତ୍ତନିଆ), ସାରିସାରି ତାଳବନର ଉତ୍ତୁଙ୍ଗ ଶୋଭା (ତାଳସାରି), ଗହନ ଫୁଲବନର ହସନ୍ତ ଶ୍ରୀ (ଫୁଲବଣି) ସୁରକ୍ଷାର ଶୌର୍ଯ୍ୟମଣ୍ଡିତ ଦୁର୍ଗ (ରଣକୋଠା), ବିଚିତ୍ରତାର ଚିତ୍ରିତ ବିଭବ (ବିଚିତ୍ରପୁର), ଶ୍ରଦ୍ଧା ମମତାର ହୃଦ୍ୟବନ୍ଧନ (ଶ୍ରଦ୍ଧାପୁର), ସମୁଦ୍ର ଶଙ୍ଖରୁ ଶଙ୍ଖର ବଣିଜ (ଶଙ୍ଖାରୀ) ଗଭୀର ଦାମଦୀଘିର ପଦ୍ମବନ (ପଦ୍ମପୁର), ଉଦୀୟମାନ ସୂର୍ଯ୍ୟର ଆଦ୍ୟଆଭା (ଉଦୟପୁର), ଶ୍ୟାମାଶ୍ୟାମର ଆନନ୍ଦ ଧାମ (ଶ୍ୟାମାନନ୍ଦିପୁର), ହୁଗୁଳା ବନରେ ପ୍ରଭୁ ଚନ୍ଦନେଶ୍ୱରଙ୍କ ମହିମା (ହୁଗୁଳି-ଚନ୍ଦନେଶ୍ୱର) ଆଦି ବିବିଧଭାବ ଅନୁଭବର ସୂକ୍ଷ୍ମ ବ୍ୟଞ୍ଜନା ସତେ ଅବା ସୁଦୂର ଅତୀତରୁ ବର୍ତ୍ତମାନ ଦେଇ ସୀମାହୀନ ଭବିଷ୍ୟତ ପାଇଁ ଏ ଭୂଇଁରେ କେଉଁ ଅଜଣା ଅବ୍ୟକ୍ତ ସନ୍ଦେଶ ସଂଚାର କରି ଆସିଛି ।

ଭାଷାର ନୁହେଁ, ଭାଷାତୀତର ଏ ଅନନ୍ତ ଅନୁଭବ ଦରଦୀ ହୃଦୟ ବିନା ଏକା ଅଲଭ୍ୟ ସିନା ! ବେଳାଭୂମିଠୁ ଅନତିଦୂରର ପଲ୍ଲିଗୁଡ଼ିକ ମଧ୍ୟ ସ୍ୱୀକୟ, ବୈଶିଷ୍ଟ୍ୟରେ ଐତିହ୍ୟ ମଣ୍ଡିତ ।

ବେଳା ମଧ୍ୟବର୍ତ୍ତୀ ହ୍ରଦତୁଲ୍ୟ ବିଶାଳ ଜଳାଶୟମାନ ଅଧୁନା ଅବଲୁପ୍ତ । ଆଜି ପୂର୍ବର ସେ ପଦ୍ମବନ ନାହିଁ । ଆନ୍ତର୍ଜାତିକ ଖ୍ୟାତମାନ ଲେଖକ ଏ ମାଟିର ଅମୃତ ସନ୍ତାନ ମନୋଜ ଦାସଙ୍କ ନିସର୍ଗ ମାଧୁରୀ ମୁଗ୍ଧ ଦରଦୀ ପ୍ରାଣର ହାହାକାର 'Orissa You do not know', 'ସମୁଦ୍ର କୂଳର ଏକ ଗାଁ', 'ସମୁଦ୍ରର କ୍ଷୁଧା' ଇତ୍ୟାଦି ରଚନାରେ ଧ୍ୱନିତ ହୋଇଛି, ସେଇ ଅନ୍ତର୍ବେଦନାର ରେସ୍ ମରମୀ ପାଠକ ପ୍ରାଣରେ ବେଶ୍ ବାଜେ ।

କିନ୍ତୁ ଆମ ବେଳାଭୂମିର ସବୁଠୁ ବଡ଼ ଗୌରବ ଆମ ସମୁଦ୍ରଠୁ କିଞ୍ଚିତ୍ ଦୂର ଜୟରାମପୁର ମାଟିତଳୁ ପାଇଁ । ଗ୍ରାମଟିର ନାମ ଯେମିତି ଭାବାତ୍ମକ, ଐତିହ୍ୟ ସେମିତି ଗୌରବାବହ । ଇତିହାସ ନୀରବ, କେଜାଣି କେତେ ଶତ ବା ହଜାର ବର୍ଷ ତଳେ ଏ ଭୂଖଣ୍ଡରେ ବିକଶିଥିବା ଏକ ସମୃଦ୍ଧ ସଭ୍ୟତା କେତେ କାଳୁ ଭୂଗର୍ଭରେ ପୋତି ହୋଇ ରହିଛି । ପ୍ରତ୍ନତତ୍ତ୍ୱ ବିଭାଗ ଦ୍ୱାରା ଯଥାର୍ଥ ଖନନ କଲେ ଏହାର ରହସ୍ୟମୟ ଅତୀତ ଧରା ଦେଇପାରେ, କିନ୍ତୁ ଆମ ଅବହେଳା, ଅବଜ୍ଞାର ବିସ୍ମୃତି କାଳିମା ଅଦ୍ୟାପି ସେଇ ବିଶ୍ୱବିଖ୍ୟାତ ଐତିହ୍ୟକୁ ଢାଙ୍କି ରଖିଛି ।

ଭୋଗରାଇର କୃତୀ କଥାକାର ୰ ଅବଦୁଲ ରହିମଙ୍କ ଗ୍ରନ୍ଥାବଳୀରୁ ଜୟରାମପୁର ଅତୀତର କିଛି ବୃତ୍ତାନ୍ତ ଜଣାଯାଏ । ବେଶ୍ ମର୍ମସ୍ପର୍ଶୀ ଭାଷାରେ ସେ ବର୍ଣ୍ଣିଛନ୍ତି ସେ ସବୁ ଅଜଣା ଅଧ୍ୟାୟ । ବିଶେଷତଃ ଜୟରାମପୁରର ବିଶାଳ ଦୁର୍ଗର ଅଧିପତି କୀରାତ ରାଜାଙ୍କ ପତନର କାହାଣୀ, କି ଲୋମହର୍ଷକ ସେ ଆଖ୍ୟାନ !

କିନ୍ତୁ ତାଠୁ ଦୁର୍ଲଭ ସଂପଦ ହେଲା ଏଠାକାର ଯଜ୍ଞକୁଣ୍ଡରୁ ଆବିଷ୍କୃତ ଏକ ତମ୍ବାପଟା

ଯେଉଁଥିରେ ରହିଛି ପୃଥିବୀର ଜଣା ଇତିହାସର ଆଦ୍ୟତମ ସାଗର ବର୍ଣ୍ଣନା । ରାଜ୍ୟ ସଂଗ୍ରହାଳୟରେ ଏହା ସଂରକ୍ଷିତ । ବିଶେଷଜ୍ଞଙ୍କ ମତରେ ବିଶୁଦ୍ଧ ଆଳଙ୍କାରିକ ସଂସ୍କୃତରେ ଏ ସାଗର ବର୍ଣ୍ଣନା ବିଶ୍ୱ ସାହିତ୍ୟର ଏକ ଅନନ୍ୟ ବିସ୍ମୟ । ଏ ଗୌରବ କେବଳ ଜୟରାମପୁର ବା ଭୋଗରାଇର ନୁହେଁ ସମଗ୍ର ଦେଶର ।

କେବଳ ପ୍ରଥମ ସାରସ୍ୱତ ବର୍ଣ୍ଣନା ପାଇଁ ନୁହେଁ ସମୁଦ୍ରର ଅପରୂପ ରୂପ-ବୈଭବର ଉପସ୍ଥାପନାରେ ସେ କେଉଁ ଅଜ୍ଞାତ କବି ଯେଉଁ ଅପୂର୍ବ ଭାବ ମାଧୁର୍ଯ୍ୟ ତଥା କଳାତ୍ମକ ଶବ୍ଦ-ଚାତୁର୍ଯ୍ୟ ପ୍ରକାଶ କରିଛନ୍ତି ତାହା ଏକ ଅତୁଳନୀୟ ସାରସ୍ୱତ ଐଶ୍ୱର୍ଯ୍ୟ । ଏଠାରେ କେବଳ ଗୋଟିଏ ବାକ୍ୟ ଉଦ୍ଧାର କରାଯାଉଛି -

"ଅପ୍ରମେୟ ବେଳା ଦ୍ୟୁତି ବିଭାସିନୀ, ଅବର୍ଣ୍ଣାନୁପମାଚିନ୍ତ୍ୟାମୃତାପାରାବ୍ୟୟାସ୍ଥିରଃ ପ୍ରବଳମାରୁତୋ ଧୃତ କ୍ଷୋଭିତ ଜଳତରଙ୍ଗ ସଂଘଟ ଜନିତ କଳକଳ ରାବ ଫେନପୁଞ୍ଜାଟ୍ଟହାସ୍ୟ, ଅହି ମକର ଝସନକ୍ର ଗ୍ରାହଦିବ ବିବିଧ ବିହଙ୍ଗଗଣ ବିରୁତୋପଗୀତ ପୁଳିନଃ, ସୁରାସୁର ମୁନିଗଣ ସିଦ୍ଧଚାରଣ ମନୁଜମାନୁଜେନ୍ଦ୍ରାଦିଭିଃ ସଂସ୍ତୁତ୍ୟା ନିବେଶିତୋତ୍ଥିତଃ ପୁଣ୍ୟ ସଲିଳଃ କଳିକଳୁଷାପହାରଃ ବିବିଧ ରତ୍ନ ନିଚୟୋ ଭଗବାନ ଜଳନିଧିଃ"

(ମହାରାଜଧିରାଜ ଗୋପଚନ୍ଦ୍ର, ୬ମ ଶତାବ୍ଦୀ)

ବିଶେଷଣ ବହୁଳ ସନ୍ଧି ସମାସଯୁକ୍ତ ଦୀର୍ଘ ବାକ୍ୟଟିରେ ଯେଉଁ ଶୈଳୀରେ ସାଗରବେଳାର ରୂପକାନ୍ତି ଚିତ୍ରିତ ତାର ବିକଳ୍ପ ଯଥାର୍ଥରେ ସାହିତ୍ୟ ଜଗତରେ ଦୁର୍ଲଭ ।

ସାରସ୍ୱତ ସୃଷ୍ଟିର ଆଦ୍ୟକାଳରେ ସୌନ୍ଦର୍ଯ୍ୟ ପିପାସୁ କେଉଁ ଅଜ୍ଞାତ କବିପ୍ରାଣ ତପଶ୍ଚାରୀ ସମୁଦ୍ରବେଳାକୁ ଏଇ ଦୃଷ୍ଟିରେ ଦେଖିଥିଲା । ଅଥଚ ଏତେ ବର୍ଷର ସଭ୍ୟତା ସଂସ୍କୃତିର ବୋଝ ନେଇ ସେଇ ବେଳାଭୂମିକୁ ଆମେ ଆଜି ବିଷମୟ କରି ତୋଳିଛୁଁ -ଅମୃତ ସ୍ପର୍ଶ ଦେଇ ପାରୁନାହୁଁ ।

କିଏ ସେ ରାଜାଧିରାଜ ଗୋପଚନ୍ଦ୍ର ? ସତେକି ପ୍ରାଚୀନ ଭାରତର ଅନ୍ୟତମ ବିଶ୍ୱବିଦ୍ୟାଳୟ ପୁଷ୍ପଗିରି ଏଇଠି ଥିଲା ? ସେଇଥିପାଇଁ ଜୟରାମପୁର ରକ୍ତରେ ରହିଛି କି ସଂସ୍କୃତ ଚର୍ଚ୍ଚାର ଐତିହ୍ୟ ?

ଏମିତି ଅନେକ ପ୍ରଶ୍ନ-ଉତ୍ତରର ଧ୍ରୁବ ଏବେବି ଅସ୍ପଷ୍ଟ !

x x x

ସମୁଦ୍ର କେବଳ ଆମର ଜୀବନ ଜୀବିକାର ଏକ ଅପରିହାର୍ଯ୍ୟ ଅବଲମ୍ବନ ନୁହେଁ ଏହା ଏବେ ଆଧ୍ୟାତ୍ମିକ, ସାରସ୍ୱତ, ସାଂସ୍କୃତିକ ତଥା ନାନ୍ଦନିକ ଭାବଚେତନାର ଐତିହ୍ୟବାହୀସନ୍ତକ ହୋଇ ଉଠିଛି । ତେଣୁ ଆଜି ବିଶ୍ୱବ୍ୟାପୀ ସଚେତନତା ଦେଖାଦେଇଛି ।

ବିସ୍ତୃତ ବେଳାଭୂମି ପ୍ରକୃତିର ଏକ ଅନବଦ୍ୟ ଅବଦାନ । ଏହାର ନୈସର୍ଗିକ ନିର୍ଜନତା ଆମପାଇଁ ଈଶ୍ୱରଙ୍କର ଏକ ଦୁର୍ଲଭ ଆଶୀର୍ବାଦ -ଏହାକୁ ଅଧିକ ଆକର୍ଷଣୀୟ ଏବଂ ଉପଭୋଗ୍ୟ କରାଇବା ଆମର ଏକ ଜାତୀୟ କର୍ତ୍ତବ୍ୟ ।

ତାର ଅର୍ଥ ନୁହେଁ ସମଦ୍ର କୂଳେକୂଳେ ମେରାଇନ୍ ଡ୍ରାଇଭ୍ କରିବା, ତାରକାଯୁକ୍ତ ହୋଟେଲ ମୋଟେଲ ତୋଳିବା ବା ଆକାଶଛୁଆଁ ମାଳମାଳ କୋଠା ଠିଆ କରାଇ ମଦ୍ୟ-ନାରୀ-ମାଂସର ଆଧୁନିକ ଏଡ୍‌ସ୍ ସଂସ୍କୃତିର ପୂତିଗନ୍ଧମୟ ନର୍କକୁଣ୍ଡ ସୃଷ୍ଟି କରିବା -ସମସ୍ତ ଆଧୁନିକତାର କଳୁଷ ସ୍ପର୍ଶରୁ ଏ ବେଳାଭୂମିକୁ ମୁକ୍ତ ରଖିହିଁ ତାକୁ ସାତ୍ତ୍ୱିକ ମର୍ମରେ ଉପଭୋଗ୍ୟ କରାଯାଇପାରେ ।

ସମୁଦ୍ର କୂଳରୁ ପ୍ରଥମେ ବିଦେଶୀ ଅନୁପ୍ରବେଶକାରୀ, ଚୋରାବେପାରୀ, ଆତଙ୍କବାଦୀ, ତଥା

ସ୍ୱଦେଶୀ ଜମିମାଫିଆଙ୍କ କବଳରୁ ମୁକ୍ତ ରଖିବା, ସମୁଦ୍ର ବେଳାଠୁ ଭିତରକୁ ଅନ୍ତତଃ ଏକ କିଲୋମିଟର ପର୍ଯ୍ୟନ୍ତ ଜନବସତିକୁ ଉଠାଇ ନିଘଞ୍ଚ ଅରଣ୍ୟ ସୃଷ୍ଟି କରିବା, ପୂର୍ବର ଦାମ ବା ଦୀଘିକୁ ସଂସ୍କାର କରାଯାଇ ପଦ୍ମବନ ସୃଷ୍ଟି କରିବା, କିଛି ନିର୍ଦ୍ଦିଷ୍ଟ ଅଞ୍ଚଳକୁ ମତ୍ସ୍ୟଜୀବୀ ତଥା ବଣଭୋଜୀପାଇଁ ଛାଡ଼ିଦେଇ ସଂରକ୍ଷିତ ଇଲାକାରେ ହରିଣୀ ଓ ବିଭିନ୍ନ ବଣ୍ୟ ପ୍ରାଣୀଙ୍କ ପାଇଁ ଅଭୟାରଣ୍ୟ ସୃଷ୍ଟି କରିବା । ବେଳାଭୂମିଠୁ ଅନତିଦୂରରେ ସମୁଦ୍ର ମଧ୍ୟରେ ସ୍ୱତଃସୃଷ୍ଟ ଚଢ଼ା ବା କ୍ଷୁଦ୍ର ଦ୍ୱୀପପୁଞ୍ଜକୁ ପୂର୍ଣ୍ଣତଃ ଗଛ ଓ ଫୁଲର ଅରଣ୍ୟରେ ପରିଣତ କରିବା -ଏହିଭଳି କରାଗଲେ ଯଥାର୍ଥରେ ଏଯୁଗରେ ଯାହା ମଣିଷ ପାଇଁ ଏକାନ୍ତ ଆବଶ୍ୟକ- ଏକ ନିର୍ଜନ ପ୍ରଦୂଷଣମୁକ୍ତ ପ୍ରାକୃତିକ ପରିବେଶ-ସୃଷ୍ଟିହୋଇ ପାରିବ ଏବଂ ଦିନେ ମନୋଜ ଦାସଙ୍କ 'ସୁନ୍ଦର ଦାସଙ୍କ ସନ୍ଧାନେ' ନ୍ୟାୟରେ ଆଜିର ବିଷଜ୍ୱାଳା ଜର୍ଜରିତ ଅଶାନ୍ତ ମଣିଷ ଶାନ୍ତି ଓ ସାନ୍ତ୍ୱନାର ସ୍ୱର୍ଗଟିଏ ମର୍ତ୍ତ୍ୟଭୂମିରେ ପାଇପାରିବ !!

ହୋଇପାରେ ଆଜିର ଅହଂଦୃପ୍ତ ଅପସଂସ୍କୃତିପୁଷ୍ଟ ମଣିଷ ଆଖିରେ ଏହା କଳ୍ପନାର ଏକ ଦିବାସ୍ୱପ୍ନ, କିନ୍ତୁ ଦିନ ଖୁବ୍ ଶୀଘ୍ର ଆସିବ, ଏହାହିଁ ହେବ ପରିତ୍ରାଣର ଏକମାତ୍ର ବିକଳ୍ପ ଏବଂ ଏକାନ୍ତ ଆକାଂକ୍ଷିତ ଆଶ୍ରୟ !!

# ଭୋଗରାଇ, ବାଲେଶ୍ୱର

# ବାଲେଶ୍ୱରର ସାଂସ୍କୃତିକ ପରମ୍ପରା

ଶ୍ରୀ ଇନ୍ଦୁଭୂଷଣ କର

## ସାଂସ୍କୃତିକ ଜାଗରଣରେ ବାଲେଶ୍ୱରର ଭୂମିକା :-

ଅତୀତର ଏହି ବାଲେଶ୍ୱର ଓଡ଼ିଶାର ନୌ-ବାଣିଜ୍ୟ ଦିଗରେ ପ୍ରତିଷ୍ଠା ଲାଭ କରିବା ସଂଗେ ସଂଗେ ଓଡ଼ିଶାର ଭାଷା ଆନ୍ଦୋଳନ ଓ ଓଡ଼ିଶା ପ୍ରଦେଶ ଗଠନରେ ମଧ୍ୟ ଏକ ସ୍ୱତନ୍ତ୍ର ଅଗ୍ରଗାମୀ ଭୂମିକା ଗ୍ରହଣ କରିଆସିଛି । ଊନବିଂଶ ଶତାବ୍ଦୀର ଶେଷଭାଗରେ ଓଡ଼ିଆ ଭାଷାକୁ ସ୍କୁଲ କଚେରୀରୁ ସମୂଳେ ଲୋପ କରିଦେବା ପାଇଁ ଯେଉଁ ଷଡ଼ଯନ୍ତ୍ର କେତେକ ନ୍ୟସ୍ତସ୍ୱାର୍ଥ ବୁଦ୍ଧିଜୀବୀ ଚଳାଇଥିଲେ, ତାହାକୁ କେବଳ ଫକୀରମୋହନ ସେନାପତି ତାଙ୍କର ଅସାଧାରଣ ସାହସିକତା ଓ ବୁଦ୍ଧ ବଳରେ ତତ୍‌କାଳୀନ ବାଲେଶ୍ୱରର ଜିଲ୍ଲାପାଳ ଜନ୍ ବିମ୍‌ସ (John Beams) ଙ୍କ ସାହାଯ୍ୟ ଓ ସହଯୋଗରେ ପ୍ରତିହତ କରିପାରିଥିଲେ । ବାଲେଶ୍ୱର ଜିଲ୍ଲା ସ୍କୁଲର ସଂସ୍କୃତ ଶିକ୍ଷକ କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟଙ୍କ ଚଟିବହି "ଓଡ଼ିଆ ସ୍ୱତନ୍ତ୍ର ଭାଷା ନୟ" ଓଡ଼ିଶାରେ ଚହଳ ପକାଇଦେଲା । ଜନ୍ ବିମ୍‌ସ ସାହେବଙ୍କ ଅଗାଧ ଭାଷାତତ୍ତ୍ୱ ସମ୍ବଳିତ ଜ୍ଞାନ ଓ ଫକୀରମୋହନଙ୍କ ଓଡ଼ିଆ ଭାଷା ଓ ସାହିତ୍ୟ ପ୍ରତି ଗଭୀର ନିଷ୍ଠା ଓ ଆନ୍ତରିକତା ଆଗରେ ଜିଲ୍ଲା ସ୍କୁଲର ଏହି ସଂସ୍କୃତ ଶିକ୍ଷକଙ୍କ ଅପଚେଷ୍ଟା ଉପହସିତ ହେଲା । ୧୮୬୮ ମସିହାରେ ବ୍ୟାସକବି ଫକୀରମୋହନ ନିଜେ ଗୋଟିଏ ଛାପାଖାନା ବସାଇଲେ ବାଲେଶ୍ୱରରେ । ତା'ର ନାମ ରଖିଲେ ଏଫ୍.ଏମ୍. ସେନାପତି ଏଣ୍ଡ. କୋ ଉତ୍କଳ ପ୍ରେସ୍ । ଏହି ପ୍ରେସ୍‌ରେ ସେ ଓଡ଼ିଆ ଭାଷାରେ ଛପାଇଲେ ଦୁଇଟି ଚାଞ୍ଚଲ୍ୟକର ସମ୍ବାଦ ଓ ସାହିତ୍ୟପତ୍ରିକା- 'ବୋଧଦାୟିନୀ' ଏବଂ 'ବାଲେଶ୍ୱର ସମ୍ବାଦବାହିକା' । ୧୮୬୮ରୁ ୧୮୭୦ ପର୍ଯ୍ୟନ୍ତ ଉକ୍ତ ପତ୍ରିକା ଦୁଇଟି ଓଡ଼ିଆ ଭାଷା ଅନ୍ଦୋଳନ ଓ ସାହିତ୍ୟର ଉନ୍ନତି ପାଇଁ ଏକ ମୁଖ୍ୟ ଭୂମିକା ଗ୍ରହଣ କରିଥିଲା । ୧୮୭୦ ମସିହାରୁ ଏହା କେବଳ "ବାଲେଶ୍ୱର ସମ୍ବାଦବାହିକା" ନାମରେ ପ୍ରକାଶିତ ହେଲା । ଏତଦ୍‌ବ୍ୟତୀତ କଳା, ନାଟକ ଓ ରଙ୍ଗମଞ୍ଚ ଆନ୍ଦୋଳନରେ ମଧ୍ୟ ବାଲେଶ୍ୱରର କଳାକାରମାନେ ବଳିଷ୍ଠ ଭୂମିକା ଗ୍ରହଣ କରିଛନ୍ତି । ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ଗଠନରେ ବାଲେଶ୍ୱରର ରାଜା ବୈକୁଣ୍ଠନାଥ ଦେବ ଓ ବ୍ୟାସକବି ଫକୀରମୋହନ ଓ ରାୟବାହାଦୂର ରାଧାଚରଣ ଦାସଙ୍କ ଉଦ୍ୟମ ଓ ପ୍ରଚେଷ୍ଟା ଓଡ଼ିଶାର ସାଂସ୍କୃତିକ ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ରହିଛି ଓ ରହିବ ଏଥିରେ ଦ୍ୱିମତ ହେବାର ନାହିଁ । ଓଡ଼ିଶାର ସ୍କୁଲ୍ ଓ କଚେରୀରେ ଓଡ଼ିଆ ଭାଷା ପୁଣି ପ୍ରଚଳିତ ହେଲା । କେବଳ ଭାଷା ଓ ସାହିତ୍ୟ-ଆନ୍ଦୋଳନରେ ବାଲେଶ୍ୱର ଅଗ୍ରଣୀ ନ ଥିଲା । ଭାରତର ସ୍ୱାଧୀନତା ଆନ୍ଦୋଳନରେ ମଧ୍ୟ ବାଲେଶ୍ୱରବାସୀଙ୍କର ଭୂମିକା ଉଲ୍ଲେଖନୀୟ । ଓଡ଼ିଶାର ଗୌରବମୟ ସଂସ୍କୃତି ଓ ସାହିତ୍ୟର ଅଭିବୃଦ୍ଧି ଦିଗରେ ବିଶିଷ୍ଟ ଭାଷାକାର ଶ୍ରୀଧରସ୍ୱାମୀ, ଭକ୍ତକବି ଦୀନକୃଷ୍ଣ, ବ୍ୟାସକବି ଫକୀରମୋହନ , ବଂଶୀବଲ୍ଲଭ, କବିବର ରାଧାନାଥ ରାୟ, କବିଶେଖର ଚିନ୍ତାମଣି ମହାନ୍ତି, କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର, ନିତ୍ୟାନନ୍ଦ ମହାପାତ୍ର, ହରେକୃଷ୍ଣ ମହତାବ, ନୀଳମଣି ରାଉତରାୟ, ଡଃ ମନ୍ମଥନାଥ ଦାସ ଓ ମନୋଜ ଦାସ ପ୍ରଭୃତି ଖ୍ୟାତନାମା ସାହିତ୍ୟିକମାନଙ୍କ ଦାନ ଅତୁଳନୀୟ । ଗର୍ବ ଓ ଗୌରବର କଥା ଯେ, କଥାସମ୍ରାଟ ବ୍ୟାସକବି ଫକୀରମୋହନଙ୍କ ନାମରେ ଫକୀରମୋହନ ବିଶ୍ୱବିଦ୍ୟାଳୟ ବ୍ୟାସବିହାରଠାରେ ପ୍ରତିଷ୍ଠିତ ହୋଇଅଛି ।

## ସ୍ୱାଧୀନତା ଆନ୍ଦୋଳନର ବାଲେଶ୍ୱର :-

ବାଲେଶ୍ୱର "ରକ୍ତତୀର୍ଥର ମାଟି" । ଏହି ମାଟିରେ ପାଣିପବନ ଓ ଅଧିବାସୀଙ୍କ ଗଭୀର ସ୍ୱଦେଶପ୍ରୀତି ଓ ସହଯୋଗରେ ଆକୃଷ୍ଟ ହୋଇ ବିପ୍ଳବୀ ବାଘାଯତୀନ ୧୯୧୫ ମସିହା ଫେବୃୟାରୀରେ ଧାଇଁଆସିଲେ ଏଠାକୁ ତାଙ୍କର ଚାରିଜଣ ବିପ୍ଳବୀ ସହଯୋଗୀଙ୍କୁ ସାଙ୍ଗରେ ଧରି । ଏହି ବାଲେଶ୍ୱର ସହରରେ ବିପ୍ଳବୀମାନଙ୍କର ଯୋଗାଯୋଗ କେନ୍ଦ୍ର ସ୍ଥାପିତ ହେଲା "ୟୁନିଭରସିଏଲ୍ ଏମ୍ପୋରିୟମ୍" ନାମକ ଏକ ଦୋକାନ ଘରେ । ବିପ୍ଳବୀମାନଙ୍କୁ ସାହାଯ୍ୟ କରିବା ପାଇଁ ତତ୍ତ୍ୱାବଧାରକ ରହିଲେ ଶୈଳେଶ୍ୱର ବୋଷ । କଲିକତାର ମୁଖ୍ୟ କେନ୍ଦ୍ର "ହ୍ୟାରି ଏଣ୍ଡ ସନ୍ସ" ସହିତ ଏହି ଏମ୍ପୋରିୟମର ସମ୍ପର୍କ ଥିଲା । କେବଳ ବିପ୍ଳବୀମାନଙ୍କୁ ସାହାଯ୍ୟ କରିବା ପାଇଁ ତତ୍ତ୍ୱବଧାରକ ରହିଲେ ଶୈଳେଶ୍ୱର ବୋଷ । ବାଲେଶ୍ୱର ସହର ବିଂଶ ଶତାବ୍ଦୀର ପ୍ରଥମ୍ ଭାଗରେ ଭାରତୀୟ ବିପ୍ଳବୀମାନଙ୍କର ଏକ ପ୍ରାଣକେନ୍ଦ୍ର ରୂପେ ଗଢ଼ିଉଠିଲା । ୧୯୧୫ ମସିହା ସେପ୍ଟେମ୍ବର ୯ ତାରିଖ ଏହି ବିପ୍ଳବୀମାନଙ୍କ ସହିତ ଇଂରେଜ ସରକାରଙ୍କ ସିପାହୀମାନଙ୍କର ଏକ ଲୋମହର୍ଷଣକାରୀ ଯୁଦ୍ଧ ହୋଇଥିଲା, ବାଲେଶ୍ୱର ସନ୍ନିକଟସ୍ଥ ଚଷାଖଣ୍ଡ ଗ୍ରାମ ନିକଟରେ । ବିପ୍ଳବୀ କବି ନଜରୁଲଙ୍କ ଭାଷାରେ ୧୯୧୫ ମସିହା ସେପ୍ଟେମ୍ବରରେ ବାଲେଶ୍ୱରରେ ସଂଗଠିତ ହୋଇଥିଲା ଭାରତ-ସ୍ୱାଧୀନତାର "ଦ୍ୱିତୀୟ ହଳଦିଘାଟ ଯୁଦ୍ଧ" । ଏହି ଯୁଦ୍ଧରେ ବାଘାଯତୀନ ଆହତ ହେଲେ ଓ ତା' ପରଦିନ "୧୯୧୫" ସେପ୍ଟେମ୍ବର ୧୦ ତାରିଖରେ ତାଙ୍କର ମୃତ୍ୟୁ ହେଲା । ପ୍ରତିବର୍ଷ ସେପ୍ଟେମ୍ବର ୧୦ ତାରିଖ ଦିନ ବିପ୍ଳବୀ ବାଘାଯତୀନ ପ୍ରତି ଶ୍ରଦ୍ଧାଞ୍ଜଳି ଉଦ୍ଦେଶ୍ୟରେ ତାଙ୍କ ସହଯୋଗୀମାନଙ୍କ ଅମର ଆତ୍ମା ଓ ସ୍ମୃତିବାର୍ଷିକୀ ପାଳନ କରାଯାଉଅଛି । କେବଳ ଏତିକି ନୁହେଁ ୧୯୩୧ରେ "ଇଞ୍ଚୁଡ଼ିରେ ଲବଣ ସତ୍ୟାଗ୍ରହ" ଏବଂ ୧୯୪୨ରେ "ଇରମ"ର ସତ୍ୟାଗ୍ରହ ଓ ଗୁଳିକାଣ୍ଡରେ ବାଲେଶ୍ୱରବାସୀଙ୍କର ଆତ୍ମବଳିଦାନ, ଭାରତର ସ୍ୱାଧୀନତା ଆନ୍ଦୋଳନ ବୀରତ୍ୱପୂର୍ଣ୍ଣ କାହାଣୀ ଗୁଡ଼ିକ ବାଲେଶ୍ୱରର ଐତିହାସିକ ଆମର ଭୂମିକା କଥା ଆଜି ଆମକୁ ସ୍ମରଣ କରାଇଦିଏ । ଏହାଛଡ଼ା ନୀଳଗିରି "ପ୍ରଜା ଆନ୍ଦୋଳନ"ର ବୀରତ୍ୱପୂର୍ଣ୍ଣ କାହାଣୀଗୁଡ଼ିକ ବାଲେଶ୍ୱରର ସାଂସ୍କୃତିକ ଜାଗରଣର' ଐତିହାସିକ ଭୂମିକା କଥା ଆଜି ଆମକୁ ସ୍ମରଣ କରାଇଦିଏ । ସର୍ବଶେଷରେ ଗଡ଼ଜାତ ଆନ୍ଦୋଳନରେ ନୀଳଗିରି ହିଁ ଭାରତର ପ୍ରଥମ ରାଜ୍ୟ ଯେ କି ପ୍ରଥମେ ଓଡ଼ିଶା ପ୍ରଦେଶ ସହିତ ୧୯୪୭ ମସିହାରେ ମିଶିଥିଲା । ଏହା ସଂଗ୍ରାମୀ ନୀଳଗିରିବାସୀଙ୍କର ଦେଶପ୍ରୀତିର ଏକ ଜ୍ୱଳନ୍ତ ନିଦର୍ଶନ ।

ସ୍ୱାଧୀନତା ଲାଭ ପରେ ଧୀରେ ଧୀରେ ବାଲେଶ୍ୱର ରାଜନୀତି, ଶିକ୍ଷା, ସଂସ୍କୃତି କ୍ଷେତ୍ରରେ ବଳିଷ୍ଠ ଭୂମିକା ଗ୍ରହଣ କରିଆସିଛି । ଜାତି ବର୍ଣ୍ଣ ଓ ଧର୍ମ ନିର୍ବିଶେଷର ଐକ୍ୟବଦ୍ଧ ଭାବରେ ଓଡ଼ିଶା ତଥା ଭାରତର ସାମାଜିକ ଓ ଅର୍ଥନୈତିକ ବିକାଶ ପାଇଁ ବାଲେଶ୍ୱର ବାସୀମାନଙ୍କ ଗଠନମୂଳକ ଯୋଜନାବାଦ୍ଧ କର୍ମପନ୍ଥା ଗ୍ରହଣ କରିବାକୁ ପଡ଼ିବ ।

# ସହଦେବଖୁଣ୍ଟା, ବାଲେଶ୍ୱର ।

# ଓଡ଼ିଶା : ଇତିହାସରେ ଆଗୁଆ

## ବିଜୟ ନାୟକ

"What Bengal thinks to-day, India will think to-morrow" ବୋଲି ଗୋଟାଏ କଥା ବଙ୍ଗ ପ୍ରଦେଶରେ ବେଶ୍ ପ୍ରଚଳିତ । ବଙ୍ଗୀୟମାନେ ସଦର୍ପରେ ଏହାଉଚ୍ଚାରଣ କରିଥାନ୍ତି ଅନେକ ପ୍ରସଙ୍ଗରେ । କିନ୍ତୁ ଏହି ଉକ୍ତିଟି ଯେ ଓଡ଼ିଶା ପ୍ରତି ପ୍ରଯୁଜ୍ୟ, ଏହା ଓଡ଼ିଆମାନେ କ୍ବଚିତ ବିଶ୍ୱାସ କରିବେ । ଏଥିପାଇଁ ମୁଖ୍ୟତଃ ଓଡ଼ିଆମାନଙ୍କ ଅବଚେତନରେ ବସାବାନ୍ଧିଥିବା ହୀନମନ୍ୟତା ଦାୟୀ । ଓଡ଼ିଆ ଯେତେ ପଛୁଆ ନୁହେଁ, ଓଡ଼ିଆମାନଙ୍କ ମନୋବୃତ୍ତି ତା' ଠୁଁ ଅଧିକ ପଛୁଆ । ତେବେ ଅନେକ କ୍ଷେତ୍ରରେ ଓଡ଼ିଆ ଅଗ୍ରଣୀ । ଓଡ଼ିଆର ଅଗ୍ରଣୀ ଭୂମିକା ବିଷୟରେ ସମ୍ୟକ୍ ଆଲୋକପାତ କରିବାପାଇଁ ପ୍ରୟାସ କରାଯାଇଛି ଏହି ପ୍ରବନ୍ଧରେ ।

**ପ୍ରଥମ ଉପନିବେଶବାଦୀ ଜାତି :**

ଓଡ଼ିଆମାନେ ଭାରତବର୍ଷର ପ୍ରଥମ ଉପନିବେଶବାଦୀ ଜାତି । ବିଶ୍ୱର ସମ୍ଭବତଃ ବହୁ ପୁରାତନ ଉପନିବେଶବାଦୀ ଜାତି । ଓଡ଼ିଆ ସାଧବମାନେ ବାଲି, ବର୍ଣ୍ଣିଓ, ଜାଭା, ସୁମାତ୍ରା ଓ ସିଂହଳ ଦ୍ୱୀପରେ ବାଣିଜ୍ୟ ବ୍ୟବସାୟ କରୁଥିବା କଥା ପ୍ରାୟ ସମସ୍ତଙ୍କୁ ଜଣା । ଆଜିର ବୋଇତ ବନ୍ଦାଣ ଉତ୍ସବ ତା'ର ମୂକସାକ୍ଷୀ । କିନ୍ତୁ ଏହାକିମ୍ବଦନ୍ତୀ କଥା ନୁହେଁ, ଇତିହାସର ଏକ ଅଧ୍ୟାୟ । ଖ୍ରୀଷ୍ଟ ଜନ୍ମର ଠିକ୍ ପୂର୍ବବର୍ତ୍ତୀ ଶତାବ୍ଦୀ ଏବଂ ଖ୍ରୀଷ୍ଟ ଜନ୍ମ ପରବର୍ତ୍ତୀ ଶତାବ୍ଦୀ ମାନଙ୍କରେ କଳିଙ୍ଗର ସାଧବମାନେ ନୌବାଣିଜ୍ୟ କ୍ଷେତ୍ରରେ ଅପୂର୍ବ ସଫଳତା ଲାଭ କରିଥିଲେ । "Discovery of India" ଗ୍ରନ୍ଥରେ ପଣ୍ଡିତ ଜବାହାରଲାଲ୍ ନେହେରୁ ଲେଖିଛନ୍ତି, "Probably the earliest voyages were along the east-coast of India-Kalinga (Orissa), Bengal, Burma and then down the Malay Peninsula."

ଅନେକ ସମୟରେ ନୌବାଣିଜ୍ୟ ସାମ୍ରାଜ୍ୟ ପ୍ରତିଷ୍ଠାରେ ସହାୟକ ହୋଇଥାଏ । ବ୍ରିଟିଶ୍ ବିଣକମାନେ ଭାତରକୁ ବ୍ୟବସାୟ ପାଇଁ ଆସିଥିଲେ । କିନ୍ତୁ ପରବର୍ତ୍ତୀ ସମୟରେ ସେମାନେ ଭାରତବର୍ଷରେ ସାମ୍ରାଜ୍ୟ ପ୍ରତିଷ୍ଠା କରିବାରୁ ସକ୍ଷମ ହୋଇଥିଲେ । ସେହିପରି କଳିଙ୍ଗର ବାଣିଜ୍ୟ ସାମ୍ରାଜ୍ୟର ପଥ ଉନ୍ମୋଚନ କରିଥିଲା ବୋଲି ବିଚାର କଲେ ଆଦୌ ଭୁଲ୍ ହେବ ନାହିଁ । ପଣ୍ଡିତ ନେହେରୁ ପୁନଶ୍ଚ ତାଙ୍କ "Dsicovery of India" ଗ୍ରନ୍ଥରେ ଉଲ୍ଲେଖ କରିଛନ୍ତି, "The early colonists are supposed to have gone from Kalinga on the east-coast (Orissa) but it was the Hindu Pallav Kingdom of the south that made an organised effort at colonization . The Sailendra dynasty, which became so famous in South-East Asia, is believed to have come from Orissa. At that time, Orissa was strong hold of Buddhism but the ruling dynasty was Brahminical."

ପ୍ରଥମ ଶତାବ୍ଦୀରୁ ଏକାଦଶ ଶତାବ୍ଦୀ ପର୍ଯ୍ୟନ୍ତ ଦୀର୍ଘ ଏଗାର ଶହ ବର୍ଷକାଳ ଶୈଳେନ୍ଦ୍ର ସାମ୍ରାଜ୍ୟ ଇଣ୍ଡୋନେସିଆରେ ଦୃଢ଼ଭାବରେ ତିଷ୍ଠି ରହିଥିଲା । ଓଡ଼ିଆ ବଂଶୋଦ୍ଭବ ଶୈଳେନ୍ଦ୍ର ସମ୍ର୍ରାଜ୍ୟ ବା ଶ୍ରୀ ବିଜୟ ସମ୍ର୍ରାଜ୍ୟ ସମ୍ଭବତଃ ବିଶ୍ୱ ଇତିହାସରେ ସୁଦୀର୍ଘକାଳ ବ୍ୟାପୀ ତିଷ୍ଠି ରହିଥିବା ଏକମାତ୍ର ସାମ୍ରାଜ୍ୟ ଅଟେ । '(Java also broke away from the Sailendra empire in the nineth century,

but even so, the Sailendras continued as the leading power in Indonesia, till eleventh century , when they came in conflict with the Chola power of South-India. The Cholas were victoriors and held away over large parts of Indonesia for over fifty years. On the withdrawal of the Cholas, the Sailendras recovered and continued as an independent state for nearly three hundred years more.' - Discovery of India.)

ଭାରତ ବାହାରେ ଓଡ଼ିଆମାନଙ୍କ ବ୍ୟତୀତ ଅନ୍ୟ କୌଣସି ଜାତି ସୁବିଶାଳ ଓ ଦୀର୍ଘସ୍ଥାୟୀ ସାମ୍ରାଜ୍ୟ ପ୍ରତିଷ୍ଠା କରି ପାରିଛି କି ?

**ମୁକ୍ତିସଂଗ୍ରାମର ଆଦିଭୂମି ଓଡ଼ିଶା :**

ପଲାସି ଯୁଦ୍ଧ ଭାରତ ଇତିହାସର ଏକ ଗୁରୁତ୍ୱପୂର୍ଣ୍ଣ ଘଟଣା । ୧୭୫୭ ମସିହା ପରେ ଭାରତବର୍ଷର ସ୍ୱାଧୀନତାର ସୂର୍ଯ୍ୟ ଅସ୍ତମିତ ହୋଇଥିଲା । କିନ୍ତୁ ଓଡ଼ିଶା ତଥାପି ଥିଲା ଇଂରେଜ ଶାସନରୁ ମୁକ୍ତ । ୧୮୦୩ ମସିହାରେ ଇଂରେଜମାନେ ଓଡ଼ିଶା ଅଧିକାର କରିଥିଲେ । ପଲାସି ଯୁଦ୍ଧର ଏକଶହ ବର୍ଷ ପରେ ୧୮୫୭ ମସିହାରେ ପ୍ରଥମ ସ୍ୱାଧୀନତା ସଂଗ୍ରାମର ସୂତ୍ରପାତ ଘଟିଥିଲା ଭାରତବର୍ଷରେ । କିନ୍ତୁ ଓଡ଼ିଶା ଇଂରେଜ ଶାସନାଧୀନ ହେବାର ମାତ୍ର ବର୍ଷଟିଏ ପରେ ୧୮୦୪ ମସିହାରେ ଜୟୀ ରାଜଗୁରୁଙ୍କ ନେତୃତ୍ୱରେ ସଂଘଟିତ ହୋଇଥିଲା ଖୋର୍ଦ୍ଧା ବିଦ୍ରୋହ । ଏହି ବିଦ୍ରୋହର ପରିଣତି ହୋଇଥିଲା ଅତୀବ ଭୟାବହ । ଶେଷରେ ଜୟୀ ରାଜଗୁରୁଙ୍କୁ ମେଦିନୀପୁର ନିକଟବର୍ତ୍ତୀ ବାଜିତୋଟାର ଗୋଟିଏ ଝଙ୍କାଳିଆ ବରଗଛରେ ଫାଶୀ ଦିଆଯାଇଥିଲା । ଜୟୀ ରାଜଗୁରୁ ସମ୍ଭବତଃ ପ୍ରଥମ ଭାରତୀୟ ସହିଦ ( ? ) ସ୍ୱାଧୀନତାର ଯଜ୍ଞ ବେଦୀରେ ।

ଏହି ବିଦ୍ରୋହ ପଛକୁ ପଛ ଲାଗି ରହିଥିଲା ଅନେଁକ ବିଦ୍ରୋହ । ୧୮୧୭ ମସିହାରେ ବକ୍ସି ଜଗବନ୍ଧୁ ବିଦ୍ୟାଧର ଭ୍ରମରବର ରାୟ ମହାପାତ୍ରଙ୍କ ନେତୃତ୍ୱରେ ଏକ ବ୍ୟାପକ ଇଂରେଜ ବିରୋଧୀ ଅନ୍ଦୋଳନ ମୁଣ୍ଡ ଟେକିଥିଲା । ଏହାର ଫଳାଫଳ ଯାହା ହେଉନା କାହିଁକି ଏହାର ଭୟାବହତା ସମଗ୍ର ଓଡ଼ିଶାରେ ଇଂରେଜ ଶାସନର ଚେରକୁ ଦୋହଲାଇ ଦେଇଥିଲା । ବହୁ ସଂଖ୍ୟକ ପାଇକ ଏଥିରେ ଯୋଗ ଦେଇଥିବାରୁ ଏହା 'ପାଇକ ବିଦ୍ରୋହ' ଭାବରେ ଖ୍ୟାତ । ସେହିପରି ୧୮୨୭ ମସିହାରେ ତାପଙ୍ଗ ଦଳ ବେହେରା ମାଧବ ରାଉତରାୟଙ୍କ ନେତୃତ୍ୱରେ ଇଂରେଜ ବିରୋଧୀ ବିଦ୍ରୋହର ସୂତ୍ରପାତ ଘଟିଥିଲା । ୧୮୩୬ ମସିହାରେ କୃତ୍ତିବାସ ପାଟସାହାଣିଙ୍କ ନେତୃତ୍ୱରେ ଅନ୍ୟ ଏକ ଇଂରେଜ ବିରୋଧୀ ବିଦ୍ରୋହ ସଂଘଟିତ ହୋଇଥିଲା । ଏହା ଛଡ଼ା ଓଡ଼ିଶାର ଆଦିବାସୀ ସଂପ୍ରଦାୟ ମଧ୍ୟ ଇଂରେଜମାନଙ୍କ ବିରୋଧରେ ତୀବ୍ର ବିଦ୍ରୋହ ଠିଆ କରାଇ ପାରିଥିଲା ।

ଅବଶ୍ୟ ସର୍ବଭାରତୀୟ ସ୍ତରରେ ଓଡ଼ିଶା ବ୍ୟତୀତ ଅନ୍ୟ ସ୍ଥାନରେ ଯେ ଇଂରେଜ ମାନଙ୍କ ବିରୋଧରେ ଆନ୍ଦୋଳନ ହୋଇନଥିଲା ତା' ନୁହେଁ, କିନ୍ତୁ ସେସବୁ ଦେଖା ଦେଇଥିଲା ୧୮୨୦ ମସିହା ପରେ । ତନ୍ମଧ୍ୟରୁ ୧୮୨୦ ରୁ ୧୮୩୫ ପର୍ଯ୍ୟନ୍ତ କୋହ୍ଲ ବିଦ୍ରୋହ, ୧୮୫୫-୫୬ ରେ ସାନ୍ତାଳ ବିଦ୍ରୋହ, ୧୮୯୫-୧୯୦୧ ମଧ୍ୟରେ ମୁଣ୍ଡା ବିଦ୍ରୋହ, ୧୮୫୯ ରୁ ୧୯୬୦ ମଧ୍ୟରେ ବଙ୍ଗ ବ୍ୟାପୀ ନୀଳଚାଷୀ ଆନ୍ଦୋଳନ, ୧୮୬୬ ଚମ୍ପାରଣ ବିଦ୍ରୋହ, ୧୮୩୬ ରୁ ୧୮୫୪ ମଧ୍ୟରେ ଉତ୍ତର କେରଳ ଅନ୍ତର୍ଗତ ମାଲବାରର ମାପିଲା ବିଦ୍ରୋହ ଉଲ୍ଲେଖଯୋଗ୍ୟ । ମାତ୍ର ଓଡ଼ିଶାରେ ଇଂରେଜ ବିରୋଧୀ ଆନ୍ଦୋଳନ ଆରମ୍ଭ ହୋଇଥିଲା ୧୮୦୪ ଖ୍ରୀଷ୍ଟାବ୍ଦରୁ । ସେ ଦୃଷ୍ଟିରୁ ବିଚାର କଲେ ଜଣାଯିବ ଯେ ଓଡ଼ିଶା ଥିଲା ଇଂରେଜ ଆନ୍ଦୋଳନର ପଥପ୍ରଦର୍ଶକ । (ଓଡ଼ିଶାରେ ସ୍ୱାଧୀନତା ସଂଗ୍ରାମ-ଜଗନ୍ନାଥ ପଟ୍ଟନାୟକ)

**ସ୍ୱଦେଶୀ ଚେତନାର ଆଦ୍ୟ ଝଙ୍କାର ଏଇ ମାଟିରେ :**

ଉତ୍କଳ ଗୌରବ ମଧୁସୂଦନ ଦାସ ତାଙ୍କ ସମସାୟିକ ଭାରତୀୟ ନେତାମାନଙ୍କ ମଧ୍ୟରେ ଚିନ୍ତା ଓ ଚେତନା କ୍ଷେତ୍ରରେ ଥିଲେ ଦୁଇପାହାଚ ଆଗରେ । ନିଜ ଦେଶରେ ଥିବା ପ୍ରାକୃତିକ ଓ ଜଙ୍ଗଲ ସମ୍ପଦର ସଦ୍ ବ୍ୟବହାର କରିବା ହିଁ ସ୍ୱଦେଶୀର ମୂଳମନ୍ତ୍ର । ଓଡ଼ିଶାରେ ପ୍ରଚୁର ପରିମାଣରେ ଉପଲବ୍ଧ ହେଉଥିବା ଚମଡ଼ାର ଉପଯୁକ୍ତ ବିନିଯୋଗ କରିବା ପାଇଁ ସେ ଓଡ଼ିଶାର ଜନସାଧାରଣଙ୍କୁ ଆହ୍ୱାନ କରୁଥିଲେ । ପରବର୍ତ୍ତୀ ସମୟରେ ସେ 'ଉତ୍କଳ ଟ୍ୟାନେରୀ' ପ୍ରତିଷ୍ଠା କରିଥିଲେ । ସ୍ୱଦେଶୀ ଦ୍ରବ୍ୟର ବିନିଯୋଗ ପାଇଁ ମଧୁସୂଦନ ହିଁ ପ୍ରଥମେ ସ୍ୱର ଉତ୍ତୋଳନ କରିଥିଲେ । ବଙ୍ଗ ବିଭାଜନକୁ ବିରୋଧ କରି ଗଢ଼ି ଉଠିଥିବା ସ୍ୱଦେଶୀ ଆନ୍ଦୋଳନ ପର୍ବରୁ ଓଡ଼ିଶାରେ ସ୍ୱଦେଶୀ ମନ୍ତ୍ର ସେ ପ୍ରଚାର କରିଥିଲେ । ଏହି ପ୍ରସଙ୍ଗରେ ପଣ୍ଡିତ ନୀଳକଣ୍ଠ ଦାସଙ୍କ ଉକ୍ତି ଉଲ୍ଲେଖନୀୟ, 'I met him early in 1904 in a huge meeting in Jagannath Ballabh (Puri). Here for the first time I had the occasion to hear him at close quarters and his appeal touched my soul. Mr. M.S. Das appealed for the use of swadeshi and he wanted us to take a vow saying, ' The hide and skin, the real wealth of Orissa, is being carried by foreigners abroad, made into shoes and slippers there, and is sent back to fall on our gentlemanly backs again not to give us comfort, but to take our money, the money should have otherwise gone to our poor shoe makers and other workmen. It was more than a year before the swadeshi movement came as protest against the Partition of Bengal. ' (Life of Madhusudan Das : As seen by many eyes.)'

**ପ୍ରଥମ ଭାଷାଭିତ୍ତିକ ରାଜ୍ୟ :**

ଓଡ଼ିଶାରେ ଭାଷା ଆନ୍ଦୋଳନ ଓ ସ୍ୱତନ୍ତ୍ର ପ୍ରଦେଶ ଗଠନ ଅନ୍ଦୋଳନ ପରସ୍ପର ପରିପୂରକ । ଭାଷା ଅନ୍ଦୋଳନ ଓଡ଼ିଶାରେ ନବଜାଗରଣର ଉନ୍ମାଦନା ସୃଷ୍ଟି କରିଥିଲା । କିନ୍ତୁ ସେତେବେଳେ ଓଡ଼ିଶା କହିଲେ ଆଜିର ଅବିଭକ୍ତ ବାଲେଶ୍ୱର, କଟକ ଓ ପୁରୀ ଜିଲ୍ଲାକୁ ବୁଝାଉଥିଲା । ଗଞ୍ଜାମ, ସମ୍ବଲପୁର ଅଞ୍ଚଳ ଓ ଗଡ଼ଜାତଗୁଡ଼ିକ ମୁଖ୍ୟ ଓଡ଼ିଶା ମଧ୍ୟରେ ସାମିଲ୍ ନଥିଲେ । ସବୁ ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଏକତ୍ର କରି ଏକ ନୂତନ ପ୍ରଦେଶ ଗଠନ ପାଇଁ ସମଗ୍ର ଓଡ଼ିଆ ଭାଷାଭାଷୀ ଅଞ୍ଚଳରେ ଏକ ବଳିଷ୍ଠ ଅନ୍ଦୋଳନ ମୁଣ୍ଡ ଟେକିଥିଲା । ବିଶେଷତଃ ୧୯୦୩ ମସିହାରେ ମଧୁସୂଦନ ଦାସଙ୍କ ଆହ୍ୱାନକ୍ରମେ ଉତ୍କଳ ସମ୍ମିଳନୀ ଗଠିତ ହେବାପରେ ଏହି ଅନ୍ଦୋଳନ ତୀବ୍ରତର ହୋଇଥିଲା । ଏହି ସମ୍ମିଳନୀରେ ପୌରହିତ୍ୟ କରିଥିଲେ ମୟୂରଭଞ୍ଜ ର ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେଓ । ସମ୍ମିଳନୀର ସଂପାଦକ ମଧୁସୂଦନ ସେହି ସମ୍ମିଳନୀ ମଞ୍ଚରୁ ଆବେଗଭରା କଣ୍ଠରେ ଗାଇଥିଲେ ।

"ଏହି ସମ୍ମିଳନୀ ଜାତିପ୍ରାଣ - ସିନ୍ଧୁ କୋଟି ପ୍ରାଣବିନ୍ଦୁ ଧରେ<br>ତୋର ପ୍ରାଣବିନ୍ଦୁ ମିଶାଇ ଦେ' ଭାଇ ଡେଇଁପଡ଼ି ସିନ୍ଧୁନୀରେ ।"

ସମ୍ବଲପୁରରେ ଓଡ଼ିଆ ଭାଷାର ପୁନଃ ପ୍ରଚଳନ ପାଇଁ ଛୋଟଲାଟଙ୍କୁ ଧନ୍ୟବାଦ ଦିଆଯିବା ସହ ସାମାଜିକ ସଂସ୍କାର ନିମନ୍ତେ ସ୍ଥାୟୀ କମିଟି ଗଠନ ଏହି ଅଧିବେଶନର ପ୍ରସ୍ତାବରେ ସ୍ଥାନ ପାଇଥିଲା । ବିଭିନ୍ନ ଅନୁଷ୍ଠାନ ଓ ବ୍ୟକ୍ତିବିଶେଷଙ୍କ ତରଫରୁ ତତ୍କାଳୀନ ଭାଇସରାୟ ଲର୍ଡ କର୍ଜନଙ୍କ ନିକଟରେ ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଏକତ୍ରୀକରଣ ନିମନ୍ତେ ଦାବି ଉପସ୍ଥାପନ କରାଯାଇଥିଲା । ଏକ ରାଜ୍ୟସ୍ତରୀୟ ଅନୁଷ୍ଠାନରେ ବହୁ ପ୍ରତିନିଧିଙ୍କ ଉପସ୍ଥିତିରେ ବିଚ୍ଛିନ୍ନାଞ୍ଚଳରେ ସମ୍ମିଶ୍ରଣ ଦାବି ଥିଲା ଓଡ଼ିଶା ଇତିହାସରେ ଅଭିନବ । ଏହାପରେ ୧୯୦୫ ମସିହା ଅକ୍ଟୋବର ୧୬ ତାରିଖରେ ଭାରତ ସରକାର ଏକ ବିଜ୍ଞପ୍ତି

ମାଧ୍ୟମରେ କେନ୍ଦ୍ରୀୟ ପ୍ରଦେଶର କେତେକ ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ବଙ୍ଗ ମହାପ୍ରଦେଶକୁ ସ୍ଥାନାନ୍ତର କରିଥିଲେ ଏବଂ ସମ୍ବଲପୁର ଜିଲ୍ଲାକୁ ଓଡ଼ିଶା ଡ଼ିଭିଜନ୍ ଅନ୍ତର୍ଭୁକ୍ତ କରାଯାଇଥିଲା । ଉତ୍କଳ ସମ୍ମିଳନୀର ଅଧିବେଶନ ଓଡ଼ିଶାର ବିଭିନ୍ନ ସ୍ଥାନରେ ଅନୁଷ୍ଠିତ ହୋଇ ଓଡ଼ିଶାର ଜାତୀୟ ଜୀବନକୁ ଉଦ୍‌ବୁଦ୍ଧ କରିଥିଲା । ୧୯୧୪ ରେ ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କ ଅନୁରୋଧ କ୍ରମେ ପରାଳାଖେମୁଣ୍ଡିରେ ଉତ୍କଳ ସମ୍ମିଳନୀର ଦଶମ ଅଧିବେଶନ ଜୟପୁର ରାଜା ବିକ୍ରମଦେବ ବର୍ମାଙ୍କ ପୌରୋହିତ୍ୟରେ ଅନୁଷ୍ଠିତ ହୋଇଥିଲା । ସବୁ ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଗୋଟିଏ ଶାସନରେ ରଖି ଏକ ସ୍ୱତନ୍ତ୍ର ପ୍ରଦେଶ ଗଠନ ପ୍ରସ୍ତାବ ସେଠାରେ ଗୃହୀତ ହୋଇଥିଲା ।

୧୯୨୦ ମସିହାରେ ଚକ୍ରଧରପୁରଠାରେ ଅନୁଷ୍ଠିତ ଉତ୍କଳ ସମ୍ମିଳନୀ ଅଧିବେଶନରେ ସ୍ୱତନ୍ତ୍ର ପ୍ରଦେଶ ଗଠନ ଅନ୍ଦୋଳନ ଏକ ଭିନ୍ନ ମୋଡ଼ ନେଇଥିଲା । ଏହି ଅଧିବେଶନରେ ପ୍ରଦେଶ ଗଠନ ଅନ୍ଦୋଳନକୁ ଭାରତୀୟ ଜାତୀୟ କଂଗ୍ରେସର ମହାସ୍ରୋତରେ ମିଶାଇ ଦେବାପାଇଁ ଗୋପବନ୍ଧୁ ଦାସ ପ୍ରସ୍ତାବ ରଖିଥିଲେ । ମଧୁସୂଦନ ଏଥିରେ ରାଜି ନହୋଇ ସ୍ୱତନ୍ତ୍ର ପ୍ରଦେଶ ଗଠନ କାର୍ଯ୍ୟରେ ନିଜକୁ ନିୟୋଜିତ କରିଥିଲେ । ମଧୁସୂଦନଙ୍କ ଉଦ୍ୟମରେ ୧୯୨୦ ମସିହା ଫେବୃୟାରୀ ୨୦ ତାରିଖରେ ସଚ୍ଚିଦାନନ୍ଦ ସିହ୍ନା ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଏକତ୍ରୀକରଣ ନିମନ୍ତେ ନୀତି ନିର୍ଦ୍ଧାରଣ କରିବା ପାଇଁ ଇମ୍ପେରିଆଲ ଲେଜିସଲେଟିଭ କାଉନସିଲରେ ଏକ କମିଟି ଗଠନର ପ୍ରସ୍ତାବ ଆଗତ କରିଥିଲେ । ୧୯୨୪ ମସିହାରେ ଏଥିପାଇଁ ,ଫିଲପ୍-ଡଫ୍ କମିଟି ଗଠିତ ହୋଇଥିଲା ଏବଂଏହି କମିଟି ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଏକତ୍ରୀକରଣ ନିମନ୍ତେ ଅନୁକୂଳ ମତ ଦେଇଥିଲା । ସାଇମନ କମିଶନକୁ ସମଗ୍ର ଭାରତବର୍ଷ ବର୍ଜନ କରୁଥିଲାବେଳେ ଉତ୍କଳ ସମ୍ମିଳନୀ ପାଟଣାଠାରେ ଏହି କମିଶନକୁ ସ୍ୱାଗତ କରିଥିଲା ଏବଂ କୃଷ୍ଣଚନ୍ଦ୍ର ଗଜପତି ମାନ୍ଦ୍ରାଜଠାରେ କମିଶନଙ୍କ ସହ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ସଂପର୍କରେ ଆଲୋଚନା କରିଥିଲେ । ପୁନଶ୍ଚ ପ୍ରଥମ ଗୋଲଟେବୁଲ ବୈଠକକୁ କଂଗ୍ରେସ ବର୍ଜନ କରିଥିଲେ ମଧ୍ୟ ବିହାର-ଓଡ଼ିଶା ସରକାରଙ୍କ ମନୋନୟନକ୍ରମେ ମହାରାଜ କୃଷ୍ଣଚନ୍ଦ୍ର ଗଜପତି ସେହି ବୈଠକରେ ଯୋଗଦାନ କରିଥିଲେ । ୧୯୩୧ ମସିହା ଜାନୁୟାରୀ ମାସ ୩୧ ତାରିଖରେ ମହାରାଜା ତାଙ୍କ ଐତିହାସିକ ଭାଷଣ ମାଧ୍ୟମରେ ଓଡ଼ିଶାର ଦାବିକୁ ଯଥାଯଥ ଭାବରେ ଉପସ୍ଥାପନ କରିପାରିଥିଲେ । ତା'ପରେ ଯାଇ ସୀମା ନିର୍ଦ୍ଧାରଣ କମିଟି ଗଠନ କରାଯାଇଥିଲା, ଯାହା ଓଡନେଲ୍ କମିଟି ଭାବରେ ପରିଚିତ ।

୧୯୩୩ ମସିହା ମାର୍ଚ୍ଚ ମାସ ୧୭ ତାରିଖ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ସଂପର୍କରେ ଶ୍ୱେତପତ୍ର ପ୍ରକାଶ ପାଇଥିଲା । କିନ୍ତୁ ଓଡ଼ିଶା, ସ୍ୱତନ୍ତ୍ର ପ୍ରଦେଶ ଭାବରେ ଜନ୍ମ ହେବା ପୂର୍ବରୁ କୁଳବୃଦ୍ଧ ମଧୁସୂଦନଙ୍କ ମହାପ୍ରୟାଣ ଘଟି ସାରିଥିଲା । କିନ୍ତୁ ମହାରାଜ କୃଷ୍ଣଚନ୍ଦ୍ର ଗଜପତି ସ୍ୱତନ୍ତ୍ର ଓଡ଼ିଶାର ପ୍ରଥମ ପ୍ରଧାନମନ୍ତ୍ରୀ ହେବାର ସୌଭାଗ୍ୟ ଅର୍ଜନ କରିଥିଲେ । ଓଡ଼ିଆମାନଙ୍କ ପରି ତେଲଗୁମାନେ ମାନ୍ଦ୍ରାଜ ମହାପ୍ରଦେଶରେ ଓ ଗୁଜୁରାଟୀମାନେ ବମ୍ବେ ମହାପ୍ରଦେଶରେ ଭାଷା ଓ ଭୂମି ସଂକଟର ସମ୍ମୁଖୀନ ହୋଇଥିଲେ ମଧ୍ୟ ଓଡ଼ିଶା ପରି ସ୍ୱାଧୀନତା ପୂର୍ବରୁ ସ୍ୱତନ୍ତ୍ର ପ୍ରଦେଶ ଗଠନ କରିବାକୁ ସକ୍ଷମ ହୋଇନଥିଲେ । ଓଡ଼ିଶାର ଦୃଷ୍ଟାନ୍ତ ଉଦ୍ଧାର କରି ପରବର୍ତ୍ତୀ ସମୟରେ ଆନ୍ଧ୍ରପ୍ରଦେଶ ଗୁଜୁରାଟ ରାଜ୍ୟ ଭାଷାଭିତ୍ତିରେ ଗଠିତ ହୋଇଥିଲା । ଭାଷାଭିତ୍ତିରେ ରାଜ୍ୟ ଗଠନ କରିବା ଦିଗରେ ଓଡ଼ିଆ ଜାତି ହିଁ ଭାରତବର୍ଷର ଅନ୍ୟ ଜାତିମାନଙ୍କର ପଥପ୍ରଦର୍ଶକ, ଏଥିରେ ଦ୍ୱିରୁକ୍ତି ନାହିଁ ।

**ଗଡ଼ଜାତ ମିଶ୍ରଣର ଆରମ୍ଭ ଏଇଠୁ :**

Indian Independence Act 1947 ର ବ୍ୟବସ୍ଥା ଅନୁଯାୟୀ ଭାରତବର୍ଷର ପ୍ରାୟ ୬୦୦ ଦେଶୀୟ ରାଜ୍ୟ ଭାରତରେ ବା ପାକିସ୍ତାନରେ ମିଶିପାରିବେ ଅଥବା ସ୍ୱାଧୀନ ରହିପାରିବେ । ଭାରତବର୍ଷରେ

ଏହିସବୁ ରାଜ୍ୟର ମିଶ୍ରଣ ଏକ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ଥିଲା । ତଦାନିନ୍ତନ ସ୍ୱରାଷ୍ଟ୍ରମନ୍ତ୍ରୀ ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ ଦେଶମିଶ୍ରଣ କ୍ଷେତ୍ରରେ ଅଭୂତପୂର୍ବ ନେତୃତ୍ୱର ପରିଚୟ ଦେଇଥିଲେ । ଏ କ୍ଷେତ୍ରରେ ଉତ୍କଳ କେଶରୀ ଡକ୍ଟର ହରେକୃଷ୍ଣ ମହତାବଙ୍କ ଭୂମିକା ଥିଲା ପ୍ରଶଂସନୀୟ । ତଦାନିନ୍ତନ ରାଜସ୍ୱ ମନ୍ତ୍ରୀ ନବକୃଷ୍ଣ ଚୌଧୁରୀ, ମାଳତୀ ଚୌଧୁରୀ, ପ୍ରଜା ଆନ୍ଦୋଳନର ନେତୃବୃନ୍ଦ - କୈଳାସ ଚନ୍ଦ୍ର ମହାନ୍ତି, ବନ୍‌ମାଳୀ ଦାସ, ଗୋକୁଳାନନ୍ଦ ନାୟକ ଓ ଅନ୍ୟମାନେ ତଥା ବିଶିଷ୍ଟ ସାମ୍ବାଦିକ ଜୟନ୍ତ ଘୋଷ, ପ୍ରମୁଖ ନୀଳଗିରି ରାଜ୍ୟ ମିଶ୍ରଣରେ ଅଗ୍ରଣୀ ଭୂମିକାରେ ଅବତୀର୍ଣ୍ଣ ହୋଇଲେ । ଓଡ଼ିଶା ସରକାରଙ୍କ ସେବେଳର ସେକ୍ରେଟାରୀ ନୀଳମଣି ସେନାପତି, ବାଲେଶ୍ୱର କଲେକ୍ଟର ଦୁର୍ଗାଦାସ, ଏସ୍.ପି. ମନବୋଧ ପଣ୍ଡା - ଏମାନେ ମଧ୍ୟ ଏହି ପ୍ରକ୍ରିୟା ସହ ଜଡ଼ିତ ଥିଲେ ।

୧୯୪୭ ମସିହା ନଭେମ୍ବର ମାସ ୧୪ ତାରିଖ ଦିନ ଭାରତରେ ପ୍ରଥମ ଗଡ଼ଜାତ ନୀଳଗିରି ହିଁ ସାମିଲ ହୋଇଥିଲା ।

"ଓଡ଼ିଶା ସରକର ନୀଳଗିରି କୁ ବାଲେଶ୍ୱର ଜିଲ୍ଲାର ଏକ ସବ୍‌ଡିଭିଜନ୍ ହିସାବରେ ଘୋଷଣା କରିଦେଇ । କୈଳାସ ଚନ୍ଦ୍ର ମହନ୍ତିଙ୍କୁ ମନୋନୀତ ମନ୍ତ୍ରୀ ହିସାବରେ ଓଡ଼ିଶା ମନ୍ତ୍ରୀମଣ୍ଡଳରେ ନିଆଗଲା । ଭାରତର ସ୍ୱରାଷ୍ଟ୍ର ମନ୍ତ୍ରୀ ବଲ୍ଲଭଭାଇ ପଟେଲ ସମଗ୍ର ଓଡ଼ିଶାରେ ଗଡ଼ଜାତ ଗୁଡ଼ିକର ମିଶ୍ରଣ ପାଇଁ ତା ୧୪.୧୨.୪୭ ରିଖରେ ଓଡ଼ିଶା ଆସିଲେ । ମୟୂରଭଞ୍ଜ ରାଜା ପ୍ରଜାସଭାକୁ ସ୍ୱାୟତ୍ତଶାସନ ଦେଇଥିବାରୁ କେବଳ ଏହି ଗୋଟିଏ ଷ୍ଟେଟ୍‌କୁ ବାଦ ଦେଇ ଓଡ଼ିଶାର ସବୁ ରାଜାଙ୍କୁ ସେ ଏକ ଚୁକ୍ତିରେ ସ୍ୱାକ୍ଷର କରାଇନେଲେ । ଓଡ଼ିଶାର ସବୁ ଗଡ଼ଜାତ ଏହି ଦିନ ଓଡିଶାରେ ମିଶିଗଲେ ଏବଂ ଚିରକାଳ ଗଡ଼ଜାତୀ ଶାସନ ଲୋପ ପାଇଗଲା । ଏହାପରେ ତା ୧୮.୦୯.୧୯୪୮ ରିଖ ଦିନ ଭାରତର ସର୍ବଶେଷେ ଗଡ଼ଜାତ ରାଜ୍ୟ ହାଇଦ୍ରାବାଦ ଦଖଲ ଶେଷ ହେଲା । (ନୀଳଗିରି ପ୍ରଜା ଆନ୍ଦୋଳନର ଇତିହାସ)

ଏ ସଂକ୍ରାନ୍ତରେ ପ୍ରବୀଣ ସାମ୍ବାଦିକ ଦୁର୍ଗା ଦାସ "India From Curzon to Nehru and After" ଗ୍ରନ୍ଥରେ ଲେଖିଛନ୍ତି "The merger of the smaller states began in Orissa......Patel told me that the idea had originated with Harekrushna Mahatab who formed in 1938 the state Prajamandal on organisation of the people living in the states of Orissa."

ଓଡ଼ିଶାରେ ନୀଳଗିରି ରାଜ୍ୟରେ ପହିଲି ମିଶ୍ରଣ ଥିଲା ଏକ ଐତିହାସିକ ଘଟଣା । ଦେଶ ମିଶ୍ରଣ ପ୍ରକ୍ରିୟାକୁ ଏହା ତ୍ୱରାନ୍ୱିତ କରିଥିଲା । ଭାରତ ଇତିହାସକୁ ଓଡ଼ିଶାର ଏହି ଅବଦାନ ଅତୁଳନୀୟ ।

**ସହାୟକ ଗ୍ରନ୍ଥସୂଚୀ :**

1. Discovery of India - Pdt Jawaharlal Nehru
2. India form Curzon to Nehru and After - Durga Das
3. Life of Madhusudan Das : As Seen By Many Eyes- Ed. Sahilobala Das
4. ନୀଳଗିରି ପ୍ରଜା ଆନ୍ଦୋଳନର ଇତିହାସ - ଇତିହାସ ସଂକଳନ କମିଟି
5. ସ୍ମୃତି ଓ ଅନୁଭୂତି - ନୀଳମଣି ରାଉତରାୟ
6. ଓଡ଼ିଶାରେ ସ୍ୱାଧୀନତା ସଂଗ୍ରାମ - ଜଗନ୍ନାଥ ପଟ୍ଟନାୟକ

# ଭି.ଏ. ୯/୨ ୟୁନିଟ୍ - ୨, ଭୁବନେଶ୍ୱର - ୯

# ସ୍ୱାଧୀନ ଭାରତରେ ପ୍ରଥମ ଗଡ଼ଜାତ ରାଜ୍ୟ 'ନୀଳଗିରି'ର ମିଶ୍ରଣ : ଏକ ଦୃଷ୍ଟିପାତ

ଇଂ ପ୍ରଶାନ୍ତ କୁମାର ଦତ୍ତ

ସ୍ୱାଧୀନ ଭାରତର ଦେଶୀୟ ରାଜ୍ୟର 'ମୁକ୍ତି ସଂଗ୍ରାମ' ଇତିହାସରେ ନୀଳଗିରିର ପ୍ରଜା ଆନ୍ଦୋଳନ ଓ ତତ୍‌ଜନୀତ ଫଳ ସ୍ୱରୂପ ଭାରତବର୍ଷର ୫୬୧ ଗୋଟି ଦେଶୀୟ ରାଜ୍ୟ ମଧ୍ୟରୁ 'ନୀଳଗିରି' ରାଜ୍ୟର ସର୍ବ ପ୍ରଥମ ମିଶ୍ରଣର ରୋମାଞ୍ଚକର ଘଟଣାବଳୀ ଏକ ଋଷ୍ଟକ୍ଷୟୀ ଅଧ୍ୟାୟ ହିସାବରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ । ଯେତେଦୂର ସମ୍ଭବ ସେଇ ଅଧ୍ୟାୟର ତଥ୍ୟ ସମୂହ ପ୍ରମାଦଶୂନ୍ୟ ଅବତାରଣାର ପ୍ରଚେଷ୍ଟା ବର୍ତ୍ତମାନର ଆଲେଖ୍ୟରେ ।

କ୍ଷୁଦ୍ର 'ନୀଳଗିରି ଷ୍ଟେଟ୍' ଏକ 'ଖ' ଶ୍ରେଣୀର ରାଜ୍ୟ ଥିଲା ଇଂରାଜୀ ଶାସନ ସମୟରେ । ଆୟତନ ୨୮୪ ବର୍ଗ ମାଇଲ, ଲୋକସଂଖ୍ୟା ୭୩, ୧୦୯; ୧୫ ଭାଗ ଆଦିବାସୀ । ତତ୍‌କାଳୀନ ରାଜା କିଶୋର ଚନ୍ଦ୍ର ମର୍ଦ୍ଦରାଜ ଥିଲେ ସ୍ୱେଚ୍ଛାଚାରୀ, ମଦ୍ୟପ । ବେଠୀ-ବେଗାରୀ, ଶୋଷଣ, ନାରି ଧର୍ଷଣ, ଯୁବତୀକନ୍ୟାଙ୍କୁ ଆଣି ପିତା-ମାତାଙ୍କ ରାଜ ଦରବାରରେ ଉପସ୍ଥାପନ ଭଳି ରାଜତାନ୍ତ୍ରିକ ବର୍ବରତାରେ ତାଙ୍କ ଶାସନ ଭରିଥିଲା । ଏ ସମୟକୁ ସେତେବେଳେ 'ଅନ୍ଧାରୀ ଯୁଗ' ବୋଲି ଆଖ୍ୟା ଦିଆଯାଇଥିଲା । ରାଜାଙ୍କ ଏତାଦୃଶ ସ୍ୱୈରାଚାରୀ ଶାସନରେ ଅତିଷ୍ଠ ହୋଇ ୧୯୩୮ ମସିହାରେ ସୁପ୍ତ ଭିସୁଭିଅସ୍‌ରୁ ତପ୍ତ ଲାଭାର ପ୍ରସ୍ରବଣ ଉଦ୍‌ଗୀରଣ କଲାଭଳି ପ୍ରବଳ ଜନ-ଆନ୍ଦୋଳନ ତେଜି ଉଠିଲା । ପ୍ରଜା ଆନ୍ଦୋଳନ ଯେତେ ତୀବ୍ର ହେଲା ରାଜାଙ୍କ ଅତ୍ୟାଚାର ସେତେ ପ୍ରବଳ ହେଲା । ନୀଳଗିରିରେ ଜନ୍ମନେଲା 'ପ୍ରଜାମଣ୍ଡଳ' । ଏହି ଆନ୍ଦୋଳନକୁ ନେତୃତ୍ୱ ଦେଉଥିଲେ କୈଳାସ ମହାନ୍ତି, ହାଡ଼ିବଂଧୁ ରାଜ, ବନମାଳୀ ଦାସ, ଈଶ୍ୱର ଦାସ, ପୂର୍ଣ୍ଣବାଗ୍, ପ୍ରାଣବଂଧୁ ଅଗସ୍ତି, ଗୋକୁଳାନନ୍ଦ ନାୟକ ଓ ସାମିଲ ଥିଲେ କୃଷ୍ଣ ଜେନା, ଉପେନ୍ଦ୍ର ମହାପାତ୍ର, ପୂର୍ଣ୍ଣ ପ୍ରଧାନ, ନାରଣ ମହାପାତ୍ର, ଭଗବାନ ପ୍ରଧାନ, ଦୀନବଂଧୁ ଜେନା, ମୋହିନୀ ମୋହନ ବୋଷ, ବାଞ୍ଛା ଗିରି, କାଶୀ ବେହେରା, ରାମଚନ୍ଦ୍ର ମହାପାତ୍ର, ବୁଧିଆ ସିଂହ ଭଳି କର୍ମୀ ଓ ଆହୁରି ଅନେକ । ଆନ୍ଦୋଳନର ପରବର୍ତ୍ତୀ ପର୍ଯ୍ୟାୟରେ ଏହା ଦୁଇ ଭାଗରେ ବିଭକ୍ତ ହୋଇଥିଲା । ପ୍ରଜାମଣ୍ଡଳ ନେତୃତ୍ୱ ମଧ୍ୟରେ 'ଗାନ୍ଧୀବାଦୀ' ଉଦାର ହୃଦୟର ପୃଷ୍ଠପୋଷକ ଥିବା ନେତାମାନେ ସାଲିସ୍‌ପନ୍ଥା ବାଛୁଥିବା ବେଳେ 'ସମାଜବାଦୀ' ଆଦର୍ଶରେ ଅନୁପ୍ରାଣିତ ନେତାମାନେ 'ରାଜତନ୍ତ୍ର'ର ପରିସମାପ୍ତି ନିମିତ୍ତ ଆନ୍ଦୋଳନକୁ ଉଚ୍ଚ ପର୍ଯ୍ୟାୟକୁ ନେଇ ତୀବ୍ରତର କରିବାକୁ ଚାହିଁଥିଲେ ।

୧୯୩୮ ମସିହା ରଥଯାତ୍ରା ସମୟରେ ଗୋଟିଏ କୋଡ଼ିଏ ଜଣିଆ ସ୍ୱେଚ୍ଛାସେବୀ 'ପ୍ରଜାମଣ୍ଡଳ' ଦଳ ରାଜାଙ୍କ ବିରୁଦ୍ଧରେ ସ୍ଲୋଗାନ୍ ଦେଇ ରାଜାଙ୍କ ଗଡ଼ଠାରୁ ଯାତ୍ରା ଆରମ୍ଭ କରିଥିଲେ । ଏମାନଙ୍କ ଭିତରେ ଥିଲେ ଗୋକୁଳାନନ୍ଦ ନାୟକ, ପୂର୍ଣ୍ଣ ବାଗ, ବନମାଳୀ ଦାସ ।

୧୯୩୮ ମସିହାରେ ଶେଷ ଆଡ଼କୁ ରାଜା ଦରଖୋଳି ବଙ୍ଗଳାରେ ଆଦିବାସୀ ନେତାମାନଙ୍କୁ ଡକାଇଲେ । ସେମାନଙ୍କୁ ସେ ବୁଝାଇଲେ : ''ଓଡ଼ିଆମାନେ ହେଲେ ବିଦେଶୀ । ସେମାନେ ସବୁ କାଷ୍ପିଆନ ସାଗର କୂଳରୁ ଆସିଛନ୍ତି । ଆସି ଆଦିବାସୀ ଲୋକଙ୍କ ଜମି ଜବରଦଖଲ କରିଅଛନ୍ତି । ସେମାନେ ସେଠାକୁ ଫେରିଯିବା ଉଚିତ । ଏଣୁ ଆଦିବାସୀମାନେ ଓଡ଼ିଆଙ୍କ ଠାରୁ ସେମାନଙ୍କ ଜମି ଛଡ଼ାଇ ଆଣିବା ଉଚିତ୍ ।'' କେବଳ ନୀଳଗିରି ନୁହେଁ, ଅନ୍ୟାନ୍ୟ ଗଡ଼ଜାତ-ରାଜ୍ୟରେ ମଧ୍ୟ ଅନୁରୂପ ବିଦ୍ରୋହର ମଂଜି ବୁଣି ଦେଇଥିଲେ କରଦ-ରାଜାମାନେ । ରାଜା ସାମରିକ ଓ ଅର୍ଥନୈତିକ ଓ ନୈତିକ ସବୁ ରକମର ସାହାଯ୍ୟ

ଦେଇଥିଲେ ଏହି ଆଦିବାସୀମାନଙ୍କୁ । ଏମାନଙ୍କୁ କୁହାଯାଉଥିଲା 'ରାଜଭକ୍ତ' । ଅଣ ଆଦିବାସୀମାନେ ନିର୍ଯ୍ୟାତିତ ହେଲେ । ଏଣେ ରାଜାଙ୍କ ଅତ୍ୟାଚାର ସେଣେ ଆଦିବାସୀଙ୍କ ଦ୍ୱାରା ନିର୍ଯ୍ୟାତନା ପାଇ ପ୍ରଜା ଆନ୍ଦୋଳନ ଏକ ବିସ୍ଫୋରଣମୁଖୀ ଆକାର ଧାରଣ କଲା ।

ତା ୨୧.୫.୧୯୩୮ ରେ ରାଜା ରାଜ୍ୟରେ ୧୪୪ ଧାରା ଜାରୀକଲେ । ନିଷେଧାଜ୍ଞା ନ ମାନି 'ପ୍ରଜାମଣ୍ଡଳ'ର ଯେଉଁ ଶୋଭାଯାତ୍ରା ବାହାରିଲା, ଲାଠିଧାରୀ ପୋଲିସ୍‌ଙ୍କ ନିର୍ମମ ପ୍ରହାରରେ ବହୁ ଲୋକଙ୍କ ହାତ, ଗୋଡ଼ ଭାଙ୍ଗିଲା, ମୁଣ୍ଡ ଫାଟିଗଲା । ଅହିଂସା ଆନ୍ଦୋଳନ ହେତୁ ପୋଲିସ ବିରୁଦ୍ଧରେ କେହି ହାତ ଉଠାଇ ନଥିଲେ ।

୧୯୩୮ ରେ ବନମାଳୀ ଦାସ, ଗିରିଧାରୀ ପଣ୍ଡା, ପ୍ରାଣବଂଧୁ ଅଗସ୍ତି, ଗୋକୁଳାନନ୍ଦ ନାୟକ, ପୂର୍ଣ୍ଣ ବାଗ, ମୋହିନୀ ମୋହନ ବୋଷ ପ୍ରଭୃତି ବଣସୀମା, କାଠପା ଚକଲାର 'ସାମ୍ୟବାଦୀ' (କମ୍ୟୁନିଷ୍ଟ) ଆନ୍ଦୋଳନର ନେତୃତ୍ୱ ନେଲେ . ୧୯୪୨ରେ ମହାତ୍ମା ଗାନ୍ଧୀଙ୍କ 'ଭାରତ ଛାଡ଼' ଡାକରାରେ ନୀଳଗିରିର ଆନ୍ଦୋଳନ ହିଂସାତ୍ମକ ରୂପନେଲା । ରାଜକର୍ମଚାରୀମାନଙ୍କୁ ବାସନ୍ଦ କରାଗଲା । ପୋଲିସ୍ ଓ ଚୌକିଦାରଙ୍କ ଡ୍ରେସ୍ ପୋଡ଼ାଗଲା । ଆନ୍ଦୋଳନ ଉଗ୍ର ରୂପ ଧାରଣ କଲା ।

ପଲିଟିକାଲ ଏଜେଣ୍ଟ ମିଚେଲ୍ ସାହେବ ସାମରିକ ଗାଡ଼ିରେ ଶହେ ପାଖାପାଖି ପଠାଣ ସୈନ୍ୟ, ତତ୍କାଳୀନ ଏସ୍.ପି. ଗଙ୍ଗାନାରାୟଣ ଓ ଇନିସ୍‌ପେକ୍‌ଟର ଲମ୍ବୋଦର ମହାପାତ୍ରଙ୍କୁ ନେଇ ବିଭିନ୍ନ ଶାସନରେ ପ୍ରବେଶ କଲେ । ପଠାଣ ସୈନ୍ୟଙ୍କୁ ଆଦେଶ ଦିଆଯାଇଥାଏ ଘରୁ କଂସା, ସୁନା, ରୂପା ଲୁଟ କରିବ ଓ ଧର୍ଷଣ କରିବ ।

ଅବଶ୍ୟ ଫଳରେ ଗ୍ରାମବାସୀଙ୍କ ଉପରେ ରାଜ ଅତ୍ୟାଚାର ଦଣ୍ଡ ସ୍ୱରୂପ ମିଚେଲ ରାଜାଙ୍କ ହାତରୁ କ୍ଷମତା କାଢ଼ିଆଣି ତାଙ୍କୁ ସପରିବାର ରାଜ୍ୟରୁ ବହିଷ୍କାର କରନ୍ତି ତାଙ୍କ ଆଦେଶ ବଳରେ ୧/୧୧/୧୯୪୨ ଦିନ । ରାଜା ସପରିବାର ରାଞ୍ଚିରେ ନିର୍ବାସନ ସମୟରେ ଅବସ୍ଥାନ କରିଥିଲେ ।

୧୯୪୭ ମସିହା ଅଗଷ୍ଟ ୧୫ । ଭାରତବର୍ଷ ତାର ଦୀର୍ଘ ଦୁଇଶହ ବର୍ଷରୁ ଊର୍ଦ୍ଧ୍ୱ ପରାଧୀନତାର ଶୃଙ୍ଖଳ ଛିନ୍ନ କରି କଷ୍ଟଲବ୍ଧ ସ୍ୱାଧୀନତା ହାସଲ କଲା । ସ୍ୱାଧୀନତାର ସୂର୍ଯ୍ୟ ସାରା ଭାରତବର୍ଷକୁ ପ୍ରଦୀପିତ କରିଥିବାବେଳେ ଅନ୍ୟାନ୍ୟ ଗଡ଼ଜାତ ସହ ନୀଳଗିରିର ଆକାଶ ଥିଲା ତିମିରାଚ୍ଛନ୍ନ । ଦୀପ ଲିଭିବା ପୂର୍ବରୁ ଜଳି ଉଠିଲା ଭଳି ରାଜ ଅତ୍ୟାଚାର ଚରମ ସୀମାରେ ଉପନୀତ ହେଲା ।

ସେପ୍ଟେମ୍ବର ଶେଷ ବା ଅକ୍ଟୋବରର ପ୍ରାରମ୍ଭରେ ରାଜାଙ୍କ ପ୍ରରୋଚନାରେ 'ରାଜଭକ୍ତ'ମାନେ ଅଯୋଧ୍ୟା, ମାଟିଆଳୀ ଓ ବରହମ୍‌ପୁର ଅଞ୍ଚଳରେ ଅଣ ଆଦିବାସୀଙ୍କ ଜମିରେ କଳା ପତାକା ପୋତିବା ଆରମ୍ଭ କଲେ । ପୂର୍ବ-ଗଡ଼ଜାତର ରାଜ୍ୟମଣ୍ଡଳୀଙ୍କ ମେଣ୍ଟ ତରଫରୁ ୫୦ଜଣ ବନ୍ଧୁକଧାରୀ ପଠାଣ ସୈନ୍ୟଙ୍କୁ ଆଣି ରଖାଗଲା ନୀଳଗିରି ମାଇନର ସ୍କୁଲରେ କେମ୍ପ ପକାଇ । 'ପ୍ରଜାମଣ୍ଡଳ' କ୍ରିୟାନୁଷ୍ଠାନ କମିଟିର ଏକ ସାମରିକ କମିଟି ଗଠିତ ହେଲା । ଗୋହୀରାର ବିପ୍ଳବୀ ଗୋକୁଳାନନ୍ଦ ନାୟକ ଥିଲେ ଏହି କମିଟିର ମୁଖ୍ୟ । ପଠାଣ ସୈନ୍ୟ ନୀଳଗିରିରୁ ବାହାରିଲା ମାତ୍ରେ କଳାକାଦ, ଗୋହୀରା ପୋଲ ଉଡ଼େଇ ଦେବାର ସିଦ୍ଧାନ୍ତ ହେଲା । ପୁରୀ ଜିଲ୍ଲାର ଖୋର୍ଦ୍ଧାର ମେଣ୍ଢାଶାଳରେ ଚାଲୁଥିବା ଗୁପ୍ତ ଗରିଲା କେମ୍ପରେ ନୀଳଗିରିର ଉପେନ୍ଦ୍ର ପଣ୍ଡା, ସୁଦର୍ଶନ ରାଉତ୍, ଈଶ୍ୱର ଦାସ, ଗୋବିନ୍ଦ ସିଂ ଯୋଗଦେଇ ଗରିଲା ଯୁଦ୍ଧର ଟ୍ରେନିଂ ନେଇଥିଲେ । କଣ୍ଟାବଣିଆରେ ଏକ ପ୍ରତିରୋଧବାହିନୀ କେମ୍ପ ଖୋଲାଗଲା । ବାଥୁଡ଼ି ସଂପ୍ରଦାୟର କିଛି 'ରାଜଭକ୍ତ' ଧୂନ୍ଦା ମାଝିଙ୍କ ନେତୃତ୍ୱରେ ରାଜାଙ୍କ ଇଙ୍ଗିତରେ ଦରକୋଳି ରାଜପଥ ଉପରେ ପାରମ୍ପରିକ ଅସ୍ତ୍ରଶସ୍ତ୍ର ହାତରେ ଧରି ଗଣ୍ଡଗୋଳ ଆରମ୍ଭ କଲେ । 'ପ୍ରଜାମଣ୍ଡଳ' ତରଫରୁ ଆଲୋଚନା କରି ସେମାନଙ୍କୁ ସେଠାରୁ ହଟାଇ ଦିଆଗଲା ।

ଅରାଜକତା ଚରମସୀମାରେ ପହଞ୍ଚିଲା । ଉପରଡିହା ଗାଁ ମୁଣ୍ଡରେ 'କୁପ୍' ଜଂଗଲ ନିକଟରେ 'ରାଜଭକ୍ତ'ମାନେ ରାତ୍ରିର ଅନ୍ଧକାରରେ ଜବରଦସ୍ତ ଲୋକଙ୍କ ଘରୁ ଖାସୀ ଟାଣିଆଣି ସମୂହ ଭୋଜି କଲେ । ଦୁଇତିନି ଜଣ କାମୋନ୍ମତ୍ତ 'ରାଜଭକ୍ତ' ଗୋବିନ୍ଦପୁରର ଅନିରୁଦ୍ଧ ସିଂ ନେତୃତ୍ୱରେ ଜନୈକ ବିବାହିତ କ୍ରନ୍ଦନରତା ବ୍ରାହ୍ମଣ କନ୍ୟାକୁ ଜବରଦସ୍ତ ଘରୁ ଟାଣିଆଣି ପାଶବିକ ଅତ୍ୟାଚାର କଲେ । ରାଜଭକ୍ତ ଚୌକିଦାର ଚିନ୍ତା ପାତ୍ରର ପ୍ରରୋଚନାରେ ଏହି ନାରକୀୟ କାଣ୍ଡ ଘଟିଥିଲା । ଉପରଡିହାର ଏ ଧର୍ଷଣ ଜନିତ ଅତ୍ୟାଚାର ହେତୁ ସେ ଅଞ୍ଚଳରେ ଜାଗି ଉଠିଲା ପ୍ରତିହିଂସାର ଅନଳ । ଫଳ ସ୍ୱରୂପ ନଭେମ୍ବର ୨ୟ ସପ୍ତାହରେ ଉପରଡିହା 'ରାଜଭକ୍ତ' ସାହୀ ଆଡ଼କୁ ଚାଲିଲା 'ମୁକ୍ତିସେନା' । ବୁଧିଆ ସିଂର ଗୁଳିମାଡ଼ରେ ଚିନ୍ତା ପାତ୍ରର ଖପୁରୀ ଉଡ଼ିଗଲା । ପାତ୍ରସାହି ଓ ଗୁଜୁରା ସିଂହର କିଛି ଅଞ୍ଚଳ ପେଟ୍ରୋଲ ପକାଇ ପୋଡ଼ଦିଆଗଲା ।

ନଭେମ୍ବର ପ୍ରଥମ ସପ୍ତାହରେ, ୫.୧୧.୧୯୪୭ ତାରିଖରେ ପ୍ରବାସ ବାଲେଶ୍ୱରରେ ଗାନ୍ଧିବାଦୀ ଉଦାରପନ୍ଥୀ ଦଳ ପ୍ରତିଷ୍ଠା କଲେ 'ଆଜାଦ୍ -ସରକାର' । ସେତେବେଳକୁ କେନ୍ଦ୍ର ସରକାର ନୀଳଗିରି ଷ୍ଟେଟ୍ ଦଖଲ କରିବା ମସୁଧା କରୁଥିଲେ ।

ସରକାରଙ୍କ ତରଫରୁ ମଧ୍ୟସ୍ଥିରୂପେ ରେମୁଣାର ପ୍ରଖ୍ୟାତ ସାମ୍ବାଦିକ ଜୟନ୍ତ ଘୋଷ ନିଜ ଜୀବନକୁ ବିପନ୍ନ କରି 'ପ୍ରଜାମଣ୍ଡଳ' ସରକାର ଓ ନୀଳଗିରି ରାଜାଙ୍କ ସହ ବାରମ୍ବାର ସାକ୍ଷାତ ଆଲୋଚନା କରି ବିନା ରକ୍ତପାତରେ ମିଶ୍ରଣ ନିମନ୍ତେ ଚୂଡ଼ାନ୍ତ ଦଲିଲ ପ୍ରସ୍ତୁତ କରିବାକୁ ଲାଗିଲେ । ନେପଥ୍ୟ ବିନ୍ଧାଣୀ ଥିଲେ ଓଡ଼ିଶାର ପ୍ରଧାନମନ୍ତ୍ରୀ ହରେକୃଷ୍ଣ ମହତାବ ଓ ଭାରତର ଗୃହମନ୍ତ୍ରୀ ସର୍ଦ୍ଦାର୍ ବଲ୍ଲଭ ଭାଇ ପଟେଲ୍ ।

୧୯୪୭ ମସିହା ନଭେମ୍ବର ୧୪ ତାରିଖ ସକାଳ । ସେଦିନ ଆର୍ମି ମଟର ସାଇକଲ, କଂଗ୍ରେସ ଓ କମ୍ୟୁନିଷ୍ଟ ଦଳର ପତାକାବାହୀ ମଟରଗାଡ଼ି ପଛେପଛେ ଶେରଗଡ଼ ଛକରୁ କନ୍‌ଭୟରେ ଥିଲା ଅସ୍ତ୍ରଶସ୍ତ୍ର ସହ ମିଲିଟାରୀ ସାଂଜୁଆ ଗାଡ଼ି । ସାଥିରେ ଥିଲେ ବାଲେଶ୍ୱର ଜିଲ୍ଲା କଲେକ୍ଟର ଓ ଏସ୍.ପି. । ରାଜବାଡ଼ିକୁ ମୁହାଁଇ ଷ୍ଟେନ୍‌ଗନ୍ ଓ ବ୍ରେନ୍‌ଗନ୍ ଫିଟ କରାଗଲା । ପୋଲିସ୍ ଦଳ ଦଖଲ କଲେ ଟ୍ରେଜେରୀ ।

ଅବଶେଷରେ ସମସ୍ତ ଅରାଜକତାର ଅବସାନ ଘଟାଇ ଭାରତ ସରକାର ନୀଳଗିରି ରାଜାଙ୍କ ଠାରୁ ପ୍ରଥମ ଗଡ଼ଜାତ ମିଶ୍ରଣର ଦଲିଲ ସ୍ୱାକ୍ଷର କରାଇନେଲେ । 'ଅନ୍ଧାରୀ-ଶାସନ'ରେ ଅଶେଷ ଯାତନା ଭୋଗିଥିବା ନୀଳଗିରି ପ୍ରଜାଗଣ ଶାନ୍ତିରେ ନିଶ୍ୱାସ ମାରିଲେ । ସେଦିନ ନୀଳଗିରି ଥିଲା ଅସ୍ୱାଭାବିକ୍ ଭାବେ ଶାନ୍ତ ।

ନୀଳଗିରି ମାଟିର ଯେଉଁ ବୀର ସନ୍ତାନଗଣ ରାଜତନ୍ତ୍ରର ଅନ୍ଧାରୀ ଶାସନର ବିଲୋପ ନିମନ୍ତେ ୧୯୩୮ରୁ ୧୯୪୭ ପର୍ଯ୍ୟନ୍ତ ଅସହ୍ୟ ଦୁଃଖ-କଷ୍ଟ ସହି ନିରବଚ୍ଛିନ୍ନ ସଂଗ୍ରାମ ଜାରୀ ରଖିଥିଲେ, ଯେଉଁ ଆନ୍ଦୋଳନର ଅଗ୍ନିଶିଖା ନୀଳଗିରିର ପୁରପଲ୍ଲୀ ଅତିକ୍ରମ କରି ତିଗିରିଆ, ଢେଙ୍କାନାଳ ପର୍ଯ୍ୟନ୍ତ ବ୍ୟାପ୍ତ ହୋଇଥିଲା, ସେଇ ଉଜ୍ଜ୍ୱଳ ଭାସ୍ୱରରେ ସେମାନଙ୍କର ଆତ୍ମୋତ୍ସର୍ଗର ସ୍ମୃତି ଚିରଦିନ ଶୁଦ୍ଧ ସୁବର୍ଣ୍ଣସମ ଜାଜ୍ୱଲ୍ୟମାନ ହୋଇ ଏବକାର ପିଢ଼ୀକୁ ଦିଗ୍‌ଦର୍ଶନ ଦେଉ, ଆଜିର ସ୍ମୃତି ଦିବସରେ ଏହି କାମନା କରି ସେଇ ବୀରମାନଙ୍କୁ ପ୍ରଣାମ ସହି ଏଇ ରକ୍ତାକ୍ଷରୀ ଅଧ୍ୟାୟର ସମାପ୍ତି କରୁଛି ।

# ପୂର୍ବତମ ସହକାରୀ ଯନ୍ତ୍ରୀ (ପୂର୍ତ୍ତ), ନୀଳଗିରୀ (୧୯୮୪-୯୧)
'ଶେଫାଳୀ'/୬, ନଳମଗଂଜ, ବାଲେଶ୍ୱର-୩

# ବାଲେଶ୍ୱରର ପର୍ଯ୍ୟଟନ କ୍ଷେତ୍ର : ସମ୍ଭାବନା ଓ ବିଡ଼ମ୍ବନା

ପଙ୍କଜାକ୍ଷ ପଣ୍ଡା

ସାଗରୀୟ ଶ୍ରୀସଂପଦ ସାଙ୍ଗକୁ ପାର୍ବତ୍ୟ ମାଧୁରୀ, ଐତିହାସିକତା ସାଙ୍ଗକୁ ପ୍ରସିଦ୍ଧ ଦେବ-ଦେଉଳର ସହାବସ୍ଥାନ ବାଲେଶ୍ୱର ଜିଲ୍ଲାକୁ କରିଛି ସୌନ୍ଦର୍ଯ୍ୟ ପିପାସୁଙ୍କ ସମ୍ଭାବ୍ୟ ଅମରାବତୀ ।

ଅରୁଣୋଦୟର କନକ ରଶ୍ମି ବାଲେଶ୍ୱରର ସୀମାନ୍ତ ଗ୍ରାମ ଉଦୟପୁରରେ ବଙ୍ଗୋପସାଗରର ବିକ୍ଷୁବ୍ଧ ବୀଚିମାଳାକୁ ବୈଦୁର୍ଯ୍ୟ ମଣ୍ଡିତ କରି କର୍ମମୟ ଦିବସର ଶୁଭାରମ୍ଭ କରେ । ଗୋଳାବାରୁଦ ପରୀକ୍ଷା କେନ୍ଦ୍ର ଚାନ୍ଦିପୁରର ବେଳାଭୂମିରେ ମୁରୁଜ କାଟିଦେଇ ଦିବାବସାନ ଘୋଷଣା କରେ ଆଞ୍ଜୁଳା ଆଞ୍ଜୁଳା ସ୍ୱର୍ଣ୍ଣରେଣୁ ବୁଣିଦେଇ ସ୍ୱର୍ଣ୍ଣଚୂଡ଼ର ଉତ୍ତୁଙ୍ଗ ଶିଖରରେ । ପଞ୍ଚୁଲିଙ୍ଗେଶ୍ୱର ମହାଦେବଙ୍କ ଝରଣାର କଳନିନାଦ ଏବଂ ଚନ୍ଦନେଶ୍ୱରଙ୍କ ଡମ୍ବରୁର ଟମକ ଏକାକାର ହୋଇଯାଏ କ୍ଷୀରଚୋରା ଗୋପୀନାଥଙ୍କ ବଂଶୀସ୍ୱନରେ । କେବଳ ମନମନ୍ଦିରରେ ଧୂପଟିଏ ଜାଳିବାର ଆବଶ୍ୟକ ଯାହା । ସୃଷ୍ଟିକର୍ତ୍ତାଙ୍କ ମହାନତା ନିକଟରେ ମୁଣ୍ଡ ନୁଆଁଇ ପ୍ରାଣପକ୍ଷୀକୁ ମହାକାଶର ଗାନ ଶୁଣାଇବା ତଥା ସଂପୂର୍ଣ୍ଣ ବସ୍ତୁସର୍ବସ୍ୱ ଯୁଗରେ ନିସର୍ତ୍ତ ଓ ନିଃସ୍ୱାର୍ଥ ଆନନ୍ଦ ଉପଭୋଗ କରିବା ପାଇଁ ଆଉ କ'ଣ ଲୋଡ଼ା ଯେ !

ବାଲେଶ୍ୱରର ଦକ୍ଷିଣ ସୀମା ନିର୍ଣ୍ଣିତ କରୁଛି ବଙ୍ଗୋପସାଗରର ଦିଗନ୍ତ ବିସ୍ତାରୀ ବାରିରାଶି । ସିକତାର ସ୍ତୂପ, ସଘନ ପ୍ରାକୃତିକ ଅଥବା ରୋପିତ ବୃକ୍ଷ ସମାବେଶ ସହ ଜାତିଜାତିକା ପକ୍ଷୀ କୂଜନ ସ୍ୱତଃ ଅପହରଣ କରେ କର୍ମକ୍ଳାନ୍ତ ମାନସିକ ସ୍ଥବିରତାକୁ । ଆଶଙ୍କାବିହୀନ ଅଗଭୀର ସମୁଦ୍ରସ୍ନାନ ମନରେ ଭରିଦିଏ ଶାନ୍ତି ଆଉ ଶାନ୍ତି । ଧୀବରର ପାରମ୍ପରିକ ଡଙ୍ଗାରେ ମତ୍ସ୍ୟ ଶିକାର ମନେ ପକାଇଦିଏ ଏକଦା ଓଡ଼ିଆ ସାଧବପୁଅର ଦୁର୍ଦ୍ଧାନ୍ତ ସାହସିକତା । ସମସ୍ତ ବେଳାଭୂମି ନୈସର୍ଗିକ ଶୋଭାର ଉନ୍ମୁକ୍ତ ଉଦ୍ୟାନ ସଜାଇ ରଖିଥିବା ବେଳେ ଭୋଗରାଇସ୍ଥ ଉଦୟପୁରରେ କେବଳ ବଣ୍ୟ ବିଭାଗରେ ଗୋଟିଏ ପାନ୍ଥନିବାସ ଅବହେଳିତ ଅବସ୍ଥାରେ ପଡ଼ିଛି । ଏଗୁଡ଼ିକ ପ୍ରାୟତଃ ମନ୍ତ୍ରୀ, ଯନ୍ତ୍ରୀମାନଙ୍କ ବ୍ୟବହାରରେ ଲାଗେ ।

ଚାନ୍ଦିପୁରକୁ ବ୍ରିଟିଶ ଅମଳରୁ ମାନ୍ୟତା ଦିଆଯାଇ ଗୋଳାବାରୁଦ କେନ୍ଦ୍ର ଆରମ୍ଭ ହୋଇଥିଲା । ସେଦିନରୁ କେତେ ଜୁଆରଭଟ୍ଟାର ସ୍ପର୍ଶ ପାଇଲାଣି ଉପକୂଳ । ଭୂଷୁଡ଼ି ଗଲାଣି କେତେଖଣ୍ଡ ସିମେଣ୍ଟ ବେଞ୍ଚ ଓ ଆଲୋକ ସ୍ତମ୍ଭ । ମାତ୍ର ସେଠାରେ ରାତ୍ରିଯାପନ କରୁଥିବା ଭି.ଭି.ଆଇ.ପିମାନଙ୍କ ଦୃଷ୍ଟି ପଡ଼େନାହିଁ । ଅନୁରୂପ ଅବସ୍ଥା ମଧ୍ୟ ଉଦୟପୁର-ତାଳସାରୀ ଉପକୂଳରେ । ଜଳେଶ୍ୱର ରେଳଷ୍ଟେସନରୁ ଚନ୍ଦନେଶ୍ୱର ଶୈବପୀଠକୁ ଛୁଇଁ ଲମ୍ବି ଯାଇଥିବା ସଡ଼କଟି ସଦା ରୁଗ୍‌ଣ ଅବସ୍ଥାରେ କଙ୍କାଳସାର । କେବଳ ପଶ୍ଚିମବଙ୍ଗର ପର୍ଯ୍ୟଟକମାନଙ୍କ ଅବସ୍ଥାନ ଉପରେ ନିର୍ଭରଶୀଳ ପାନ୍ଥନିବାସଟିରେ ସମୁଦ୍ର ଶୋଭା ଦର୍ଶନ ପାଇଁ କୌଣସି ବ୍ୟବସ୍ଥା ନାହିଁ । ଅନ୍ୟପକ୍ଷରେ ଧ୍ୱସ୍ତବିଧ୍ୱସ୍ତ ହେଉଥିବା 'ଦୀଘା' ଉପକୂଳରେ ପର୍ଯ୍ୟଟକମାନଙ୍କ ନାହିଁ ନଥିବା ଗହଳି । ପଶ୍ଚିମବଙ୍ଗ ସରକାର କୃତ୍ରିମ ପ୍ରସାଧନରେ ସଜ୍ଜିତ କରି 'ଦୀଘାସୁନ୍ଦରୀ'ର ପ୍ରଚାର ଚଳାଇଛନ୍ତି, ଉଦୟପୁରରୁ ୫ କି.ମି. ଦୂରରେ ଏବଂ ସେଠାକୁ ଧାଉଁଥାଆନ୍ତି ଭୋଗରାଇ ଆଗତ ପଦସ୍ଥ ବ୍ୟକ୍ତିଗଣ । ମେରାଇନ୍ ଡ୍ରାଇଭର ସ୍ୱପ୍ନ ଦେଖୁଦେଖୁ କେତେ ରାତି ପାହିପାହି ଯାଉଛି ଉଦୟପୁରରୁ ଚାନ୍ଦିପୁର ତଥା ଅବିଭକ୍ତ ବାଲେଶ୍ୱରର ଚାନ୍ଦବାଲି ବନ୍ଦର ପର୍ଯ୍ୟନ୍ତ ବିଶାଳ ଉପକୂଳର । ଏ ସ୍ୱପ୍ନ ସାକାର ହେବ କେବେ ? ଏହି ପ୍ରଶ୍ନ ଏବେ ସମସ୍ତଙ୍କ ମନରେ ।

ବାଲେଶ୍ୱର ଜିଲ୍ଲାର ବିଶେଷ ଆକର୍ଷଣ,ବିରାଜିତ ଦେବପୀଠ ନିୟୋ ବିଖ୍ୟାତ ଚଡ଼କମେଳା ଅନୁଷ୍ଠିତ ହୁଏ ପୁରାଣ ପ୍ରସିଦ୍ଧ ସାଗରକାଶୀ ଚନ୍ଦନେଶ୍ୱରଙ୍କ ବିରାଜସ୍ଥଳୀରେ । ଜଳଯନ୍ତ୍ର ମଧ୍ୟରେ ଆତ୍ମଗୋପନରତ ଦେବଦେବ ମହାଦେବଙ୍କ ମହିମା ପଶ୍ଚିମବଙ୍ଗ ଏବଂ ବିହାର ପଦେଶର ଗ୍ରାମାଞ୍ଚଳକୁ ବ୍ୟାପି ଯାଇଥିବାବେଳେ ଓଡ଼ିଶାରେ ସେପରି ପ୍ରସାର ଲାଭ କରିନାହିଁ । ବର୍ଷଯାକ ଭକ୍ତ, ପର୍ଯ୍ୟଟକ ଏବଂ ଯାତ୍ରୀମାନଙ୍କ ଗହଳି ସେଠାରେ ଲାଗିଥାଏ ଅବିରତ । ମାତ୍ର ଯାତ୍ରୀମାନଙ୍କ ନିବାସ ପାଇଁ ବ୍ୟବସ୍ଥା ନାହିଁ । ଏଣିକି ଚୈତ୍ରର ଉତ୍ସବମୁଖର ଶେଷପକ୍ଷରେ ତିରିଶ ଚାଳିଶ ହଜାରରୁ ଉର୍ଦ୍ଧ୍ୱ ଉପବୀତଧାରୀ ଭକ୍ତଙ୍କ ମଧ୍ୟରୁ ଅନେକ ଖୋଲା ଆକାଶର ଚାନ୍ଦୁଆ ତଳେ ବିଶ୍ରାମ ନିଅନ୍ତି ରାତ୍ରି ପରେ ରାତ୍ରି । ସେଠାରୁ ଦୁଇ କିଲୋମିଟର ଦୂର ତାଳସାରୀର ସମୁଦ୍ର । ଏ ଅପୂର୍ବ ଯୋଗାଯୋଗର ସୁଯୋଗ ନିଆଯାଉନାହିଁ ପର୍ଯ୍ୟଟନ ବିଭାଗ ପକ୍ଷରୁ । ସୁବର୍ଣ୍ଣରେଖା ଯେଉଁଠି କଳନିନାଦ କରି ସାଗର ସହିତ ମିଶିଯାଉଛି, ତାହାର ଅନତିଦୂରରେ ଐତିହାସିକ ପିପିଲି ବନ୍ଦର କୁହାଯାଉଥିବା ଅଞ୍ଚଳ ଅନ୍ତର୍ଗତ କୁମ୍ଭୀରଗଡ଼ି ମୌଜାରେ ବିରାଜିତ ଦେଶର ସର୍ବ ବୃହତ୍ ଶିବଲିଙ୍ଗ ଭୂଷଣ୍ଡେଶ୍ୱର । ଏହାଙ୍କ ଉଚ୍ଚତା ୧୨.୫ ଫୁଟ, ବେଧ ୧୪ ଫୁଟ୍ ଏବଂ ଶକ୍ତିର ଗୋଲେଇ ୩୭ ଫୁଟ । ପ୍ରଥମେ ଚତୁଷ୍କୋଣ ଏବଂ ପରେ ଅଷ୍ଟକୋଣ । ନିମ୍ନଦେଶ ଉପରିସ୍ଥ ଗୋଲାକାର ବିଶାଳ ବପୁ ଉପରେ ଉପବୀତର ସନ୍ତକ । ଏକଦା ଗଭୀର ଅରଣ୍ୟର ସ୍ମାରକୀ ପ୍ରାୟ ବିକ୍ଷିପ୍ତ ତାଳ, ତମାଳ, ହେନ୍ତାଳ ପୁଞ୍ଜ କ୍ରମେ ଲୋପ ପାଇଆସୁଥିବା ବେଳେ ଶଂଖଚିଲର ସଶବ୍ଦ ଚକ୍କରରେ ମୁଖରିତ ହେଉଛି ଏ ପୀଠ ।

ବହୁ ଦୂରରୁ ଭକ୍ତ ଓ ପର୍ଯ୍ୟଟକମାନେ ଆସନ୍ତି ନୌକା ଅଥବା ପନ୍ଦର କୋଡ଼ିଏ କିଲୋମିଟର ପଦବ୍ରଜରେ । ଚନ୍ଦନେଶ୍ୱରଙ୍କ ପୀଠରୁ ସେଠାକୁ ଏକ ସ୍ଥାୟୀ ସଡ଼କର ଆବଶ୍ୟକତା ପ୍ରତି ସରକାର ସଦା ଉଦାସୀନ । ଯଦିଓ ରାଜ୍ୟ ପର୍ଯ୍ୟଟନ ମନ୍ତ୍ରୀ ଏ ସଂପର୍କରେ ବିହିତ ପଦକ୍ଷେପ ନେବାର ଘୋଷଣା କରିଥିଲେ, ତାହା ପାଣିର ଗାର ହୋଇଯାଇଛି । ଚନ୍ଦନେଶ୍ୱର-ତାଳସାରୀ-ଭୂଷଣ୍ଡେଶ୍ୱର ସୁବର୍ଣ୍ଣ ତ୍ରିଭୁଜ ଆଜି ବି ମଳିନ ରହିଛି ହତାଶାର ଧୂଳି ଆସ୍ତରଣ ତଳେ; ସରକାରୀ ନାଲିଫିତା ବନ୍ଧନରେ ।

ଆହୁରି ଅନେକ ଦେବପୀଠର ମହିମାରେ ଗୌରବାନ୍ୱିତ ବାଲେଶ୍ୱର ଜିଲ୍ଲା । ସଦର ମହକୁମା ଠାରୁ ପ୍ରାୟ ଆଠ କି.ମି. ଦୂର ରେମୁଣାରେ ଅବସ୍ଥିତ କ୍ଷୀରଚୋରା ଗୋପୀନାଥ । ଭକ୍ତି ପାଇଁ ଚୋର ସାଜିଥିବା ଗୋପୀନାଥଙ୍କ ସୁନ୍ଦର ମୂର୍ତ୍ତି ପାଷାଣ୍ଡ ହୃଦୟରେ ମଧ ଶିହରଣ ସୃଷ୍ଟି କରିପାରେ । ଆଠଶହ ବର୍ଷ ତଳୁ ସମ୍ଭବତଃ ପ୍ରଚାର ହୋଇଛି ତାଙ୍କ ମହିମା । ଭକ୍ତଙ୍କ ଦୃଷ୍ଟି ଆକର୍ଷଣ କରିବାପାଇଁ ସେଠାରେ ସରକାରୀ ଉଦାସୀନତା ସାଙ୍ଗକୁ ଟ୍ରଷ୍ଟର ଦାୟିତ୍ୱବୋଧର ଅଭାବ ବିସ୍ମିତ କରେ ।

ନୀଳଗିରିଠାରୁ ଦଶ କି.ମି. ଦୂର ପଞ୍ଚଲିଙ୍ଗେଶ୍ୱର ଶୈବପୀଠ ପୁରାଣ ପ୍ରସିଦ୍ଧ । କୁହାଯାଏ, ବାଣାସୁର ଅର୍ଚ୍ଚନା କରୁଥିଲେ ତାଙ୍କୁ । ପାର୍ବତ୍ୟ ସୁଷମା ମଧ୍ୟରେ ଝରି ଆସୁଛି ଏକ କଳନାଦିନୀ ଝର, ଅବିରତ ମହାଦେବଙ୍କୁ କରାଉଛି ଅଭିଷେକ । ରାଜ୍ୟ ଓ ରାଜ୍ୟ ବାହାରୁ ବହୁଯାତ୍ରୀ ସେଠାକୁ ଆସୁଥିବା ବେଳେ ଶ୍ୟାମସୁନ୍ଦରପୁରଠାରୁ ସେଠାକୁ ପିଚୁ ରାସ୍ତାଟିଏ ନାହିଁ । ନିକଟରେ ନାହିଁ ପୋଲିସ୍ ଚୌକି କି ଡାକ୍ତରଖାନା । ଏଣୁ ଯାତ୍ରୀମାନେ ସେଠାରେ ଥିବା ପାନ୍ଥଶାଳାରେ ରାତ୍ରି ଯାପନର ପ୍ରବଳ ଇଚ୍ଛାକୁ ଦମନ କରି ବାହୁଡ଼ି ଆସନ୍ତି ସଞ୍ଜ ପୂର୍ବରୁ ।

ଦେବତାଙ୍କ ଲୀଳାସ୍ଥଳୀ ବ୍ୟତୀତ ସେଠାରେ ପାର୍ବତ୍ୟଶୋଭା ଅତ୍ୟନ୍ତ ମୁଗ୍ଧକର । ହରିଣ ପାର୍କ ଅଥବା କୃତ୍ରିମ ହ୍ରଦଟିଏର (ଝରଣାକୁ ଉପଯୋଗକରି) ବ୍ୟବସ୍ଥା ହୋଇପାରିଲେ ପର୍ଯ୍ୟଟକମାନେ ସ୍ୱତଃ ଆକର୍ଷିତ ହୁଅନ୍ତେ । ଏହା ବ୍ୟତୀତ ରୋପୱେ ଦ୍ୱାରା ପାହାଡ଼ ଶିଖରକୁ ସଂଯୋଗ କରାଯାଇ ସ୍ଥାନଟିର

ଗୁରୁତ୍ବ ବୃଦ୍ଧି କରାଯାଇ ପାରନ୍ତା । ଅନେକ ନାହିଁ ନାହିଁ ସତ୍ତ୍ୱେ ସେଠାକାର ପାନ୍ଥନିବାସ ପଚାଶ ପ୍ରତିଶତ ରୋଜଗାର କ୍ଷମ ବୋଲି ସୂଚନା ମିଳିଛି ।

ସ୍ୱାଧୀନତା ସଂଗ୍ରାମର ରକ୍ତତୀର୍ଥ ତଥା ବ୍ୟାସକବି ଫକୀରମୋହନଙ୍କ ଜନ୍ମସ୍ଥାନ ବାଲେଶ୍ୱର ସହରକୁ ଲଗାଇ ଚାନ୍ଦିପୁର ରେମୁଣା ପଞ୍ଚୁଲିଙ୍ଗେଶ୍ୱର ଯୋଗରେ ପର୍ଯ୍ୟଟନର ସୁବର୍ଣ୍ଣ ସମ୍ଭାବନା କାର୍ଯ୍ୟକାରୀ ହେବାର କୌଣସି ଲକ୍ଷଣ ପ୍ରକାଶ ପାଇନାହିଁ ।

ପ୍ରକୃତିକ ସୌନ୍ଦର୍ଯ୍ୟ ଓ ଦେବଦେଉଳର ଅବସ୍ଥାନ ସହିତ ବାଲେଶ୍ୱରର ଐତିହାସିକତା ମଧ୍ୟ କିଛି ଊଣା ନୁହେଁ । ବିଦେଶୀମାନଙ୍କ ବାଣିଜ୍ୟସ୍ଥଳୀର ସ୍ମୃତି ବହନ କରି ଦିନାମାର ଘାଟ, ପରମିଟ୍ ଘାଟ ଇତ୍ୟାଦି ମୂକସାକ୍ଷୀ ସଦୃଶ ରହିଥିବା ବେଳେ ରାଇବଣିଆର ଭଗ୍ନଦୁର୍ଗ ଆଜି ବି ଅପେକ୍ଷା ରଖେ ଓଡ଼ିଆ ପୁଅର ମାର୍ମିକ ଜାଗୃତିକୁ । ଗୁଡ଼ିଖାଳ ଖାଇ ମନେ ପକେଇ ଦିଏ ହଜିଯାଇଥିବା ଇତିହାସ ଅଣ୍ଡାଳି ହେବାକୁ । ଇରମ୍, ଇଞ୍ଚୁଡ଼ି ଆଜିବି ଉନ୍ମାଦ କରେ, ସ୍ୱାଧୀନତାର ମୂଲ୍ୟାଙ୍କନ ପାଇଁ ।

ଅଥଚ ବାଲେଶ୍ୱର ଜିଲ୍ଲାକୁ ଅବହେଳା କରାଯାଉଛି; ପର୍ଯ୍ୟଟକମାନଙ୍କ ଦୃଷ୍ଟିକୁ ଅନ୍ୟତ୍ର ନିଆଯାଉଛି ବୋଲି ଅଭିଯୋଗ ହେଉଛି । ପର୍ଯ୍ୟଟନର ବିକାଶ ପାଇଁ କେନ୍ଦ୍ର ସରକାର ସହାୟତା ଯୋଗାଇବାକୁ ପ୍ରତିଶ୍ରୁତିବଦ୍ଧ ଥିଲାବେଳେ ଜିଲ୍ଲାର ଏହି ବିଶେଷ କ୍ଷେତ୍ରମାନଙ୍କୁ କାହିଁକି ଅବହେଳା କରାଯାଉଛି ବୋଲି ପ୍ରଶ୍ନ ହେଉଛି ।

# ନାରାୟଣପୁର, ଭୋଗରାଇ, ବାଲେଶ୍ୱର

# ବୃହତ୍ତମ ଶିବଲିଙ୍ଗ ଭୁଷଣ୍ଡେଶ୍ୱର

ଶ୍ରୀ ନିଶିକାନ୍ତ ମହାନ୍ତି

ସୁବର୍ଣ୍ଣରେଖା ମୁହାଣ ତଟସ୍ଥ ଶ୍ରୀ ଶ୍ରୀ ଭୁଷଣ୍ଡେଶ୍ୱର ଶୈବପୀଠ ଭାରତର ପ୍ରସିଦ୍ଧ ଶୈବପୀଠମାନଙ୍କ ଭଳି ମାନ୍ୟତା ପାଇ ନଥିଲେ ମଧ୍ୟ ଏହା ଅନ୍ୟତମ ପ୍ରାଚୀନ ଓ ବୃହତ୍ତମ ଶିବଲିଙ୍ଗ ! ଏହି ଶିବଲିଙ୍ଗ କେଉଁ ଅନାଦି କାଳରୁ ଭୂତଳରେ ଲୁକ୍କାୟିତ ଅବସ୍ଥାରେ ରହି ଥିବାରୁ ଲୋକଲୋଚନକୁ ଆସିପାରି ନଥିଲା । କିମ୍ବଦନ୍ତି ଅନୁସାରେ ଏହି ଶିବଲିଙ୍ଗର ସୃଷ୍ଟି ଭାରତରେ ଆର୍ଯ୍ୟ ସଭ୍ୟତାର ପ୍ରସାର କାଳରୁ ଏଇଭଳି ପ୍ରଚୀନ ବୃହତ୍ତମ ଶିବଲିଙ୍ଗ ଜନ ମାନବ ଶୂନ୍ୟ ବିପଦ ଶଙ୍କୁଳ ପଥହୀନ ସ୍ଥାନରେ ନହୋଇ ଯଦି ଏକ ଜନଗହଳିପୂର୍ଣ୍ଣ ଅଞ୍ଚଳରେ ଏବଂ ଗମନାଗମନର ସୁବିଧା ଥିବା ସ୍ଥାନରେ ଆବିର୍ଭୂତ ହୋଇଥାନ୍ତେ, ତେବେ ପୃଥିବୀର ସର୍ବ ବୃହତ୍ତମ ଶିବଲିଙ୍ଗ ର ଆଖ୍ୟା ଲାଭ କରି ଥାନ୍ତେ । ତତ୍ ସଙ୍ଗେ ସଙ୍ଗେ ବିଭିନ୍ନ ସ୍ଥାନରୁ ଅସଂଖ୍ୟ ଭକ୍ତଙ୍କର ସମାଗମ ହୋଇ ପ୍ରତ୍ୟହ ପ୍ରଚୁର ଭିଡ଼ ଲାଗି ରହିଥାନ୍ତା ।

ଭଗବାନ ବାବା ଭୁଷଣ୍ଡେଶ୍ୱର କେବଳ ବାଲେଶ୍ୱର ଜିଲ୍ଲାରେ ନୁହେଁ ଓଡ଼ିଶାର ନୁହେଁ, ଭାରତବର୍ଷର ଗର୍ବ ଓ ଗୌରବ । ତାଙ୍କର ପୀଠ ବାଲେଶ୍ୱର ଜିଲ୍ଲା ଭୋଗରାଇ ଥାନା ଅନ୍ତର୍ଗତ ରସଲପୁର ଗ୍ରାମ ପଞ୍ଚାୟତର କୁମ୍ଭୀରଗଡ଼ି ଗ୍ରାମରେ ଅବସ୍ଥିତ । ଏହା ସୁବର୍ଣ୍ଣରେଖା ନଦୀ ମୁହାଣ ଓ ପିପ୍ପଳି ଉପନଦୀ ସଙ୍ଗମ ତଟର ଉତ୍ତର, ପୂର୍ବ ଓ ପଶ୍ଚିମ ପାଖ ବିସ୍ତୀର୍ଣ୍ଣ ଧାନ୍ୟକେଦାର ଓ ପ୍ରାକୃତିକ ସୌନ୍ଦର୍ଯ୍ୟର ଅପରୂପ ମନଲୋଭା ଦୃଶ୍ୟ ସବୁଜିମା ମଧ୍ୟରେ ରହିଅଛି । ଓଡ଼ିଶାର ପୂର୍ବ ବେଳାଭୂମି ଉଦୟପୁର ଓ ପଶ୍ଚିମବଙ୍ଗର ପଶ୍ଚିମସୀମା ବେଳାଭୂମି ଦୀଘାଠାରୁ ପ୍ରାୟ ଷୋହଳ କିଲୋମିଟର ପଶ୍ଚିମକୁ ବାବା ଭୁଷଣ୍ଡେଶ୍ୱରଙ୍କ ମନ୍ଦିର ଅବସ୍ଥିତ । ଉତ୍ତର କୂଳେ କୂଳେ ଓ ପିପ୍ପଳି ଉପନଦୀର ପୂର୍ବ ପଶ୍ଚିମଉଭୟ କୂଳରେ ମୁଷ୍ଟିମେୟ ମାଛଧରାଳି ଓ ଚିଙ୍ଗୁଡ଼ି ଚାଷୀଙ୍କର କେତୋଟି ପର୍ଣ୍ଣକୁଟୀର । ସେପୁଣି ସବର୍ଣ୍ଣରେଖାର ସର୍ବଗ୍ରାସୀ ବନ୍ୟା ବେଳେ ପ୍ଲାବିତ ହୋଇ ଏହି କୁଡ଼ିଆ ଗୁଡ଼ିକୁ ଭାଙ୍ଗି ଭସାଇନେବା ସାଙ୍ଗକୁ ବାବା ଭୁଷଣ୍ଡେଶ୍ୱର ଲିଙ୍ଗକୁ ବନ୍ୟା ପାଣିରେ ବୁଡ଼ାଇ ରଖୁଥିଲା । ମାତ୍ର ମନ୍ଦିର ଗଢ଼ା ହେବାଠାରୁ ବନ୍ୟାପାଣି ଆଉ ଶିବଲିଙ୍ଗକୁ ଛୁଇଁ ପାରେ ନାହିଁ । ଏବେ ବନ୍ୟା ପାଣି ମନ୍ଦିର ଭିତକୁ ପଶି ପାରେ ନାହିଁ ।

ଦିନେ ଏହି ସ୍ଥାନଟି ପିପିଲି ବନ୍ଦର ନାମରେ ଖ୍ୟାତ ଥିଲା । ପିପ୍ପଳିର ନାମାନୁସାରେ ଏବନ୍ଦରର ନାମ ପିପ୍ପଳିରୁ ଅପଭ୍ରଂଶ ହୋଇ ପିପିଲି ହୋଇ ଥିଲା । ଏଠାରୁ ଶହ ଶହ ନୌକାରେ ସାଧବ ପୁଅମାନେ ଜାଭା, ସୁମାତ୍ରା, ବର୍ଣ୍ଣିଓ, ସିଂହଳ, ଆଣ୍ଡାମାନ, ନିକୋବର ପ୍ରଭୃତି ଦ୍ୱୀପପରୁ ବାଣିଜ୍ୟ କରିବାକୁ ଯାଉଥିଲେ । ଏହା ଏକ ଅଝାଳ ସିଲାଇ ଓ ନିମକି ମାହାଲ ମଧ୍ୟ ଥିଲା । ଏଠାରୁ ହଜାର ହଜାର କୁଇଣ୍ଟାଲ ଲୁଣ ମରାଯାଇ ଦେଶ ବାହାରକୁ ପଠା ଯାଉଥିଲା । ସ୍ୱଦେଶୀ ଆନ୍ଦୋଳନ ବେଳେ ଶହ ଶହ ଲୁଣ ମରାଳି ଇଂରେଜମାନଙ୍କ ଦ୍ୱାରା ବନ୍ଦୀହୋଇ କାରାବରଣ କରିଥିଲେ । ସୁବର୍ଣ୍ଣରେଖା ଓ ପିପ୍ପଳି ସଂଗମ ସ୍ଥଳରୁ ନଦୀ କୂଳ ଖାଇଲା ପରେ ଯେତିକି ଅଛି ସେହି ସ୍ଥାନରୁ ଏବେ ବାହାରୁଥିବା ଶହ ଶହ ଲୁଣମରା ଚୁଲି ତାର ମୂକ ସାକ୍ଷୀ ହୋଇ ରହିଛି ।

ଏହି ପିପିଲି ବନ୍ଦରର ଉତ୍ତରକୁ ଯେଉଁଠାରେ ବାବା ଭୁଷଣ୍ଡେଶ୍ୱରଙ୍କ ମନ୍ଦିର ରହିଛି ତାହା ଶହ ଶହ ବର୍ଷପୂର୍ବେ ଲୁଣି ମାଟିରୁ ଜାତ ବନି ଓ ହେନ୍ତାଳ ଗଛପୂର୍ଣ୍ଣଜଙ୍ଗଲ ଥିଲା । ଏହି ଜଂଗଲ ମଧ୍ୟରେ ଶତାଧିକ

ବର୍ଷ ତଳେ ଭଗବାନ ଭୁଷଣ୍ଡେଶ୍ୱରଙ୍କ ଶିବ ଲିଙ୍ଗ ଲୋକଲୋଚନକୁ ଆସିଲା । ହଜାର ହଜାର ବର୍ଷ ଧରି ଏହି ପୃଥୁଳ ଓ ଦୀର୍ଘକାୟ ଶିବଲିଙ୍ଗର କାହାଣୀ ପୁରୁଷାନୁକ୍ରମେ ଶୁଣି ଆସୁଥିଲେ ମଧ୍ୟ ଏହା ସୁବର୍ଣ୍ଣରେଖା ମୁହାଣର ନିର୍ଦ୍ଦିଷ୍ଟ କେଉଁ ସ୍ଥାନରେ କିଭଳି ଅବସ୍ଥାରେ ଅଛି ଲୋକେ ଜାଣି ପାରୁ ନଥିଲେ ।

ଜଙ୍ଗଲ ମଧ୍ୟରକୁ ପ୍ରତିଦିନ କାଠ ନେବାକୁ ଆସୁଥିବା ଦଳ ଦଳ କାଠୁରିଆଙ୍କ ମଧ୍ୟରୁ ଦଳେ କାଠୁରିଆ ସର୍ବ ପ୍ରଥମେ ଏହି ଲିଙ୍ଗକୁ ଦେଖିଥିଲେ । ମାତ୍ର ସେମାନେ ପଥର ଭାବି ହେୟ ମଣିଲେ । ଜଣେ କାଠୁରିଆ ତାହାରି ଉପରେ ବସି ବିଶ୍ରାମ ନେଉଥିଲାବେଳେ ସେମାନେ ଏକ ଗମ୍ଭୀର କଣ୍ଠ ସ୍ୱର ଶିଣିବାକୁ ପାଇଲେ । କଣ୍ଠସ୍ୱରଟି ହେଉଛି,– "ତମେ ପଥର ଖଣ୍ଡ ଭାବି ଯାହା ଉପରେ ବସିଛ, ସେ ପଥର ନୁହେଁ । ସେ ଏକ ଶିବଲିଙ୍ଗ । ଅତି ବଡ଼ ବା ଭୁଷୁଣ୍ଡା ହୋଇଥିବାରୁ ତାଙ୍କର ନାମ ଭୁଷଣ୍ଡେଶ୍ୱର ।" ପଥର ଉପରେ ବସିଥିବା କାଠୁରିଆ ଏକଥା ଶୁଣିବା ପରେ ତଳକୁ ଓହ୍ଲାଇ ଆସୁ ଆସୁ ଅଜ୍ଞାନ ହୋଇ ପଡ଼ିଗଲା । ଚେତା ଆସିଲା ପରେ ଅନ୍ୟ କାଠୁରିଆଙ୍କୁ ସେକଥା କହିଲା । ସେମାନେ ଗାଁରେ ଏକଥା କହିଲେ । ଯେଉଁମାନେ ବୁଢ଼ାବୁଢ଼ୀଙ୍କ ଠାରୁ ଭୁଷଣ୍ଡେଶ୍ୱରଙ୍କ ଆବିର୍ଭାବ କିମ୍ବଦନ୍ତି ଶୁଣିଥିଲେ ସେମାନେ ଏକଥାକୁ ବିଶ୍ୱାସ କଲେ । ସେମାନେ କାଠୁରିଆ ମାନଙ୍କ ସାଙ୍ଗରେ ସେଠାକୁ ଯାଇ ମିଳିତ ଭାବରେ ସାବଧାନତାର ସହିତ ଚାରିପାଖ ଖୋଳି ଲିଙ୍ଗର ଉପର ଅଂଶ ଦେଖିବାକୁ ପାଇଲେ । ଏହା ଏକ ଶିବଲିଙ୍ଗ ବୋଲି ସେମାନେ ଗାଁ ଗାଁ ବୁଲି ପ୍ରଚାର କଲେ । କାଠୁରିଆମାନେ ବନି ଓ ହେନ୍ତାଳ ବଣକାଟି ସେସ୍ଥାନ ସଫାକଲେ । ଲୋକେ ଏହାଙ୍କୁ ଦେଖିବା ପାଇଁ ଡଙ୍ଗାରେ ଓ ପହଁରି ପହଁରି ନଈ ପାରି ହୋଇ ଦେଖିବାକୁ ଗଲେ । କ୍ରମେ ନିକଟରୁ ଦୂର ଅଞ୍ଚଳର ଲୋକେ ଜାଣିଲେ ଏବଂ ଜଳପଥରେ ଆସି ଉକ୍ତ ଶିବଲିଙ୍ଗ ମୂର୍ତ୍ତିର ଦେଖା ଯାଉଥିବା ଅଂଶକୁ ଦେଖିଲେ । ଏହା ଊନବିଂଶ ଶତାବ୍ଦୀର ଶେଷ ବେଳର କଥା ।

ସେତେବେଳେ ଆମ ଦେଶ ଇଂରେଜ ଶାସନାଧୀନ ଥିଲା । ଏକଥା ତାଙ୍କ କାନକୁ ଗଲା । ସେମାନେ ଏହି ଲିଙ୍ଗ ମୂର୍ତ୍ତି ଇଂଲଣ୍ଡକୁ ନେଇଯିବା ଲାଗି ସମୁଦ୍ର ପଥବାଟେ ଏଠାକୁ ଆସି ଲିଙ୍ଗକୁ ଠାବ କଲେ । ମାଟି ଖୋଳି ଏହା ଏକ ବଡ଼ ଲିଙ୍ଗମୂର୍ତ୍ତି ଜାଣି କ୍ରେନ ସାହାଯ୍ୟରେ ଉପରକୁ ଉଠାଇବାର ଚେଷ୍ଟା କରି ବିଫଳ ହେଲେ । ଶହ ଶହ ଜନଶକ୍ତି ଓ ଯନ୍ତ୍ରଶକ୍ତି ଦ୍ୱାରା ତାଙ୍କୁ ଏକଇଞ୍ଚ ବି ଉପରକୁ ଉଠାଇ ପାରିଲେ ନାହିଁ । ମାଟି ଖୋଳା ହୋଇଥିବାରୁ ମୂର୍ତ୍ତି ଗୋଟିଏ ପଟକୁ ଢ଼ଳି ହୋଇଗଲେ । ସେମାନେ ଲିଙ୍ଗ ମୂର୍ତ୍ତି ଦେହରେ ଲାଖିହୋଇ ରହିଥିବା ପ୍ରାୟ ୨୦ ଫୁଟ ଲମ୍ବର ଦେଢ଼ କିଲୋଗ୍ରାମରୁ ଊର୍ଦ୍ଧ୍ୱ ଓଜନର ସୁନା ପଇତାକୁ ଖୋଲି କାଢ଼ି ନେଇଗଲେ । ଲିଙ୍ଗମୂର୍ତ୍ତିର ୧୩ ଫୁଟ ୬ ଇଞ୍ଚ ଲମ୍ବ ନେତନାଳାର (ଶକ୍ତି ଦେହରୁ ବାହାରିଥିବା ପଞ୍ଚାମୃତ ବହିଯିବା ନାଳ ବା ପହଣୀ) କିଛି ଅଂଶକୁ କ୍ରେନ ଜଞ୍ଜିର ଲଗାଇ ମୂର୍ତ୍ତିକୁ ଟେକିଲାବେଳେ ଭାଙ୍ଗି ଦେଇଥିଲେ ।

ତିନି ପଟୁ ନଦୀ ପ୍ରତିବନ୍ଧକ ଓ ବିପଦ ସଙ୍କୁଳ ପଥହୀନ ଜଙ୍ଗଲ ମଧ୍ୟକୁ ଯାଇ ଭଗବାନ ଭୁଷଣ୍ଡେଶ୍ୱରଙ୍କୁ ପ୍ରତିଦିନ ପୂଜାର୍ଚ୍ଚନା କରିବା ସମ୍ଭବ ନ ହୋଇ ପାରିବାରୁ ପଶ୍ଚିମବଙ୍ଗ ମେଦିନୀପୁର ଜିଲ୍ଲା ପଞ୍ଚେଟଗଡ଼ ଜମିଦାର ତାଙ୍କ ଜମିଦାରୀ ଇଲାକାରେ ମନ୍ଦିର ଗଢ଼ି ପୂଜାର୍ଚ୍ଚନା କରିବାର ଇଚ୍ଛା କଲେ । ତେଣୁ ପ୍ରଥମେ ପାଞ୍ଚଶହରୁ ଅଧିକ ଲୋକଶକ୍ତି ଓ ପରେ କ୍ରେନ ଶକ୍ତିଦ୍ୱାରା ଟିକିଏ ବି ଉପରକୁ ଉଠାଇ ନ ପାରିନିରସ୍ତ ହେଲେ । କ୍ରେନ ଅଚଳ ହେଲା, ଜଞ୍ଜିର ଛିଣ୍ଡିଗଲା, କ୍ରେନଟି ଭାଙ୍ଗି ନଷ୍ଟ ହୋଇଗଲା ।

ତତ୍ପରେ ୧୯୬୩ ମସିହାରେ ଜଳେଶ୍ୱର ସହରର ସୁଖଲାଲ ମାରୁଆଡ଼ି ଏହି ଲିଙ୍ଗ ମୂର୍ତ୍ତିକୁ ଭୂପୃଷ୍ଠକୁ ଆଣିବା ପାଇଁ ଫେବୃୟାରୀ ୨୪ରୁ ଏପ୍ରିଲ ୨୬ ତାରିଖ ପର୍ଯ୍ୟନ୍ତ ଦୁଇ ଶହ କୁଲି ଦ୍ୱାରା ମାଟି ଖୋଳି ଉପରକୁ ଉଠାଇବାର ଚେଷ୍ଟାକଲେ । ବ୍ୟର୍ଥ ହୋଇ ସେ ମଧ୍ୟ କ୍ରେନର ସାହାଯ୍ୟ ନେଲେ । ମାତ୍ର ତାଙ୍କର ସବୁ ଚେଷ୍ଟା ନିଷ୍ଫଳ ହେଲା । କେବଳ ଗଡ଼ି ରହିଥିବା ଲିଙ୍ଗ ମୂର୍ତ୍ତିକୁ ଟିକିଏ ସିଧା କରି ପାରିଥିଲେ । ତଥାପି ସାମାନ୍ୟ ଗଡ଼ି ରହିଛନ୍ତି ।

ଆମ ସରକାରଙ୍କ ଦୃଷ୍ଟିକୁ ଆସିଲା ପରେ ପ୍ରତ୍ନତତ୍ତ୍ୱ ବିଭାଗ ଦ୍ୱାରା ସର୍ଭେ କରାଇଲେ, ଏହାର ଓଜନ ଏକ ହଜାର ଟନ୍‌ରୁ ଅଧିକ ହେବବୋଲି ପ୍ରତ୍ନତତ୍ତ୍ୱ ବିଭାଗ ଆକଳନ କରିଛନ୍ତି ।

ଉକ୍ତ ଶିବଲିଙ୍ଗ ମୂର୍ତ୍ତିର ଉଚ୍ଚତା ୧୩ଫୁଟ ୬ ଇଞ୍ଚ । ମାଟି ଉପରେ ଶକ୍ତି ରହିଛି । ଶକ୍ତି ଉପରକୁ ଲିଙ୍ଗ ୯ ଫୁଟ ଦେଖା ଯାଉଛି । ଶକ୍ତିତଳେ ମାଟି ଭିତରେ ଲିଙ୍ଗ ୪ ଫୁଟ ୬ ଇଞ୍ଚ ପୋତି ହୋଇ ରହିଛି । ଲିଙ୍ଗର ଅଗ୍ରଭାଗରୁ ଶକ୍ତିଠାରୁ ୧ ଫୁଟ ଉଚ୍ଚ ପର୍ଯ୍ୟନ୍ତ ୮ ଫୁଟ ଲିଙ୍ଗ ମୂର୍ତ୍ତିର ଗଠନ ଗୋଲାକାର ଏବଂ ଏହାର ଗୋଲେଇ ବା ପରିଧି ୧୨ ଫୁଟ । ଗୋଲାକାର ୮ ଫୁଟ ଲିଙ୍ଗମୂର୍ତ୍ତି ତଳକୁ ଓ ଶକ୍ତି ଉପରକୁ ୧ ଫୁଟ ଆଠ କୋଣ ବିଶିଷ୍ଟ ଲିଙ୍ଗାଶକ୍ତି ତଳେ ମାଟି ଭିତରେ ରହି ଆଠକୋଣ ବିଶିଷ୍ଟ ଲିଙ୍ଗ ୪ ଫୁଟ ୬ ଇଞ୍ଚ । ଆଠକୋଣ ବିଶିଷ୍ଟ ଲିଙ୍ଗାଂଶ ମୋଟ ୫ ଫୁଟ ୬ ଇଞ୍ଚ ଏହାର ଗୋଲେଇ ୧୩ ଫୁଟ ୬ ଇଞ୍ଚ । ଲିଙ୍ଗର ୯ଫୁଟ ତଳେ ମୂର୍ତ୍ତିକୁ ଲାଗି ଶକ୍ତିର ପରିଧି ୩୩ ଫୁଟ ୬ ଇଚ୍‌ଞ୍ଚ । ଏହି ବୃହତ୍‌କାୟ ମୂର୍ତ୍ତିକୁ ଧରି ରଖିବା ପାଇଁ ହେଉ ଅବା ନାରାୟଣଙ୍କ ଇଚ୍ଛା ପାଇଁ ହେଉ ଶକ୍ତିର ତଳକୁ ୧ ଫୁଟ ଅନ୍ତରରେ ଆଉ ତିନୋଟି ଶକ୍ତି ରହିଛି । ଦ୍ୱିତୀୟ ଶକ୍ତିର ପରିଧି ୩୧ ଫୁଟ ୬ ଇଞ୍ଚ । ତୃତୀୟ ଶକ୍ତିର ଗୋଲେଇ ୩୧ ଫୁଟ ୬ ଇଞ୍ଚ । ୪ର୍ଥ ଶକ୍ତିର ପରିଧି ୩୦ ଫୁଟ ୬ ଇଞ୍ଚ ।

ଚାରୋଟି ଶକ୍ତି ଓ ୧୩ ଫୁଟ ୬ ଇଞ୍ଚ ଲମ୍ବା ନେତ୍ରନାଳା ସହିତ ଶିବଲିଙ୍ଗ ମୂର୍ତ୍ତି ଗୋଟିଏ ଚାଉଳରେ ଗଢ଼ା ହେଲାଭଳି ଖଣ୍ଡିଏ କଳା ମୁଗୁନି ପଥରରେ ତିଆରି । ଯଦି ଏହି ଶିବଲିଙ୍ଗର ପୂର୍ଣ୍ଣ ଅବୟବ ମାଟିତଳେ ନରହି ମାଟି ଉପରସ୍ତରରେ ରହିଥାନ୍ତେ ତେବେ ଏହା ପର୍ବତର ଏକ ଶୃଙ୍ଗଭଳି ଦେଖା ଯାଉଥାନ୍ତା । ପୂଜା କରିବା ବେଳେ ପୂଜକଙ୍କର ହାତ ଲିଙ୍ଗ ମୂର୍ତ୍ତିର ମସ୍ତକକୁ ପାଉ ନଥିବାରୁ ମନ୍ଦିର ନିର୍ମାଣ ବେଳେ ମନ୍ଦିର ଗାତ୍ରକୁ ଲାଗି ଏକ ଉଚ୍ଚ ପକ୍କାମଞ୍ଚ ନିର୍ମାଣ କରାଯାଇଛି । ପୂଜକ ସେହି ମଞ୍ଚ ଉପରେ ବସି ଭଗବାନ ଭୁଷଣ୍ଡେଶ୍ୱରଙ୍କ ମସ୍ତକରେ ଫୁଲ ବେଲପତ୍ର ଦିଅନ୍ତି ଓ ପଇଡ଼ପାଣି, ଦୁଧ, ପଞ୍ଚାମୃତ ଢ଼ାଳି ପୂଜା କରନ୍ତି । ଲିଙ୍ଗର ଶକ୍ତି ପାଖକୁ ଯିବାକୁ ହେଲେ ମଞ୍ଚକୁ ଲାଗି ପକ୍କା ପାହାଚଦ୍ୱାରା ତଳକୁ ଓହ୍ଲାଇ ଯିବାକୁ ପଡେ । ଏବଂ ଅନ୍ୟ ଏକ ସିଡ଼ି ପାହାଚ ଦ୍ୱାରା ଉପରକୁ ଉଠି ପ୍ରସ୍ଥାନ ପଥଦେଇ ମନ୍ଦିର ବାହାରକୁ ଆସିବାକୁ ପଡ଼େ । ପୃଥିବୀର ଏହି ବୃହତ୍ତମ ଶିବଲିଙ୍ଗ ୧୯୯୦ ମସିହା ପୂର୍ବରୁ ଖୋଲା ଆକାଶ ତଳେ ଏକ ବୃହତ୍‌କାୟ ବନିଗଛ ମୂଳରେ ରହୁଥିଲେ ।

ଭୁଷଣ୍ଡେଶ୍ୱର ମନ୍ଦିର ସରକାରୀ ଅର୍ଥରେ ୧୯୮୬ ମସିହାର ଆରମ୍ଭ ହୋଇ ୧୯୯୦ ମସିହାରେ ଶେଷ ହୋଇଥିଲା । ମନ୍ଦିରର ଉଚ୍ଚତା ୪୬ ଫୁଟ । ମନ୍ଦିର ଭିତର ଅଂଶର ଗୋଲେଇ ୯୦ ଫୁଟ । ମନ୍ଦିର ଭିତରେ ସ୍ଥାନାଭାବ ଯୋଗୁଁ ମନ୍ଦିର ଗାତ୍ରର ଚାରିକଡ଼େ ବଡ଼ ବଡ଼ ଝରକା ରଖାଯାଇଛି । ଫଳରେ ବାହାରେ ରହି ଏକାଥରକେ ଶହ ଶହ ଭକ୍ତ ଭଗବାନ ଭୁଷଣ୍ଡେଶ୍ୱରଙ୍କୁ ଦର୍ଶନ କରି ପାରିବେ । ଏବେ ଆମ ସରକାର ଭୁଷଣ୍ଡେଶ୍ୱରଙ୍କୁ ଏକ ପର୍ଯ୍ୟଟନ ସ୍ଥଳୀର ମାନ୍ୟତା ଦେଇଛନ୍ତି ।

ଭାରତର ସବୁ ଅଞ୍ଚଳର ଲୋକେ ତଥା ବୈଦେଶିକ ପର୍ଯ୍ୟଟକଙ୍କ ସରକାରୀ ଅର୍ଥରେ ବାବା ଚନ୍ଦନେଶ୍ୱରଙ୍କ ମନ୍ଦିରଠାରୁ ଭୁଷୁଣ୍ଡେଶ୍ୱରଙ୍କ ମନ୍ଦିର ଯାଏଁ ଦକ୍ଷିଣ ରାସ୍ତା ଦେଇ ଏବଂ ଜଲେଶ୍ୱର ଚନ୍ଦନେଶ୍ୱର ରାସ୍ତାର ଜଗନ୍ନାଥପୁର ଛକିଠାରୁ ଉତ୍ତର ରାସ୍ତାବାଟେ ଦୁଇଟି ପିଚୁରାସ୍ତାର ନିର୍ମାଣ କାର୍ଯ୍ୟ ଚାଲିଛି । ଏହି ଦୁଇ ରାସ୍ତାଦେଇ ପଶ୍ଚିମବଙ୍ଗର ଦୀଘାକୁ ଓ ଚନ୍ଦନେଶ୍ୱର ମନ୍ଦିରକୁ ଆସୁଥିବା ତୀର୍ଥଯାତ୍ରୀ ଓ ପର୍ଯଟକମାନେ ଚାରିଚକିଆ ଯାନରେ ଏବେ ଯା ଆସ କରୁଛନ୍ତି । କିଛି ମାସ ପରେ ଛଅଚକିଆ ଯାନରେ ଯା ଆସ କରି ପାରିବେ । ମନ୍ଦିର ପୂର୍ବପାଖ ଦେଇ ବହି ଯାଉଥିବା ପିପ୍ପଳିନଈ ଉପରେ ସ୍ଥାୟୀ ପକ୍କା ପୋଲ ୨୦୦୩ ମସିହା ଫେବୃୟାରୀ ମାସରେ ଶେଷ ହୋଇ ତା ଉପରେ ଗାଡ଼ି ଗଡୁଛି । ପଶ୍ଚିମ ପଟେ ଭୁବନେଶ୍ୱର ଜଲେଶ୍ୱର ଚାରିଟିକିଆ ରାସ୍ତାର ବସ୍ତା ଗାନ୍ଧିଛକ ଠାରୁ ବାଲିଆପାଳ ବସ୍‌ଷ୍ଟାଣ୍ଡକୁ ଆସି ବାଇଗଣ ବାଡ଼ିଆ ଠାରେ ସୁବର୍ଣ୍ଣରେଖା ନଦୀ ଉପରେ ନିର୍ମାଣ ହେଉଥିବା ସ୍ଥାୟୀ ପୋଲ ଉପରଦେଇ ଆସି ମନ୍ଦିର ପାଖରେ ପହଞ୍ଚି ପାରିବେ କିମ୍ବା

ନୌକାରେ ସୁବର୍ଣ୍ଣରେଖାନଦୀ ପାରିହୋଇ ତୀର୍ଥ ଯାତ୍ରୀମାନେ ମନ୍ଦିର ପାଖରେ ପହଞ୍ଚି ପାରିବେ । ପଶ୍ଚିମବଙ୍ଗ ଦେଇ ଆସିଲେ ଦୀଘାରୁ ହୋଇ ଚନ୍ଦନେଶ୍ୱର ମନ୍ଦିରକୁ ଆସ ମନ୍ଦିରକୁ ଲାଗି ଦକ୍ଷିଣ ପାଖ ରାସ୍ତାରେ ପଶ୍ଚିମକୁ ଗଲେ କମ୍ ସମୟରେ ମନ୍ଦିର ପାଖରେ ପହଞ୍ଚିପାରିବେ । ଜଳପଥରେ ଆସିବାକୁ ଚାହିଁଲେ ସୁବର୍ଣ୍ଣରେଖା ମୁହାଣବାଟେ ପିପ୍ପଳୀ ନଦୀ ସଙ୍ଗମ ସ୍ଥଳରେ ପହଞ୍ଚି ମନ୍ଦିରକୁ ଯାଇ ପାରିବେ ।

ବାବା ଭୁଷୁଣ୍ଡେଶ୍ୱରଙ୍କ ଠାରେ ମୁଖତଃ ଦୁଇଟି ପର୍ବ ପାଳିତ ହୁଏ । ଶିବରାତ୍ରି ଓ ଚୈତ୍ରମାସ ଚଡ଼କ ପର୍ବ । ଶିବରାତ୍ରିରେ ଗୋଟିଏ ଦିନ ମେଳା ବସେ । ଉକ୍ତ ଶିବରାତ୍ରି ଦିନ ଲକ୍ଷାଧିକ ଭକ୍ତଙ୍କର ସମାଗମ ହୋଇଥାଏ । ଏମାନେ ଜଳପଥରେ, ନାନା ଯାନରେ ଓ ପାଦରେ ଚାଲି ଚାଲି ମନ୍ଦିରକୁ ଆସିଥାନ୍ତି । ଦିନବେଳେ ପୂଜାର୍ଚ୍ଚନା ଏବଂ ରାତ୍ରିରେ ସହସ୍ରାଧିକ ଭକ୍ତ ମନ୍ଦିର ବେଢ଼ା ମଧ୍ୟରେ ଦୀପ ଜାଳି ଶିବରାତ୍ରୀ ବ୍ରତ ପାଳନ କରନ୍ତି । ଚୈତ୍ର ଚଡ଼କବେଳା ଦୀର୍ଘ ତେର ଦିନ ଧରି ପାଳିତ ହୁଏ । ମାତ୍ର ଜନ ଗହଳି ନୀଳ, ପାଟ, ସଂକ୍ରାନ୍ତି, ଏହି ତିନି ଦିନ ଧରି ହୋଇଥାଏ । ଶହ ଶହ ଭକ୍ତ ଗଳାରେ ପଇତା ଧାରଣ କରି ପ୍ରତି ୨୪ ଘଣ୍ଟାରେ ଥରେ ରାତ୍ରିରେ ଅର୍ଘ୍ୟଦାନ ପରେ ହବିଷ୍ୟାନ୍ନ ଭକ୍ଷଣ କରନ୍ତି । ବାକି ସମୟ ନିର୍ଜଳା ଉପବାସ ରହନ୍ତି । ଚୈତ୍ରମାସ ୧୭ ବା ଅଠର ଦିନ, ମାର୍ଚ୍ଚ ୩୧ ବା ଏପ୍ରିଲ ୧ ଦିନରୁ ପାଟଭକ୍ତ ଓ ଶ୍ରୀ ବେକଡ଼ି ପଇତା ଦିଅନ୍ତି । ୧୧, ୯, ୭ ଓ ୫ ଅର୍ଘ୍ୟ ଦିନ ମାନଙ୍କରେ ସାଧାରଣ ଭକ୍ତମାନେ ପଇତା ପକାନ୍ତି । ନୀଳପର୍ବ ଚୈତ୍ର ୨୮, ପାଟ ପର୍ବ ୨୯ ଓ ସଂକ୍ରାନ୍ତି ପର୍ବ ୩୦ ଦିନରେ ବେଶ୍ ଧୂମ୍‌ଧାମ୍‌ରେ ପାଳିତ ହୁଏ । ଏଥିରେ ମଧ୍ୟ ବହୁ ଭକ୍ତ ହୋଇଥାନ୍ତି । ଏହା ବ୍ୟତୀତ ବର୍ଷର ସବୁ ସୋମବାରରେ ଶହ ଶହ ଭକ୍ତ ପୂଜା ଦେବାକୁ ଆସି ମନ୍ଦିରରେ ଭିଡ଼ ଜମାନ୍ତି । ସ୍ଥାୟୀ ପିଚୁରାସ୍ତା ହେଲା ପରେ ବିଦେଶୀ ଭକ୍ତ ଓ ପର୍ଯ୍ୟଟକଙ୍କର ବହୁଳ ପରିମାଣରେ ସମାଗମ ହେବାର ସମ୍ଭାବନା ରହିଛି । ଏବେ ପିପ୍ପଳୀ ନଈରେ ପୋଲ ହେବା ପରଠୁଁ ଭକ୍ତ ଓ ପର୍ଯ୍ୟଟକଙ୍କ ସଂଖ୍ୟା କ୍ରମେ ବଢ଼ିବାରେ ଲାଗିଛି । କିଛି ସ୍ଥାୟୀ ଦୋକାନ ମନ୍ଦିର ବେଢ଼ା ମଧ୍ୟରେ ରହିଅଛି ଓ ସର୍ବଶିକ୍ଷା ଯୋଜନାର ଏକ ପ୍ରାଥମିକ ବିଦ୍ୟାଳୟ ମଧ୍ୟ ରହିଅଛି । ସରକାର ମନ୍ଦିରକୁ ବିଜୁଳି ଆଲୁଅ ଓ ପିଇବା ପାଣି ଯୋଗାଇ ଦେଇଛନ୍ତି ।

କିମ୍ବଦନ୍ତି କହେ,– ବ୍ରହ୍ମାଙ୍କର ପ୍ରପୌତ୍ରଲଙ୍କାର ରାଜା ଦଶାନନ ତପସ୍ୟା କରି ଅମରବର ପାଇବା ପାଇଁ ଲଙ୍କାରୁ ପଞ୍ଚବଟି ବନକୁ ଆସୁଥିବା ବାଟରେ ନାରଦଙ୍କ ସହିତ ସାକ୍ଷାତ ହେଲା । ଅମର ହେବା ପାଇଁ ରାବଣଙ୍କୁ ସେ ଏକ ନୂଆ ବାଟ ବତାଇଲେ । ଦକ୍ଷ ଯଜ୍ଞ ବେଳେ ଶାଶୁଙ୍କ ଅଭିଶାପରେ ଯଜ୍ଞ କୁଣ୍ଡରୁ ଯେଉଁ ଶିବ ଲିଙ୍ଗଙ୍କର ସୃଷ୍ଟି ହୋଇଥିଲା, ସେହି ଆଦ୍ୟ ଶିବଲିଙ୍ଗ ମୂର୍ତ୍ତିକୁ ଯିଏ ପୂଜିବ ସେ ଅମର ହେବ । ତାକୁ ଗୌରୀଦେବୀ ପୂଜୁଛନ୍ତି, ଶିବଙ୍କୁ ସନ୍ତୁଷ୍ଟ କରି ଯଦି ସେହି ଶିବଲିଙ୍ଗ ମୂର୍ତ୍ତିକୁ ଆଣି ପୂଜି ପାରିବ ତେବେ ତୁମେ ଚିର ଅମର ହେବ । ରାବଣ ସେହି ଆଦ୍ୟ ଶିବଲିଙ୍ଗ ମୂର୍ତ୍ତିକୁ ପାଇବା ପାଇଁ ହିମାଳୟ ପାଦଦେଶକୁ ଯାଇ ଶିବଙ୍କୁ ଧ୍ୟାନ କଲେ । ଶିବ ରାବଣଙ୍କ ତପସ୍ୟାରେ ତୁଷ୍ଟ ହୋଇ ପୂଜାରିଣୀ ଗୌରୀଙ୍କ ଅଗୋଚରରେ ସେହି ଆଦ୍ୟ ଲିଙ୍ଗ ମୂର୍ତ୍ତିକୁ ଚୋରାଇ ଆଣି ପରମଭକ୍ତ ରାବଣକୁ ଦେଇ କହିଲେ,– "ଲଙ୍କାକୁ ଯିବା ବାଟରେ ଯଦି କୌଣସି ଠାରେ ଏମୂର୍ତ୍ତିକୁ ମାଟିରେ ଥୋଇବ ତେବେ ସେ ସେହିଠାରେ ରହିଯିବେ । କେବେହେଁ ତାକୁ ସେଠାରୁ ଉଠାଇ ନେଇ ପାରିବୁ ନାହିଁ ।

ରାବଣ ସେ ଆଦ୍ୟ ଶିବଲିଙ୍ଗ ମୂର୍ତ୍ତିକୁ ଧରି ପଞ୍ଚବଟି ବଣବାଟେ ଲଙ୍କାକୁ ଯିବାପାଇଁ ଦ୍ରୁତ ଗତିରେ ଚାଲିଲେ । ନାରଦଙ୍କଠାରୁ ଦେବତାମାନେ ଏକଥା ଜାଣି ନାରାୟଣଙ୍କ ଠାରେ ଗୁହାରି କଲେ । ନାରାୟଣ ରାବଣଙ୍କ ଠାରୁ ସେ ଲିଙ୍ଗ ମୂର୍ତ୍ତିକୁ ଆଣିବା ପାଇଁ ଛଳନାର ଆଶ୍ରୟ ନେଲେ । ହଠାତ୍ ରାବଣକୁ ପରିସ୍ରା ଲାଗିଲା । ସେ ପଞ୍ଚବଟି ପର୍ଯ୍ୟନ୍ତ ଯାଇ ନପାରି ଓଡ୍ର ଦେଇ ସମୁଦ୍ର ପାରିହୋଇ ଶୀଘ୍ର ଲଙ୍କାକୁଯିବା ପାଇଁ ସୁବର୍ଣ୍ଣରେଖା ମୁହାଣ ପାଖରେ ପହଞ୍ଚିଲେ । ତାଙ୍କୁ ଏତେ ପ୍ରଖର ପରିସ୍ରା ଲାଗିଲା ଯେ, ପରିସ୍ରା ନକରି ସେ ଲଙ୍କାରେ ପହଞ୍ଚିବା ସମ୍ଭବ ନୁହେଁ ଜାଣି ମୂର୍ତ୍ତିକୁ କେହି ଜଣେ ବ୍ୟକ୍ତି ହାତରେ ଧରାଇ ଦେଇ ପରିସ୍ରା କରିବେ

ବୋଲି ଚାରି ଆଡ଼କୁ ଆଖି ପକାଇଲେ । ଛଳି ନାରାୟଣ ଗୋରୁମଣା ବ୍ରାହ୍ମଣ ବାଳକ ବେଶରେ ରାବଣଙ୍କୁ ଦେଖାଦେଲେ । ରାବଣ ସେହି ବାଳକ ହସ୍ତରେ ଆଦ୍ୟଲିଙ୍ଗ ମୂର୍ତ୍ତିକୁ ଧରାଇ ଦେଇ ଦିଅଁଙ୍କୁ ଭୂଇଁରେ ନଥୋଇବା ପାଇଁତାଙ୍କୁ ସାବଧାନ କରାଇ ଦେଲେ । ସେ ପରିସ୍ରା କରି ଶୌଚ ହେବା ପାଇଁ ନଦୀକୁ ଗଲେ । 'ଲିଙ୍ଗ ମୂର୍ତ୍ତିଭାରି ହୋଇଛି କହି ରାବଣ ଫେରିବା ପୂର୍ବରୁ ଯେଉଁଠି ଭଗବାନ ବାବା ଭୁଷୁଣ୍ଡେଶ୍ୱର ଅବସ୍ଥାନ କରୁଛନ୍ତି ସେହିଠାରେ ଛଳି ନାରାୟଣ ଥୋଇଦେଲେ । ରାବଣ ଫେରି ଲିଙ୍ଗମୂର୍ତ୍ତି ଭୂମିରେ ବସିଥିବାର ଦେଖି ବ୍ରାହ୍ମଣ ବାଳକ ଉପରେ ଅସନ୍ତୁଷ୍ଟ ହୋଇ ତୁରନ୍ତ ମୂର୍ତ୍ତିକୁ ଉଠାଇବାକୁ ଗଲେ । ଶକ୍ତିଶାଳୀ ରାବଣ ତାଙ୍କର ସମସ୍ତ ଶକ୍ତି ଖଟାଇ ସେହି ସାନ ଶିବଲିଙ୍ଗ ମୂର୍ତ୍ତିକୁ ଭୂମିରୁ ଉଠାଇ ପାରିଲେ ନାହିଁ । ସେ ଯେତିକି ଚେଷ୍ଟା କରନ୍ତି ଲିଙ୍ଗମୂର୍ତ୍ତି ସେତିକି ବଡ଼ ହୋଇ ଯାଆନ୍ତି । ପୃଥୁଳକାୟ ହୋଇଗଲା ପରେ ସେ ବାଳକ ନାରାୟଣ ରୂପରେ ଦେଖାଦେଇ କହିଲେ, "ଭୂମିରେ ବସିଲେ ସେ ଉଠିବେନି ଏକଥା ତୁମ ଇଷ୍ଟଦେବ ବର ଦେଲାବେଳେ କହିଥିଲେ । ବୃଥା ଚେଷ୍ଟାକରନି ସେ ଉଠିବେନି । ନ ଉଠିବା ପାଇଁ କେତେବଡ଼ ଓ ପୃଥୁଳ ହେଲେଣି, ଏଇଥିରୁ କଣ ବୁଝି ପାରୁନ । ଆଉ ବଡ଼ ହେବେନି । ହେଲେ ତୁମେ ଆଉ ଯେତେଥର ଉଠାଇବାର ଚେଷ୍ଟା କରିବ, ତାଙ୍କ ଲିଙ୍ଗମୂର୍ତ୍ତିରୁ ଶକ୍ତି ତଳକୁ ସେତୋଟି ଉପଶକ୍ତି ଉତ୍ପନ୍ନ ହୋଇ ଅଧିକରୁ ଅଧିକ ଭାରି ହୋଇଯିବେ ।" ହେଲେ ରାବଣଙ୍କୁ ଅମର ହେବାର ନିଶା ଏତେ ଘାରିଥିଲା ଯେ ସେ ନାରାୟଣଙ୍କ ଉପରେ କୋପକରି ଦୁର୍ଦ୍ଦାନ୍ତ ବଳ ପ୍ରୟୋଗଦ୍ୱାରା ପୁଣି ତିନିଥର ଚେଷ୍ଟା କରିବାରୁ ଅସଲ ଶକ୍ତି ତଳକୁ ଆଉ ତିନୋଟି ଶକ୍ତି ଉତ୍ପନ୍ନ ହେଲା । ଅତି ଗୁରୁ ହୋଇଯିବାର ଦେଖି ରାବଣ ଦେବତାଙ୍କ ଉପରେ କ୍ରୋଧାନ୍ୱିତ ହୋଇ କହିଲେ,– "ସେ ନ ଉଠନ୍ତୁ, ମୁଁ ପ୍ରତିଦିନ ଲଙ୍କାରୁ ଆସି ମୋ ଇଷ୍ଟ ଦେବଙ୍କୁ ଏହିଠାରେ ପୂଜିବି ।" ନାରାୟଣ କହିଲେ, – "ସେ ଆଶା ତ୍ୟାଗକର ।" ଏହି କହିବା ସଙ୍ଗେ ସଙ୍ଗେ ମୂର୍ତ୍ତି ଭୂତଳକୁ ଦବିବାକୁ ଲାଗିଲେ ଏବଂ ତାଙ୍କ ଉପରେ ମାଟି ଢ଼ାଙ୍କି ହୋଇଗଲା । ରାବଣ ଅପମାନରେ ଜର୍ଜରିତ ହୋଇ କଠିନ କଣ୍ଠରେ କହିଲେ,– "ମୁଁ ଯେତେବେଳେ ମୋ ଦେବଙ୍କୁ ପୂଜି ଅମର ହୋଇ ପାରିଲିନି, ଆଉ କେହି ଏହାଙ୍କୁ ପୂଜି ଅମର ହୋଇ ପାରିବେନି । କଳିଯୁଗର ଶେଷାର୍ଦ୍ଧ ପୂର୍ବରୁ କେହି ଏହାଙ୍କର ସ୍ଥିତି ପାଇବେନି । ଦେଖା ଦେଲା ପରେ ଯେଉଁମାନେ ପୂଜିବେ ସେମାନଙ୍କର ମନସ୍କାମନା ପୂର୍ଣ ହୋଇ ଜନ୍ମ ଜନ୍ମ ଧରି ଧନ୍ୟ ହେବେ ।" ନାରାୟଣ ରାବଣଙ୍କୁ କହିଲେ, – "ଶିବଙ୍କର ଆଦ୍ୟଲିଙ୍ଗମୂର୍ତ୍ତି ତୁମରି ଦ୍ୱାରା ଏ ସ୍ଥାନକୁ ଆସି ତୁମରି ଯୋଗୁଁ ପୃଥୁଳକାୟ ଶ୍ରେଷ୍ଠ ଲିଙ୍ଗ ମୂର୍ତ୍ତି ହୋଇ ଯେଣୁ ଏ ସ୍ଥାନରେ ଅବସ୍ଥାନ କଲେ, ତେଣୁ ତୁମରି କଥା ସତ୍ୟ ହେବ । ଯେବେ ତାଙ୍କ ଇଚ୍ଛାନୁସାରେ ମାନବଙ୍କ ଦୃଷ୍ଟିକୁ ଆସିବେ, ସେହିଠାରୁ ଯିଏ ଏହି ଆଦି ଲିଙ୍ଗଙ୍କୁ ପୂଜିବ ତାର ମନସ୍କାମନା ପୂର୍ଣ୍ଣ ହୋଇ ଜନ୍ମ ଜନ୍ମ ଧରି ଧନ୍ୟ ହେବ । ଏହାପରେ ରାବଣ ବିଷଣ୍ଣ ବଦନରେ ଲଙ୍କାକୁ ଫେରିଲେ । ନାରାୟଣ ଅନ୍ତର୍ଦ୍ଧାନ ହେଲେ ।

ଏହି କିମ୍ବଦନ୍ତି ଅନୁରୂପ କାହାଣୀ ଦିଲ୍ଲୀ ଦୂରଦର୍ଶନ କେନ୍ଦ୍ର "ଓଁ ନମଃ ଶିବାୟ" ହିନ୍ଦୀ ସିରିଏଲ୍‌ରେ ଗୋଟିଏ ଦିନ ପରିବେଷିତ ହୋଇଥିଲା । ତାହା ଏହି ଲେଖକ ଦୂରଦର୍ଶନରୁ ୨୦୦୨ ମସିହାରେ ଦେଖିଥିଲେ । ମାତ୍ର ଏହା ପୂର୍ବରୁ ୧୯୮୪ ମସିହାରୁ ଏହି ଲେଖକ ତାଙ୍କ ରଚିତ "ବାବା ଭୁଷୁଣ୍ଡେଶ୍ୱର କାହାଣୀ ମାଳା" ଗ୍ରନ୍ଥରେ ଉକ୍ତ କିମ୍ବଦନ୍ତିର କାହାଣୀ ପ୍ରକାଶ କରି ହଜାର ହଜାର ଭକ୍ତଙ୍କ ଦୃଷ୍ଟିକୁ ଆଣିଛନ୍ତି ।

ପରମ ବ୍ରହ୍ମଙ୍କ ମହା ଶିବଭକ୍ତ ଦଶାନନ, ଦେବାଦିଦେବ ଶିବ ଓ ଛଳି ନାରାୟଣଙ୍କର ବାଣୀ ସତ୍ୟ ହେଲା । ଯୁଗ ଯୁଗ ଧରି ସେ ଭୂତଳରେ ରହିବା ପରେ କାଳକ୍ରମେ ସେ ସ୍ଥାନଟି ବନି ବଣରେ ପରିପୂର୍ଣ୍ଣ ହେଲା । ରାବଣଙ୍କର କଥାନୁସାରେ ଭଗବାନ ଭୁଷୁଣ୍ଡେଶ୍ୱର କଳିଯୁଗ ଶେଷାର୍ଦ୍ଧରେ ତାଙ୍କ ଉପରୁ ମାଟି ଧୋଇଗଲା ପରେ ଦର୍ଶନ ଦେଲେ । ଦେବଶ୍ରେଷ୍ଠ ଭଗବାନ ଶିବଙ୍କର ବାଣୀ ଅନୁସାରେ ହୁଏତ ଏହି ବୃହତ୍ତମ ଶିବଲିଙ୍ଗ ସ୍ଥାନାନ୍ତରିତ ହେଉନାହାନ୍ତି ।

# କଥାଭାରତୀ ଭବନ, ଶ୍ରଦ୍ଧାପୁର, ଫୁଲବଣୀ, ବାଲେଶ୍ୱର

# ଫକୀରମୋହନ : ଜଣେ ଖାଣ୍ଟି ଓଡ଼ିଆ

## ଡ. ଲକ୍ଷ୍ମୀକାନ୍ତ ତ୍ରିପାଠୀ

ଉତ୍କଳ ସମ୍ମିଳନୀର ପ୍ରାଣ ପ୍ରତିଷ୍ଠାତା ଉତ୍କଳ ଗୌରବ ମଧୁସୂଦନ ଦାସ ଯେଉଁ ସ୍ଥାନମାନଙ୍କରେ ବକ୍ତୃତା ପ୍ରଦାନ କରିଛନ୍ତି, ଅନେକସ୍ଥ ଫକୀର ମୋହନଙ୍କର ଭାଷା ରକ୍ଷା ଓ ଜାତି ଗଠନ ଉଦ୍ୟମକୁ ପ୍ରଶଂସା କରିଛନ୍ତି । ଆଚାର୍ଯ୍ୟ ଭାବାନନ୍ଦ ଓ ଡ. ଦେବେନ୍ଦ୍ର ନାଥ ଦାଶଙ୍କ ଦ୍ୱାରା ସଂକଳିତ ଓଡ଼ିଶାର ଜନକ ମଧୁସୂଦନ ଗ୍ରନ୍ଥରେ କଟକ କଲେଜିଏଟ ସ୍କୁଲରେ ମଧୁବାବୁଙ୍କର ପ୍ରଦତ୍ତ ଅଭିଭାଷଣକୁ ସ୍ଥାନିତ କରାଯାଇଛି । ଦୁଇଟିଯାକ ବକ୍ତୃତାରେ ମଧୁବାବୁ , ଫକୀର ମୋହନଙ୍କ ଭାଷଣ ଓ ଜାତିପ୍ରୀତିକୁ କଲେଜିଏଟ ସ୍କୁଲ ପିଲାମାନଙ୍କ କର୍ଣ୍ଣଗୋଚର କରାଇଛନ୍ତି । ଉଦ୍ଦେଶ୍ୟ, ଭବିଷ୍ୟତର ଛାତ୍ର/ଛାତ୍ରୀ ଫକୀର ମୋହନଙ୍କ ପରି ଜାତିପ୍ରେମୀ ହୁଅନ୍ତୁ ଓ ତାଙ୍କର ଆଦର୍ଶରେ ଅନୁପ୍ରାଣିତ ହୁଅନ୍ତୁ ।

ଫକୀରମୋହନ ମଧ ବାରମ୍ବାର ପ୍ରକାଶ କରିଛନ୍ତି ଯେ , ଓଡ଼ିଶାକୁ ଯଦି କେହି ୫୦ ବର୍ଷ ଆଗକୁ ଉଠାଇ ନେଇଥାଏ, ସେ ହେଲେ ମଧୁବାବୁ । ମଧୁସୂଦନ ଦାସ ସି.ଆଇ.ଇ. ଶୀର୍ଷକ କବିତାରେ ଫକୀର ମୋହନ କହିଛନ୍ତି 'ହେ ମଧୁସୂଦନ ! ତୁମ୍ଭେ ଧନ୍ୟ ! ଉତ୍କଳମାତାର ତୁମ୍ଭେ ଯୋଗ୍ୟ ନନ୍ଦନ । ଉତ୍କଳକୁ ନବଜୀବନ ପ୍ରଦାନକରି ଲୋକମାନଙ୍କୁ ଜାତିର ବନ୍ଦନା ଗାନ ଶିଖାଇଛ । ଏହାଖାଲି କଥାର କଥାନୁହେଁ, ଦେଶ ହିତର ବ୍ରତରେ ତୁମ୍ଭେ ତୁମ୍ଭର ପ୍ରାଣକୁ ସମର୍ପଣ କରିଅଛ । ଉତ୍କଳର କୋଟି କୋଟି ଲୋକଙ୍କର ଦୁଃଖ ଘୁଞ୍ଚାଇବା ସମ୍ଭବ ନୁହେଁ , ତଥାପି ସମଗ୍ର ଦେଶ ପାଇଁ ମାତ୍ର ଜଣେ ଲୋକ ଚିନ୍ତାକରୁଅଛି, ଏକଥାଯେତେବେଳେ ମୋର ମନେ ପଡ଼ିଯାଉଛି, ସେତେବେଳେ ମୋର ହୃଦୟରେ ପ୍ରତ୍ୟୟ ସୃଷ୍ଟି ହେଉଛି ଯେ, ଏହା ନିଶ୍ଚୟ ଦୈବିଶକ୍ତି । କେତେ କଷ୍ଟକରି ଯାହା ଧନ ଅର୍ଜ୍ଜନ କରିଥିଲ ତାହା ଦେଶର ରକ୍ଷା ପାଇଁ ଫୋପାଡ଼ି ଦେଇଛ । ଶିଳ୍ପ ପ୍ରତିଷ୍ଠା ପାଇଁ କୋଡ଼ିଏ ହଜାର ଟଙ୍କା ଅଜାଡ଼ି ଦେବାର ଦେଖି ମୋତେ ତାଟକା ଲାଗୁଛି । ତୁମର ତ ଆହାର ଓ ନିଦ୍ରାରେ ଛାନ ନଥାଏ । ଦେଶର କିପରି ମଙ୍ଗଳ ସାଧିତ ହେବ ତଥା ଦେଶର ଗୌରବ ଓ ଦେଶର ଧନ କିପରି ବର୍ଦ୍ଧିତ ହେବ, ଏହି ଚିନ୍ତାକୁ ସବୁବେଳେ ନିର୍ଜନରେ ବସି ଧ୍ୟାନ କରୁଥାଅ । କି ପ୍ରକର ସୋମରସ ପାନ କରି ତୁମେ ମତ୍ତ ହୋଇଯାଇଛ ଯେ ଅକାତରରେ ସର୍ବସ୍ୱ ଫିଙ୍ଗି ଦେଉଛ ? ଧନ୍ୟ ତୁମର ଜୀବନର ବ୍ରତ ! ଏପରି ବ୍ରତ ଆଉ କେଉଁଠାରେ ଦେଖାନାହିଁ କିମ୍ବା ଶୁଣାନାହିଁ । ତୁମ୍ଭର କାର୍ଯ୍ୟାବଳୀ ଓ ତୁମ୍ଭର କଳ୍ପନାର ପୃଥିବୀ ଇତିହାସରେ ତୁଳନା ନାହିଁ । ପୃଥିବୀ ଇତିହାସରେ ଦେଖାଯାଇଛି ଯେ ଦେଶର ହିତ ପାଇଁ କିଏ ବକ୍ତୃତା କରିଥାଏ ତ କିଏ ଧନ ପ୍ରଦାନ କରିଥାଏ । ତୁମେ ଖାଲି ବକ୍ତୃତା ନୁହେଁ କି ଧନନୁହେଁ, ତା ସହିତ ଜୀବନ, ଶକ୍ତି, ସାମର୍ଥ୍ୟ ,କଳ୍ପନା , ମନ ଇତ୍ୟାଦି ଉତ୍ତାଳି ଦେଇସାରି ତୁନ ନହୋଇ ଜାତିର ସମ୍ମାନ ବୃଦ୍ଧି ପାଇଁ ଦିନରାତି ବସି ଭାଳୁଅଛ । ଏପରି ବୁଦ୍ଧି ଆଉ କାହାର ହେବ ? ତୁମ୍ଭର ଚରିତ୍ର ଓ ଇତିହାସକୁ ପ୍ରକାଶ କରିବା ପାଇଁ ମୋ ନିକଟରେ ଭାଷା ନାହିଁ । ଯେତେକାଳ ଉତ୍କଳୀୟ ଜାତି ତିଷ୍ଠି ରହିଥିବ, ଯାବତ ଚନ୍ଦ୍ରାର୍କେ ତୁମ୍ଭର ଖ୍ୟାତି ରଟିଯାଉଥିବ । ତୁମ୍ଭ ସଙ୍ଗରେ ଉପମା ଦେବା ପାଇଁ ଇତିହାସରେ ମଧ ଲୋକଟିଏ ଖୋଜି ଖୋଜି ପାଇଲି ନାହିଁ । ତୁମ୍ଭେ ଏକାହିଁ ତୁମ୍ଭର ଉପମା । କେତେ କୋଟିପତି ଓ କେତେ ଭୂପତି ଧନ ଅର୍ଜନ କରି ଚାଲି ଗଲେଣି । ସେ ଅର୍ଜ୍ଜିତ ଧନ ସେହିଠାରେ ହିଁ ରହିଥିବ । ମାତ୍ର ତୁମେ ଜାତିର ସମ୍ମାନ ରୂପକ ଯେଉଁଧନ ଅର୍ଜ୍ଜନ କରିଯାଇଛ , ତୁମେ

ଚାଲିଗଲାପରେ ଓଡ଼ିଶାର କୋଟି କୋଟି ଲୋକ ତାକୁ ବାଣ୍ଟି କରିନେବେ । ପ୍ରତ୍ୟେକ ଲୋକ ପାଖରେ ସେଧନରୁ କିଛି କିଛି ନିଶ୍ଚୟ ପଡ଼ିବ । ଏ ଜାତିଟା ଭାସି ଯାଉଥିବା ବେଳେ ତୁମ୍ଭେ ସ୍ୱାର୍ଗରୁ ଆସି ତାକୁ ଉଦ୍ଧାର କରିଛ । ତୁମ୍ଭେ ଉତ୍କଳ ଜାତିର ଆଗୁଆ ହୋଇ ତାକୁ ପଚାଶ ବର୍ଷ ଆଗେଇ ନେଇ ଯାଇଛ ।

ମଧୁସୂଦନଙ୍କ ପାଇଁ ଏପରି ପ୍ରଶଂସାବାକ୍ୟ ପ୍ରଦାନ କରିବା ପଛରେ ଫକୀର ମୋହନଙ୍କର କୌଣସି ଆତ୍ମସ୍ୱାର୍ଥ ନଥିଲା । ଜଣେ ଜାତି ପ୍ରେମୀର ଗୌରବ ବର୍ଣ୍ଣନା କଲାବେଳେ ପରୋକ୍ଷରେ ସେ କେବଳ ନିଜର ଜାତିପ୍ରୀତିକୁ ହିଁ ସୂଚାଉଥିଲେ ଓ ଜାତିପାଇଁ କିଛି କରୁଛନ୍ତି ବୋଲି ସନ୍ତୋଷ ଲାଭ କରିପାରୁଥିଲେ । ସେଥିପାଇଁ ଓଡ଼ିଆ ଜାତି ଓ ଭାଷା ସଂପର୍କରେ କିଛି କହିବା ବେଳେ ଫକୀର ମୋହନ ମଧୁବାବୁଙ୍କୁ ଉଦାହରଣ ଭାବରେ ଗ୍ରହର କରୁଥିଲେ । ଫକୀର ମୋହନ କହୁଥିଲେ ଯେଉଁ ଲୋକ ମାତୃଭାଷା ଚର୍ଚ୍ଚା ଏବଂ ଉନ୍ନତି ସାଧନରେ ବିମୁଖ, ସାହାଙ୍କ ମନରେ ସ୍ୱଦେଶ ପ୍ରୀତି ସ୍ୱଜାତିପ୍ରୀତିର ବିରଳ ସଞ୍ଚାର ବୋଲି ନିଶ୍ଚୟ ରୂପେ ବୋଲା ଯାଇପାରେ । ଏହିପ୍ରସଙ୍ଗରେ ଫକୀର ମୋହନ ମଧୁବାବୁଙ୍କୁ ଉଦାହରଣ ଭାବରେ ଗ୍ରହଣ କରି କହିଛନ୍ତି କେତେକ ବର୍ଷ ପୂର୍ବେ ବିଷୟ ବିଶେଷ ସମ୍ବନ୍ଧରେ ଉତ୍କଳୀ ଏବଂ ବଙ୍ଗାଳୀ ଜାତି ମଧରେ କିଞ୍ଚିତ ମନୋମାଳିନ୍ୟର କାରଣ ଘଟିଥିଲା । କୌଣସି ଜଣେ ବଙ୍ଗ ବାସୀ ଉତ୍କଳ ନାମ ଉଲ୍ଲେଖ କରି ବଦ୍ରୂପ ସୂଚକ କିଛି କଥା କହିବାରୁ ବାବୁ ମଧୁସୂଦନ ଦାସ ସ୍ୱାଭାବିକ ତେଜସ୍ୱିନୀ ଭାଷାରେ ଉତ୍ତର ଦେଲେ, ତୁମ୍ଭେ ମୋହର ନିନ୍ଦା ବାଦ କରିପାର, ମୋତେ ଗାଳି ଦେଇପାର, ମାତ୍ର ମୋ ଦେଶର ନାମୋଲ୍ଲେଖ କରିବାର ତୁମ୍ଭର କିଛି ମାତ୍ର ଅଧିକାର ନାହିଁ । ଯାହାର ଏତେଦୂର ଦେଶପ୍ରୀତି, ସେ ଦେଶପାଇଁ ସମସ୍ତ ଅର୍ଥ, ସମସ୍ତ ସମାର୍ଥ୍ୟ ସହଜରେ ସମର୍ପଣ କରିପାରେ । କେବଳ କଥାରେ ନୁହେଁ, ମଧୁବାବୁ ଜୀବନରେ ସେଥିର ନିଦର୍ଶନ ଦେଖାଉ ଅଛନ୍ତି । ମୁଁ ଦିନକ ପାଇଁ ଏକଥା ଭୁଲିନାହିଁ, କେତେ ପୁଣ୍ୟ ବଦଳରେ କେତେ ଯୁଗଯୁଗାନ୍ତ ଉତ୍ତାରେ ଉତ୍କଳଭୂମି ଏମନ୍ତ ଗୋଟିଏ ସନ୍ତାନ ଲାଭ କରିଛନ୍ତି । ମଧୁବାବୁ ଗୋଟିଏ ଶାପଭ୍ରଷ୍ଟ ଦେବତା ।

ଫକୀରମୋହନ, ମଧୁବାବୁଙ୍କର ଯେଉଁ ଯେଉଁ ଗୁଣକୁ ପ୍ରଶଂସା କରିଛନ୍ତି ଅନ୍ୟମାନଙ୍କ ଠାରେ ସେହି ସବୁ ଗୁଣ ରହୁ ବୋଲି ସେ ପରୋକ୍ଷରେ କାମନା କରିଛନ୍ତି । ଓଡ଼ିଆ ଭାଷା, ସାହିତ୍ୟ ଓ ଜାତିପାଇଁ ଫକୀରମୋହନଙ୍କ ହୃଦୟ ସବୁବେଳେ କାନ୍ଦୁଥିଲା । ନିଜକୁ ସେ ଜଣେ ସଚ୍ଚା ଓଡ଼ିଆ ବୋଲି ଭାବୁଥିଲେ ଓ ତାଙ୍କ ମତରେ ଆଉ ଜଣେ ଶ୍ରେଷ୍ଠ ଓଡ଼ିଆ ଥିଲେ ମଧୁବାବୁ । ଉତ୍କଳ ଭ୍ରମଣରେ ମଧୁବାବୁଙ୍କର ବର୍ଣ୍ଣନା କରି ଫକୀରମୋହନ ଲେଖିଛନ୍ତି :-

ଆହେ ଭାଇ... ରଖିଯାଅ ଯଶ
ଦୁଇ ଚାରି ଓଡ଼ିଆଙ୍କୁ କରି ଯା ମଣିଷ ।
ତୁମ୍ଭେ ତ ଆଲୁଅ ପ୍ରାପ୍ତ ମୁହିଁ ଅନ୍ଧାରିଆ
କିନ୍ତୁ ଭାଇ ଦୁଇଜଣ ଜାତିରେ ଓଡ଼ିଆ ॥

ନିଜକୁ ଓ ମଧୁସୂଦନ ଦାସଙ୍କୁ ଫକୀରମୋହନ କାହିଁକି କହିଛନ୍ତି ଓଡ଼ିଆବୋଲି ? ଓଡ଼ିଶାରେ ଜନ୍ମ ହୋଇଥିଲେ ବୋଲି ନା ଓଡ଼ିଆ ଭାଷାରେ ସାହିତ୍ୟ ରଚନା କରୁଥିଲେ ବୋଲି ? ଜାତୀୟତାବାଦରେ ଓଡ଼ିଶାକୁ ସାମିଲ କରିଥିଲେ ବୋଲି, ନା ଭାଷଣ ମାଧ୍ୟମରେ ଓଡ଼ିଶାର ସ୍ତୁତି ଗାନ କରୁଥିଲେ ବୋଲି ? ନା, କେବଳ ଏଇଥି ପାଇଁ ଯେ ଦୁଇଜଣ ଯାକ କାୟରେ-ମନରେ-ବାକ୍ୟରେ, ପ୍ରତି ଲୁହଠୋପାରେ-ପ୍ରତି ରକ୍ତବିନ୍ଦୁରେ, ଦିବସରେ-ଶର୍ବରୀରେ କେବଳ ଓଡ଼ିଆ ଜାତିର ଉନ୍ନତିକୁ ହିଁ ସ୍ୱପ୍ନ ଦେଖୁଥିଲେ ।

ଫକୀରମୋହନ ଏକ ରମ୍ୟ କଥନିକା ମାଧ୍ୟମରେ ଓଡ଼ିଶାର ପ୍ରାଚୀନତାଠାରୁ ଆଧୁନିକତା ପର୍ଯ୍ୟନ୍ତ ଏକ ସୁନ୍ଦର ଚିତ୍ର ଆଙ୍କିଛନ୍ତି । ଏଠି ସେହି କଥନିକାର ପୁନରୁଦ୍ଧାର କରୁଛି ।

ମହର୍ଷି ଶୁକଦେବଙ୍କୁ ରାଜା ପରୀକ୍ଷିତ ପଚାରିଲେ - ହେ ମହର୍ଷି, ଏହି ବ୍ରହ୍ମାଣ୍ଡ ମଧ୍ୟରେ ଜମ୍ବୁଦ୍ୱୀପେ ଭାରତ ଖଣ୍ଡେ ଉତ୍କଳ ନାମରେ ଯେଉଁ ପୁଣ୍ୟ କ୍ଷେତ୍ର ଅଛି, ଯେଉଁ ପବିତ୍ର ଦେଶର ରେଣୁମାତ୍ର ସ୍ପର୍ଶକରି ଭରତ ଖଣ୍ଡ ବାସୀମାନେ ଆପଣମାନଙ୍କୁ କୃତାର୍ଥ ଓ ନିଷ୍ପାପ ଜ୍ଞାନ କରୁଅଛନ୍ତି , ପୁଣି ଯେଉଁ କ୍ଷେତ୍ର ସମସ୍ତ ଦେବଦେବୀଙ୍କର ଲୀଳାଭୂମି ଅଟେ, ପୁଣି ଯେଉଁ ଦେଶର ଭୂମି ବିବିଧ ଶସ୍ୟ ଶ୍ୟାମଳିନୀ ପୁଣ୍ୟତୋୟା ନଦୀ ମାଳିନୀ, ଶସ୍ୟଶ୍ୟାମଳା ଏବଂ ଗିରି କୁନ୍ତଳା ଅଟେ, ପୁଣି ପୂର୍ବକାଳରେ ଯେଉଁ ଦେଶବାସୀମାନେ ଶୂରବୀର କବି ଏବଂ ବିବିଧ ଶିଳ୍ପବିଦ୍ୟାନିପୁଣ ଥିଲେ ଏବଂଯେଉଁଦେଶବାସୀମାନଙ୍କର ଶିଳ୍ପ ସମ୍ଭୂତ ଖଣ୍ଡ ଶୈଳୋପମ ମନ୍ଦିର ମାନଙ୍କ କୀର୍ତ୍ତି ବିନାଶୀ କାଳ ବହୁ ଯୁଗ ଯୁଗାନ୍ତରେ ମଧ ସ୍ପର୍ଶ କରିପାରିନାହିଁ , ବର୍ତ୍ତମାନ କେଉଁ ମହାପାପ ହେତୁରୁ ସେହି ଉତ୍କଳୀୟମାନେ ହୀନ ଦଶାକୁ ଲଭି ବିଦେଶୀୟ ଲୋକମାନଙ୍କଠାରେ ଦୃଢ଼ ମସ୍ତକ ପଶୁ ବିଶେଷ ନାମରେ ଅଭିହତ ହେଉଅଛନ୍ତି । ଏହାର କାରଣ ବୋଲିବାକୁ ଅଜ୍ଞା ହେଉ ।

ମହର୍ଷି ଶୁକ କହିଲେ - ' ପୁଣ୍ୟଭୂମି ଉତ୍କଳର ଅଧିବାସୀମାନେ ପରମ ସୁଖରେ ବାସ କରୁଥିଲେ । ସେମାନଙ୍କ ଭକ୍ତିରେ ବଶୀଭୂତ ହୋଇ ଭୂତ ଭାବନ ଭବାନୀପତି କୈଳାସ ପରିତ୍ୟାଗ ପୂର୍ବକ ଏକାମ୍ର କାନନରେ ଏବଂନାରାୟଣ କମଳାକାନ୍ତ ଗୋଲୋକଧାମ ତ୍ୟାଗକରି କ୍ଷୀର ସମୁଦ୍ର ତଟରେ ବାସ କରିବାକୁ ଲାଗିଲେ । ସେମାନଙ୍କ ଭେଟ ନିମନ୍ତେ ଦେବତାମାନଙ୍କର ରାଜା ଯେ ଇନ୍ଦ୍ର ' ଉତ୍କଳ ଭୂମିକୁ ଗମନା ଗମନ କରିବାକୁ ଲାଗିଲେ । ଇନ୍ଦ୍ରଙ୍କ ଗହଣରେ ପୁଷ୍କର, ଆବର୍ତ୍ତକ, ସମ୍ବର୍ତ୍ତକ ମେଘମାନେ ଆସିବାରୁ ଉତ୍କଳ ଭୂମିରେ ଜଳ ପ୍ରାବଲ୍ୟ ହୋଇ ଗ୍ରାମ ଓ ଶସ୍ୟ କ୍ଷେତ୍ରମାନ ଭାସି ଯିବାକୁ ଲାଗିଲା । ସେଥିରେ ବାହୁବଳ ଗର୍ବିତ ଉତ୍କଳୀୟମାନେ କଟକ ବାରବାଟୀଠାରେ ଏକ ବିରାଟ ସଭା ବସାଇ ଦେବରାଜ ଇନ୍ଦ୍ରଙ୍କୁ ଶାସନ କରିବା ସକାଶେ ପରାମର୍ଶ ସ୍ଥିରକଲେ । ତେଣୁ ସ୍ୱର୍ଗପୁରକୁ ପାଇକମାନଙ୍କ ଘେନିଯବା ସକାଶେ କାଠ ଯୋଡ଼ି ମଧ୍ୟରୁ ଗୋଟିଏ ସିଡ଼ି ପ୍ରସ୍ତୁତ କରିବାକୁ ଆରମ୍ଭ କଲେ । ଗୁପ୍ତଚର ଦେବତା ଏ ବିଷୟ ଗୁପ୍ତ ଭାବରେ ସ୍ୱପୁରରେ ଦେବ ସଭାରେ ଜଣାଇଲା । ତହୁଁ ଦେବରାଜ କ୍ରୋଧ ପ୍ରକାଶ ପୂର୍ବକ ମର୍ତ୍ତ୍ୟକୁ ଓହ୍ଲାଇ ଆସି ଗୋଟାଏ ପଦାଘାତ କରି କାଠ ଯୋଡ଼ିର ସିଡ଼ିକୁ ବଙ୍କା କରିଦେଲେ ଏବଂ ଉତ୍କଳୀୟମାନଙ୍କୁ ଫତେକରି ଏକ ସ୍ଥାନରେ ସିଡ଼ିଭାଙ୍ଗିଦେବାରୁ ତାହା ଫତେ ମୁଖା ଘାଟ ନାମରେ କଥିତ ହେଲା ଏବଂ ଦେବରାଜ କ୍ରୋଧରେ ଅଭିଶାପ ଦେଇ କହିଲେ , ହେ ନିର୍ବୋଧ ମନୁଷ୍ୟମାନେ , ଏଥି ଉତ୍ତାରେ ତୁମ୍ଭ ବଂଶଧରମାନେ ସାଧାରଣରେ ନିର୍ବୋଧ ବୋଲି ପରିଚିତ ହେବେ ଏବଂ ତୁମ୍ଭମାନଙ୍କର ସମସ୍ତ ଗୌରବ ଲୁପ୍ତ ହେବ ଆମ୍ଭ ମେଘମାନେ ଆସି ପ୍ରତିବର୍ଷ ଉତ୍କଳର ପୂର୍ବାଂଶ ଭସାଇ ନେଉଥିବେ ଏବଂ ପଶ୍ଚିମାଂଶରେ ଜଙ୍ଗଲ ବୃଦ୍ଧି ହେବ, ସେଥିରେ ବ୍ୟାଘ୍ର, ଭଲ୍ଲୁକମାନେ ରହି ତୁମ୍ଭ ମାନଙ୍କୁ କାମୁଡ଼ିବେ ଏବଂ ତୁମ୍ଭେମାନେ ଭରତ ଖଣ୍ଡ ରାଜଧାନୀ ନିବାସୀ ଆଚାଣ୍ଡାଳ ଛତିଶ ବର୍ଣ୍ଣଠାରେ ଜଳବାହକ ଏବଂ ଶ୍ୱେତଦ୍ୱୀପ ବାସୀଙ୍କଠାରେ ଉଦ୍ୟାନପାଳ ଏବଂ ବସ୍ତ୍ର ରକ୍ଷକ ରୂପେ ନିଯୁକ୍ତ ହୋଇ ଜୀବିକା ନିର୍ବାହ କରିବ ଏହା ସତ୍ୟ, ସତ୍ୟ, ତ୍ରିବାର ସତ୍ୟ । ଏଥିରେ ଅନ୍ୟଥା ହେବନାହିଁ । ଦେବରାଜଙ୍କ ଅଭିଶାପ ପ୍ରଭାବରୁ ଉତ୍କଳୀୟମାନେ ହୀନାବସ୍ଥାପ୍ରାପ୍ତ ହୋଇ ବିପଦେ ମଧୁସୂଦନ (ମଧୁସୂଦନ ଦାସ ?) ସ୍ମରଣ କଲେ । ଉଚ୍ଚରେ ଡକା ପାଡ଼ି କହିଲେ, 'ହେ ମଧୁସୂଦନ' ହେ ରମାରମଣ , ହେ ଗୋଲକ ବିହାରୀ, ହେ ବଂଶୀଧାରୀ, ଆମ୍ଭ ମାନଙ୍କୁ ରକ୍ଷାକର, ଦେବରାଜଙ୍କ ଶାପରୁ ଉଦ୍ଧାର କର ।

ସେ ସମୟରେ ଅର୍ଦ୍ଧରାତ୍ରି ଗତ ହୋଇଯାଇଥିଲା । ଭଗବାନ ଲକ୍ଷ୍ମୀକାନ୍ତ ନିଖିଳ ବ୍ରହ୍ମାଣ୍ଡ ମଧ୍ୟରେ ଛପନ କୋଟି ଜୀବଙ୍କୁ ପଡ଼ି ବାଣ୍ଟିନେଇ ଆପେ କିଞ୍ଚିତ ମଣୋହି ସାରି ପହୁଡ଼ଙ୍କୁ ବିଜେ ହୋଇଅଛନ୍ତି, ଲକ୍ଷ୍ମୀଠାକୁରାଣୀ ବିଡ଼ିଆ ଭାଙ୍ଗି ପ୍ରଭୁଙ୍କ ହସ୍ତକୁ ବଢ଼ାଇ ଦେଉଅଛନ୍ତି, ଏମନ୍ତ ସମୟରେ ପ୍ରଭୁଙ୍କ ପଲଙ୍କ କମ୍ପିତ ହେବାକୁ ଲାଗିଲା । ଭକ୍ତବତ୍ସଳ ଭଗବନ ଆର୍ତ୍ତମାନଙ୍କ ଦୁଃଖ ବିମୋଚନ ନିମନ୍ତେ ସେହି ଘୋର ତିମିରାବଗୁଣ୍ଠିତା ରାଜନୀରେ ଯାତ୍ରା କଲେ । ପ୍ରଭୁ ଅନ୍ଧକାର ରାତ୍ରିରେ ଏକାକୀ ଯାତ୍ରା କରିବାର ଦେଖି ଲକ୍ଷ୍ମୀ ଠାକୁରାଣୀ ସଂଗେ ସଂଗେ ବାହାରିଲେ । ମାର୍ଗରେ ଦୟାବତୀ ଠାକୁରାଣୀ ପ୍ରଭୁଙ୍କୁ ଜଣାଇଲେ 'ହେ ଗୋଲୋକ ପତେ, ଅନୁଗ୍ରହକରି ଦୁଃଖୀ ମାନଙ୍କର ଦୁଃଖ ମୋଚନ କର , ଆମ୍ଭେ ମଧ୍ୟ ସେମାନଙ୍କ ଶସ୍ୟ କ୍ଷେତ୍ରରେ ଚିରକାଳ ବିରାଜିତ ଥିବୁ ।' ଏଥୁ ଅନନ୍ତରେ ଭଗବାନ ଆକାଶମର୍ଗରେ ବିରାଜିତ ହୋଇ ଶୂନ୍ୟ ବାଣୀରେ ଉଚ୍ଚୈଃସ୍ୱରେ ଅଖ୍ୟାନକଲେ 'ହେ ଉତ୍କଳୀୟ ମାନେ, ଦେବରାଜ ସତ୍ୟବାଦୀ, ତାହାଙ୍କ ଅଭିଶାପ ଅବ୍ୟର୍ଥ, ତୁମ୍ଭେମାନେ ସେହି ଅଭିଶାପ ପ୍ରଭାବରେ ଅବଶ୍ୟ ଦୁର୍ଦ୍ଦଶାକୁ ଭଜିବ, ମାତ୍ର ସେଥିରୁ ମୁକ୍ତି ପାଇବର ସନ୍ଧାନ ବୋଲୁଅଛୁ, ଶ୍ରବଣ କର ।'

କଳିଯୁଗ ମଧ୍ୟଭାଗରେ ଆମ୍ଭ ନାମଧାରଣ କରି ଆମ୍ଭ ଅଂଶରୁ ଏକ ମହାପୁରୁଷ ଜନ୍ମଗ୍ରହଣ କରିବେ । (ମଧୁସୂଦନ ଦାସ ?) ସେହି ପୁରୁଷ ଶ୍ୱେତ ଦ୍ୱୀପରୁ ଭ୍ରମଣକରି ଆସି ଏହି ବାରବାଟୀ ପୁଣ୍ୟ କ୍ଷେତ୍ରରେ ରାଜସୂୟ ଓ ଅଶ୍ୱମେଧ ଯଜ୍ଞ ସମାନ ଏକ ଅତି ହୋମ ଯଜ୍ଞ ଆରମ୍ଭ କରିବେ, ସେହିଯଜ୍ଞ ଯାବନିକ ଭାଷାରେ ଏଟହୋମ ନାମରେ କଥିତ ହେବ ସେହି ଯଜ୍ଞର ବିଧି ପାଳନ କଲେ ତୁମ୍ଭେମାନେ ଶାପରୁ ମୁକ୍ତ ହୋଇ  ପରମ ସୌଭାଗ୍ୟ ଲାଭ କରିବ ।

ଦୀନକୃଷ୍ଣ ଦାସ ଜନ୍ମଭୂମିକୁ ମହାଦେବୀ ରୂପେ ବର୍ଣ୍ଣନା କରିଯାଇଅଛନ୍ତି । ଫକୀର ମୋହନ ମଧ୍ୟ ଜନ୍ମଭୂମିକୁ ମହାଦେବୀ ଭାବରେ ସ୍ୱୀକାର କରିଛନ୍ତି । ଉତ୍କଳ ସାହିତ୍ୟ ସମାଜର ସ୍ଥାୟୀ ସଭାପତି ପଦ ମଣ୍ଡନ  କରିବା ପରେ ତାଙ୍କର ଅଭିଭାଷଣରେ ମାତୃଭାଷାର ଉନ୍ନତି ସାଧନ କରିବା ପାଇଁ ପରାମର୍ଶ ଦେଇ ସେ କହିଛନ୍ତି ''ଇଂରେଜୀ ବେଦରେ ଲିଖିତ ଅଛି, ଈଶ୍ୱର ସମସ୍ତଙ୍କର ଗୋଟିଏ ଗୋଟିଏ ଭାଷ ନିରୂପଣ କରି ଦେଇଅଛନ୍ତି, କିନ୍ତୁ ପ୍ରକୃତରେ ଦେଖାଯାଏ, ଜଳବାୟୁ ଏବଂ ମାନବ ପ୍ରକୃତିର ଉପଯୋଗୀ ଭାଷା ସ୍ୱତନ୍ତ୍ର । ପୁରାଣରେ ଲିଖିତ ଅଛି, ଭାଷା ବ୍ରାହ୍ମମୟୀ, ସେହିଭାଷା ହେତୁରୁ ମାନବ ସମାଜ ଏକତ୍ର ଆବଦ୍ଧ ଥାଏ । ଏଥିପାଇଁ ମାତୃଭାଷା ଅଧ୍ୟୟନ ଅନ୍ୟତମ ପୁଣ୍ୟ କାର୍ଯ୍ୟ ଅଟେ । ଏଥିପାଇଁ ଅନ୍ୟତମ ଅବତାର ସ୍ୱରୂପ ମହାତ୍ମା ରାଜା ରାମମୋହନ ରାୟ କହି ଯାଇ ଅଛନ୍ତି ଈଶ୍ୱର ଧ୍ୟାନ, କର୍ତ୍ତବ୍ୟପାଳନ, ମାତୃଭାଷାର ଉନ୍ନତି ଚେଷ୍ଟା ପରମଧର୍ମ ଅଟେ । ଆର୍ଯ୍ୟ ପୌରାଣିକ ତେତ୍ରିଶ କୋଟି ଦେବତା କଳ୍ପନା କରିଅଛନ୍ତି, କିନ୍ତୁ  ସର୍ବଶ୍ରେଷ୍ଠା ମହାଦେବୀ ଜନ୍ମଭୂମି ବିଷୟ  ଉଲ୍ଲେଖ  ମଧ୍ୟ କରିନାହାନ୍ତି । ୪୦ବର୍ଷ ପୂର୍ବେ ବଙ୍ଗ କବି ଜନ୍ମ ଭୂମିକୁ ମହାଦେବୀ ରୂପେ କଳ୍ପନା କରିଛନ୍ତି । କିନ୍ତୁ ତାହାଙ୍କର ତିନିଶ ବର୍ଷପୂର୍ବେ ଉତ୍କଳକବି ଦୀନକୃଷ୍ଣ ଦାସ ଜନ୍ମଭୂମିକୁ ମହାଦେବୀ ରୂପେବର୍ଣ୍ଣନା କରିଅଛନ୍ତି ।

ଓଡ଼ିଶାରୁ ଅଲଗା ରହିଥିବା ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଓଡ଼ିଶାରେ ମିଶାଇବା ପାଇଁ ଫକୀର ମୋହନ ମଧ୍ୟ ଉଦ୍ୟମ କରି ଆସୁଥିଲେ । ୧୯୧୪ ରେ ଉତ୍କଳ ସାହିତ୍ୟ ସମାଜର ଅଧିବେଶନରେ ଅଭିଭାଷଣ ପ୍ରଦାନ କରି ସେ ସର୍ବସାଧାରଣଙ୍କୁ ନିବେଦନ କରି କହିଛନ୍ତି ''ବର୍ତ୍ତମାନ ସର୍ବସାଧାରଣଙ୍କଠାରେ ମୋର ଗୋଟିଏ କ୍ଷୁଦ୍ର ନିବେଦନ ସଂପ୍ରତି ଖରସୁଆଁ ସିଂହଭୂମିର ଅଧିବାସୀମାନେ ମାତୃଭାଷା ହରାଇ ଦୀର୍ଘ କାଳ ଯାବତ୍‌କଷ୍ଟ ଭୋଗ କରୁଅଛନ୍ତି । ଆସନ୍ତୁ, ଆମ୍ଭେମାନେ ସେହି ବିଚ୍ଛିନ୍ନ

ଭ୍ରାତାମାନଙ୍କୁ କୋଳକୁ ନେବା ସକାଶେ ଯତ୍ନ କରିବା । ଗୋଟିଏ କ୍ଷୁଦ୍ର ଉପାୟ ମୋ ହୃଦୟରେ ଉଦିତ ହେଉଅଛି । କେତେ ଜଣ ଦେଶ ହିତୈଷୀ ଶିକ୍ଷିତ ଯୁବକ କେତେକ ହଜାର ଉତ୍କଳୀୟଙ୍କ ସ୍ୱାକ୍ଷର ଗ୍ରହଣ କରି ସରକାର ବାହାଦୂରଙ୍କ ଠାକୁ ପଠାନ୍ତୁ ।'

୧୯୦୩ ରେ ମଧୁବାବୁଙ୍କ ଦ୍ୱାରା ଉତ୍କଳ ସମ୍ମିଳନୀ ପ୍ରତିଷ୍ଠା ହେବାପୂର୍ବରୁ ଭାଷାଭିତ୍ତିକ ପ୍ରଦେଶ ଗଠନ କରିବା ପାଇଁ ଲୋକମାନେ ଚେତନ ଶୀଳ ହୋଇ ପଡ଼ିଥିଲେ । ୧୮୭୮ ମସିହାରେ ବାଲେଶ୍ୱରରେ ନେସନାଲ ସୋସାଇଟି ଗଠିତ ହୋଇ ବିଦେଶୀମାନଙ୍କୁ ହଟାଇବା ଆଳରେ ରାଜନୈତିକ କାର୍ଯ୍ୟକଳାପ ଜାରି ରଖିଥିଲା । ୧୮୯୫ ରେ ବାଲେଶ୍ୱରରେ ବି.ଦେଜ୍ ସୋସିଆଲ କ୍ଲବ ଗଠିତ ହୋଇ ଏହି କାର୍ଯ୍ୟ କରୁଥିଲା । ଭାତରୀୟ ଜାତୀୟ କଂଗ୍ରେସର ପ୍ରଥମ ଅଧିବେଶକୁ ନେସନାଲ ସୋସାଇଟି କୌଣସି ପ୍ରତିନିଧି ପଠାଇ ନଥିଲେ ମଧ ୧୮୮୬ ମସିହାର ଡିସେମ୍ବରରେ ଅନୁଷ୍ଠିତ ଦ୍ୱିତୀୟ ଅଧିବେଶନକୁ ନେସନାଲ ସୋସାଇଟି ବୈକୁଣ୍ଠନାଥ ଦେ, ଭଗବାନ ଚନ୍ଦ୍ର ଦାସ ଓ ରମେଶ ଚନ୍ଦ୍ର ମଣ୍ଡଳଙ୍କୁ ପଠାଇଥିଲେ । ବାଲେଶ୍ୱରବାସୀଙ୍କ ହୃଦୟରେ ଜାତୀୟତାର ବହ୍ନି ପ୍ରଜ୍ୱଳିତ ହେବା ସଂଗେ ସଂଗେ ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଏକତ୍ର କରାଇବାର ଆନ୍ଦୋଳନ ମଧ ଲାଗିରହିଥିଲା । ୧୮୭୫ ମସିହାରେ ବାଲେଶ୍ୱର ର ରାଜା ବୈକୁଣ୍ଠନାଥ ଦେ ଓ କଟକର ବାବୁ ବିଚିତ୍ରାନନ୍ଦ ପଟ୍ଟନାୟକ ପ୍ରଥମ କରି ମିଶ୍ରଣ ପ୍ରସ୍ତାବ ଆଗତ କରିଥିଲେ । ଓଡ଼ିଶାର ଅନ୍ୟ ସ୍ଥାନମାନଙ୍କରୁ ଏ ସଂପର୍କରେ ଆଗତ ପ୍ରସ୍ତାବମାନ ସରକାରଙ୍କ ଦ୍ୱାରା ଅଗ୍ରାହ୍ୟ ହୋଇଗଲା । ୧୯୦୨ ମସିହାର ଶେଷଭାଗକୁ ବୈକୁଣ୍ଠ ନାଥ ଦେ ଲର୍ଡ କର୍ଜନଙ୍କ ନିକଟକୁ ଏକ ଆବେଦନ ପଠାଇଥିଲେ । ସେଥିରେ ଓଡ଼ିଆ ଭାଷାଭାଷୀଙ୍କୁ ନେଇ ଏକ ସ୍ୱତନ୍ତ୍ର ପ୍ରଦେଶ ଗଠନ କରିବା ପାଇଁ କିମ୍ବା ସମସ୍ତଙ୍କୁ ବେଙ୍ଗଲ, ମାଡ୍ରାସ କିମ୍ବା କେନ୍ଦ୍ର ଶାସନ ଅଧୀନରେ ରଖିବା ପାଇଁ ପ୍ରସ୍ତାବ ଦିଆଯାଇଥିଲା ।

ଶେଷରେ ବ୍ରିଟିଶ ସରକାରଙ୍କ ନିକଟରେ ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଏକତ୍ରୀକରଣ ପାଇଁ ଏକ ଜାତୀୟ ଅନୁଷ୍ଠାନ ୧୯୦୩ ମସିହାରେ ଅନୁଷ୍ଠିତ ହେଲା । ମଧୁସୂଦନ ଦାସଙ୍କ ନେତୃତ୍ୱରେ ଗଠିତ ଏହି ଅନୁଷ୍ଠାନ "ଉତ୍କଳ ସମ୍ମିଳନୀ" ନାମରେ ନାମିତ ହେଲା । ଏହି ବର୍ଷ ଡିସେମ୍ବର ୩୦ ଓ ୩୧ ତାରିଖ ଦୁଇଦିନଧରି କଟକରେ ଅନୁଷ୍ଠିତ ଏହି ସମ୍ମିଳନୀକୁ ମାଡ୍ରାସ୍ , କଲିକତା ଓ ଭାରତର ବହୁସ୍ଥାନରୁ ଓଡ଼ିଆମାନେ ଆସି ଏକତ୍ର ହୋଇଥିଲେ । ୧୯୩୬ ରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ହେବା ପର୍ଯ୍ୟନ୍ତ ଏହି ସମ୍ମିଳନୀ ଉତ୍ସାହର ସହିତ କାର୍ଯ୍ୟ କରି ଚାଲିଥିଲା । ପ୍ରଥମ ଅଧିବେଶନରେ ପୌରୋହିତ୍ୟ କରିଥିଲେ ମୟୂରଭଞ୍ଜ ର ମହାରାଜା ଶ୍ରୀ ରାମଚନ୍ଦ୍ର ଭଞ୍ଜ ଦେଓ । ନିଜେ ମଧୁସୂଦନ ଦାସ ସଂପାଦକ ଭାବରେ କାର୍ଯ୍ୟ କରୁଥିଲେ । ଭାଷା ଭିତ୍ତିରେ ପ୍ରଦେଶ ଗଠନ କରିବା ପାଇଁ ଏହିସମ୍ମିଳନୀ ଯେଉଁ ଆନ୍ଦୋଳନ ଚଳାଇଥିଲା, ସେପରି ଆନ୍ଦୋଳନ ଥିଲା ସମଗ୍ର ଭାରତରେ ପ୍ରଥମ ଓ ଅନନ୍ୟ । ବାଲେଶ୍ୱରର ରାଜା ବୈକୁଣ୍ଠ ନାଥ ଦେ କଟକଠାରେ ଅନୁଷ୍ଠିତ ହୋଇଥିବା ଏହାର ଦଶମ ଅଧିବେଶନରେ ସଭାପତିତ୍ୱ କରିଥିଲେ । ୧୯୧୨ ମସିହାରେ ସରକାର ଓଡ଼ିଶାକୁ ସ୍ୱତନ୍ତ୍ର ମାନ୍ୟତା ନଦେଇ ବିହାର ସହିତ ଗୁନ୍ଥି ଦେବାରୁ ଉତ୍କଳ ସମ୍ମିଳନୀ ବ୍ରିଟିଶ ସରକାରଙ୍କ ଉପରେ ଜୋରଦାର ଚାପ ଦେବାକୁ ଉଦ୍ୟମକଲେ । ୧୯୧୬ ମସିହା ଡିସେମ୍ବର ମାସରେ ଉତ୍କଳ ସମ୍ମିଳନୀର ଏକ ଗୁରୁତ୍ୱପୂର୍ଣ୍ଣ ବୈଠକ ବାଲେଶ୍ୱରଠାରେ ଅନୁଷ୍ଠିତ ହୋଇଥିଲା । ଏଥିରେ ସାତଜଣିଆ କମିଟିଟିଏ ଗଠନ କରାଯାଇ ତଥ୍ୟ ସଂଗ୍ରହ କରି ସରକାରଙ୍କ ଠାରେ ଉପସ୍ଥାପନ କରାଇବାର ଉଦ୍ୟମ କରାଗଲା । ଏଥିରେ ସମସ୍ତ ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ

ନେଇ ଏକ ସମ୍ଭାବ୍ୟ ମେପ୍ ମଧ୍ୟ ପ୍ରସ୍ତୁତ ହୋଇଗଲା । ସମ୍ମିଳନୀର ସଦସ୍ୟମାନେ ଭରତପାଇଁ ରାଷ୍ଟ୍ର ସମୂହର ସଂପାଦକ ଇ. ଏସ୍. ମଣ୍ଟେଗୁ ଓ ଗଭର୍ଣ୍ଣର ଜେନେରାଲ ଲର୍ଡ ଚେମସଫୋର୍ଡଙ୍କ ୧୯୧୭ ଡ଼ିସେମ୍ବର ୧୧ ତାରିଖର କଲିକତା ଆଗମନକୁ ଅପେକ୍ଷା କରି ରହିଲେ । ମଣ୍ଟେଗୁ-ଚେମସଫୋର୍ଡ ଙ୍କ ରିପୋର୍ଟ ସମସ୍ୟାର ସମାଧାନ କରିପାରିଲାନାହିଁ । ସଂଗେ ସଂଗେ ଉତ୍କଳ ସମ୍ମିଳନୀର ତ୍ରୟୋଦଶ ଅଧିବେଶନ ୧୯୧୮ ମସିହା ମାର୍ଚ୍ଚମାସ ୩୦ ଓ ୩୧ ତାରିଖରେ କଟକଠାରେ ଅନୁଷ୍ଠିତ ହେଲା । ଏଥିରେ ସଭାପତିତ୍ୱ କରିଥିଲେ ଫକୀରମୋହନ ସେନାପତି ।

ଉତ୍କଳ ସମ୍ମିଳନୀରେ ସଭାପତିତ୍ୱ କରିବାର ଛଅମାସ ପୂର୍ବରୁ ଫକୀର ମୋହନ ମ୍ୟାଲେରିଆ ଜ୍ୱରରେ ଆକ୍ରାନ୍ତ ହେଇ ରୋଗଗ୍ରସ୍ତ ହୋଇ ପଡ଼ିଥିଲେ । ଶାରୀରିକ ଅସୁସ୍ଥତା ସତ୍ୱେ ଓଡ଼ିଆ ଭାଷା ଓ ଜାତି ପ୍ରତି ତାଙ୍କର ମମତା ତାଙ୍କୁ କଟକ ପର୍ଯ୍ୟନ୍ତ ଟାଣି ନେଇ ଯାଇଥିଲା । ଏହିସମ୍ମିଳନୀରେ ଓଡ଼ିଶା ଓ ଓଡ଼ିଶା ବାହାରର ୬୫ ଜଣ ଓଡ଼ିଆଙ୍କୁ ନେଇ ଏକ ଷ୍ଟାଣ୍ଡିଂ କାଉନସିଲ ଗଠନ କରାଗଲା । ଫକୀରମୋହନ ଏପ୍ରିଲ ପ୍ରଥମ ସପ୍ତାହରେ ବାଲେଶ୍ୱରକୁ ଫେରିଆସିଲା ପରେ ମଧ୍ୟ ଜ୍ୱରରୁ ମୁକ୍ତି ମିଳିଲା ନାହିଁ । ଦୁଇ ମାସ ପରେ ପବିତ୍ର ରଜ ସଂକ୍ରାନ୍ତିରେ ତାଙ୍କର ପରଲୋକ ସମଗ୍ର ଓଡ଼ିଶାକୁ ସ୍ତବ୍ଧ କରିଦେଲା ।

ପୂର୍ଣ୍ଣାଙ୍ଗ ଉତ୍କଳ ଗଠନ କରିବା ପାଇଁ ଫକୀରମୋହନ ଙ୍କ ପ୍ରାଣ ଅନବରତ କାନ୍ଦୁଥିଲା । ବର୍ଷକୁ ଥରେ ଲେଖାଏଁ ଉତ୍କଳ ସମ୍ମିଳନୀ ର ଆୟୋଜନ ପରେ ତୁନି ତାନି ହୋଇ ବସିଯିବା ତାଙ୍କୁ ସୁଖ ଲାଗୁନଥିଲା । ଫକୀରମୋହନ ସେହି ଦୁଃଖରେ 'ମୁକୁର'ରେ 'ଛିନ୍ନ ଭିନ୍ନ ଜନ୍ମଭୂମି' ବୋଲି କବିତାଟିଏ ପ୍ରକାଶ କରିଥିଲେ । ସେହି କବିତାଟିକୁ ଉଦ୍ଧାର କରି ଏ ପ୍ରବଂଧଟି ଏଇଠି ଶେଷ କରୁଛି ।

ଚାରିଆଡ଼େ ପଡ଼ିଅଛି ଉନ୍ନତି ଚହଳ / ନିଦ୍ରିତ କି ରହିଥିବ ଉତ୍କଳ କେବଳ ?
କେ ବୋଲେ ନିଶ୍ଚେଷ୍ଟ ଛନ୍ତି ଉତ୍କଳ ବାସୀଏ ? / ଏମାନଙ୍କ କଷ୍ଟ କଥା ବୁଝିଲା ବା କିଏ ?
ତରଭୁଜ ପରି କଟାଯାଇ ଖଣ୍ଡ ଖଣ୍ଡ / ଜୀବନ ବିକଳେ ହେଉଛନ୍ତି ଲଣ୍ଡ ଭଣ୍ଡ
ମୁଣ୍ଡଟା ରହିଲା ପାଶେ ଆଉ ପାଶେ ଗୋଡ଼ / ଅଲଗା ରହିଲା ବାହୁ ଲାଗୁନାହିଁ ଯୋଡ଼
ବରଷକେ ଥରେ ଦେଉ ଅଛ ଖଞ୍ଜ ଖାଞ୍ଜ / ଆନନ୍ଦରେ ନାଚି ଉଠି ପଡ଼ିଯାଏ ଭାଞ୍ଜ
ହେବେଣି ଏ ଦେଶେ ଜାତ ଅଶ୍ୱିନୀ କୁମାରେ / ସଞ୍ଜୀବନୀ ମନ୍ତ୍ରେ ମାତା ଅଙ୍ଗ ଖଞ୍ଜିପାରେ
ଅଛି ସୁଧାଭାଣ୍ଡ - ମହାଦେବଙ୍କ ହସ୍ତରେ / ପୁତ୍ରେ ମିଳି ପଡ଼ିଯାଇ ତାହାଙ୍କ ପଦରେ
ମହାଦେବ ଲଣ୍ଡ ଭଣ୍ଡ କରୁଚି ତ୍ରିପୁର / ଜାଣ ନିଶ୍ଚେ ହେବ ଦିନେ ତାହା ଗର୍ବ ଚୂର୍ଣ୍ଣ
ସଜହୋଇ ବସିଥାଅ ଅଶ୍ୱିନୀ କୁମାରେ / ବେଳ ଉଣ୍ଡି ଆଚ୍ଛା କରି ହୁଙ୍କିଯିବ ବାରେ
ଜନ୍ମଭୂମି ଯେତେବେଳେ ନ ହେବ ପୂର୍ଣ୍ଣାଙ୍ଗୀ /ଜାଣ ନିଶ୍ଚେ ତୁମ୍ଭ ସର୍ବ ଯତ୍ନ ଯିବ ଭାଙ୍ଗି ।

# ଭାରତୀୟ ଷ୍ଟେଟବ୍ୟାଙ୍କ୍ , ବାଲେଶ୍ୱର

# ଦେଶପ୍ରାଣ ରାଜା ବୈକୁଣ୍ଠନାଥ ଦେବ ବାହାଦୂର : ଏକ ଅଲୌକିକ ପ୍ରତିଭା

ଡଃ ମନ୍ମଥ କୁମାର ପ୍ରଧାନ

ପୃଥିବୀରେ ପ୍ରତିଦିନ ଲକ୍ଷଲକ୍ଷ ଲୋକ ପ୍ରାଣତ୍ୟାଗ କରୁଛନ୍ତି । ଇତିହାସ ସମସ୍ତଙ୍କର ଖବର ରଖେ ନାହିଁ । ଯେଉଁମାନେ ଦେଶ ଓ ଦଶ ପାଇଁ ନିଜ ଜୀବନକୁ ଉତ୍ସର୍ଗ କରୁଛନ୍ତି, ସେମାନେ ମରି ମଧ୍ୟ ହୁଅନ୍ତି ଅମର, ଗଣହୃଦୟରେ ସେ ସ୍ୱତଃ ଆସନ ପାତିବସନ୍ତି । ସମୟର ବାଲିବନ୍ତପରେ ତାଙ୍କର ପ୍ରତିଭା ହୁଏ ଚିର ଜାଜ୍ୱଲ୍ୟମାନ । ଏହିପରି ଜଣେ ଆସାଧାରଣ, ଉଚ୍ଚକୋଟୀର ପ୍ରତିଭାବନ୍ତ ପୁରୁଷ ହେଉଛନ୍ତି ରାଜା ବୈକୁଣ୍ଠନାଥ ଦେବ । ତାଙ୍କର ଦେଶସେବା, ସମାଜସେବାର ପଟାନ୍ତର ନାହିଁ । ଜନସାଧାରଣଙ୍କର ଦୁଃଖ, ଦୁର୍ଦ୍ଦଶା, ଅଭାବ ଅନଟନ ଦୂର କରିବାପାଇଁ ସେ ସଦାସର୍ବଦା ତତ୍ପର ଥିଲେ । ତାଙ୍କର ତ୍ୟାଗ, ତିତିକ୍ଷା, ନିଷ୍ଠା ତଥା ଦେଶପ୍ରାଣତା ଯେକୌଣସି ବ୍ୟକ୍ତିକୁ ଅଭିଭୂତ କରେ । ବଂଗ ପ୍ରଦେଶର ବ୍ୟକ୍ତି ହୋଇ ବଂଶାନୁକ୍ରମେ ସେ ବାଲେଶ୍ୱରରେ ପ୍ରତିଷ୍ଠିତ ହେଲେହେଁ ତାଙ୍କର କର୍ମନିଷ୍ଠା ଓଡ଼ିଶା ପାଇଁ ଉଦ୍ଦିଷ୍ଟ ଥିଲା । ସେ ଏକ ଅଭୁଲା-ଅଲିଭା ପ୍ରତିଭାବନ୍ତ ପୁରୁଷ ।

ବାଲେଶ୍ୱରର ବାରବାଟୀ ଗ୍ରାମରେ ୧୮୫୨ ମସିହାରେ ବୈକୁଣ୍ଠନାଥ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ଶ୍ୟାମାନନ୍ଦ ଦେ; ଯିଏ ଜଣେ ଧର୍ମପରାୟଣ ତଥା ଆଦର୍ଶବାନ ଥିଲେ । ବଂଗଳାର ହୁଗୁଳି ଜିଲ୍ଲାର ଜାହାନାବାଦ ସବ୍‌ଡିଭିଜନ୍‌ରେ ମାୟାପୁରର ସେ ଅଧିବାସୀ ଅଟନ୍ତି । ସେମାନେ ତାମ୍ବୁଲି (ବଂଗ ଭାଷାଭାଷୀ) ଭାବରେ ପରିଚିତ । ୧୭୬୫ ମସିହାରେ ଜୟକୃଷ୍ଣ ଦେ ବାଲେଶ୍ୱର ଆସିଥିଲେ । ତାଙ୍କର ତିନିପୁଅ ମଧ୍ୟରୁ ମାନିକରାମ ଥିଲେ ଚତୁର । ବାଲେଶ୍ୱରର ତତ୍କାଳୀନ ଖ୍ୟାତାନାମା ବ୍ୟକ୍ତି ଲାଲ ବିହାରୀଙ୍କର ଝିଅ ସହ ୧୭୮୦ ମସିହାରେ ମାନିକରାମର ବିବାହ ସମ୍ପନ୍ନ କଲେ । ବାଣିଜ୍ୟ ବ୍ୟବସାୟ କରି ମାନିକରାମ ପ୍ରଚୁର ଅର୍ଥ ଉପାର୍ଜନ କରିଥିଲେ । ଶ୍ୟାମାନନ୍ଦ ଦେବ ମାନିକରାମର ପୁଅ, ଯିଏ ଜନହିତକର କାର୍ଯ୍ୟକରି ଇଂରେଜ ସରକାରଙ୍କର ପ୍ରିୟ ହୋଇ ପାରିଥିଲେ । ୧୮୮୭ରେ ସେ ରାଜ ବାହାଦୂର ଉପାଧିରେ ଭୂଷିତ ହୋଇଥିଲେ ।

ବୈକୁଣ୍ଠ ନାଥ ଦେବ ଶ୍ୟାମାନନ୍ଦଙ୍କର ବଡ଼ପୁଅ । ପିତାଙ୍କର ସେ ସୁଯୋଗ୍ୟ ସନ୍ତାନ । ଜିଲ୍ଲା ସ୍କୁଲରେ ପାଠପଢ଼ା ଶେଷକରି ସେ ସମାଜସେବାକୁ ପାଥେୟ କରିନେଲେ ।୧୮୭୭ ମସିହାରେ ସେ ବାଲେଶ୍ୱର ମ୍ୟୁନିସିପାଲଟିର ଭାଇସ୍ ଚେୟାରମ୍ୟାନ୍ ହେଲେ । ୧୮୮୯ରେ ଇଂରେଜ ସରକାର ତାଙ୍କର ବଦାନ୍ୟତା ପାଇଁ ତାଙ୍କୁ ରାଜବାହାଦୂର ଉପାଧିରେ ଭୂଷିତ କଲେ । ଅର୍ଥାଭାବ ହେତୁ ସେ ନିଜ ତରଫରୁ ମ୍ୟୁନିସିପାଲଟିର ଶିକ୍ଷା, ସ୍ୱାସ୍ଥ୍ୟ, ଆଲୋକ, ପାଣିର ବ୍ୟବସ୍ଥା କରିବା ସଂଗେସଂଗେ ନାଳ ନର୍ଦ୍ଦମା ତିଆରି କରିଥିଲେ । ସ୍କୁଲ, ଡାକ୍ତରଖାନା, ଗରିବ ମେଧାବୀ ଛାତ୍ରମାନଙ୍କ ପାଇଁ ଅର୍ଥ ଓ ବୃତ୍ତିର ବ୍ୟବସ୍ଥା କରିଥିଲେ । ସେତେବେଳେ ବାଲେଶ୍ୱର କଲେକ୍ଟର ଜନ୍ ବୀମ୍‌ସ ତାଙ୍କର କାର୍ଯ୍ୟ ଦକ୍ଷତା ଓ ଜନ ହିତକର ମନୋଭାବ ପାଇଁ ତାଙ୍କୁ ୧୯୦୨ ମସିହାରେ ଅନରାରୀ ମାଜିଷ୍ଟ୍ରେଟ୍ ଭାବରେ ନିଯୁକ୍ତି ଦେଇଥିଲେ । ପିଲାମାନଙ୍କ ପାଠପଢ଼ିବା ପାଇଁ ସେ 'ବାଳିକାପାଠ', 'ରିପନ୍ ଓଡ଼ିଆ ଏଟ୍‌ଲାସ୍' ପ୍ରକାଶ କରିଥିଲେ । ସଂସ୍କୃତ ଶିକ୍ଷା ପାଇଁ ଟୋଲ୍ ସ୍ଥାପନ କଲେ । ଚାନ୍ଦବାଲି, ସୋରୋ, ବାଲେଶ୍ୱର, ଜଳେଶ୍ୱରରେ ଡାକ୍ତରଖାନାମାନ ସ୍ଥାପନ କରି ଚିକିତ୍ସାର ସୁବିଧା କରିଥିଲେ । କଲିକତାରେ ଇଡେନ୍ ହିନ୍ଦୁ ହଷ୍ଟେଲ, ମେଦିନୀପୁର, କେନ୍ଦ୍ରାପଡ଼ାରେ ସର୍ବସାଧାରଣ ପାଠାଗାର, ବାଲେଶ୍ୱର ଜିଲ୍ଲା ସ୍କୁଲ ଓ

ରେଭେନ୍‌ସା କଲେଜରର କୋଠାଘର, କଲିକତାର ଭିକ୍‌ଟୋରିଆ ମେମୋରିଆଲ୍ ହଲ୍ ପାଇଁ ଅର୍ଥ ଯୋଗାଇଥିଲେ ।

୧୮୭୭ ମସିହାରୁ ୧୮୯୧ ମସିହା ପର୍ଯ୍ୟନ୍ତ ସେ ବାଲେଶ୍ୱର ମ୍ୟୁନିସିପାଲ୍‌ଟିର ପ୍ରଥମ ଭାଇସ୍ ଚେୟାରମ୍ୟାନ୍ ଓ ପରେ ଚେୟାରମ୍ୟାନ୍ ହୋଇଥିଲେ । ୧୮୮୩ରୁ ୧୮୮୬ ମସିହା ପର୍ଯ୍ୟନ୍ତ ଓଡ଼ିଶାରୁ ବେଂଗଲ ବ୍ୟବସ୍ଥାପକ ସଭାକୁ ସଭ୍ୟରୂପେ ମନୋନୀତ ହୋଇଥିଲେ । ସେ କଲିକତାର ଜୁଲୋଜିକାଲ୍ ଗାର୍ଡ଼ନ ପରିଚାଳନା ସମିତିର ସଭ୍ୟ, ବୁଦ୍ଧିଷ୍ଟଟେକ ସୋସାଇଟିର ସଭ୍ୟ, ଭାରତ ଓ ବ୍ରିଟିଶ୍ ଏସୋସିଏସନ୍‌ର ମେମ୍ବର ରୂପେ କାର୍ଯ୍ୟ ତୁଲାଉଥିଲେ । ବାଲେଶ୍ୱର ଟାଉନ୍‌ରୁ କୋଷ୍ଟକେନାଲ ଯାଏଁ ଗମନାଗମନ ସୁବିଧା ପାଇଁ ନଲ୍‌କୁଳ ରୋଡ଼ ୧୮୮୯ ମସିହାରେ ତିଆରି କରାଇଥିଲେ । ୧୮୯୦ ମସିହାରେ ବାଲେଶ୍ୱର ସହରରେ ମିଡିଲ ଭର୍ଣ୍ଣାକୁଲାର ସ୍କୁଲ ପ୍ରତିଷ୍ଠା କରିଥିଲେ । ସୋରୋ ନିକଟରେ ଜଗନ୍ନାଥ ସଡ଼କ ପାର୍ଶ୍ୱରେ ଇଲିୟଟ୍ ଦାତବ୍ୟ ଚିକିତ୍ସାଳୟ, ସହରର ମଧ୍ୟଭାଗରେ ନିଜମାତାଙ୍କ ସ୍ମୃତିରକ୍ଷା ନିମନ୍ତେ ସେ ଶ୍ୟାମସାଗର ଫଣ୍ଡ୍ ନିର୍ମାଣ କରି ନିର୍ମଳ ପାନୀୟ ଜଳ ଯୋଗାଣର ବ୍ୟବସ୍ଥା କରିଥିଲେ । ଜିଲ୍ଲାର ବିଭିନ୍ନ ସ୍ଥାନରେ ଅଂସଖ୍ୟ କୂପ ଖନନ କରିବା ସଂଗେସଂଗେ ଭାରତୀୟ ଦୁର୍ଭିକ୍ଷ ଫଣ୍ଡକୁ ପ୍ରଚୁର ଅର୍ଥ ଦାନ କରୁଥିଲେ । ରାସ୍ତା କଡ଼ରେ ବହୁତ ବୃକ୍ଷରୋପଣ କରିଥିଲେ ।

ଓଡ଼ିଆ ଭାଷା ସୁରକ୍ଷା ଆନ୍ଦୋଳନରେ ଅଂଶ ଗ୍ରହଣ କରି ୧୮୭୨ ମସିହାରେ ବାଲେଶ୍ୱରରେ 'ଦେଜ୍-ଉତ୍କଳ ପ୍ରେସ୍' ସ୍ଥାପନ ଓ ବିବିଧ ପୁସ୍ତକ ପ୍ରକାଶ କରିଥିଲେ । ସେ ରାଧାନାଥଙ୍କ 'ମେଘଦୂତ'ର ଓଡ଼ିଆ ଅନୁବାଦକୁ ପ୍ରକାଶ କରି ଜନ୍ ବୀମ୍‌ସଙ୍କ ନାମରେ ଉତ୍ସର୍ଗ କରିଥିଲେ । ସମ୍ବଲପୁରରୁ ପ୍ରକଶିତ 'ହୀରାଖଣ୍ଡ' ପତ୍ରିକାରେ ବୈକୁଣ୍ଠନାଥଙ୍କ ସଂପର୍କରେ ମନ୍ତବ୍ୟ ଅଛି -''ଧନ୍ୟ ସେ କର୍ମବୀରଙ୍କ ନୈତିକ ସାହସ । ଦିବସବ୍ୟାପି ସରକାରୀ କର୍ମରେ ଲିପ୍ତ ରହି ନିଶାକାଳ ପ୍ରବେଶ ମାତ୍ରକେ ଅଶ୍ୱୋପରି ଆରୋହଣ କରି ବୈକୁଣ୍ଠ ନାଥ ରାତ୍ରିଯାପନ କରୁଥିଲେ । ଗ୍ରାମେ ଗ୍ରାମେ ପରିଭ୍ରମଣ ସମୟରେ ଲୋକମାନଙ୍କୁ ଜିଲ୍ଲାଧୀଶଙ୍କ ତଦନ୍ତ ସମୟରେ କିପରି ଭାବରେ ଓଡ଼ିଆ ଭାଷାର ଉପକାରିତା ତର୍କବିତର୍କ ଦ୍ୱାରା ପ୍ରତିପନ୍ନ କରାଇବେ, ସେଥି ନିମନ୍ତେ ସେ ଚେଷ୍ଟିତ ଥିଲେ । ରାତ୍ରିରେ ବହୁ ଦୂରବର୍ତ୍ତୀ ଗ୍ରାମରେ ଉପସ୍ଥିତ ହୋଇ ଗ୍ରାମବାସୀଙ୍କୁ ଉତ୍କଳ ଭାଷାର ପ୍ରଚଳନ ରୂପକ ମନ୍ତ୍ରରେ ଦୀକ୍ଷିତ କରୁଥିଲେ ।''

ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନରେ ତାଙ୍କର ଭୂମିକା ଥିଲା ଅନନ୍ୟ । କବିବର ରାଧାନାଥ ରାୟ, ବ୍ୟାସକବି ଫକୀରମୋହନ ସେନାପତି, ଭକ୍ତକବି ମଧୁସୂଦନ ରାଓଙ୍କ ସାହିତ୍ୟ ସାଧନା ଓ ବ୍ୟକ୍ତିଗତ ଜୀବନରେ ସେ ଅକୁଣ୍ଠ ସାହାଯ୍ୟ ସହଯୋଗ କରିଥିଲେ । ପ୍ରଥମ ଓଡ଼ିଆ ସାହିତ୍ୟ ପତ୍ରିକା -'ଉତ୍କଳ ଦର୍ପଣ' ୧୮୭୩ ମସିହାରେ ପ୍ରକାଶ କରି ସେ ହୋଇଥିଲେ ସମସ୍ତଙ୍କର ଧନ୍ୟବାଦର ପାତ୍ର । ନବୀନ ଲେଖକ ସୃଷ୍ଟି କରିବା ଓ ସେମାନଙ୍କ ସୃଜନଶକ୍ତିର ବିକାଶ ଓ ପ୍ରୋତ୍ସାହନ କ୍ଷେତ୍ରରେ 'ଉତ୍କଳ ଦର୍ପଣ'ର ଭୂମିକା ଥିଲା ଅବିସ୍ମରଣୀୟ ।

ଫକୀରମୋହନଙ୍କ ସହ ବୈକୁଣ୍ଠନାଥଙ୍କ ଘନିଷ୍ଠ ଆତ୍ମୀୟତା ଥିଲା । ବୈକୁଣ୍ଠ ନାଥ ନିଜ ପ୍ରେସ୍‌ରେ ଫକୀରମୋନଙ୍କ ଦ୍ୱାରା ଅନୂଦିତ କବିବର ରାଧାନାଥ ରାୟ ଓ ଭକ୍ତକବି ମଧୁସୂଦନ ରାଓଙ୍କ ଯୁଗ୍ମ କବିତା ସଞ୍ଚୟନ 'କବିତାବଳୀ' (୧ମ ଓ ୨ୟ) ପ୍ରକାଶ କରିଥିଲେ, ଯାହା ବହୁକାଳ ଧରି ପାଠ୍ୟପୁସ୍ତକ ଭାବରେ ପ୍ରଚଳିତ ଥିଲା । ଏହି ପୁସ୍ତକ ଓଡ଼ିଆ କବିତା କ୍ଷେତ୍ରରେ ଆଧୁନିକତାର ଥିଲା ପ୍ରଥମ ବାର୍ତ୍ତାବହ ।

ଫକୀରମୋହନଙ୍କ ବୌଦ୍ଧାବତାର କାବ୍ୟକୁ ମଧ୍ୟ ସେ ପ୍ରକାଶ କରିଥିଲେ । 'ଉତ୍କଳ ଭ୍ରମଣଂ' କାବ୍ୟରେ ଫକୀରମୋହନ ବୈକୁଣ୍ଠନାଥଙ୍କୁ ପ୍ରଶଂସା କରି ଲେଖିଛନ୍ତି,-

''ହେ ବୈକୁଣ୍ଠନାଥ ଦେ ରାଜ ବାହାଦୂର,
ସତେସତେ ତୁମ୍ଭେ ଜଣେ ଅଟ ବାହାଦୂର ।
କରିବାକୁ ଦେଶ ଉପକାର ବୀରପଣେ,
ନଥିଲା ନହେବ ନାହିଁ ତୁମ୍ଭ ପରି ଜଣେ ।।

x x x

ତୁମ୍ଭର ମହତ କାର୍ଯ୍ୟ ସକାଶେ ବୈକୁଣ୍ଠ
ରଖିବ ଜଗତେ କୀର୍ତ୍ତି ଲଭିବ ବୈକୁଣ୍ଠ ।''

କବିବର ରାଧାନାଥ ରାୟଙ୍କ ସହ ତାଙ୍କର ସୁସମ୍ପର୍କ ଥିଲା । ଜନ୍ ବୀମ୍‌ସଙ୍କ ସହ ଆନ୍ତିରିକତା ଓ ବନ୍ଧୁତ୍ୱପୂର୍ଣ୍ଣ ସମ୍ପର୍କ ଯୋଗୁଁ ବୈକୁଣ୍ଠନାଥ ବହୁ ଜନହିତକର କାର୍ଯ୍ୟ କରିବାକୁ ସକ୍ଷମ ହୋଇଥିଲେ ।

ଉତ୍କଳ ସମ୍ମିଳନୀ ଗଠନ (୧୯୦୩) ପୂର୍ବରୁ ସେ ଓଡ଼ିଆ ଭଷାଭାଷୀ ଅଂଚଳରେ ଏକାକୀକରଣ ପାଇଁ ଉଦ୍ୟମ ଆରମ୍ଭ କରି ଏକଲକ୍ଷ ସ୍ୱାକ୍ଷର ସମ୍ବଳିତ ଏକ ସ୍ମାରକପତ୍ର ଭାରତର ତତ୍କାଳୀନ ବଡ଼ଲାଟ ଲର୍ଡ଼ କର୍ଜନଙ୍କୁ ପ୍ରଦାନ କରିଥିଲେ । ଏହି ସ୍ମାରକ ପତ୍ର ଲେଖିଥିଲେ ତାଙ୍କର ବନ୍ଧୁ କବିବର ରାଧାନାଥ ରାୟ । ଉତ୍କଳ ସମ୍ମିଳନୀର ସପ୍ତମ ଅଧିବେଶନ (କଟକ) ରେ ସେ ମଧ୍ୟ ସଭାପତିର ଆସନ ଅଳଂକୃତ କରିଥିଲେ ।

ନିଜର ତ୍ୟାଗ, ଆଦର୍ଶ, ସେବାପାଇଁ ସେ ସମୟରେ ବୈକୁଣ୍ଠନାଥଙ୍କ ଖ୍ୟାତି ଓ ଆଦୃତି ରହିଥିଲା । ପାଶ୍ଚାତ୍ୟ ସରକାରୀ ସାହେବମାନେ ସରକାରୀ ରିପୋର୍ଟମାନଙ୍କରେ ବୈକୁଣ୍ଠନାଥଙ୍କର ପ୍ରଶଂସା ଦେଖିବାକୁ ମିଳେ ।

୧୯୦୨ ମସିହାରେ ତାଙ୍କୁ ଦିଲ୍ଲୀରେ ରାଜସୂୟ ପରିବାରରେ ସମ୍ବର୍ଦ୍ଧିତ କରିଥିଲେ । ୧୯୧୩ ମସିହାରେ କଟକଠାରେ ବଡ଼ଲାଟ ଲର୍ଡ଼ ହାର୍ଡ଼ିଞ୍ଜଙ୍କ ଦ୍ୱାରା ଅନୁଷ୍ଠିତ ସଭାରେ ବୈକୁଣ୍ଠ ନାଥଙ୍କୁ 'ମହାରାଜା' ଉପାଧିରେ ଭୂଷିତ କରାଯାଇଥିଲା । ଓଡ଼ିଆ ଭାଷା, ସାହିତ୍ୟ, ସଂସ୍କୃତି ପାଇଁ ବୈକୁଣ୍ଠନାଥଙ୍କ ଅବଦାନ ବାସ୍ତବିକ ଅବିସ୍ମରଣୀୟ ଅଟେ । ବଂଗପ୍ରଦେଶର ଲୋକ ହୋଇ ଓଡ଼ିଶାକୁ ଆପଣାର କରିନେଲେ, ଓଡ଼ିଆ ଭଷା ସାହିତ୍ୟ ସଂସ୍କୃତିକୁ ସମୃଦ୍ଧ କରିବାପାଇଁ ନିଜ ଜୀବନକୁ ଉତ୍ସର୍ଗୀକୃତ କରିପାରିଲେ, ମାତ୍ର ଓଡ଼ିଆବାସୀ ତାଙ୍କ ପାଇଁ କ'ଣ କରିପାରିଛନ୍ତି ? ତାଙ୍କର ସ୍ମୃତିପାଇଁ ଏକ ପ୍ରତିମୂର୍ତ୍ତି ସ୍ଥାପନ ମଧ୍ୟ କରିନାହାନ୍ତି, ଏହା କଣ ପୂଜ୍ୟପୂଜାର ବ୍ୟତିକ୍ରମ ନୁହେଁ କି ? ଏହା ବାଲେଶ୍ୱରବାସୀଙ୍କର କର୍ତ୍ତବ୍ୟ ନୁହେଁ କି ? ତେଣୁ ଏହି ପ୍ରତିଭାବନ୍ତଙ୍କ ଜୀବନୀ ଓ କୃତିତ୍ୱକୁ ସ୍ୱତନ୍ତ୍ର ପୁସ୍ତକ ଆକାରରେ ଛପାଇଲେ ନୂତନପୀଢ଼ୀକୁ ଯଥେଷ୍ଟ ଖୋରାକ ଯୋଗାଇବ ଓ ଏହି ଯୁଗାନ୍ତକାରୀ ପ୍ରତିଭାକୁ ଶ୍ରଦ୍ଧାଞ୍ଜଳି ଦିଆଯିଇ ପାରିବ ।

# ଅଧ୍ୟାପକ, ଓଡ଼ିଆ ବିଭାଗ

# ମହାରାଜା ଶ୍ରୀରାମଚନ୍ଦ୍ର : ଏକ ଅନିର୍ବାଣ ଜ୍ୟୋତିଶିଖା

ଡକ୍ଟର ଭାଗବତ ପ୍ରସାଦ ଲେଙ୍କା

ଜନ୍ମ-ମୃତ୍ୟୁ ପ୍ରତିଟି ଜୀବନର ଆଲୁଅ-ଅନ୍ଧାରର ଲୁଚକାଳି ଖେଳ । ମୃତ୍ୟୁ ପ୍ରକାଶ୍ୟ ଦିବାଲୋକ ଭଳି ଧ୍ରୁବ ସତ୍ୟ । ମୃତ୍ୟୁରେ ସାଧାରଣ ଜୀବନ ଶ୍ମଶାନର ପାଉଁଶ ମୁଠିକ ଭିତରେ ଲୀନ ହୋଇଯାଏ । ମାତ୍ର ମହାଜୀବନର ପରିସମାପ୍ତି ନାହିଁ । ସେ ସେହି ପାଉଁଶରେ ଫୁଟାଏ ପଦ୍ମ । ତା'ର ମୃତ୍ୟୁ ନାହିଁ । ସେ ବଂଚିରହେ ଯଶ ଦେହରେ । ମଣିଷ ମଣିଷ ହୃଦୟରେ ବଂଚି ରହେ ତା'ର କୀର୍ତ୍ତିରେ, ସ୍ମୃତିରେ । ସ୍ମୃତି ଏକ ଜହ୍ନରାତି । ମହାପୁରୁଷ ସ୍ମୃତିର ଜୋଛନା ଢାଳି ପଥହରା ମାନବ ସମାଜ, ସଂସ୍କୃତି ଓ ସଭ୍ୟତାକୁ ପଥ ଦେଖାଏ । ସେ ପାଲଟି ଯାଏ ଦେଶ, ଜାତି ତଥା ବିଶ୍ୱର ସବୁଜ ନିଶାଣ ।

ସେହିପରି ଜଣେ ମୃତ୍ୟୁଞ୍ଜୟୀ ପୁରୁଷ ଥିଲେ ମହାରାଜା ଶ୍ରୀରାମଚନ୍ଦ୍ର ଭଂଜଦେଓ । ତାଙ୍କ ମାଟିର ଦେହ ମାଟିରେ ମିଶିଯାଇଥିଲେ ମଧ ଯଶ ଓ ସ୍ମୃତିର ଦେହରେ ସେ ପ୍ରତ୍ୟେକ ଓଡ଼ିଆଙ୍କ ହୃଦ ସିଂହାସନରେ ବିରାଜିତ । ବନ କାନନ ଘେରା ପ୍ରକୃତିର ସ୍ୱପ୍ନପୁରୀ ଭଂଜଭୂଇଁ, ତପୋବନ ରାଜ୍ୟ ମୟୂରଭଞ୍ଜରେ ଜନ୍ମ ଗ୍ରହଣ କରିଥିଲେ ୧୮୭୧ ଖ୍ରୀ.ଅ. ଡିସେମ୍ବର ୧୭ ତାରିଖରେ ଏ ମର ଭୂଇଁରେ ଅମର ସ୍ମୃତିର ଅଲିଭା ଆଲେଖ୍ୟ ଅଙ୍କନ କରି । ତାଙ୍କର ମାଟି ଦେହ ସିନା ମାଟିରେ ମିଶି ଯାଇଛି ସେ ହୋଇଯାଇଛନ୍ତି ଅମର । ସେ ଝରା ଶେଫାଳି ଭଳି ସ୍ୱଳ୍ପ ସମୟ ମାତ୍ର ଚାଳିଶ ବର୍ଷ ଜୀବନକାଳ ମଧ୍ୟରେ କେବଳ ମୟୂରଭଞ୍ଜ ବା ଉତ୍କଳ ନୁହେଁ ସମଗ୍ର ଜଗତକୁ ସୁରଭିତ କରି ଝରିଯାଇଥିଲେ । ତାଙ୍କର ଏହି ଚାଳିଶ ବର୍ଷ ଜୀବନକାଳ ଓ ମାତ୍ର କୋଡ଼ିଏ ବର୍ଷ ରାଜ୍ୟଶାସନ ମଧ୍ୟରେ ତତ୍କାଳୀନ ଦୀର୍ଘାୟୁ ଓ ଦୀର୍ଘଦୀନ ରାଜ୍ୟ ଶାସନ କରୁଥିବା ୨୬ଟି ଗଡ଼ଜାତ ରାଜ୍ୟର ରାଜାମାନଙ୍କଠାରୁ ତାଙ୍କର ଉତ୍କୃଷ୍ଟ ଶାସନ, କୀର୍ତ୍ତିକଳାପ ଓ ସୁନାମ ଆଦି ପୃଥିବୀ ଇତିହାସର ସ୍ୱର୍ଣ୍ଣାଭ ପୃଷ୍ଠା ମଣ୍ଡନ କରିଛି ।

ଧର୍ମପଦରେ ଯଥାର୍ଥରେ କୁହାଯାଇଥଛି - ''ଫୁଲର ମହକ ଭାସିଯାଏ ବାୟୁସ୍ରୋତରେ ଅନୁକୂଳ ପ୍ରବାହରେ । ଏହା ବାୟୁସ୍ରୋତର ଅନ୍ୟ ଦିଗରେ ଯାଇପାରେ ନାହିଁ, ମାତ୍ର ମଣିଷର ସୁଗୁଣ ସବୁ ଦିଗକୁ ବହିଯାଏ । ଫୁଲର ମହକ ଠାରୁ ଏହା ଅଧିକ ସ୍ଥାୟୀ, ହୃଦ୍ୟ ଓ ଶକ୍ତିଶାଳୀ ।'' ମହାରାଜା ଶ୍ରୀରାମଚନ୍ଦ୍ର ସତେ ଅବା ପ୍ରାତଃସ୍ମରଣୀୟ ଅଯୋଧ୍ୟାପତି ଦଶରଥ ତନୟଙ୍କ ଭଳି ନିଜସ୍ୱ ମଧୁମୟ ଗୁଣ ଗୌରବ ଓ ସୁବାସିତ ଚରିତ୍ର ବଳରେ ଆଜି ଅଜର, ଅମର ଓ ଅବିସ୍ମରଣୀୟ ।

ମଣିଷର ଚରିତ୍ର ହିଁ ତା'ର ବ୍ୟକ୍ତିତ୍ୱ । ସେହି ଦୃଷ୍ଟିରୁ ଶ୍ରୀରାମଚନ୍ଦ୍ର ଥିଲେ ବହୁମୁଖୀ ପ୍ରଚଣ୍ଡ ପ୍ରତିଭାଧାରୀ ଉତ୍ତୁଙ୍ଗ ବ୍ୟକ୍ତିତ୍ୱ ସଂପନ୍ନ ରାଜ ପୁରୁଷ । ତାଙ୍କର ବହୁମୁଖୀ ପ୍ରତିଭାଦୀପ୍ତ ବ୍ୟକ୍ତିତ୍ୱର କନକ କିରଣ ତାଙ୍କର କୀର୍ତ୍ତି କଳାପରେ ବିକିର୍ଣ୍ଣ ହୋଇ ବିସ୍ମୃତି ମଧ୍ୟରେ ଅଲିଭା ସ୍ମୃତିର ଦୀପାଳୀ ଜାଳୁଛି । ଏପରି ଜଣେ ବହୁମୁଖୀ ପ୍ରତିଭାଧାରୀ ବ୍ୟକ୍ତିଙ୍କର ପୂର୍ଣ୍ଣାଙ୍ଗ ବ୍ୟକ୍ତିତ୍ୱର ଚିତ୍ରାଙ୍କନ କରିବା ସମ୍ଭବ ପର ନୁହେଁ । ଏଠାରେ ତାଙ୍କର ମହିମାମୟ ବ୍ୟକ୍ତିତ୍ୱର ମାତ୍ର କେତୋଟି ଦିଗ ଓ ଦିଗନ୍ତ ଉପରେ ଆଲୋକପାତ କରିବାରେ ପ୍ରୟାସ କରାଯାଇଛି ।

ମହାରାଜା ଶ୍ରୀରାମଚନ୍ଦ୍ର ଥିଲେ ସର୍ବଗୁଣାଧାର । ସେ ଥିଲେ କର୍ମବୀର । ତାଙ୍କ ଜୀବନ ଥିଲା କର୍ମମୁଖର ।''ନିଜ ହିତ ପାଇ ଜାତ ନୁହେଁ ହିନ୍ଦୁ, ବିଶ୍ୱହିତେ ହିନ୍ଦୁ ପ୍ରତିରକ୍ତ ବିନ୍ଦୁ ।'' -କବିଙ୍କର ଏହି ମହାନ ପ୍ରେରଣାର ମଧୁମନ୍ତ୍ର ସଦାସର୍ବଦା ପ୍ରତିଧ୍ୱନିତ ହେଉଥିଲା ତାଙ୍କ ଜୀବନ ଯାତ୍ରା ପଥରେ । ସୁକର୍ମ ସଂପାଦନ

ଥିଲା ତାଙ୍କ ଜୀବନର ପରମ ବ୍ରତ । ସତ୍ ସାହସ, ମାନବିକତା ଓ ସୁକର୍ମ ତାଙ୍କୁ ମହାନ ବୀର ରୂପେ ଗଢ଼ି ତୋଳିଥିଲା । ପଛଘୁଞ୍ଚା ନାହିଁ ବୀରର ଜାତକେ । ସେ ପଛକୁ ଫେରି ନାହାନ୍ତି । ଲକ୍ଷ୍ୟ ପଥରେ ଅଗ୍ରସର ହୋଇଛନ୍ତି ସ୍ଥିର ଚିତ୍ତରେ । ଅମଡ଼ା ବାଟରେ ବାଟ ଫିଟେଇଛନ୍ତି । ଦିବା ରାତ୍ରି ପ୍ରଜାଙ୍କ ପାଇଁ, ପ୍ରଜାରଂଜନ କର୍ମ ପାଇଁ ଲାଗି ପଡ଼ିଛନ୍ତି । ତାଙ୍କର କର୍ମ ପରିସର କେବଳ ନିଜ ରାଜ୍ୟ, ଉତ୍କଳ କିମ୍ବା ଭାରତ ବର୍ଷ ପାଇଁ ନୁହେଁ-ସମଗ୍ର ବିଶ୍ୱପ୍ରତି ଅଭିପ୍ରେତ । କେବଳ ନିଜ ରାଜ୍ୟର ପ୍ରଜାକୁଳଙ୍କ ଶିକ୍ଷା, ସ୍ୱାସ୍ଥ୍ୟ, କଳା, ଭାସ୍କର୍ଯ୍ୟ, ଭାଷା, ସାହିତ୍ୟ, ସଂସ୍କୃତିର ବିକାଶ ପାଇଁ ଯେ ସେ ପ୍ରଶଂସାର୍ହ ତାହା ନୁହେଁ - ତତ୍କାଳୀନ ଉତ୍କଳର ପ୍ରାଣ କେନ୍ଦ୍ର କଟକର ବହୁମୁଖୀ ବିକାଶ ପାଇଁ ତାଙ୍କର ଦାନ ଅନୁପମ । କେବଳ ସେତିକି ନୁହେଁ ତାଙ୍କର କାର୍ଯ୍ୟ ପରିସର ପ୍ରସରି ଯାଇଥିଲା ନିଜ ଦେଶରୁ ଆନ୍ତର୍ଦେଶୀୟ ସ୍ତରଯାଏ; ସେ ନିଜ ରାଜ୍ୟ ଓ ପ୍ରଜାକୁଳଙ୍କ ଉନ୍ନତି ପାଇଁ ଚୀନ, ଜାପାନ, ଇଂଲଣ୍ଡ ଆଦି ଦେଶ ଭ୍ରମଣ କରି ନୂତନ ଓ ସମୃଦ୍ଧ ଅଭିଜ୍ଞତାରେ ରାଜ୍ୟ ଶାସନ କରିବା ନିମିତ୍ତ ନାନାଦି ପ୍ରକଳ୍ପ ଓ ପରିକଳ୍ପନା କରିଥିଲେ । ମହାରାଜା ପ୍ରଜାମାନଙ୍କୁ ନିଜ ପୁତ୍ରତୁଲ୍ୟ ସ୍ନେହ ସହାନୁଭୂତି ପ୍ରଦର୍ଶନ କରି ସେମାନଙ୍କର ମଙ୍ଗଳ କାମରେ ନିଜକୁ ନିୟୋଜିତ କରୁଥିଲେ । ନିଜର କର୍ତ୍ତବ୍ୟ ଓ କର୍ମ ପ୍ରବଣତାର ଆହ୍ୱାନରେ ସେ ଜୀବନର ସମସ୍ତ କର୍ମ ସଂପାଦନ କରିଛନ୍ତି । ବାସ୍ତବିକ କର୍ମବୀର ଶ୍ରୀରାମଚନ୍ଦ୍ର ତାଙ୍କ ଜୀବନ କାଳ ମଧ୍ୟରେ କର୍ମର ଯେଉଁ ମହାକାବ୍ୟ ରଚନା କରି ନିଜ ରାଜ୍ୟ ଓ ଦେଶ ବିଦେଶର ଉନ୍ନତି କରି ଯାଇ ଅଛନ୍ତି ସେହି ମହାକାବ୍ୟର ମହାନାୟକ ଥିଲେ ସ୍ୱୟଂ ନିଜେ ଶ୍ରୀରାମଚନ୍ଦ୍ର ।

ସେ କେବଳ କର୍ମବୀର ନୁହନ୍ତି, ସେଥିରେ ସ୍ଥିତପ୍ରଜ୍ଞ ଓ ଗଭୀର ଈଶ୍ୱର ବିଶ୍ୱାସୀ । ନିଜ ଆଖି ଆଗରେ ପୂଜ୍ୟ ପିତାମାତା, ପ୍ରାଣ ପ୍ରିୟା ପତ୍ନୀ, ଅଲିଅଳି କନ୍ୟା-ସମସ୍ତେ ତାଙ୍କୁ ଛାଡ଼ି କରି ଆରପାରିକୁ ଚାଲି ଯାଇଛନ୍ତି -ତାଙ୍କୁ ଏକା କରି । ମାତ୍ର ଏମାନଙ୍କ ବିୟୋଗରେ ସେ ଭାଙ୍ଗି ପଡ଼ି ନାହାନ୍ତି । ପ୍ରଭୁ ପାଦପଦ୍ମରେ ମନପ୍ରାଣ ଢାଳି, ତାଙ୍କ ଇଚ୍ଛାକୁ ପାଥେୟ କରି ସେ ଶାନ୍ତି-ସନ୍ତୋଷ ଲାଭ କରିଛନ୍ତି ଏବଂ ନିଜର ପ୍ରଜାରଂଜନ ଶାସନ କର୍ମରେ କର୍ତ୍ତବ୍ୟରତ ରହିଛନ୍ତି । ସ୍ନେହମୟୀ କନ୍ୟା ଶ୍ରୀପଦ ମଞ୍ଜରୀଙ୍କ ମୃତ୍ୟୁର ପରଦିନ ତାଙ୍କର ଜଣେ ସହକର୍ମୀଙ୍କୁ ଯେଉଁ ପତ୍ର ଦେଇଥିଲେ ତହିଁରୁ ତାଙ୍କ ସ୍ଥିତପ୍ରଜ୍ଞତା ଓ ଗଭୀର ଈଶ୍ୱର ବିଶ୍ୱାସର ଜ୍ୱଳନ୍ତ ପ୍ରମାଣ ମିଳେ । ସେ ଲେଖିଥିଲେ -‘‘ସର୍ବଶକ୍ତିମାନ ପରମ ପିତା ମୋତେ ଯେଉଁ ପରିସ୍ଥିତିରେ ପଠାଇଥିଲେ ସେହି ପରିସ୍ଥିତି ସହିତ ମୁଁ ସାଲିସ କରିନେଇଛି । ଯଦିଓ କ୍ଷଣିକ ପାଇଁ ଦୁନିଆ ଅନ୍ଧାର ଦେଖାଯାଏ ଏବଂ ହୃଦୟ ଦୁଃଖ ଯନ୍ତ୍ରଣାରେ ଛଟପଟ ହୁଏ । ତଥାପି ଈଶ୍ୱରଙ୍କ ରାଜ୍ୟରେ ଅମଙ୍ଗଳର ସ୍ଥାନ ନାହିଁ । ଭଗବାନଙ୍କର ଗୌରବଗାନରେ ପ୍ରକୃତିର ସମସ୍ତ କର୍ମ ଯେ ଅଭିପ୍ରେତ ।’’ ଏତ ସାଧାରଣ ମଣିଷର ଭାଷା ନୁହେଁ -ଜଣେ ଋଷିପ୍ରାଣ ସ୍ଥିତପ୍ରଜ୍ଞର ଭାଷା । ସତରେ ଥିଲେ ଜଣେ ସ୍ଥିତପ୍ରଜ୍ଞ ରାଜର୍ଷି ।

ସେ ଥିଲେ ଦୟା, କ୍ଷମା, ସ୍ନେହ, ଶାନ୍ତିର ମୂର୍ତ୍ତିମନ୍ତ ଦେବତା । ତାଙ୍କଠାରେ ଉଚ୍ଚନୀଚ ଭାବ ନଥିଲା । ସେ ପୂଜାରୀ ଚାକରଙ୍କୁ ମଧ୍ୟ ନିଜ ପୁତ୍ରକନ୍ୟା ଭଳି ସ୍ନେହ କରୁଥିଲେ । ତାଙ୍କ ହୃଦୟ ଥିଲା କୁସୁମଠୁଁ କୋମଳ ପୁଣି ବଜ୍ରଠୁଁ କଠିନ । ଏତେ ଦୟାର୍ଦ୍ର, ଶ୍ରଦ୍ଧାଶୀଳ ଓ ଅମାୟିକ ହୋଇଥିଲେ ମଧ୍ୟ ଅନ୍ୟାୟ କିମ୍ବା ସ୍ୱେଚ୍ଛାକୃତ ଦୋଷ ଦେଖିଲେ ସେ କଦାପି ବରଦାସ୍ତ କରୁ ନଥିଲେ । କଠୋର ହସ୍ତରେ ଦମନ କରୁଥିଲେ । ମହାରାଜାଙ୍କ ପାରିବାରିକ, ସମାଜିକ ତଥା ପ୍ରଶାସନିକ ଜୀବନ ଥିଲା ସାଫଲ୍ୟ ମଣ୍ଡିତ । ସେ ଥିଲେ ଜଣେ ଆଦର୍ଶ ପିତା ଓ ସ୍ନେହୀପିତା ଏବଂ ଜଣେ ଅଭିଜ୍ଞ ଗୃହସ୍ଥ । ତାଙ୍କ ପାରିବାରିକ ଜୀବନ ଥିଲା ମଧୁମୟ । ସେ ଥିଲେ ଜଣେ ଖାଣ୍ଟି ଓଡ଼ିଆ ଓ ଓଡ଼ିଆ ସମାଜର ସଂସ୍କୃତିର ପ୍ରତୀକ । ତାଙ୍କର ଚାଲିଚଳଣୀ, ଆଚାର ବ୍ୟବହାର, କଥାବାର୍ତ୍ତା ସମସ୍ତଙ୍କ ସଂଗେ ସବୁବେଳେ ଥିଲା ମଧୁସିକ୍ତ ଓ ସୌଜନ୍ୟପୂର୍ଣ୍ଣ । ସେ ଥିଲେ ଜଣେ ଧର୍ମ ନିରପେକ୍ଷ ରାଜପୁରୁଷ । ହିନ୍ଦୁ ମୁସଲମାନ, ଖ୍ରୀଷ୍ଟିୟାନ୍, ବ୍ରାହ୍ମ ଆଦି ଧର୍ମ ଓ ଧର୍ମୋପାସନା ପ୍ରତି ସେ ଥିଲେ ଉଦାରମନା ଏବଂ ଏ ଦିଗରେ ତାଙ୍କର ବଦାନ୍ୟତା ଏବେ ମଧ୍ୟ ଅପାଶୋରା ହୋଇ ରହିଛି ।

ମହାରାଜା ପ୍ରଜାମାନଙ୍କର ସୁଖଦୁଃଖର ସାଥୀ ଥିଲେ । ଶୁଣାଯାଏ ସେ ଦେବାନାଂ ପ୍ରିୟ ପ୍ରଜାବତ୍ସଳ ଅଶୋକଙ୍କ ଭଳି ରାତ୍ରିରେ ଛଦ୍ମ ବେଶରେ ବୁଲି ପ୍ରଜାମାନଙ୍କର ହାରି ଗୁହାରି ବୁଝୁଥିଲେ ।

ମହାରାଜା ଥିଲେ ଦେଶପ୍ରେମୀ, ଉତ୍କଳ ଜନନୀଙ୍କର ଅଶ୍ରୁମୋଚନ ପାଇଁ ଉତ୍କଳର ସ୍ୱତନ୍ତ୍ର ପ୍ରଦେଶ ଗଠନରେ ସେ ହୋଇଥିଲେ ଜଣେ ଅଗ୍ରଣୀ ସେନାନାୟକ । ଗୁଣ ଚିହ୍ନେ ଗୁଣିଆ ନ୍ୟାୟରେ ମହାରାଜଙ୍କ ଭଳି ଦେଶପ୍ରେମୀ, ମହାନୀୟ ଓ ଉଦାରମନାଙ୍କୁ ଉତ୍କଳ ଗୌରବ ମଧୁସୂଦନ ଠିକ୍ ଭାବେ ଚିହ୍ନିଥିଲେ । ତେଣୁ ଉତ୍କଳ ସମ୍ମିଳନୀ ଭଳି ଓଡ଼ିଆ ଭାଷା ଓ ମୁକ୍ତି ସଂଗ୍ରାମରେ ଉଭୟେ ଯାକ ଅଗ୍ରଣୀ ସେନାନୀ ରୂପେ ସଖାର ଭୂମିକାରେ ଅବତୀର୍ଣ୍ଣ ହୋଇଥିଲେ । ମହାଭାରତ ଯୁଦ୍ଧରେ କୃଷ୍ଣାର୍ଜୁନ ଭଳି ଉକ୍ତ ସଂଗ୍ରାମରେ ଶ୍ରୀରାମ ସାଜିଛନ୍ତି ଅର୍ଜୁନ ଓ ମଧୁବାବୁ ସାଜିଛନ୍ତି ଶ୍ରୀକୃଷ୍ଣ । ସେଇଥିପାଇଁ ତ ଉତ୍କଳ ସମ୍ମିଳନୀରେ ପ୍ରଥମ ଅଧିବେଶନ ( ୧୯୦୩ ମସିହା) ରେ ସେ ସଭାପତିର ଆସନ ଅଳଂକୃତ କରିଥିଲେ । ଏହି ଅଧିବେଶନରେ ଦେଶ ଓ ଜାତି ଉଦ୍ଦେଶ୍ୟରେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ପ୍ରସଙ୍ଗରେ ତାଙ୍କର ସାର ଗର୍ଭକ ଉଦ୍‌ବୋଧନ ଉତ୍କଳବାସୀଙ୍କୁ ଅସରନ୍ତି ପ୍ରେରଣା ଦାନ କରିଥିଲା ।

ମହାରାଜା ଶ୍ରୀରାମଚନ୍ଦ୍ର ଭୋଗୀ ନଥିଲେ -ସେ ଥିଲେ ତ୍ୟାଗୀ, ଭୋଗ ବିଳାସ ଓ ଐଶ୍ୱର୍ଯ୍ୟ ମଧ୍ୟରେ ବଢ଼ିଥିଲେ କିମ୍ବା ସବୁ ପ୍ରକାର ସୁବିଧା ଥିଲେ ମଧ୍ୟ ପଦ୍ମପତ୍ରରେ ନୀର ଭଳି ସେ ଭୋଗ ବିଳାସ ପ୍ରତି ଥିଲେ ବିତସ୍ପୃହ । ଏତେ ବଡ଼ ରାଜ୍ୟ, କୋଟିକୋଟି ଟଙ୍କା, ଅମାପ ଧନରତ୍ନର ଅଧିକାରୀ ହୋଇଥିଲେ ମଧ୍ୟ ନିଜପାଇଁ ପଇସାଟିଏ ମଧ୍ୟ ଖର୍ଚ୍ଚ କରୁନଥିଲେ । ସେ କହୁଥିଲେ -''ରାଜ୍ୟ ମୋର ପ୍ରକୃତ ସମ୍ପତ୍ତି ନୁହେଁ କି ରାଜକୋଷ ମୋର ହାତ ବାକ୍ସ ନୁହେଁ । ରାଜ୍ୟର ଧନ ପ୍ରଜାଙ୍କର । ଏଥିରେ ମୋର ଅଧିକାର ନାହିଁ ।'' ବାସ୍ତବିକ ତାଙ୍କର ତ୍ୟାଗ କଥା ଭାବିଲେ ଶାସନର ସ୍ୱାତନ୍ତ୍ର୍ୟ ପାଇଁ । ବାସ୍ତବିକ ତାଙ୍କର ପ୍ରଜାରଂଜକ ଲୋକାଭିମୁଖୀ ରାଜତନ୍ତ୍ର ଶାସନ ଥିଲା ପ୍ରକୃତ ପକ୍ଷେ ରାଜତନ୍ତ୍ର ବେଶଧାରୀ ଜନ ମଙ୍ଗଳକାରୀ ଗଣତନ୍ତ୍ର ଶାସନ । ସେ ଗଣତନ୍ତ୍ର ଶାସନର ଭିତ୍ତି ପ୍ରସ୍ତର ସ୍ଥାପନ କରିଥିଲେ ।

ସେ କାଳରେ ଛୋଟ ଅଣ-ଅସାରିଆ ରେଳପଥ ନିର୍ମାଣ, ପୁନଶ୍ଚ ତାକୁ ଶିମିଳିପାଳ ପର୍ଯ୍ୟନ୍ତ ପ୍ରସାରଣ, ବିଦ୍ୟୁତ ପ୍ରକଳ୍ପ ଓ ବୁଢ଼ାବଳଙ୍ଗ ଉତ୍ପତ୍ତିସ୍ଥଳରେ ବୃହତ ଜଳ ଭଣ୍ଡାର ନିର୍ମାଣ, ଆଦି ପରିକଳ୍ପନା ତାଙ୍କ ସୃଜନୀଶୀଳ ମାନସିକତା ଓ ସୁଦୂର ପ୍ରସାରୀ ଦୃଷ୍ଟି ଭଙ୍ଗୀର ପରିଚୟ ଦିଏ । ସେ ଥିଲେ ପ୍ରଜାରଂଜକ ନରପତି । ପ୍ରଜାଙ୍କ ମଙ୍ଗଳ ଉଦ୍ଦେଶ୍ୟରେ ସମସ୍ତ ପରିକଳ୍ପନା ଥିଲା ତାଙ୍କର ସ୍ୱପ୍ନ । ପ୍ରଜାଙ୍କ ହିତ ପାଇଁ ଜୀବନର ଶେଷ ରକ୍ତବିନ୍ଦୁ ଯାଏ ସେ ନିଜକୁ ନିୟୋଜିତ କରିବାର ଦୃଢ଼ ସଂକଳ୍ପ କରିଥିଲେ; ମାତ୍ର ତାଙ୍କର ସମସ୍ତ ସ୍ୱପ୍ନ ଓ ସମସ୍ତ ସଂକଳ୍ପ ରୂପ ନେବା ପୂର୍ବରୁ ପ୍ରଜାଙ୍କ ପାଇଁ ଶିମିଳିପାଳ ଯାଏ ରେଳପଥ ନିର୍ମାଣ ଉଦ୍ଦେଶ୍ୟରେ ରେଳ କର୍ମଚାରୀଙ୍କ ସହିତ ବନକୁ ମୃଗୟା କରିବାକୁ ଯାଇ ଅଚାନକ ମୃତ୍ୟୁର ଶିକାର ହୋଇଥିଲେ । ପ୍ରଜାମଙ୍ଗଳ ପାଇଁ ଏପରି ଆତ୍ମତ୍ୟାଗର ତୁଳନା ନାହିଁ । ତାଙ୍କ ମୃତ୍ୟୁରେ ମୟୂରଭଞ୍ଜ ତା'ର ଗୌରବୋଜ୍ଜ୍ୱଳ ନରପତି ହରାଇଲା, ଓଡ଼ିଶା ତା'ର ଉନ୍ନତ ମଣି ହରାଇଲା ଏବଂ ଭାରତ ତା'ର ସୁଯୋଗ୍ୟ ସନ୍ତାନ ହରାଇଲା । ଆଜିର ଗଣତନ୍ତ୍ର ଶାସନରେ ମଧ୍ୟ ତାଙ୍କର ପ୍ରଜାରଂଜକ ଶାସନ ପାଇଁ ଆଜି ଲୋକେ ଝୁରୁଛନ୍ତି । ସେ ପ୍ରକୃତରେ ଥିଲେ ଅଯୋଧ୍ୟାପତି ଦଶରଥ ତନୟ ଭଗବାନ ଶ୍ରୀରାମଚନ୍ଦ୍ରଙ୍କ ଭଳି ପ୍ରାତଃ ସ୍ମରଣୀୟ । ସେ ମୟୂରଭଞ୍ଜରେ ସୁବର୍ଣ୍ଣଯୁଗ ଆଣି ଦେଇଛନ୍ତି । ସେ ସେହି ଯୁଗର ସ୍ୱର୍ଣ୍ଣ ପ୍ରଦୀପ ହୋଇ ଜଳୁଛନ୍ତି । ଇତିହାସର ପ୍ରତିଟି ପୃଷ୍ଠା ସ୍ୱର୍ଣ୍ଣାଭ ହୋଇଉଠୁଛି । ସେହି ସ୍ୱର୍ଣ୍ଣ ପ୍ରଦୀପ ଓ ଅନିର୍ବାଣ ଜ୍ୟୋତି ଶିଖାରେ ଆଜିର ମାନବ ସମାଜ, ସଂସ୍କୃତି ଓ ଶାସକକୁଳ ନିଜ ଜୀବନାଦର୍ଶର ପ୍ରତିଟି ପୃଷ୍ଠା ଉଜ୍ଜ୍ୱଳ କରି ପାରିଲେ ମହାରାଜଙ୍କ ଉତ୍ତର ଦାୟାଦ ରୂପେ ନିଜସ୍ୱ ଚଲାପଥ ପୁଷ୍ପିତ ଓ ସୁରଭିତ ହେବ -ଏଥିରେ ଆଶାର ଦିଗ୍‌ବଳୟ ଉଜ୍ଜ୍ୱଳ ହୋଇ ଉଠେ ।

# ଅଧ୍ୟାପକ, ଗବେଷକ, ନିଗମାନନ୍ଦ ମାର୍ଗ, ଦାମୋଦରପୁର, ତକତପୁର, ବାରିପଦା-୭୫୭ ୦୦୩

# ବିଧାନ ସଭାରେ କାନ୍ତକବିଙ୍କ ସ୍ମୃତି

ପ୍ରଭୁକଲ୍ୟାଣ ମହାପାତ୍ର

ସାହିତ୍ୟ ଜରିଆରେ ସାଧାରଣ ମଣିଷ ଚରିତ୍ର ସହିତ ରାଜନୀତି କ୍ଷେତ୍ରରେ ଉନ୍ନତି ଆଣିବା ପାଇଁ କାନ୍ତକବି ବ୍ୟଙ୍ଗ ସାହିତ୍ୟ ମାଧ୍ୟମରେ ଯେଭଳି ପ୍ରୟାସ କରିଥିଲେ ତାହା ଓଡ଼ିଶାରେଅନ୍ୟତ୍ର ପରିଲକ୍ଷିତ ହୁଏନାହିଁ । ତେଣୁ କାନ୍ତକବିଙ୍କ ବିୟୋଗରେ କେବଳ ଓଡ଼ିଆ ସାହିତ୍ୟ ଜଗତରେ ନୁହେଁ ବରଂ ସାଧାରଣ କ୍ଷେତ୍ରରେ ମଧ୍ୟ ଏକ ଅପୂରଣୀୟ କ୍ଷତି ଘଟିଛି । ସେଥିଯୋଗୁଁ ତାଙ୍କର ଅଭାବ ନିଶ୍ଚିତ ଭାବେ ଓଡ଼ିଆ ଭାଷାରେ ଅପୂର୍ଣ୍ଣ ରହିବ, ଏଥିରେ ତିଳେମାତ୍ର ସନ୍ଦେହର ଅବକାଶ ନାହିଁ ବୋଲି ବିଶିଷ୍ଟ ବ୍ୟକ୍ତିମାନେ ମତବ୍ୟକ୍ତ କରିଛନ୍ତି । ଏହା କାନ୍ତକବିଙ୍କ ସାହିତ୍ୟ ସମ୍ପର୍କିତ କୌଣସି ମୂଲ୍ୟାୟନ ନୁହେଁ କିମ୍ବା ତାହା ମଧ୍ୟ ତାଙ୍କ ବିୟୋଗ ଜନିତ ସ୍ମୃତିସଭାରେ ପ୍ରକଟିତ ଖେଦୋକ୍ତିର କୌଣସି ଅଂଶବିଶେଷ ନୁହେଁ । ମାତ୍ର ଏହା ହେଉଛି ଓଡ଼ିଶା ବିଧାନସଭାରେ କାନ୍ତକବିଙ୍କ ଦେହାନ୍ତ ପରେ ଗୃହୀତ ହୋଇଥିବା ଶୋକ ପ୍ରସ୍ତାବର କିୟଦଂଶ ।

'ବନ୍ଦେ ଉତ୍କଳ ଜନନୀ' ଜାତୀୟ ସଙ୍ଗୀତର ସ୍ରଷ୍ଟା କାନ୍ତକବି ଲକ୍ଷ୍ମୀକାନ୍ତ ମାହାପାତ୍ରଙ୍କର ୧୯୫୩ ମସିହା ଫେବୃଆରୀ ୨୪ ତାରିଖରେ ଦେହାବସାନ ଘଟିଥିଲା । ତା'ର ଏକ ସପ୍ତାହ ଭିତରେ ଅର୍ଥାତ୍ ମାର୍ଚ୍ଚ ୨ ତାରିଖରେ ଓଡ଼ିଶା ବିଧାନସଭାରେ ତାଙ୍କ ସ୍ମୃତିପ୍ରତି ଶ୍ରଦ୍ଧାଞ୍ଜଳି ନିବେଦନ ପାଇଁ ଶୋକପ୍ରସ୍ତାବ ଆଗତ କରାଯାଇଥିଲା । ସେତେବେଳେ ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀ ଶୋକପ୍ରସ୍ତାବ ଆଗତ କରି ଦର୍ଶାଇଥିଲେ 'ଯେହେତୁ କାନ୍ତକବି ସାରା ଓଡ଼ିଶାରେ ସୁପରିଚିତ, ତାଙ୍କ ବିଷୟରେ ମୁଁ ବା ଅଧିକ କ'ଣ କହିବି । ଏକଥା ସମସ୍ତେ ଜାଣନ୍ତି ଯେ, ସେ ବହୁଦିନ ଧରି ରୋଗଶଯ୍ୟାରେ ପଡ଼ିଥିଲେ । ତାଙ୍କ ମୃତ୍ୟୁରେ ଦୁଃଖପ୍ରକାଶ କରବା ଲାଗି ମୁଁ ସମସ୍ତଙ୍କୁ ଅନୁରୋଧ କରୁଛି ।'' ସେହିପରି ବିରୋଧୀ ଦଳର ନେତା ଡଃ ଶ୍ରଦ୍ଧାକର ସୁପକାର ଉଲ୍ଲେଖ କରିଥିଲେ ଯେ, ''ଶ୍ରୀ ଲକ୍ଷ୍ମୀକାନ୍ତ ମହାପାତ୍ର ତାଙ୍କର କବିତା ଓ ଲେଖାଦ୍ୱାରା ବିଶେଷତଃହାସ୍ୟରସ ଲେଖା ଜରିଆରେ 'ଡଗର' ଏବଂ ଅନ୍ୟାନ୍ୟ ପତ୍ରପତ୍ରିକା ସାହାଯ୍ୟରେ ଓଡ଼ିଆ ସାହିତ୍ୟର ସେବା କିର ଆସିଛନ୍ତି । ସେହି ସେବା ବାସ୍ତବିକ ଆମ ଦେଶ ଭୁଲିପାରିବ ନାହିଁ । ସେ ଯଦିଓ ତାଙ୍କର ଦୁଃଖମୟ ଦୈହିକ ଜୀବନରୁ ମୁକ୍ତି ଲାଭ କରିଛନ୍ତି ତଥାପି ସାହିତ୍ୟିକ ଜଗତରେ ସେ ଚିରଦିନ ଅମର ହୋଇ ରହିବେ । ତାଙ୍କ ମୃତ୍ୟୁରେ କେବଳ ଯେ, ସାହିତ୍ୟ କ୍ଷେତ୍ରରେ ଅପୂରଣୀୟ କ୍ଷତି ଘଟିଛି ତା ନୁହେଁ, ବରଂ ସାହିତ୍ୟ ଜରିଆରେ ଦେଶର ସାଧାରଣ ମଣିଷ ଚରିତ୍ର, ରାଜନୀତି କ୍ଷେତ୍ରରେ ଉନ୍ନତି ଆଣିବା ପାଇଁ ବ୍ୟଙ୍ଗ ସାହିତ୍ୟ ମାଧ୍ୟମରେ ସେ ଯେଭଳି ଓଡ଼ିଆ ସାହିତ୍ୟର ସମୃଦ୍ଧି ସାଧନ ନିମନ୍ତେ ଚେଷ୍ଟା କରିଥିଲେ, ସେହିପରି ଲୋକ ଆମ ଓଡ଼ିଶାରେ ଆଉ ନାହାନ୍ତି । ତେଣୁ ତାଙ୍କ ବିୟୋଗରେ କେବଳ ଓଡ଼ିଆ ସାହତ୍ୟ କ୍ଷେତ୍ରରେ ନୁହେଁ, ସାଧାରଣ କ୍ଷେତ୍ରରେ ମଧ୍ୟ ଗୋଟିଏ ଅପୂରଣୀୟ କ୍ଷତି ଘଟିଛି ।'' ଅପର ପକ୍ଷେ ବାଚସ୍ପତି ନନ୍ଦକିଶୋର ଦାସ ଜଣାଇଥିଲେ ଯେ, ''କାନ୍ତକବିଙ୍କ କଥା ମୁଁ ବା ଅଧିକ କ'ଣ କହିବି ? ମୁଁ ତାଙ୍କ ବ୍ୟକ୍ତିଗତ ସମ୍ପର୍କରେ ଆସିଛି । ତାଙ୍କର ପ୍ରଧାନ କବିତା 'ଜୀବନ ସଂଗୀତ' ୧୯୩୧ ମସିହାରେ ଲେଖା ହୋଇଥିଲା । ମୋର ସେତେବେଳେ ପାରିବାରିକ ଅବସ୍ଥା ଯାହା ସେହି ଦୃଷ୍ଟିରୁ ସେ ମୋତେ କହୁଥିଲେ ତୁମକୁ ଲକ୍ଷ୍ୟକରି ଏହା ଲେଖାଯାଇଛି । ତାଙ୍କର ସରସ କବିତା ପରି ମୁଁ ଆଉ ଅନ୍ୟତ୍ର ଦେଖିନାହିଁ । ତାଙ୍କର ଅଭାବ ଯେ, ଓଡ଼ିଆ ଭାଷାରେ ଅପୂର୍ଣ୍ଣ ରହିବ, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ । ବର୍ତ୍ତମାନ ମୁଁ ଆଶା କରୁଛି ଆମର ଆସେମ୍ଲି ସଭ୍ୟମାନେ ମିନିଟିଏ କାଳ ଦଣ୍ଡାୟମାନ ହୋଇ ସ୍ୱର୍ଗତ ଆତ୍ମା ପ୍ରତି ଶ୍ରଦ୍ଧା ଜଣାଇବେ ।''

ଲକ୍ଷ୍ମୀକାନ୍ତ ମହାପାତ୍ର ସମଗ୍ର ଓଡ଼ିଶାରେ କାନ୍ତକବି ନାମରେ ପରିଚିତ । ତେବେ ଏହି କାନ୍ତକବି ଉପାଧି କୌଣସି ରାଜଦତ୍ତ କିମ୍ବା ଅନୁଷ୍ଠାନ ପ୍ରଦତ୍ତ ଭୂଷଣ ନୁହେଁ । ତାହା ହେଉଛି ଲକ୍ଷ୍ମୀନାରାୟଣ ସାହୁଙ୍କ ଅଧକ୍ଷତାରେ ଅନୁଷ୍ଠିତ ଏକ ଭବ୍ୟ ସମ୍ବର୍ଦ୍ଧନା ଉତ୍ସବରେ ଉପସ୍ଥିତ ଅଗଣିତ ଗୁଣମୁଗ୍ଧ ଓଡ଼ିଆ ପାଠକଙ୍କ ବିଦ୍‌ଗଧ ହୃଦୟର ସ୍ୱତଃସ୍ଫୂର୍ତ୍ତ ଶ୍ରଦ୍ଧାର୍ଯ୍ୟ । ସେହିପରି କାନ୍ତକବିଙ୍କ ରଚିତ 'ବନ୍ଦେ ଉତ୍କଳ ଜନନୀ' ଦେଶାତ୍ମବୋଧକ ସଂଗୀତ ରାଜ୍ୟ ସରକାରଙ୍କ ଆନୁଷ୍ଠାନିକ ସ୍ୱୀକୃତିପ୍ରାପ୍ତ ଜାତୀୟ ସଂଗୀତ ନୁହେଁ । ତଥାପ କୋଟି କୋଟି ଓଡ଼ିଆ ପ୍ରାଣକୁ ସ୍ପର୍ଶ କରିଥିବାରୁ ତାହା ଆଜି ଓଡ଼ିଶାର ଜାତୀୟ ସଂଗୀତ ମର୍ଯ୍ୟାଦାର ଅଧିକରାରୀ । ସେଥିଯୋଗୁଁ ବିଜୁ ପଟ୍ଟନାୟକ ନବେ ଦଶକରେ ମୁଖ୍ୟମନ୍ତ୍ରୀ ଥିବାବେଳେ ବାଚସ୍ପତି ଯୁଧିଷ୍ଠିର ଦାସ ଓଡ଼ିଶା ବିଧାନସଭାରେ 'ବନ୍ଦେ ଉତ୍କଳ ଜନନୀ' ସଂଗୀତ ପରିବେଷଣ ପରମ୍ପରା ସୃଷ୍ଟି କରି ଉଭୟ ଦିବଂଗତ କବି ଏବଂ ଓଡ଼ିଶାବାସୀଙ୍କ ଭାବାବେ ପ୍ରତି ଯଥାର୍ଥ ସମ୍ମାନ ପ୍ରଦର୍ଶନ କରିଛନ୍ତି । ମାତ୍ର ରାଜ୍ୟ ସରକାର ଅଦ୍ୟାବଧି ସେହି ସଂଗୀତକୁ ଓଡ଼ିଶାର ଜାତୀୟ ସଂଗୀତ ମାନ୍ୟତା ପ୍ରଦାନ ନକରି କେବଳ ସଂକୀର୍ଣ୍ଣତାର ପରିଚୟ ଦେଇନାହାନ୍ତି, ପରନ୍ତୁ ପୂଜ୍ୟପୂଜା ପରମ୍ପରା ପ୍ରତି ମଧ ଘୋର ଅସମ୍ମାନ ଦେଖାଇଛନ୍ତି ।

କାନ୍ତକବିଙ୍କ ପ୍ରଚଣ୍ଡ ଦେଶପ୍ରେମ ତାଙ୍କ ରଚିତ ଦେଶାତ୍ମବୋଧକ ସଂଗୀତ ଗୁଡ଼ିକରୁ ସ୍ପଷ୍ଟ ଅନୁମେୟ । ପ୍ରାକ୍-ସ୍ୱାଧୀନତା କାଳରେ ତାଙ୍କର ଜ୍ୱାଳାମୟୀ ତଥା ଅଗ୍ନିବର୍ଷୀ ଜାତୀୟବୋଧ ସଂଗୀତ ଗୁଡ଼ିକ ବିଶେଷ କରି ଯୁବସମାଜ ମନରେ ବିପ୍ଳବର ବହ୍ନି ପ୍ରଜ୍ୱଳିତ କରିଥିଲା । ୧୯୧୨ ମସିହାରେ ବାଲେଶ୍ୱରଠାରେ ଅନୁଷ୍ଠିତ, ଉତ୍କଳ ସମ୍ମିଳନୀର ବିଶେଷ ଅଧିବେଶନରେ ପରିବେଷଣ ଲାଗି 'ବନ୍ଦେ ଉତ୍କଳ ଜନନୀ' ଆବାହନୀ ସଂଗୀତ ରଚନା କରି ସେ ସୁପ୍ତ ଓଡ଼ିଆ ଜାତି ମନରେ ଜାଗରଣ ସୃଷ୍ଟି କରିଥିଲେ । ୧୯୨୮ ମସିହାରେ ଭଦ୍ରକର କୁଆଁସ ପଡ଼ିଆରେ ଅନୁଷ୍ଠିତ ରାଜନୈତିକ ସମ୍ମିଳନୀ ଉପଲକ୍ଷେ କାନ୍ତକବି, 'ଉଡ଼ାଇ ନିଶାଣ ବଜାଇ ଭେରି ଜଗାଇ ବିପୁଳ ପୁଲକ କମ୍ପ, ମନ୍ତ୍ରପୂତ ଅନଳ ଭେଦି ଏଜାତି ଯେ ଦିନ ଦେଲାରେ ଲମ୍ଫ, ଉଠିଲା ଗର୍ଜି ଦିପ୍ତ ଆସନି ସଘନ ଗଗନ ବକ୍ଷେ, ସୌର ଜଗତ ସ୍ତମ୍ଭିତ ହୋଇ ଚାହିଁଲା ମୁଗ୍ଧ ଚକ୍ଷେ' ରଚନା କରି ସମସ୍ତଙ୍କୁ ମନ୍ତ୍ରମୁଗ୍ଧ କରି ଦେଇଥିଲେ । ଫଳରେ ସେହି ରାଜନୈତିକ ସମ୍ମିଳନୀରେ ଅଧକ୍ଷତା କରୁଥିବା ଉତ୍କଳମଣି ଗୋପବନ୍ଧୁ ଦାସ କାନ୍ତକବିଙ୍କୁ କୁଣ୍ଢାଇ ଆନନ୍ଦରେ କାନ୍ଦି ପକାଇଥିଲେ ।

କେବଳ ସେତିକି ନୁହେଁ, 'କୋଟି କୋଟି କଣ୍ଠେ ଆଜି, ଉଠୁରେ ଗମ୍ଭୀରେ ବାଜି, ଉତ୍କଳର ଜୟଗୀତି ଉନ୍ମାଦନା ଭରା' ଦେଶାତ୍ମବୋଧକ ସଂଗୀତ ଶୁଣିବା ପରେ କୁଳବୃଦ୍ଧ ମଧୁସୂଦନ ଦାସ ଅତ୍ୟନ୍ତ ପ୍ରୀତ ହୋଇ କାନ୍ତକବିଙ୍କ ଉଦ୍ଦେଶ୍ୟରେ 'ଛେଲେର ମଡନ ଛେଲେ' ବୋଲି ଟିପ୍ପଣୀ ଦେଇଥିଲେ ।

ତେବେ ଏଭଳି ଜଣେ ଯୋଗଜନ୍ମା ସାରସ୍ୱତ ସାଧକଙ୍କ ସ୍ମୃତି ରକ୍ଷା ଲାଗି ଓଡ଼ିଶା ସରକାର ତାଙ୍କ ତିରୋଧାନର ପଚାଶ ବର୍ଷ ପରେ ମଧ ସାମାନ୍ୟତମ ଉଦ୍ୟମ କରିନାହାନ୍ତି । ସେଥିଯୋଗୁଁ ଆଜି ରାଜଧାନୀରେ କାନ୍ତକବିଙ୍କ ପ୍ରତିମୂର୍ତ୍ତିଟିଏ ସୁଦ୍ଧା ସ୍ଥାପିତ ହୋଇ ପାରିନାହିଁ କିମ୍ବା ତାଙ୍କ ନାମରେ ଭୁବନେଶ୍ୱର ସହରରେ କୌଣସି ଅନୁଷ୍ଠାନ, ପାର୍କ, ରାସ୍ତାଟିଏ ମଧ୍ୟ ନାମିତ କରାଯାଇପାରିନାହିଁ । ସବୁଠାରୁ ବିଡ଼ମ୍ବନାର ବିଷୟ ଯେ, 'ସବୁଥିରୁ ବଞ୍ଚିତ କି କେଉଁ ଯଶବାନା ଉଡ଼ାଇବହେ' ଭଳି ହୃଦୟ ବିଦାରକ ତଥା ଚିରନ୍ତନ ମୂଲ୍ୟବୋଧ ଭିତ୍ତିକ କାନ୍ତକବିଙ୍କ 'ଜୀବନ ସଂଗୀତ' ଗୁଡ଼ିକ ଆଜିସୁଦ୍ଧା ଆମର ଆକାଶବାଣୀ ଭଳି ଜଣେ ଉଚ୍ଚକୋଟିର ଜାତୀୟବାଦୀ କବିଙ୍କ ନାମରେ ସରକାର ସ୍ମାରକୀ ଡାକ ଟିକଟିଏ ମଧ ବର୍ତ୍ତମାନ ପର୍ଯ୍ୟନ୍ତ ପ୍ରକାଶ କରିପାରିଲେ ନାହିଁ । ତେଣୁ ଓଡ଼ିଶାର ଜାତୀୟ ସଂଗୀତ 'ବନ୍ଦେ ଉତ୍କଳ ଜନନୀ'ର ରଚୟତା କାନ୍ତକବିଙ୍କ ସ୍ଥାୟୀ ସ୍ମୃତିରକ୍ଷା କିଭଳି ଭାବରେ କରାଯାଇପାରିବ, ସେଥିନିମନ୍ତେ ପ୍ରତ୍ୟେକ ଓଡ଼ିଆ ଆଜି ଚିନ୍ତା କରିବାର ସମୟ ଉପଗତ ହୋଇଛି ।

# ଭି.ଆର୍. ୩/୨, ୟୁନିଟ୍ -୩, ରିଜର୍ଭ ବ୍ୟାଙ୍କ୍ ପଛପଟ, ଭୁବନେଶ୍ୱର

# କାନ୍ତକବି ଲକ୍ଷ୍ମୀକାନ୍ତ, ଉତ୍କଳ ସମ୍ମିଳନୀ ଓ ଓଡ଼ିଆ ସାହିତ୍ୟ

ପବିତ୍ର ପାଣିଗ୍ରାହୀ

ଓଡ଼ିଆ ସାହିତ୍ୟକୁ ଋଦ୍ଧିମନ୍ତ କରିଥିବା କବି, ଔପନ୍ୟାସିକ ଓ ପ୍ରାବନ୍ଧିକମାନଂକ ମଧ୍ୟରେ କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର ଏକ ଗୌରବୋଦ୍ଦୀପ୍ତ ନାମ । ସେ ଏକାଧାରରେ ଥିଲେ ଜଣେ କବି, କଥାକାର, ପ୍ରାବଂଧିକ, ନାଟ୍ୟକାର, ମରମୀ ଶିଶୁସାହିତ୍ୟିକ ଏବଂ ହାସ୍ୟରସର ଅନୁପମ ସ୍ରଷ୍ଟା । ଭାରତୀୟ ଜାତୀୟ କଂଗ୍ରେସ ଗଠନର ମାତ୍ର ତିନିବର୍ଷ ପରେ ୧୮୮୬ରେ ଅବିଭକ୍ତ ବାଲେଶ୍ୱର ଜିଲ୍ଲା ତଥା ଏବର ଭଦ୍ରକ ଜିଲ୍ଲାର ତାଳପଦା ଗ୍ରାମରେ ଏକ ସମ୍ଭ୍ରାନ୍ତ ପରିବାରରେ ଜନ୍ମଗ୍ରହଣ କରିଥିବା ଲକ୍ଷ୍ମୀକାନ୍ତ ଶୁଣିପାରିଥିଲେ ତତ୍କାଳୀନ ସମୟର ସ୍ୱର ଏବଂ ଜାତୀୟ ଚେତନାରେ ମର୍ମରିତ ହୋଇଥିଲା ତାଙ୍କର ଅନ୍ତର ।

କାଥାସମ୍ରାଟ ଫକୀରମୋହନଙ୍କୁ ନିଜର ସାହିତ୍ୟ ଗୁରୁ ଭାବେ ଗ୍ରହଣ କରିଥିବା କାନ୍ତକବି ଦୁରାରୋଗ୍ୟ ବ୍ୟାଧି କବଳିତ ହୋଇନଥିଲେ ନିଶ୍ଚୟ ଆହୁରି ଅନେକ ଦେଶାତ୍ମବୋଧକ ସଂଗୀତ ରଚନା କରିଥାନ୍ତେ ଏବଂ ନାଟକ ସାହିତ୍ୟର କର୍ଣ୍ଣଧାର ରୂପେ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ପ୍ରତିଭାତ ହୋଇଥାନ୍ତେ । 'ଚଟକ ଚନ୍ଦ୍ରହାସ ଚମ୍ପୂ' ବା 'ନବ ରାମାୟଣ' କିମ୍ବା 'ଭବିଷ୍ୟ ଭାରତ' ଭଳି ହାସ୍ୟ-ବ୍ୟଙ୍ଗର ଅମ୍ଳାନକୃତି ଭିତରେ ଦେଶର ଅସଂଖ୍ୟ ତ୍ରୁଟି, ବିଚ୍ୟୁତିର ସମାଲୋଚନାରେ ମୁଖର ହୋଇ ଉଠିଛି କବିଙ୍କ ଲେଖନୀ । ତାହା ସତ୍ୱେ ତାଂକ ଦେଶପ୍ରୀତିର ଚରମ ନିଦର୍ଶନ ଦେଖିବାକୁ ମିଳେ ତାଙ୍କର 'କୋଟିକୋଟି କଣ୍ଠେ ଆଜି, ଉଠୁରେ ଗମ୍ଭୀରେ ବାଜି, ଉତ୍କଳର ଜୟଗୀତି ଉନ୍ମାଦନା ଭରା' ବା 'ଭାଇହେ, ଏବେ ଅରଟ କାଟ, ଅରଟ ମୁକ୍ତିର ଚରମ ବାଟ' ପ୍ରଭୃତି ଅନେକ ସଂଗୀତରୁ । ତାଂକ ଭିତରେ ଦେଶପ୍ରେମର ଫଲ୍‌ଗୁ ପ୍ରବାହିତ ହୋଇ ନଥିଲେ ସେ ଗାନ୍ଧୀଙ୍କୁ ନିଜ ଜୀବନର ଧ୍ରୁବତାରା ରୂପେ ଗ୍ରହଣ କରିନଥାନ୍ତେ କିମ୍ବା ପିତାଙ୍କର ଆଦେଶକୁ ଭ୍ରୁକ୍ଷେପ ନକରି ଅସହଯୋଗ ଆନ୍ଦୋଳନରେ ଝାସ ଦେଇ କାରାବରଣ କରିନଥାନ୍ତେ ।

ରୋଗାକ୍ରାନ୍ତ କାନ୍ତକବିଙ୍କ ଶୁଷ୍କ ଜୀବନ-ମରୁଭୂମିରେ ଏକମାତ୍ର ସ୍ୱପ୍ନ ଓ ସଂଭାବନାର ମରୂଦ୍ୟାନ ଥିଲେ ପ୍ରାଣପ୍ରିୟା ସହଧର୍ମିଣୀ ଲବଙ୍ଗଲତା, ଯାହାଂକ ସାହଚର୍ଯ୍ୟ କ୍ରମେ ବିଭୁପ୍ରେମ ଓ ସ୍ୱଦେଶପ୍ରୀତିର ବନ୍ୟାରେ ପ୍ଲାବିତ ହୋଇଥିଲା ତାଙ୍କ ହୃଦୟକନ୍ଦର । 'ଭେଳା ମୋ ଯାଉଛି ବୁଡ଼ି, ରଖହେ ଜଗତ ସାଇଁ' ବା 'ଯେତିକି ଯେତିକି ଦୁଃଖ ଦେଉଥିବ ସେତିକି କୁଣ୍ଢାଇ ଧରିବି ହେ' ବା 'ହେ ମୋର ବାଇଆ ରାଜା, ଦେ ମୋତେ ବାଇଆ କରି' କିମ୍ବା 'ସବୁଥିରୁ ବଞ୍ଚିତ କରି, କେଉଁ ଯଶବାନା ଉଡ଼ାଇବ ହେ' ପ୍ରଭୃତି ସଂଗୀତ ମାଧ୍ୟମରେ ନିଜ ମନର ସମସ୍ତ ଦୁଃଖ, ଗ୍ଲାନିକୁ ଅଜାଡ଼ି ଦେଇଥିଲେ ବିଭୁପଦରେ । ତାଙ୍କର ନାଟକଗୁଡ଼ିକ ଥିଲା ସଂସ୍କାରମୁଖୀ ଏବଂ ପ୍ରବଂଧଗୁଡ଼ିକ ଥିଲା ଜ୍ଞାନଗର୍ଭିତ ଓ ଅଭିଜ୍ଞତା ପ୍ରସୂତ । ଜୀବନରେ ପ୍ରତିନିୟତ ଘଟୁଥିବା ଅସଂଖ୍ୟ ଛୋଟଛୋଟ ଘଟଣାକୁ ନେଇ ପ୍ରାୟ ସତୁରୀଟି ଗଳ୍ପ ଲେଖି 'ଜୀବନକୁ ନେଇତ ଗପ', ଏକଥା ପ୍ରମାଣ କରିଯାଇଛନ୍ତି ।

'ଶାଳନ୍ଦୀ'ର କବି ଲକ୍ଷ୍ମୀକାନ୍ତ ଭୀଷଣ ଭଲ ପାଉଥିଲେ ମାଆ ଓ ମାଟିକୁ । ନିଦାଘର ଶାଳନ୍ଦୀକୁ କହୁଥିଲେ, ତା'ର ପୂତ ପବିତ୍ର ପଣତକାନିରେ ଘଡ଼ିକ ଲାଗି ବିଶ୍ରାମ ନେବେ ବୋଲି । ଶ୍ରାବଣର ଶାଳନ୍ଦୀ

ପାଖେ ଅଳି କରିଥିଲେ ତାଙ୍କ ଅନ୍ତରର ମୋହବନ୍ଧ ଭାଂଗିଦେଇ ତାଙ୍କ ହୃଦୟକୁ ଅନନ୍ତ ଆଡ଼କୁ ନେଇ ଯିବାକୁ । ଶରତର ଶାଳନ୍ଦୀକୁ କାନ୍ଦିକାନ୍ଦି ଶୁଣାଉଥିଲେ ନିଜର ଦୁଃଖ । ସତ୍ୟବାଦୀ ଯୁଗର ଦେଶପ୍ରୀତି ଓ ସବୁଜଯୁଗର ରୋମାଣ୍ଟିକ ପ୍ରବଣତାକୁ ଛାଡ଼ି ବ୍ୟାଧିର ଯାତନା ଯୋଗୁଁ ସେ ହୋଇ ଉଠିଥିଲେ ଉଚ୍ଛ୍ୱାସ-ପ୍ରବଣ ଓ ଅନ୍ତର୍ମୁଖୀ । ଜାତୀୟତା ସାଂଗକୁ ଅଧିଭୌତିକତା, ସ୍ୱଚ୍ଛନ୍ଦତାବାଦ, ରହସ୍ୟବାଦ, ବିଷାଦବୋଧ ଓ ଆଶାବାଦ ଆଦି ବିଭବରେ ରସସିକ୍ତ ତାଙ୍କ ଜୀବନର ସଂଗୀତ- 'ଜୀବନ ସଙ୍ଗୀତ' । ପ୍ରତୀକ୍ଷାରେ ବିତିଯାଏ ଚିରକାଳ କବିର -'ମୁକୁଳାଇ ମୋର ହୃଦୟ ଦୁଆର, ଚାହିଁ ରହିଛି ମୁଁ ତାହାରି ଲାଗି/ଏହି ପରା ସେହି ଆସୁଅଛି ବୋଲି ବସିଛି ଦିବସ ରଜନୀ ଜାଗି ।' ପୁଣି କବି କହନ୍ତି, 'ମଉଳା ଏ ମୋର ଫୁଲବନେ, ଚହଟି ଉଠିଛି ଜହ୍ନରାତି/ ପରାଣ ସଖା ଆସିବେ ବୋଲି, ଦୁଲୁକି ଦୁଲୁକି ଉଠେ ଛାତି ।' 'ଜୀବନ ସଙ୍ଗୀତ'ରେ ଜୀବନରେ ମୃତ୍ୟୁର ଆକାଂକ୍ଷା ସାଂଗକୁ ମୃତ୍ୟୁରେ ଜୀବନକୁ ରସସିକ୍ତ କରିବାର କାମନା ବେଶ୍ ହୃଦ୍ୟ । ସେଇଥିପାଇଁ ତ ଲକ୍ଷ୍ମୀକାନ୍ତଙ୍କ ପରି କବି ଗାଇପାରନ୍ତି-''ଫୁଲଟି ମୋର ଯେବେ ଯାଏ ଝରି/ ସେ ତ କୁଞ୍ଜବନେ ଯାଇ ଫୁଟଇ ହେ / ଗୀତଟି ମୋର ଯେବେ ଯାଏ ସରି/ ସେ ତ ଗୁଞ୍ଜରଣେ ଜାଗି ଉଠଇ ହେ ।''

ମାତ୍ର କାନ୍ତକବି ଲକ୍ଷ୍ମୀକାନ୍ତ ମାଆ ଓ ମାଟିର କଥା କହୁ ଥିଲାବେଳେ ମଣିଷ ଓ ଆଧ୍ୟାତ୍ମିକତାର ଜୟଗାନ ମଧ କରିଥିଲେ । ଜାତୀୟ ଚେତନାରେ ଉଦ୍‌ବୁଦ୍ଧ ହୋଇ ପ୍ରାଦେଶିକ ସ୍ୱାର୍ଥକୁ ମଧ ପାସୋରି ଯାଇ ନଥିଲେ ।

ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନର ସ୍ୱପ୍ନରେ ଗଠିତ ଉତ୍କଳ ସମ୍ମିଳନୀ ସହ କାନ୍ତକବିଂକର ସଂପର୍କ ଥିଲା ଖୁବ୍ ନିବିଡ଼ ଓ ଅନ୍ତରଂଗ । ଅବିଭକ୍ତ ବାଲେଶ୍ୱର ଜିଲ୍ଲାରେ ଅନୁଷ୍ଠିତ ଉତ୍କଳ ସମ୍ମିଳନୀର ଅଧିବେଶନ ଗୁଡ଼ିକରେ ସେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲେ । ୧୯୧୨ରେ ଅନୁଷ୍ଠିତ ସମ୍ମିଳନୀର ବାର୍ଷିକ ଅଧିବେଶରେ ପ୍ରାରମ୍ଭିକ ସଂଗୀତ ଭାବେ 'ବନ୍ଦେ ଉତ୍କଳ ଜନନୀ'. ସଂଗୀତ ପରିବେଷଣ ପରେ ତାହା ପରବର୍ତ୍ତୀ ସବୁ ସମୟ ପାଇଁ ସମ୍ମିଳନୀର ପ୍ରାରମ୍ଭିକ ସଂଗୀତ ଭାବେ ଗୃହୀତ ହୋଇଥିଲା । ଏବେ ତାହା ଓଡ଼ିଆଙ୍କର ଜାତୀୟ ସଂଗୀତ ଭାବେ ଗୃହୀତ । ୧୯୨୮ ମସିହାରେ ଉତ୍କଳମଣି ଗୋପବଂଧୁ ଦାସଂକ ମୃତ୍ୟୁର ଅବ୍ୟବହିତ ପୂର୍ବରୁ ଏକ ରାଜନୈତିକ ସମ୍ମିଳନୀ ଭାବେ ଦୁଇଦିନ ବ୍ୟାପୀ ଉତ୍କଳ ସମ୍ମିଳନୀର ଯେଉଁ ଅଧିବେଶନ ଅନୁଷ୍ଠିତ ହୋଇଥିଲା ସେଥିରେ ଲକ୍ଷ୍ମୀକାନ୍ତ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ । ପ୍ରଥମ ଦିବସର ଅଧିବେଶନ ଆରମ୍ଭରେ ଗାନ କରାଯାଇଥିଲା ତାଙ୍କରି ସଂଗୀତ । ''ଉଡ଼ାଇ ନିଶାଣ ବଜାଇ ଭେରୀ, ଜଗାଇ ବିପୁଳ ପୁଲକ କମ୍ପ / ମନ୍ତ୍ରଭେଦି ଏ ଜାତି ଯେଦିନ, ଦେଲାରେ ଲମ୍ଫ/ଉଠିଲା ଗର୍ଜି ଦୀପ୍ତ ଅଶନି, ସଘନେ ଗଗନ କକ୍ଷେ/ସୌର ଜଗତ ସ୍ତମ୍ଭିତ ହୋଇ, ଚାହିଁଲା ମୁଗ୍ଧ ଚକ୍ଷେ.....।'' ସଂଗୀତଟି ବୋଲା ସରିଲା ପରେ ଉତ୍କଳ ଗୌରବ ମଧୁସୂଦନ ଦାସ ଏହାର ଲେଖକ କିଏ ପଚାରି ବୁଝିଲା ପରେ କାନ୍ତକବିଂକୁ ଲକ୍ଷ୍ୟକରି ହସିହସି କହିଥିଲେ, ''ଛେଲେର୍ ମତନ୍ ଛେଲେ' । ସେମିତି ଦ୍ୱିତୀୟ ଦିବସରେ ସମ୍ମିଳିତ କଣ୍ଠ ସଂଗୀତ 'ବନ୍ଦେ ଉତ୍କଳ ଜନନୀ...' ଶୁଣିସାରି ଅଶ୍ରୁସଜଳ ଆଖିରେ ଭାବ ଗଦ୍‌ଗଦ୍ ହୋଇ ଲକ୍ଷ୍ମୀକାନ୍ତଙ୍କୁ ଆଲିଂଗନ କରି କହିଉଠିଥିଲେ ''ଲକ୍ଷ୍ମୀକାନ୍ତ, ତୁ ଗୀତ ଲେଖିଛୁରେ !' ତାଙ୍କର ସକ୍ରିୟ ଅଂଶଗ୍ରହଣ ଓ ସଂଗୀତର ଅପୂର୍ବ ମୂର୍ଚ୍ଛନା ଉତ୍କଳ ସମ୍ମିଳନୀର ଅଗ୍ରଗତିକୁ ତ୍ୱରାନ୍ୱିତ ଓ ପ୍ରାଣ ସ୍ପନ୍ଦନକୁ ଅଧିକ ପ୍ରାଣବନ୍ତ କରି ଉଦ୍ଦେଶ୍ୟ ସାଧନରେ ଆଗୁସାର ହେବାପାଇଁ ଉତ୍ସାହ ଯୋଗାଇଥିଲା । ଉତ୍କଳର ଶୋଭା ସଂପଦ, ଜ୍ଞାନ, ବିଜ୍ଞାନ କ୍ଷେତ୍ରରେ ଉତ୍କଳର ଭୂୟୋ ବିକାଶ,

କଳା ଭାସ୍କର୍ଯ୍ୟ ବିମଣ୍ଡିତ ପୁଣ୍ୟତୀର୍ଥର ମନ୍ଦିର ସମୂହ, ଉତ୍କଳର ବୀରତ୍ବର କାହାଣୀ ବର୍ଣ୍ଣିତ ତଥା ଉଚ୍ଚ ଭାବାଦର୍ଶ ସମ୍ବଳିତ 'ବନ୍ଦେ ଉତ୍କଳ ଜନନୀ' କବିତାଟି ଓଡ଼ିଶାର ଜାତୀୟ ସଂଗୀତର ମାନ୍ୟତା ପାଇବା ତାଙ୍କ ଉତ୍କଳପ୍ରେମର ବଳିଷ୍ଠ ସ୍ୱାକ୍ଷର ବହନ କରେ ।

ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନର କିଛି ବର୍ଷ ତଥା ଭାରତ ସ୍ୱାଧୀନତା ପ୍ରାପ୍ତିର ସ୍ୱଳ୍ପକାଳ ପରେ କାନ୍ତକବି ୧୯୫୩ରେ ଇହଲୀଳା ସମ୍ବରଣ କରିଥିଲେ ମଧ୍ୟ ତାଙ୍କର 'ବନ୍ଦେ ଉତ୍କଳ ଜନନୀ' ସଂଗୀତ ଏବେବି ରୋମାଞ୍ଚିତ କରିଦିଏ ଶୁଣିବା ଲୋକଙ୍କ ତନୁମନ । ତାଙ୍କ ସୃଜନ ସମ୍ଭାର ହୃଦୟରେ ଝଂକୃତ କରେ ତାଂକର ଜାତିପ୍ରୀତିର ସ୍ମୃତି । ଆବେଗ-ସର୍ବସ୍ୱ ମଣିଷମାନେ ଏବେ ବି 'ବୁଢ଼ା ଶଂଖାରୀ' ଗଳ୍ପ ପଢ଼ିଲାବେଳେ ପ୍ରତ୍ୟକ୍ଷ କରିପାରନ୍ତି ଶଂଖାରୀ ବୁଢ଼ା ହେଇ ଲକ୍ଷ୍ମୀକାନ୍ତ ସ୍ନେହ, ଶ୍ରଦ୍ଧା ଓ ଭଲପାଇବାର 'ଉସମାନ୍‌ତାରା ଶଂଖା' ନିରିମାଖି ବୋହୂମା ଆଡ଼କୁ ଥରିଲା ହାତରେ ବଢ଼େଇ ଦେଉଥିବାର ଦୃଶ୍ୟ । ସତରେ କ'ଣ ତାଙ୍କ ପରି ଜଣେ ନିଆରା ମଣିଷ, ଦେଶପ୍ରେମୀ ଓ ନିର୍ଭେଜାଲ ଲେଖକ ଭୁଲି ହୋଇ ପାରନ୍ତି କେବେ ବି !

# ଅଧ୍ୟାପକ, ଇତିହାସ ବିଭାଗ,
ବି.ଏନ୍.ଏମ୍.ଏ. କଲେଜ, ପାଳିଆବିନ୍ଧା, ଭଦ୍ରକ

"ଚିଲିକାର ଛଳଛଳ
ନୀଳଜଳ ଉଜ୍ଜ୍ୱଳ ମୁକୁରେ
ଦେଖିବାକୁ ଚାହେଁ ମୁହିଁ
ଶାନ୍ତ ସୌମ୍ୟ ଅନୁପମ ମୁଖଶ୍ରୀ ତୋହର;
ମହୋଦଧି ଉତ୍ତାଳ ତରଙ୍ଗେ
ବାନ୍ଧିବାକୁ ଚାହେଁ ତୋର
ଅବିନ୍ୟସ୍ତ ଆଲୁଳିତ ବିମୁକ୍ତ ଚିକୁର
ଲାବଣ୍ୟର ଲଳିତ ବିଭଙ୍ଗେ ।

ମେଘାସନ ମନ୍ଦ୍ରିତ ଶିଖରେ
ଦେଖିବାକୁ ଚାହେଁ ତୋର
ଉନ୍ନତ ଲଲାଟପଟ
ସିନ୍ଦୂରିତ ସୂର୍ଯ୍ୟର ସ୍ୱାକ୍ଷରେ ।

କଟୀତଟେ ଶସ୍ୟ-ସ୍ନିଗ୍ଧ
ଶ୍ୟାମଳ ମେଖଳା,
ଅଙ୍ଗେ ଅଙ୍ଗେ ତରଙ୍ଗିତ
ତଟିନୀର ମୃଦୁ ଲାସ୍ୟଲୀଳା
ଦେଖିବାକୁ ଚାହେଁ ମୁହିଁ
ଆକାଶର ପକ୍ଷୀ ହୋଇ
ଫୁଲ ହୋଇ ରସମୟୀ
ତୋ ମାଟିର ଘାସେ
ସ୍ୱପ୍ନର ସୁରଭି ହୋଇ
ତୋହରି ନିଃଶ୍ୱାସେ;
ଯୁଗଯୁଗ, ଜନ୍ମ ଜନ୍ମାନ୍ତର
ହେ ଉତ୍କଳ ! ଜନନୀ ଉତ୍କଳ !!"

ଶ୍ରୀ ବ୍ରଜନାଥ ରଥ

('ହେ ମୋର ସ୍ୱଦେଶ' କାବ୍ୟଗ୍ରନ୍ଥରୁ ଗୃହୀତ ।)

# ଜାତିପ୍ରାଣ ଲକ୍ଷ୍ମୀ ନାରାୟଣ ସାହୁ

## ଡକ୍ଟର ବଂଶୀଧର ଚୌଧୁରୀ

'ଉତ୍କଳ ସମ୍ମିଳନୀର ଉଦ୍ଦେଶ୍ୟ ଓଡ଼ିଆ ଜାତିକୁ ଉଠାଇବା' - ଏକଦା ମଧୁବାବୁ ଉତ୍କଳ ସମ୍ମିଳନୀରେ ଏହା ପ୍ରକାଶ କରିଥିଲେ । ତାଙ୍କ ନେତୃତ୍ୱରେ ଉତ୍କଳ ସମ୍ମିଳନୀ ଆନ୍ଦୋଳନ (ଏହାହିଁ ଦେଶ ମିଶ୍ରଣ ଆନ୍ଦୋଳନ ବା ଓଡ଼ିଆ ଆନ୍ଦୋଳନ) ଜରିଆରେ ଓଡ଼ିଶାର ସାମଗ୍ରିକ ଉନ୍ନତି ଲାଗି ଭାଷା ଭିତ୍ତିକ ସ୍ୱତନ୍ତ୍ରରାଜ୍ୟ ଗଠନ ପାଇଁ ଦାବି କରାଯାଇଥିଲା ଏବଂ ଏହାର ଫଳଶ୍ରୁତି ଭାବେ ୧୯୩୬ ମସିହାରେ ସମ୍ପୂର୍ଣ୍ଣ ନୁହେଁ ଖଣ୍ଡିତ "ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ" ମିଳିଲା । ଯେଉଁ ଓଡ଼ିଆ ଭାଷା ଓଡ଼ିଆ ଜାତିକୁ ଏକ ସ୍ୱତନ୍ତ୍ର ପରିଚୟ ପ୍ରଦାନ କଲା, ସେହି ଭାଷାର ଉନ୍ନତି ବିଧାନ ଲାଗି ପରବର୍ତ୍ତୀ କାଳରେ ଶିକ୍ଷିତ, ସଚେତନ, ନେତୃସ୍ଥାନୀୟ ଓଡ଼ିଆମାନେ କୌଣସି ବିଧିବଦ୍ଧ ଯୋଜନା ଓ କାର୍ଯ୍ୟକ୍ରମ ଗ୍ରହଣ ନକରି ଉଦାସୀନ ରହିଲେ ଫଳରେ ଅତୀତରେ ହିନ୍ଦୀ ଓ ବଙ୍ଗଳା ଭାଷାର ଚକ୍ରାନ୍ତରୁ ମୁକୁଳି ଆସିଥିବା ଓଡ଼ିଆ ଭାଷା ଏବେ ପୁଣି ସଙ୍କଟ ଘେରରେ ପଡ଼ିଯାଇଛି । ତେଣୁ ଉତ୍କଳ ସମ୍ମିଳନୀ "ସାମ୍ପ୍ରତିକ ପରିବେଶରେ ଉତ୍କଳ ସମ୍ମିଳନୀ" ଶୀର୍ଷକରେ ୨୦୦୨ ମସିହା ଦ୍ୱିତୀୟ ଭାଷା ସାହିତ୍ୟ ଉତ୍ସବରେ ପ୍ରକାଶିତ ମୁଖପତ୍ର 'ଉତ୍କଳନିନାଦ' ମାଧ୍ୟମରେ ଆହ୍ୱାନ ଜଣାଇଛି– "ଏକ ଉନ୍ନତ ଓଡ଼ିଆ ଭାଷା, ଏକ ସଙ୍ଗଠିତ ଚେତନଶୀଳ ଓଡ଼ିଆ ଜାତି ଏବଂ ଏକ ସମୃଦ୍ଧ, ସମ୍ପୂର୍ଣ୍ଣ ଓଡ଼ିଆ ରାଜ୍ୟ ଉତ୍କଳ ସମ୍ମିଳନୀର ଲକ୍ଷ୍ୟ ।" ଯେତେବେଳେ ଓଡ଼ିଆ ଭାଷାର ସ୍ଥିତି ଦୋହଲିବାକୁ ବସିଲାଣି, ଏହାର ଭବିଷ୍ୟତ ଅନ୍ଧକାର ବୋଲି ରିପୋର୍ଟ ପ୍ରକାଶିତ ହେଲାଣି ସେତେବେଳେ ଓଡ଼ିଆ ଭାଷାକୁ ଉନ୍ନତ ବା ବିକଶିତ କରିବା ଲାଗି କେଉଁ ଓଡ଼ିଆମାନେ ଆଗେଇ ଆସିବେ ? ବହୁ ପୂର୍ବରୁ ଏମାନେ କେଉଁଠି ଥିଲେ ? ଏହି ଓଡ଼ିଆଭାଷାପ୍ରେମୀମାନଙ୍କର ସ୍ୱରୂପଟି କ'ଣ ? ସାଧାରଣରେ ଧାରଣା ରହିଛି, ଯେଉଁ ଓଡ଼ିଆମାନେ ଉଚ୍ଚ ସ୍ତରରେ ରହିଲେ, ଉଚ୍ଚଶିକ୍ଷିତ ଓ ସଚେତନ ହେଲେ ସେମାନେ ଓଡ଼ିଆଭାଷା ଓ ଜାତିର ମୂଳ ସମସ୍ୟାକୁ ସମାଧାନ କରିବା ପାଇଁ ଅଣ୍ଟା ଭିଡ଼ିବେ । କିନ୍ତୁ ଏହି ବର୍ଗ ଆପଣା ସ୍ୱାର୍ଥରେ ଏତେ ମଜ୍ଜିଯାଇଛନ୍ତି ଯେ ଜାତୀୟସ୍ୱାର୍ଥ ପାଇଁ କାର୍ଯ୍ୟ କରିବାତ ଦୂରରକଥା ଚିନ୍ତା କରିବା ପାଇଁ ମଧ ସେମାନଙ୍କର ସମୟ ବା ସୁଯୋଗ ନାହିଁ । ଏହା ବ୍ୟତୀତ ଏହି ବର୍ଗଟି ପ୍ରାୟତଃ ନିଜର ମାତୃଭାଷା ଓଡ଼ିଆ ପ୍ରତି ବିମୁଖ ଓ ବିଦେଶୀ ଭାଷାପ୍ରତି ପ୍ରବଳ ଆସକ୍ତ । ଏମିତିକି ନିଜକୁ ଓଡ଼ିଆ ଭାବେ ଆତ୍ମପରିଚୟ ଦେବାକୁ ଏମାନେ କୁଣ୍ଠିତ । ତେଣୁ ଓଡ଼ିଆ ଭାଷା ଓ ଜାତିର ମୌଳିକ ସମସ୍ୟା ଯେଉଁପରିମାଣରେ ସମାଧାନ ହେବା କଥା ତାହା ହୋଇ ପାରି ନାହିଁ ବରଂ ସମସ୍ୟା ଗୁଡ଼ିକ ଅଧିକ ଜଟିଳ ହେଲାଣି । ଏହି ତଥାକଥିତ ବୁଦ୍ଧିଜୀବୀ ଗୋଷୀଟି ପାଲିସ୍‌ମରା ସୁନ୍ଦର ଚିକ୍‌କଣ ଶାଗୁଆନ ଫଳକ ହୋଇ କାନ୍ଥର ସାଜ ଉପକରଣ ଭାବେ ଶୋଭା ପାଇବାର ଯୋଗ୍ୟତା ହାସଲ କରିଛନ୍ତି ସିନା, ଜାତୀୟ କର୍ତ୍ତବ୍ୟ ସମ୍ପାଦନ ଦିଗରେ ଏମାନେ ସମ୍ପୂର୍ଣ୍ଣ ଅଯୋଗ୍ୟ ହୋଇ ପଡ଼ିଛନ୍ତି । ଏ ସମ୍ପର୍କରେ ଚିତ୍ତରଞ୍ଜନ ଦାସଙ୍କ ପ୍ରତିକ୍ରିୟା ହେଉଛି–" କୌଣସି ଭଦ୍ର ମୁଲକରେ ଭଦ୍ର ସ୍ଥାନମାନଙ୍କରେ ଥିବା ମଣିଷମାନେ ନିଜର ଭାଷାଟାକୁ ଏପରି ଅଭଦ୍ର ଦୃଷ୍ଟିରେ ଦେଖନ୍ତି ନାହିଁ, ଯେପରିକି ଓଡ଼ିଶାରେ ଦେଖନ୍ତି ।" (ଓଡ଼ିଶା ଓ ଓଡ଼ିଆ-ପୃ. ୧୪୭ - ୧ମ ସଂସ୍କରଣ)

୧୯୧୯ ମସିହାରେ କଟକ ଠାରେ ଅନୁଷ୍ଠିତ ହୋଇଥିବା ଉତ୍କଳ ସମ୍ମିଳନୀର ଚତୁର୍ଦ୍ଦଶ ଅଧିବେଶନରେ ସଭାପତିତ୍ୱ କରି ଉତ୍କଳମଣି ଗୋପବନ୍ଧୁ ଦାସ କହିଥିଲେ– "ସନ୍ନ୍ୟାସୀର ସାଧନା ଓ

ତପସ୍ୟା ବିନା ଜଗତରେ କେବେ କୌରସି ଗୁରୁ କର୍ତ୍ତବ୍ୟ ସାଧିତ ହୋଇନାହିଁ ।" ଏକଥା ପରବର୍ତ୍ତୀ ପିଢ଼ିର ସଚେତନ ଓଡ଼ିଆ ପୁଅମାନେ ପାସୋରି ଦେଲେ । ଉତ୍କଳ ଗୌରବ ମଧୁସୂଦନ ଦାସ ଓଡ଼ିଆ ମାନଙ୍କର ଆତ୍ମପରିଚୟ ଓ ଆତ୍ମାଭିମାନ ପାଇଁ ଯେଉଁ ବାଟ କଢ଼ାଇଥିଲେ, ତାହା ପୁଣିଥରେ ଆବର୍ଜନାମୟ ହୋଇଗଲା । ବର୍ବରତା ବଶତଃ ଓଡ଼ିଆ ନିଜକୁ ଓଡ଼ିଆ ବୋଲି ପରିଚୟ ଦେବାକୁ ଯେଉଁ ସର୍ବନିମ୍ନ ସ୍ୱାଭିମାନ ରକ୍ଷା କରିବା କଥା, ତାହା କରିବାକୁ ମଧ ଅକ୍ଷମ ହୋଇ ପଡ଼ିଲା ।

ଓଡ଼ିଆ ଜାତିର ଏଭଳି ଦୁର୍ଗତି ସମ୍ପର୍କରେ ବହୁ ପୂର୍ବରୁ ଯେଉଁ ସଚ୍ଚା ଓଡ଼ିଆ ଆପଣାର ଦିବ୍ୟ ବିଚାରଶୀଳତାରେ ସଚେତନ ହୋଇ ରଚନା କରିଯାଇଥିଲେ 'ମୁଁ ଓଡ଼ିଆ' ପୁସ୍ତିକା ସେ ହେଉଛନ୍ତି ପଦ୍ମଶ୍ରୀ ଲକ୍ଷ୍ମୀ ନାରାୟଣ ସାହୁ । ୩-୧୦-୧୮୯୦ ରୁ ୧୮-୧-୧୯୬୩ ପର୍ଯ୍ୟନ୍ତ ବ୍ୟାପ୍ତ ତାଙ୍କ ଜୀବନକାଳ ମଧରେ ୧୯୦୫ ମସିହାରେ ମାତ୍ର ପନ୍ଦରବର୍ଷ ବୟସରେ ସେ ଯୋଗ ଦେଇଥିଲେ ସ୍ୱଦେଶୀ ଆନ୍ଦୋଳନରେ । ଏହାପରେ ସେ ଆଉ ପଛକୁ ଚାହିଁନାହାନ୍ତି । ପରିବାରକୁ ପଛରେ ପକାଇ ନିଃସ୍ୱାର୍ଥପର ଭାବେ ସେ ସେବାକରିଛନ୍ତି ମାନବର, ଦେଶର ଓ ଜନ୍ମଭୂମିର । ୧୯୪୪ ମସିହାରେ ବ୍ରହ୍ମପୁର (ଗଞ୍ଜାମ) ଠାରେ ହୋଇଥିବା ଉତ୍କଳ ସମ୍ମିଳନୀର ଅଷ୍ଟବିଂଶ ଅଧିବେଶନରେ ସଭାପତିତ୍ୱ କରିଥିଲେ ଲକ୍ଷ୍ମୀ ନାରାୟଣ ସାହୁ । ଦେଶ, ଜାତି, ଭାଷା, ସାହିତ୍ୟ, ଶିକ୍ଷା, ଗବେଷଣା, ଧର୍ମ ଇତିହାସ ଓ ସେବା କ୍ଷେତ୍ରରେ ନିପୁଣତା ପ୍ରଦର୍ଶନ ପୂର୍ବକ ପଦ୍ମଶ୍ରୀ, ଡି.ଲିଟ୍, ଇତିହାସ ରତ୍ନ, ଭାରତ ତୀର୍ଥ, ତତ୍ତ୍ୱନିଧି ଓ ବିଦ୍ୟାରତ୍ନ ଭଳି ଉପାଧି ଲାଭ କରିବା ସହିତ ଚାରିଗୋଟି ବିଷୟରେ ଏମ୍.ଏ.ଡିଗ୍ରୀଲାଭ ତଥା ଶତାଧିକ ଅନୁଷ୍ଠାନର ସଭ୍ୟ, ସଭାପତି, ସମ୍ପାଦକ, ସଙ୍ଗଠକ, ଓ ନିର୍ମାତା ଭାବେ ପ୍ରତିଷ୍ଠା ଅର୍ଜନ କରି ମଧ 'ମୁଁ ଓଡ଼ିଆ' ବୋଲି ପରିଚୟ ଦେବାକୁ ସେ କୁଣ୍ଠା ବୋଧ କରିନଥିଲେ, ବରଂ ହୀନମନ୍ୟ ଓଡ଼ିଆମାନଙ୍କୁ ଓଡ଼ିଆ ଜାତି ଓ ଭାଷାର ଗୌରବାବହ ଐତିହ୍ୟ ସମ୍ପର୍କରେ ସଚେତନ କରିଓବା ଲାଗି ୧୯୫୩ ମସିହାରେ ରଚନା କରିଥିଲେ ଏକ ତଥ୍ୟ ଭିତ୍ତିକ ପୁସ୍ତିକା – 'ମୁଁ ଓଡ଼ିଆ' ।

'ମୁଁ ଓଡ଼ିଆ' ବୋଲି ସେ ଯେଉଁ ଗୌରବ ଓ ଆନନ୍ଦ ଅନୁଭବ କରୁଥିଲେ ଏବଂ ସଚ୍ଚା ଓଡ଼ିଆ ଭାବରେ ଯେଉଁ ଆଦର୍ଶମୟ କର୍ମଜୀବନ ଅତିବାହିତ କରିଥିଲେ ତାହା ପ୍ରତ୍ୟେକ ବିଭ୍ରାନ୍ତ ଓ ହୀନମନ୍ୟ ଓଡ଼ିଆ ପାଇଁ ଶିକ୍ଷଣୀୟ ହୋଇ ପାରିଲେ ଓଡ଼ିଆର ଜାତୀୟ ଜୀବନରେ ଦେଖା ଦେଇଥିବା ସମସ୍ୟା ସମାଧାନ ହୋଇପାରିନ୍ତା ଏବଂ ଏକ ନୂତନ ଅଭ୍ୟୁଦୟର ଯୁଗ ସୃଷ୍ଟି ହୋଇ ପାରନ୍ତା । ସେ ଏହି ପୁସ୍ତିକାରେ ପ୍ରକାଶ କରିଛନ୍ତି "ମୁଁ ଓଡ଼ିଆ" "ମୁଁ ବିଶ୍ୱ ଛାଇଛି" । ଏହି ଉକ୍ତିରେ ତାଙ୍କର ସାତ୍ତ୍ୱିକ ଭାବହିଁ ଫୁଟି ଉଠିଛି । ଓଡ଼ିଆ ଜାତିର ଐତିହାସିକ ବ୍ୟାପକତା ପ୍ରମାଣ କରିବାକୁ ଯାଇ ସେ ବିଶ୍ୱ ସହିତ ଓଡ଼ିଆର ବିସ୍ତାରିତ ସମ୍ବନ୍ଧ ପ୍ରତିପାଦନ କରିଛନ୍ତି । ଓଡ଼ିଆ ଜାତି ସହିତ ଆଦିମ ଭରାଳି ଓ ମୁଣ୍ଡାଜାତିର ସମ୍ପର୍କ ତଥା ମହୀଶୂର, ରାଜପୁତାନା, ଗୁଜରାଟ, ଆସାମ, ମାଲୱା, ନେପାଳ, ତିବ୍ବତ, ସିଂହଳ, ସିଙ୍ଗାପୁର, ବର୍ମା, ଆଫଗାନିସ୍ଥାନ, ଅଷ୍ଟ୍ରେଲିଆ, ମାଳୟ, ଚୀନ, ଭାରତୀୟ ପୂର୍ବଦ୍ୱୀପ ପୁଞ୍ଜ-ଶ୍ୟାମ, ଜାଭା, ସୁମାତ୍ରା, ବାଲି ଓ ଫିଲିପାଇନରେ ଓଡ଼ିଆ ଜାତିର ଐତିହାସିକ ସ୍ଥିତି ବିଷୟରେ ଲେଖକ ବହୁ ପ୍ରମାଣ ଯୋଗ୍ୟ ତଥ୍ୟ ପ୍ରଦାନ ପୂର୍ବକ ସୁପ୍ତ ତଥା ନିଜକୁ ଓଡ଼ିଆ ଭାବେ ସଂକୁଚିତ ମନେକରୁଥିବା ଓଡ଼ିଆମାନଙ୍କୁ ଜାଗ୍ରତ କରିବା ପାଇଁ ଉଦ୍ୟମ କରିଛନ୍ତି । ଓଡ଼ିଶାର ଗୌରବ ପ୍ରଖ୍ୟାପନ କଲାବେଳେ ଲେଖକ ଓଡ଼ିଶାର ସଂଗୀତ ଶାସ୍ତ୍ର, ଉଡ୍ଡୀୟାନ ତନ୍ତ୍ରର ବ୍ୟାପକତା, ଓଡ଼ିଶାରେ ପାଲିଭାଷାର ଜନ୍ମ, ବଙ୍ଗଦେଶର ଭଟ୍ଟାଚାର୍ଯ୍ୟମାନେହିଁ ଓଡ଼ିଆ, ଓଡ଼ିଶାର ପ୍ରାଚୀନ ପଣ୍ଡିତ, ସାହିତ୍ୟିକ, ଧର୍ମଗୁରୁ, କଳା, ଭାସ୍କର୍ଯ୍ୟ, ଜ୍ୟୋତିର୍ବିଦ୍ୟା, ଆୟୁର୍ବେଦ ବିଜ୍ଞାନ,

ବିଶିଷ୍ଟ ଶିଳ୍ପୀ, ଚିଲିକାର ବିହଙ୍ଗମ, କୋଣାର୍କମନ୍ଦିର, ଦେବଦାସୀନୃତ୍ୟ, ପ୍ରାଚୀନ ସଙ୍ଗୀତଶାସ୍ତ୍ର, ପୁଷ୍ପଗିରି ବିଶ୍ୱବିଦ୍ୟାଳୟର ଖ୍ୟାତି, କଳିଙ୍ଗ ତଟରେ ବର୍ବରଙ୍କ ଜୀବନଯାପନ, ବାଲେଶ୍ୱର ଜିଲ୍ଲାରେ କପିଳମୁନି ଆଶ୍ରମ, ମୟୂରଭଞ୍ଜ ଜିଲ୍ଲାରେ ବୃହସ୍ପତିଙ୍କ ଆଶ୍ରମ, ଷୋଡ଼ଶ ଶତକରେ ଆବୁଲ ଫାଜଲ ଓ ଅଷ୍ଟାଦଶ ଶତକରେ ଲାମୋଟ୍ ବାରବାଟୀ ଦୁର୍ଗରେ ଦେଖିଥିବା ଅନନ୍ୟ ନବତଳ ପ୍ରାସାଦ ଓ କୀର୍ତ୍ତିମାନ ରାଜା ଇତ୍ୟାଦିଙ୍କ ସଂପର୍କରେ ଯେଉଁ ବିବରଣୀ ପ୍ରଦାନ କରିଛନ୍ତି ତାହା ଯେତିକି ତଥ୍ୟନିଷ୍ଠ ସେତିକି ପ୍ରଚୋଦକ । ସେ କହିଛନ୍ତି– 'ମୁଁ ଓଡ଼ିଆ', ମୁଁ ବିସ୍ତାରିତ ହୋଇ ରହିଛି ସିଙ୍ଗାପୁରରେ, ବର୍ମାରେ, ଆଫଗାନିସ୍ଥାନରେ, ରାଜପୁତାନାରେ, ମାଲଓ୍ୱାରେ, ସିଂହଳରେ, ଅଷ୍ଟ୍ରେଲିଆରେ । କିନ୍ତୁ ଯାଇଛି ଅତୀତର ଗୌରବ ଅଛି ଅବଶିଷ୍ଟ କଙ୍କାଳମାତ୍ର ତା'ର । ତଥାପି ଓଡ଼ିଆ ଓଡ଼ିଆ । ତା'ର ମୂଳ ଗଣ୍ଡିବାର୍ଯ ଓଡ଼ିଆ । 'ଓଡ଼ିଆ ତୁ ଗର୍ବ ଅନୁଭବ କର' ।

ପଦ୍ମଶ୍ରୀ ଲକ୍ଷ୍ମୀନାରାୟଣ ସାହୁ ଥିଲେ ସମାଜରେ ନୂତନ ଚେତନାର ବାର୍ତ୍ତାବହ - ଚିର ବିପ୍ଳବୀ-ଶତାବ୍ଦୀର ସେବକ । ନିଜକୁ ଅଜାତିଆ ବୋଲି କହିଥିଲେ ମଧ୍ୟ ସେ ଥିଲେ ଖାଣ୍ଟି ଜାତିଆ । ଓଡ଼ିଆ ଭାଷାର ସୁରକ୍ଷା, ଓଡ଼ିଆ ସାହିତ୍ୟର ବିକାଶ ଓ ପ୍ରସାର, ପରଜା, କୁଟିଆ, କନ୍ଧ, ଲାଞ୍ଜିଆ ଓ ସଉରା ଭଳି ଦଳିତ ଜାତିମାନଙ୍କର ସର୍ବାଙ୍ଗୀନ ଉନ୍ନତି, ଆଦିମ ଅଧିବାସୀମାନଙ୍କର ନୃତ୍ୟ, ସଙ୍ଗୀତ ଓ ସଂସ୍କୃତିର ସୁରକ୍ଷା, ରାଜନୈତିକ ସାଧୁତା, ଓଡ଼ିଶାର ସାମାଜିକ, ସାଂସ୍କୃତିକ ଓ ଆର୍ଥିକ ବିକାଶ, ବିଚ୍ଛିନ୍ନାଞ୍ଚଳର ମିଶ୍ରଣ, ଶିକ୍ଷାର ବିକାଶ, ବନ୍ୟା ବାତ୍ୟା ଦୁର୍ଭିକ୍ଷରେ ସାହାଯ୍ୟ ଏବଂ ତଥା ସର୍ବୋପରି ଓଡ଼ିଶାର ପ୍ରାଚୀନ ଜୀର୍ଣ୍ଣ ଜାତୀୟ ଜୀବନକୁ ଉଦ୍ଧାର ଭାରତୀୟ ଜନ ଜୀବନର ପ୍ରଗତି ପାଇଁ ସାହୁଜୀଙ୍କ ଚିନ୍ତା ଓ ନିରଳସ କର୍ମ ସାଧନା ତାଙ୍କୁ ସନ୍ନ୍ୟାସୀ ଓ ତପସ୍ୱୀର ମର୍ଯ୍ୟାଦା ପ୍ରଦାନ କରେ । ଦେଶ ଓ ଜାତିର ଚିନ୍ତାରେ ଅଧୀର ହୋଇ ସେ ସ୍ୱତଃସ୍ଫୂର୍ତ୍ତ ଭାବରେ ଗାଇ ଉଠିଥିଲେ–

ଜାଗ ଭଲା ଥରେ ଓଡ଼ିଆ ଭାଇରେ
ସେବାକର ଦେଶଭାଇରେ
ଉଠାଅ ଏ ଜାତିକୁ ମହତ ଶିଖରେ
ଯହିଁ ବାରିଦ ସିଞ୍ଚିରେ
ସେହିଠାରୁ ବର୍ଷୁ ଅମୃତଧାରା
ଜାତି ପୁଣି ଉଠୁ ହୋଇ ସମ୍ପଦେ ଭରା ।।

(ମଧୁରେଖା -୧୯୩୮)

# ବରିଷ୍ଠ ଅଧ୍ୟାପକ, ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ,
ନୀଳମଣି ମହାବିଦ୍ୟାଳୟ, ରୁପ୍ସା, ବାଲେଶ୍ୱର ।

# ଓଡ଼ିଆ ସାହିତ୍ୟର ଏକ ବିସ୍ମୃତ ପ୍ରତିଭା : ନାରାୟଣ ମୋହନ ଦେ

ଶ୍ରୀ ଅପୂର୍ବ ରଂଜନ ରାୟ

ସାରସ୍ୱତ ସାଧକ ନାରାୟଣ ମୋହନ ଦେ ଏକଦା ଓଡ଼ିଆ ସାହିତ୍ୟରେ ଜଣେ ପରିଚିତ ସ୍ରଷ୍ଟା ରୂପେ ନିରବଚ୍ଛନ୍ନ ଲେଖନୀ ଚାଳନା କରି ପ୍ରତିଷ୍ଠା ଅର୍ଜନ କରିଥିଲେ । ପ୍ରଥମେ ସେ କବିତା ରଚନା କରି ପରିଚିତ ହେବା ପରେ, ସାହିତ୍ୟ ସମାଲୋଚନା ସଷ୍ଟିରେ ମନୋନିବେଶ କରିଥିଲେ । ଉଭୟ କବିତା ଓ ତଥ୍ୟପୂର୍ଣ୍ଣ ଆଲୋଚନା ସୃଷ୍ଟିରେ ସେ ନିଜର ସ୍ୱକୀୟତା ପ୍ରମାଣ କରିଛନ୍ତି । ସେ 'ଉତ୍କଳ ସାହିତ୍ୟ' 'ମୁକୁର' ଓ 'ବାରୁଣୀ' ଆଦି ପତ୍ରପତ୍ରିକାରେ ଉଚ୍ଚକୋଟୀର ରଚନା ଲେଖି ସୁନାମ ଅର୍ଜନ କରିଥିବାବେଳେ ଆଜି ପ୍ରାୟ ବିସ୍ମୃତ କହିଲେ ଅତ୍ୟୁକ୍ତି ହେବାନାହିଁ । ୧୯୪୦ ମସିହାରେ ବିଶିଷ୍ଟ ଗବେଷକ ଡଃ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ଦ୍ୱାରା ତାଙ୍କର କାବ୍ୟ ସଂକଳନ 'ବୈଜୟନ୍ତୀ' ପ୍ରକାଶିତ ହୋଇଥିଲା । ଏହା ପାଟଣା ବିଶ୍ୱବିଦ୍ୟାଳୟ ଦ୍ୱାରା ପାଠ୍ୟପୁସ୍ତକ ରୂପେ ମନୋନୀତ ହେବାପରେ, ଉତ୍କଳ ବିଶବିଦ୍ୟାଳୟ ଏହାକୁ ବି.ଏ. ଅନର୍ସ ଏବଂ ପରେ ଏମ୍.ଏ. ଶ୍ରେଣୀ ପାଇଁ ପାଠ୍ୟପୁସ୍ତକ ଭାବେ ମଞ୍ଜୁର କରିଥିଲା । ୧୯୫୩ ମସିହାରେ ଉତ୍କଳ ବିଶ୍ୱବିଦ୍ୟାଳୟ ସମାଲୋଚକ ନାରାୟଣମୋହନଙ୍କ 'ସାହିତ୍ୟ ଓ ସମାଲୋଚନା' ଗ୍ରନ୍ଥ ପ୍ରକାଶ କଲା । ଏହାର ପ୍ରଥମ ଭାଗକୁ ବି.ଏ. ଅନର୍ସ ଶ୍ରେଣୀରେ ପାଠ୍ୟ ପୁସ୍ତକ କରାଗଲା । ପୁସ୍ତକଟିର ଆଦର ଓ ଗୁରୁତ୍ୱ ଅନୁଭବ କରାଯାଇ ଏହାର ଦ୍ୱିତୀୟ ଭାଗ ପ୍ରକାଶ କରାଗଲା । ଏଦିଗରେ ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରାକ୍ତନ କୁଳପତି ସ୍ୱର୍ଗତଃ ଚିନ୍ତାମଣି ଆଚାର୍ଯ୍ୟଙ୍କ ଅବଦାନ ସ୍ମରଣୀୟ । ଦୁଇଟି ଭାଗ ଏପରି ଉଚ୍ଚକୋଟୀର ତଥା ଉପାଦେୟ ହୋଇଥିଲା ଯେ, ଏହାକୁ ବିଶ୍ୱବିଦ୍ୟାଳୟ ଶ୍ରେଣୀରେ ବାଧ୍ୟତାମୂଳକ କରାଯିବା ଉଚିତ ବୋଲି ଶିକ୍ଷାବିତ୍‌ମାନେ ମତ ଦେଇଥିଲେ ।

ପ୍ରବନ୍ଧରେ ମୌଳିକ ଓ ସ୍ୱାଧୀନ ଚିନ୍ତା ଲେଖକଙ୍କୁ ସମ୍ମାନିତ କରିଥାଏ । ସମାଲୋଚନାରେ ଗଭୀରତାର ସ୍ପର୍ଶ ବୁଦ୍ଧିଜୀବୀଙ୍କୁ ଆକୃଷ୍ଟ କରେ । 'ସାହିତ୍ୟ ଓ ସମାଲୋଚନା' ଗ୍ରନ୍ଥ ଦୁଇଟି ଅତ୍ୟନ୍ତ ତଥ୍ୟ ସମ୍ବଳିତ ଓ ଉପାଦେୟ ରଚନା । ଲେଖକ ଇଂରାଜୀ ସାହିତ୍ୟରେ ଉଚ୍ଚତର ଅଧ୍ୟୟନ ଓ ଅଧ୍ୟାପନା କରିଥିବାରୁ , ତୁଳନାତ୍ମକ ସମାଲୋଚନା – ସାହିତ୍ୟ ସୃଷ୍ଟିରେ ଆପଣା ବିଦବତ୍ତା ପ୍ରତିପାଦନ କରିପାରିଛନ୍ତି । ନିର୍ଭୀକତା ଓ ନିରପେକ୍ଷତା ରକ୍ଷା ହେଉଛି ସମାଲୋଚକର ବୈଶିଷ୍ଟ୍ୟ । ଏ କ୍ଷେତ୍ରରେ ସମାଲୋଚକ ନାରାୟଣମୋହନଙ୍କ ସ୍ୱତନ୍ତ୍ର ଦୃଷ୍ଟିଭଙ୍ଗୀ ବିଚାର୍ଯ୍ୟ । ସମାଲୋଚନା କାଳରେ କେବଳ ନାହିଁନାହିଁ ର ସ୍ୱର ଶୁଣାଇବା ଯଥାର୍ଥ ନୁହେଁ । ଏହା ସହିତ ସୁଚିନ୍ତିତ ମତାମତ ଦେବା ମଧ୍ଯ କର୍ତ୍ତବ୍ୟ । ସେ ଲେଖିଛନ୍ତି "ଉପଧା ବର୍ଜନ ବିଷୟରେ ତତ୍‌ପର ହୋଇ , ଉପଧା ଯେ କେବଳ ଆସାଧ୍ୟ କି ଦୁଃସାଧ୍ୟ ନୁହେଁ ଓ ଭାବ ପ୍ରକାଶର ଅନ୍ତରାୟ ମଧ୍ୟ ନୁହେଁ ଏବଂ ଭାବର ସୌନ୍ଦର୍ଯ୍ୟ ବର୍ଦ୍ଧନ ଓ ସାମଞ୍ଜସ୍ୟ ବିଧାନରେ ମଧ୍ୟ ପ୍ରଭୂତ ସହାୟତା କରେ, ଏଆଡ଼କୁ ଦୃଷ୍ଟି ନଦେଇ, କେବଳ କାକତାଳୀୟ ନ୍ୟାୟର ଅବଲମ୍ବନରେ ପ୍ରମାଣ କରିବାର ଚେଷ୍ଟା କରାଯାଇଛି ଯେ ଉପଧା ବର୍ଜନ ନକଲେ, ଭାବ ପ୍ରକାଶରେ ତ୍ରୁଟି ଅନିବାର୍ଯ୍ୟ ।" ଏହାପରେ ସେ ପୁଣି କହନ୍ତି ଯଦି ଜଣେ କବି ସହସ୍ର ପଙ୍‌କ୍ତି ଲେଖି ସାମାନ୍ୟ କେତେକ ସ୍ଥଳରେ ସାମାନ୍ୟ କିଛି ତ୍ରୁଟି କରିଥାଆନ୍ତି, ଏହା ଯେ ଉପଧା ସମ୍ଭୂତ , ଏପରି ସ୍ଥିର କରିବା ସୁକଠିନ । ପୁଣି ଅନ୍ୟ ଜଣେ

ଯଦି ଉପଧା ବର୍ଜନ କରି ସର୍ବତ୍ର ସମଭାବରେ ଭାବ ପ୍ରକାଶ କରି ନପାରେ, ତେବେ ତ୍ରୁଟି ଯେ ଉପଧା ଜନିତ ନୁହେଁ, ଏହା ସ୍ୱତଃସିଦ୍ଧ ହେବାରୁ ସେ ତ୍ରୁଟିର ଅନ୍ୟ କାରଣ ନିଶ୍ଚୟ ଅଛି । ସୁତରାଂ ସେ ତ୍ରୁଟି କବିର ଅକ୍ଷମତା ଜନିତ ।" ଏପରି ମନ୍ତବ୍ୟର ଆଲୋଚନା ନିତାନ୍ତ ଆବଶ୍ୟକ । କାବ୍ୟ - କବିତା ରଚନା କ୍ଷେତ୍ରରେ ଏହାର ଉପାଦେୟତା ନିଶ୍ଚୟ ଅନୁଭବ କରାଯିବ । "କବିତାର ଜାତି ଭେଦ", "ଉପଧା ବର୍ଜନ ଓ କାକତାଳୀୟ ନ୍ୟାୟ" " କାବ୍ୟ ବା ସାହିତ୍ୟର ଆଦର୍ଶ", "କାକତାଳୀୟ ନ୍ୟାୟ, କୁସଂସ୍କାର ଓ ଜାତୀୟତା ବୋଧ" ପ୍ରଭୃତି ଆଲୋଚନା ଗୁଡ଼ିକ ଯେ ଭିନ୍ନ ରୁଚିର ଏହା ନିଃସନ୍ଦେହରେ କୁହାଯାଇପାରେ । ଏହା ବ୍ୟତୀତ 'ମୁକୁର' 'ଉତ୍କଳ ସାହିତ୍ୟ' ପ୍ରଭୃତି ପତ୍ରିକାରେ ଯେଉଁ ପ୍ରବନ୍ଧମାନ ତାଙ୍କର ପ୍ରକାଶ ପାଇଥିଲା , ସେ ଗୁଡ଼ିକ ସେତେବେଳେ 'ମୁକୁର' ସଂପାଦକ ସ୍ୱର୍ଗତ ବ୍ରଜସୁନ୍ଦର ଦାସ ଓ 'ଉତ୍କଳ ସାହିତ୍ୟ' ସଂପାଦକ ସ୍ୱର୍ଗତ ବାଗ୍ମୀ ବିଶ୍ୱନାଥ କରଙ୍କ ଦ୍ୱାରା ଉଚ୍ଚ ପ୍ରଶଂସିତ ହୋଇଥିଲା ।

ତତ୍କାଳୀନ ବୁଦ୍ଧିଜୀବୀ , ଗବେଷକ ଓ ସାହିତ୍ୟିକମାନଙ୍କ ଦ୍ୱାରା ଏତେ ପ୍ରଶଂସିତ ହୋଇଥିବା ଲେଖକ ନାରାୟଣମୋହନ ଆଜି ଅନାଲୋଚିତ । ଅଗ୍ରଜ ପ୍ରତିମ କବି ବ୍ରଜନାଥ ରଥଙ୍କ ସହିତ ଆଳାପ ଆଲୋଚନା ବେଳେ, ସେ ମୋ' ସହିତ ଏକମତ ହୋଇ ଏହି ସ୍ରଷ୍ଟାଙ୍କ ଉପରେ କିଛି ଲେଖିବା ପାଇଁ ପରାମର୍ଶ ଦେଲେ । ଓଡ଼ିଆ ସମାଲୋଚନା ସାହିତ୍ୟର ଇତିହାସ ଅଧ୍ୟୟନ କଲାପରେ ଅନୁଭବ କଲି, ଏବର ସମାଲୋଚକମାନେ ପଲ୍ଲବଗାହିତାର ପ୍ରମାଣ ଦେଉଛନ୍ତି । 'ସତ୍ୟ ବାଦୀ' ର ସମକାଳୀନ ପ୍ରାବନ୍ଧିକ ଭାବେ ନାରାୟଣମୋହନଙ୍କ କୃତି ଉଲ୍ଲେଖନୀୟ । ତାଙ୍କ ରଚନାରେ ଦେଶପ୍ରେମ ଓ ସମାଜସେବାର ମହାନ୍ ମନ୍ତ ଉଦ୍‌ଘୋଷିତ ହୋଇଥାଏ । ସମାଲୋଚନା ସାହିତ୍ୟରେ ସେ ଜଣେ ଅପ୍ରତିଦ୍ୱନ୍ଦୀ ସମାଲୋଚକ ହୋଇଥିବା ବେଳେ, ତାଙ୍କ ପ୍ରତିଭା ଓ ସାଧନା ଆଜି ଅନାଲୋଚିତ ହୋଇ ରହିଯାଇଛି ।

ସେ ଜଣେ ପ୍ରତିଭାବାନ୍ କବି ରୂପେ ମଧ୍ୟ ନିଜ ପ୍ରତିଭାର ପରିଚୟ ଦେଇଥିଲେ । ଜଣେ ଉଚ୍ଚକୋଟୀର ଇଂରାଜୀ ଅଧ୍ୟାପକ ଭାବେ ଅଧ୍ୟାପନା ପ୍ରତି ତାଙ୍କ ଯେପରି ଥିଲା ନିଷ୍ଠା, ଅଧ୍ୟୟନ ପ୍ରତି ମଧ୍ୟ ସେ ଥିଲେ ଅତ୍ୟନ୍ତ ଆଗ୍ରହୀ ଓ ଉତ୍ସାହୀ ଅତ୍ୟଧିକ ଅଧ୍ୟୟନ, ବିଶେଷତଃ ଇଂରାଜୀ ସାହିତ୍ୟର ଗଭୀର ଅଧ୍ୟୟନ ଭିତରେ", ସେ ଭିକ୍ଟୋରୀୟ ଯୁଗର ହୋଇ ପଡ଼ିଥିଲେ ବିଶ୍ୱସ୍ତ ସ୍ତାବକ । ଏହାର ଉଦାରତା, ଅକୁଣ୍ଠ ବିଚାରଧାରା ତାଙ୍କୁ ପ୍ରଭାବିତ କରିଥିଲା । ଏହା ସହିତ ମାନବିକତାର ମୁଗ୍ଧ ଧାରା କବିଙ୍କୁ ଆବଦ୍ଧ କରି ରଖିଥିଲା । ପ୍ରାକ୍ ସବୁଜ ଚିନ୍ତାର ପ୍ରତୀକ ଭାବେ କବି ନାରାୟଣମୋହନ ସ୍ମରଣୀୟ । ୧୯୨୦ ମସିହାରେ ତାଙ୍କର ପ୍ରଥମ କବିତା ସଂକଳନ 'ଜୟନ୍ତୀ' ପ୍ରକାଶ ପାଇଥିଲା । ପରେ ୧୯୪୦ରେ ପ୍ରକାଶ ପାଇଲା କବିତା ଗ୍ରନ୍ଥ 'ବୈଜୟନ୍ତୀ' । ଏ ଦୁଇଟି ଗ୍ରନ୍ଥରେ ସ୍ଥାନିତ କବିତା ଗୁଡ଼ିକ ବହୁ ପୂର୍ବରୁ 'ଉତ୍କଳ ସାହିତ୍ୟ' ଓ 'ମୁକୁର' ରେ ପ୍ରକାଶ ପାଇଥିଲା । ଏହା ନିଶ୍ଚିତ ଯେ କବିତା ଗୁନିକ ଗୀତିମୁଖର । ଗୀତିକବିତାର ସ୍ୱର ଓ ସ୍ୱାକ୍ଷରରେ ଏସବୁ ସମୃଦ୍ଧ । ଯେତେବେଳେ ଅନୁବାଦ ସାହିତ୍ୟ ଓଡ଼ିଆ ଭାଷାରେ ଦୁର୍ବଳ, ସେତେବେଳେ ନାରାୟଣ ମୋହନ ଓଡ଼ିଆ ଅନୁବାଦ ସାହିତ୍ୟ ସୃଷ୍ଟିରେ ମଧ୍ୟ ମନୋନିବେଶ କରି କେତୋଟି ଇଂରାଜୀ କବିତାକୁ ଓଡ଼ିଆ ଭାଷାରେ ଅନୁବାଦ କରିଛନ୍ତି । ସେ ଏ ଦିଗରେ ଅଧିକ ଧ୍ୟାନ ଦେଇ, ଓଡ଼ିଆ ଅନୁବାଦ ସାହିତ୍ୟକୁ ସମୃଦ୍ଧ କରିବା ପାଇଁ ଆଗ୍ରହୀ ଥିଲେ ; ମାତ୍ର ତାହା ସମ୍ଭବ ହେଲା ନାହିଁ ।

ତାଙ୍କ କବିତା ରେ ବର୍ଣ୍ଣନା - ଚାତୁରୀ ଅତ୍ୟନ୍ତ ମନୋମୁଗ୍ଧକର । ବର୍ଷାର ବର୍ଣ୍ଣନା କରିବାକୁ ଯାଇ ସେ ଲେଖିଛନ୍ତି :-

"କ୍ଷଣେ ଟିପିଟିପି ପୁଣି କ୍ଷଣେ ଘୋର ଅଜଡ଼ା,
ପୂରିଛି ବିଲ ପୋଖରୀ ଭାଙ୍ଗି ପଡ଼େ ଅତଡ଼ା,
ବିଲ, ଖାଲ, ନଦୀ, ନାଳ ପଡ଼ୁଅଛି ଉଛୁଳି,
ଟାଙ୍ଗରେ ଗିରି ଝରଣା ଯାଉଛି ମୁକୁଳି ।"

କବିଙ୍କର ଆଉ ଦୁଇଟି କବିତା ସଂକଳନ 'ମାଧୁରୀ' ଓ 'ମାଧୁକରୀ' ସହିତ 'ସଂକଳ୍ପ କଳ୍ପଲତା' ମଧ୍ୟ ପ୍ରକାଶ ପାଇଥିଲା । କବି ନଜେ ସ୍ୱୀକାର କରିଛନ୍ତି, "ଏ ସବୁ ଗ୍ରନ୍ଥ ସେମିତି ଲୁଚି ହଜି ନଷ୍ଟ ହୋଇ ଯାଇଥାଆନ୍ତା । ସୌଭାଗ୍ୟ କ୍ରମେ ଡଃ. ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ଏସବୁ ସୃଷ୍ଟିରେ ଦୃଷ୍ଟି ପଡ଼ିବାରୁ ତାଙ୍କ ଉତ୍ସାହ ଓ ପ୍ରେରଣାରେ ପ୍ରକାଶନ ସମ୍ଭବ ହେଲା ।" 'ସଂକଳ୍ପ କଳ୍ପଲତା' ହେଉଛି କୋଣାର୍କ ଉପରେ ଏକ କ୍ଷୁଦ୍ର କାବ୍ୟ । ଏଥିରେ ପରିପୂର୍ଣ୍ଣ ହୋଇଛି ମନ୍ଦିର ନିର୍ମାଣର ବେଦନାଦଗ୍ଧ ଆକୁଳ ହୃଦୟର କାହାଣୀ । କବିଚିତ୍ତ ତୁଳନାତ୍ମକ ଦୃଷ୍ଟିରେ ସଂସାରର ଗତିପଥକୁ ଦେଖନ୍ତି । ପିତୃ ବିୟୋଗ ପରେ, ମଉସା ଘରେ ପୋଷ୍ୟପୁତ୍ର ହେବା ଭିତରେ ସେ ଦୁଃଖ, ଅଭାବ ଓ ଅନଟନ ଭୋଗ କରିଥିଲେ । ପରେ ତାଙ୍କ ଜୀବନରେ ସୁଖ ଓ ଆନନ୍ଦରେ ଦିନ ଆସିଛି । ଏହି ଦୁଇଟି ଦୃଶ୍ୟ ପ୍ରତି ସେ ସଚେତନ ! ଦୁଃଖ ନଥିଲେ ସୁଖର ଅନୁଭବ ମିଳେନାହିଁ । ପୁଣି ସୁଖ ନଥିଲେ, ଦୁଃଖର ଯନ୍ତ୍ରଣା ସହ୍ୟକରି ହୁଅନ୍ତା ନାହିଁ । ସୁଖ ଦୁଃଖର ଜୀବନ ମଣିଷ ପାଇଁ ଗ୍ରହଣୀୟ । ଏଥିରେ ଘୃଣା ନାହିଁ କି ବିଭୋର ହେବାର କାରଣ ନାହିଁ । କବି ଏହାକୁ ମର୍ମେ ମର୍ମେ ଅନୁଭବ କରି କହନ୍ତି :-

"ଉଆଁସ ବଢ଼ାଏ ପୁନିଅଁ ଚାନ୍ଦର
ଆଦର ସିନା ଏ ଭବେ,
ବିନା ତୁଳନାରେ ସୌନ୍ଦର୍ଯ୍ୟ ଗ୍ରହଣ
ଧରାଧାମେ କି ସମ୍ଭବେ ?
ସୁଖ ଦୁଃଖ ଏକ ବୃନ୍ତରୁ ସମ୍ଭୂତ
ଜାମଳ ସୋଦର ପ୍ରାୟେ,
ଜଡ଼ିତ ଜୀବନେ ପ୍ରତିକୃତି ଯଥା
ମଣ୍ଡିତ ଆଲୋକ ଛାୟେ ।"

(ସୁଖ - ଦୁଃଖ)

ବାସ୍ତବାଦୀ କବି ଭାବେ ଜୀବନଯାତ୍ରାକୁ ସେ ଅତି ନିକଟରୁ ହୃଦୟ ଢ଼ାଳି ଦେଖିଛନ୍ତି ଓ ବିଶ୍ଳେଷଣ କରିଛନ୍ତି । ମତ୍ୟୁ ଓ ଜନ୍ମ ଅଙ୍ଗାଙ୍ଗୀ ଭାବେ ଜଡ଼ିତ । ଜୀବନର ମୂଲ୍ୟ କାମନା କରାଯାଏ କେବଳ ମୃତ୍ୟୁକୁ ଆଖିରେ ରଖି ସିନା । ମିଳନ ଓ ବିଚ୍ଛେଦ ଦୁହେଁ ପରସ୍ପର କୋଳାକୋଳି । ମିଳନର ମାଧୁର୍ଯ୍ୟ ଉପଭୋଗ କରିହୁଏ ଦୀର୍ଘ ବିରହ-ଜ୍ୱାଳା ପରେ । ବିରହରେ ଘାରି ହେଲା ପରେ ମିଳନ ପାଇଁ ବ୍ୟାକୁଳତା ସୃଷ୍ଟି ହୁଏ । କବି ଏହାକୁ ବିଚାର କରି ଲେଖିଛନ୍ତି -



"ମରଣ ନଥିଲେ ଜୀବନର ମୂଲ୍ୟ
କଳନ୍ତା କିଏ କେମନ୍ତେ ?
ମିଳନ ମାଧୁରୀ ଦ୍ୱିଗୁଣିତ ସିନା
ଦୀରଘ ବିରହ ଅନ୍ତେ ।"

ମହାକାଳ ସ୍ରୋତରେ କେଉଁଠି ବିରାଟ ମହାନଗରୀ ଧ୍ୱଂସ ପାଇଯାଏତ, କେଉଁଠି ପୁଣି ମରୁକାନ୍ତାର କୋଳାହଳ ମୁଖର ମହାନଗରୀରେ ପରିଣତ ହୋଇଯାଏ । କାହାର ଅହଂକାର, କାହାର ଦମ୍ଭ, ସ୍ୱାଭିମାନ ଅବା ରାଗ ବିରାଗ ସମୟସ୍ରୋତରେ ଧୋଇଯାଏ, ଭୁଷୁଡ଼ି ପଡେ, ଧ୍ୱଂସ ପାଇଯାଏ । ପ୍ରାଚୁର୍ଯ୍ୟ, ଐଶ୍ୱର୍ଯ୍ୟ ପାଇଁ ଲାଳାୟିତ ମଣିଷର ଆଶା କେତେବେଳେ ପୂରଣ ହୁଏତ, ପୁଣି କୁଆଡ଼େ ମିଳାଇ ଯାଏ । ଏହାକୁ ଲକ୍ଷ୍ୟକରି କବି ଲେଖିଛନ୍ତି :-

"କେତେକେତେ ମହାନଗରୀ ହେଲାଣି
ପରିଣତ ଭୀମ ମରୁପ୍ରାନ୍ତରେ,
କାଳକ୍ରମେ ପୁଣି କେତେ ମରୁଭୂମି
ସମୃଦ୍ଧ ହେଲାଣି ମହାନଗରେ ।"
('ଚିନ୍ମୟୀ')

କବିଙ୍କର ବର୍ଣ୍ଣନା ଚାତୁରୀ ଓ ତୁଳନା ତାଙ୍କୁ ସାର୍ଥକ ସ୍ରଷ୍ଟାର ସମ୍ମାନ ଦେଇଥାଏ । ସୌନ୍ଦର୍ଯ୍ୟ ବର୍ଣ୍ଣନାରେ କବି ନାରାୟଣ କୁଶଳୀ କାବ୍ୟକାରର ପରିଚୟର ଦିଅନ୍ତି । ଏ କ୍ଷେତ୍ରରେ ତାଙ୍କ ରଚିତ 'ତାଜମହଲ' ଓ 'ପୁନଃ ତାଜମହଲ' ନାମକ ଦୁଇଟି ସାର୍ଥକ ସୃଷ୍ଟିକୁ ନିଆଯାଇପାରେ । ପ୍ରାକୃତିକ ସୌନ୍ଦର୍ଯ୍ୟ ବର୍ଣ୍ଣନାରେ ସେ ଯେପରି ଅପୂର୍ବ ବିଦ୍ଧାଣିତ୍ୱର ପରିଚୟ ଦିଅନ୍ତି, ନାରୀର ରୂପ ବର୍ଣ୍ଣନାରେ ମଧ ସେପରି ନିଜ ମାର୍ଜିତ ଦୃଷ୍ଟିକୋଣର ପ୍ରମାଣ ଦେଇଥାଆନ୍ତି । ସୌନ୍ଦର୍ଯ୍ୟକୁ ଦେଖି ସେ କେବଳ ଆତ୍ମହରା ହୋଇ ନାହାନ୍ତି, ସୌନ୍ଦର୍ଯ୍ୟର ଉପାସନା ମଧ କରିଛନ୍ତି । ବିମୁଗ୍ଧ ଚିତ୍ତରେ ତା'ର ରୂପଶ୍ରୀକୁ କୋଳେଇ ନେଇ ଗାଇଛନ୍ତି -

"ପ୍ରଭାର ଝଲକେ ଝାଳି ନବର ପ୍ରାଙ୍ଗଣ
ସୌନ୍ଦର୍ଯ୍ୟର ତରଙ୍ଗ ଖେଳାଇ,
ମନ୍ଥର ଗମନେ ଯାଉଥିଲେ ନିତମ୍ବିନୀ
ଯେବେ କେଳି ସଦନେ ଚଳାଇ ।
ଖେଳି ଯାଉଥିଲା ଚାରୁ ଚପଳା ଚମକ
ନାଂଶୁକ ଅଞ୍ଚଳ ନର୍ତ୍ତନେ,
ଚରଣେ ମୁରୁଛି ପଡୁଥିଲା ପୁଷ୍ପଧନୁ
ମଣିମୟ ମଞ୍ଜିର ନିକ୍ୱଣେ ।"

ଏହି ସାରସ୍ୱତ ପୁରୁଷ ୧୮୮୭ ମସିହାରେ ଭଦ୍ରକର ସହିଆ' ଗ୍ରାମରେ ଜନ୍ମ ହୋଇଥଲେ । ସ୍ୱର୍ଗତଃ ପ୍ରାଣକୃଷ୍ଣଙ୍କ ପୁତ୍ର ହୋଇଥିଲେ ହେଁ, ପରବର୍ତ୍ତୀ ସମୟରେ ଭଦ୍ରକର ବାଉଦପୁରସ୍ଥ ତାଙ୍କ ମଉସା ହରମୋହନ ଦେଙ୍କ ପରିବାରକୁ ପୋଷ୍ୟପୁତ୍ର ହୋଇ ଚାଲି ଯାଇଥିଲେ । ତାଙ୍କ ପୂର୍ବ ପୁରୁଷ ବଙ୍ଗଳାର

ବର୍ଦ୍ଧମାନ ଜିଲ୍ଲାର ଅଧିବାସୀ । ୧୯୦୭ ମସିହାରେ ଏଣ୍ଟ୍ରାନ୍ସ ଓ ୧୯୧୩ ମସିହାରେ ଇଂରାଜୀ ଅନର୍ସ ସହିତ କୃତିତ୍ୱର ସହ ବି.ଏ. ପାଶ୍ କଲେ । ଆରମ୍ଭ ହେଲା ଶିକ୍ଷକ - ଜୀବନ । କଟକସ୍ଥ ପ୍ୟାରୀମୋହନ ଏକାଡେମୀ ଓ ପରେ ଆସି ଭଦ୍ରକ ହାଇସ୍କୁଲରେ ଶିକ୍ଷକ ଭାବେ ଯୋଗଦେଲେ । ଏହି ସମୟ ଭିତରେ ଘରୋଇ ଭାବରେ ୧୯୧୬ ମସିହାରେ ଇଂରାଜୀରେ ଏମ.ଏ. ପାଶ୍ କଲେ ଏବଂ ପାଟଣା କଲେଜରେ ଇଂରେଜୀ ଅଧ୍ୟାପକ ରୂପେ ଯୋଗଦେଲେ । ପରେ ରେଭେନ୍ସା କଲେଜରେ ମଧ ଅଧ୍ୟାପନା କରିଥିଲେ । ଅଧ୍ୟାପନା କାଳରେ ସେ ଜଣେ ଛାତ୍ରବତ୍ସଳ ଯୋଗ୍ୟ ଅଧ୍ୟାପକ ରୂପେ ନିଜକୁ ପରିଚିତ କରିବା ସଂଗେ ସଂଗେ, କବି ଭାବରେ ସୁନାମ ଅର୍ଜନ କରିବାକୁ ଲାଗିଲେ । ବିଭିନ୍ନ ପତ୍ରପତ୍ରିକାରେ ତାଙ୍କ ସଷ୍ଟି ପ୍ରକାଶିତ ହେଲା । ୧୯୪୫ ମସିହାରେ ସରକାରୀ ଚାକିରିରୁ ଅବସର ନେଲାପରେ ସେ ଯାଜପୁରର ନୃସିଂହ ଚୌଧୁରୀ ଘରୋଇ କଲେଜରେ ଅଧକ୍ଷ ରୂପେ ଯୋଗଦେଲେ । ପରେ ୧୯୪୮ ମସିହା ଜୁଲାଇ ୧ ତାରିଖରେ ଭଦ୍ରକ ଘରୋଇ ମହାବିଦ୍ୟାଳୟରେ ଅଧକ୍ଷ ରୂପେ ନିଯୁକ୍ତି ପାଇଲେ । ସେ ହେଉଛନ୍ତି ଭଦ୍ରକ କଲେଜର ପ୍ରଥମ ଅଧକ୍ଷ । ସେତେବେଳେ ଭଦ୍ରକ ହାଇସ୍କୁଲ ପରିସରରେ , ଭଦ୍ରକ କଲେଜ ଆରମ୍ଭ ହୋଇଥିଲା । ସେ ୧୯୪୯ ମସିହା ନଭେମ୍ବର ମାସ ୩୧ ତାରିଖ ପର୍ଯ୍ୟନ୍ତ ଏକ ବର୍ଷ ଚାରିମାସ ଭଦ୍ରକ କଲେଜର ଆରମ୍ଭ ଅବସ୍ଥାରେ ଅଧକ୍ଷ ପଦରେ ରହି ଏହାର ପ୍ରାଣ ପ୍ରତିଷ୍ଠାତା ଶିକ୍ଷା-ପ୍ରାଣ ନରେନ୍ଦ୍ର ପ୍ରସାଦ ଦାସଙ୍କୁ ବହୁ ସହାୟତା ଦେଇଥିଲେ । ଅବୈତନିକ ଅଧକ୍ଷ ଭାବେ କାର୍ଯ୍ୟ କରୁଥିବା ବେଳେ, ଶାରୀରିକ ଅସୁସ୍ଥତା ପାଇଁ ସେ ଅନିଚ୍ଛାକୃତ ଭାବେ ଇସ୍ତଫା ଦେବାକୁ ବାଧ ହୋଇଥିଲେ ।

ଛାତ୍ରାବସ୍ଥାରୁ ସେ ସାହିତ୍ୟ ପ୍ରତି ଆକୃଷ୍ଟ ହେବା ସଂଗେ ସଂଗେ, କବିତା ରଚନାରେ ମନୋନିବେଶ କରିଥିଲେ । ମାତୃଭାଷା ବଙ୍ଗଳା ହୋଇଥିଲେ ହେଁ, ଓଡ଼ିଆ ଭାଷାରେ କବିତା ରଚନା ପ୍ରତି ସେ ଅଧିକ ଆକୃଷ୍ଟ ହୋଇଥିଲେ । ପରବର୍ତ୍ତୀ କାଳରେ ସେ ଇଂରାଜୀ ଭାଷା ଓ ସାହିତ୍ୟର ଅଧ୍ୟୟନ ତଥା ଅଧ୍ୟାପନା କରି ସୁଦ୍ଧା, ଓଡ଼ିଆ ଭାଷାରେ ଲେଖାଲେଖି ଛାଡ଼ିନଥିଲେ ।

କବି ୧୯୬୩ ମସିହାରେ ଦେହାନ୍ତର କିଛି ବର୍ଷ ପୂର୍ବରୁ ବୈଷ୍ଣବ ଦୀକ୍ଷା ଗ୍ରହଣ କରିଥିଲେ । ଏହି ଧର୍ମାଲୋଚନା ପାଇଁ ତାଙ୍କ ଦ୍ୱାରା 'ବୈଷ୍ଣବ ଥିଓଲଜିକାଲ ସୋସାଇଟି' ନାମକ ଏକ ସଂଗଠନ ଗଠିତ ହୋଇଥିଲା । ବହୁ ତଥ୍ୟ ସମ୍ବଳିତ ଶ୍ରୀ ଗୌରାଙ୍ଗଙ୍କ ଉପରେ ଏକ ଆଧ୍ୟାତ୍ମିକ କାବ୍ୟ ରଚନାରେ ସେ ଶେଷ ଜୀବନ ବିତାଇଥିଲେ । ଏହା ଅପ୍ରକାଶିତ ହୋଇ ରହିଛି ସତ, ହେଲେ "ତାର ମହାଭାବ ପ୍ରେମ ରତନ" ଘେନି କରିବଇଁ ମୋ ମୂଳ ଧନ" ପରି ଅନେକ ଦୁର୍ଲଭ ପଦ୍ୟାଂଶ ମଧରେ ତାଙ୍କ ଜୀବନ୍ ଦର୍ଶନ ପ୍ରତିଫଳିତ ।

# ସଂପାଦକ, ଭଦ୍ରକ ପୂଜ୍ୟ ପୂଜା ସଂସଦ
ମଠସାହି, ଭଦ୍ରକ

# ଉତ୍କଳ ସମ୍ମିଳନୀର 'ସ୍ୱାଗତ ଗୀତିକା'

## ଡକ୍ଟର ଅରବିନ୍ଦ ଗିରି

ଉତ୍କଳ ଗୌରବ ମଧୁସୂଦନ ଦାସଙ୍କ ନେତୃତ୍ୱରେ ୧୯୦୩ ମସିହାରେ 'ଉତ୍କଳ ସମ୍ମିଳନୀ' ନାମକ ଏକ ଜାତୀୟ ଅନୁଷ୍ଠାନ ଗଠନ କରାଯାଇଥିଲା । ବିଚ୍ଛିନ୍ନ ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଏକତ୍ର କରି ଏକ ଶାସନାଧୀନରେ ଆଣିବା ଏହାର ମୁଖ୍ୟ ଉଦ୍ଦେଶ୍ୟ ଥିଲା । ଏଥି ପୂର୍ବରୁ ବାଲେଶ୍ୱରର ରାଜା ବାହାଦୂର ବୈକୁଣ୍ଠନାଥ ଦେ ବଙ୍ଗ, ମାନ୍ଦ୍ରାଜ ଓ ମଧ୍ୟପ୍ରଦେଶ ଅନ୍ତର୍ଗତ ଓଡ଼ିଆ ଭାଷାଭାଷୀ ଉତ୍କଳଖଣ୍ଡକୁ ଏକତ୍ର କରି ଉକ୍ତ ତିନି ପ୍ରଦେଶ ମଧ୍ୟରୁ କୌଣସି ଏକ ପ୍ରଦେଶାଧୀନ କରିବାପାଇଁ ୧୯୦୨ ମସିହାରେ ସମଗ୍ର ଉତ୍କଳରୁ ଏକ ଲକ୍ଷ ଲୋକଙ୍କର ସ୍ୱାକ୍ଷର ସମ୍ବଳିତ ଏକ ଆବେଦନ ପତ୍ର ତତ୍‌କାଳୀନ ମହାମାନ୍ୟ ଗଭର୍ଣ୍ଣର ଜେନେରାଲ ଲର୍ଡ କର୍ଜନଙ୍କୁ ପ୍ରଦାନ କରିଥିଲେ । ସେଥିପାଇଁ ସେ ଏ ଜାତିର ଚିରବନ୍ଦନୀୟ ।

ମଧୁସୂଦନ 'ଉତ୍କଳ ସମ୍ମିଳନୀ' ଗଠନ କରିବା ପରିକଳ୍ପନା ପୂର୍ବରୁ ରାୟବାହାଦୂର ନନ୍ଦକିଶୋର ଦାସ 'ଉତ୍କଳ ସମ୍ମିଳନୀ ସଭା' ନାମକ ଏକ ଅନୁଷ୍ଠାନ ଗଠନ କରିଥିଲେ ୧୮୮୯ ମସିହାରେ । ସେଥିଲେ ଉକ୍ତ ଅନୁଷ୍ଠାନର ସଭାପତି । ସେତେବେଳେ ଗ୍ରାମାଞ୍ଚଳରୁ କଟକକୁ ଆସୁଥିବା ଗରିବ ଛାତ୍ରମାନଙ୍କୁ ଶିକ୍ଷାଦାନ ଦେବାର ବ୍ୟବସ୍ଥା, ଆର୍ଥିକ ସହାୟତା ଓ କରଣ ସମାଜରେ ବିବାହଜନିତ ଅସୁବିଧା ଦୂର କରିବା (ବିବାହ ସଂସ୍କାର) ପାଇଁ ଏହି ଅନୁଷ୍ଠାନ ଗଠନର ମୁଖ୍ୟ ଉଦ୍ଦେଶ୍ୟ ଥିଲା ।

'ଉତ୍କଳ ସମ୍ମିଳନୀ' ଗଠନ ପୂର୍ବରୁ ମଧୁସୂଦନ ଦାସ ନିଜ ଗୃହରେ ଉତ୍କଳର ରାଜନ୍ୟବର୍ଗ ଓ ଭଦ୍ରବ୍ୟକ୍ତିମାନଙ୍କୁ ଡାକି ଏକ ସମ୍ମିଳନୀର ଆୟୋଜନ କରିଥିଲେ । ସେମାନଙ୍କ ସମ୍ମାନାର୍ଥେ ଗୃହର ଚତୁର୍ଦ୍ଦିଗ ଆଲୋକମାଳାରେ ସଜ୍ଜିତ ହୋଇଥିଲା । ଗୃହ ମଧ୍ୟରେ ବାୟସକୋପ ନାମକ ଛାୟାବାଜି ପ୍ରଦର୍ଶିତ ହୋଇଥିଲା । ବାଜି ସମୟରେ ସେଠାରେ ଓଡ଼ିଆ ସଙ୍ଗୀତ ଗାନ କରାଯାଇଥିଲା । ଏହାପରେ ମହିଳାମାନେ ସଭାମଣ୍ଡପରେ ଉପସ୍ଥିତ ହୋଇ ଅନ୍ୟ ଏକ ଗୀତ ଗାନ କରିଥିଲେ । ଏହାପରେ ପରେ ମଧୁସୂଦନ ରାଓ ଗୋଟିଏ ପଦ୍ୟ ପାଠ କରିଥିଲେ । ତାପରେ ମଧୁବାବୁ (ଦାସ) ଉତ୍କଳରେ ଏକତାର ଅଭାବ ବିଷୟରେ ଗୋଟିଏ ସୁଦୀର୍ଘ ବକ୍ତୃତା ପ୍ରଦାନ କରିଥିଲେ ଏବଂ ଏକ ମନରେ ଜନ୍ମଭୂମିର ସେବା କରିବାକୁ ସମସ୍ତଙ୍କୁ ଅନୁରୋଧ କରିଥିଲେ । ଦୁଇଜଣ ଗୋଟିପୁଅ ଜନ୍ମଭୂମି ସମ୍ବନ୍ଧରେ ଗୋଟିଏ ପଦ୍ୟ ତାନପୁରା ଯୋଗେ ଗାନକରିଥିଲେ । ଆଠଗଡ଼ର ରାଜା ପ୍ରସ୍ତାବ କରିଥିଲେ ପ୍ରତିବର୍ଷ କଟକ ମହାନଗରୀରେ ଏହିଭଳି ଗୋଟିଏ ସମ୍ମିଳନୀ ଦିନ ଧାର୍ଯ୍ୟ କରିବାପାଇଁ । ଉପସ୍ଥିତ ରାଜନ୍ୟବର୍ଗଙ୍କ ସମ୍ମତି କ୍ରମେ କେଉଁଝରଗଡ଼ର ରାଜା ଉକ୍ତ ଭାର ମଧୁବାବୁଙ୍କୁ ନେବାକୁ କହିଲେ । ଶେଷରେ ଫନୋଗ୍ରାଫର ଶ୍ରବଣ ଓ ବାୟସକୋପ ପ୍ରଦର୍ଶନ କରି ସମସ୍ତେ ସ୍ୱଗୃହକୁ ଯାତ୍ରା କରିଥିଲେ ।

ପ୍ରଥମ ଉତ୍କଳ ସମ୍ମିଳନୀ ୧୯୦୩ ମସିହା ଡିସେମ୍ବର ୩୦,୩୧ (ବୁଧବାର ଓ ଗୁରୁବାର) କଟକ ମହାନଗରୀର ଇଦ୍‌ଗା ପଡ଼ିଆରେ ସୁସଜ୍ଜିତ ସଭା ମଣ୍ଡପରେ ଅନୁଷ୍ଠିତ ହୋଇଥିଲା । ଉତ୍କଳର ଗଞ୍ଜାମ, ସମ୍ବଲପୁର, ମେଦିନୀପୁର, ଗଡ଼ଜାତରୁ ବହୁଲୋକ ସମାଗତ ହୋଇଥିଲେ । ସମ୍ଭ୍ରାନ୍ତବ୍ୟକ୍ତି ମାନଙ୍କ ମଧ୍ୟରେ ମୟୂରଭଞ୍ଜ, କେଉଁଝର, ତାଳଚେର, ଢେଙ୍କାନାଳ, ଆଠଗଡ଼, ମଧୁପୁର, ଖଲ୍ଲିକୋଟ, କନିକା, ବାଲେଶ୍ୱର, ଉଦୟପୁର, ମଞ୍ଜୁଷା, ସୁରଙ୍ଗିର ରାଜନ୍ୟବର୍ଗ, କଲିକତା 'ଅମୃତ ବଜାର' ପତ୍ରିକାର ସମ୍ପାଦକ, ଓଡ଼ିଶାର କମିଶନର ଓ ପାଦ୍ରିସାହେବ ମାନେ ଉପସ୍ଥିତ ଥିଲେ । ଆଠଗଡ଼ର ରାଜା ଗୋଟିଏ ୮ ଧାଡ଼ିର ସଂସ୍କୃତ ଶ୍ଳୋକ ପାଠକରିଥିଲେ ଏବଂ ସଭାକାର୍ଯ୍ୟ ଆରମ୍ଭ ହୋଇଥିଲା । କାର୍ଯ୍ୟନିର୍ବାହକ କମିଟୀର ସଭାପତି ଶ୍ରୀଯୁକ୍ତ କନିକା ରାଜା ସଭାରେ ଉପସ୍ଥିତ ସଭ୍ୟ ସମସ୍ତଙ୍କୁ ସମ୍ବୋଧନ କରିଥିଲେ । ଏହାପରେ କେଉଁଝର ରାଜାଙ୍କ ପ୍ରସ୍ତାବ ଓ

ଢେଙ୍କାନାଳ ରାଜାଙ୍କ ଅନୁମୋଦନ କ୍ରମେ ମୟୂରଭଞ୍ଜାଧିପତି ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେଓ ଏହି ଶୁଭାନୁଷ୍ଠାନରେ ସଭାପତି ଆସନରେ ଅଳଂକୃତ ହୋଇଥିଲେ । ଏହି ଶୁଭ ଅବସରରେ ଓଡ଼ିଆ, ବଙ୍ଗଳା, ଉର୍ଦ୍ଦୁ ଓ ସଂସ୍କୃତରେ 'ସ୍ୱାଗତ ଗୀତିକା' ହାରମୋନିୟମ୍ ସାହାଯ୍ୟରେ ଗାନ କରାଯାଇଥିଲା । ସଙ୍ଗୀତ ରଚୟିତା ମାନଙ୍କର ନାମଉଲ୍ଲେଖ ନଥିଲା । ସମ୍ମିଳନୀର ସ୍ୱାଗତ ଗୀତିକା ଏକ ପ୍ରଧାନଭୂଷଣ ହୋଇଥିଲା ।

ପ୍ରଥମ ଓଡ଼ିଆ ସଙ୍ଗୀତଟି ୮ ପଦ(୧୮ ଧାଡ଼ି)ବିଶିଷ୍ଟ ଏବଂ ରାଗ ଆଶାବରୀ । ଗୀତର ଆଦ୍ୟ ଓ ଶେଷ ପଦଟିର ଦୃଷ୍ଟାନ୍ତ ହେଉଛି -

ଘୋଷୁ ଜନନୀ ଗୋ, ଭୁବନ ତବ ମହିମା
ଅୟୁତ ରସନା, ଆଜି ମା ଉତ୍କଳ, ରଟଇ ତବ ଗାରିମା । ଘୋଷା ।
ଏତେକାଳେ ସତେ ପରତେ ହେଉଛି, ବିହି ଘଟାଇଲା ଆଣି
ନିରାଶାକୁହରେ ମୃତସଞ୍ଜୀବନୀ ଆଶା ବୀଣା-ଜିଣା ବାଣୀ । ୧ ।
x x x x
ବାଞ୍ଛାକଳ୍ପତରୁ, ବ୍ରହ୍ମାଣ୍ଡ ଈଶ୍ୱରପଦେ ପଶିଲୁଁ ଶରଣ ।
ରଖ, ଉତ୍କଳକୁ ଏତିକି ମାଗୁଣି, ପ୍ରଭୁ ଅରକ୍ଷରକ୍ଷଣ । ୮ ।

ବଙ୍ଗଳା ସଂଗୀତଟି ୧୪ ଧାଡ଼ି ବିଶିଷ୍ଟ ଏବଂ ଏହାର 'ରାଗିନୀ ସିନ୍ଧୁଖମ୍ବାଜ-ତାଲଯତ୍' ଥିଲା । ଉଦାହରଣ ହେଉଛି -

ଜନନୀ ଦୁଃଖିନୀ କେନ ମଲିନ ବଦନ ?
ଅଶ୍ରୁନୀରେ ଭାସେ କେନ କମଲ ନୟନ ?
x x x
ଉଠ, ଜାଗ, ଭାତୃଗନ, ଜନନୀର ତରେ,
କରିତେ କି ପାରି ସବେ ଦେଖାବ ଧରାରେ ।
ଜନନୀର କାଯେ ସାଜ, ଧର୍ମେ କରି ପଣ,
ସଂପଦ୍, ଜନନୀ ପଦେ ଧନ, ପ୍ରାନ, ମନ ।

'ସଂସ୍କୃତ'ର ଭାରତ ଗୀତିକାଟି କବିବର ରାଧାନାଥ ରାୟଙ୍କ ଦ୍ୱାରା ରଚିତ । ଏହା ମଧ୍ୟ ୧୪ ଧାଡ଼ି ବିଶିଷ୍ଟ । 'ଭୈରବୀ ରାଗ' ଏବଂ 'କାବାଳି' ତାଳରେ ଗାନ କରାଯିବ । ଯଥା

ସର୍ବେଷାଂ ନୋ ଜନନୀ ଭାରତ ଧରଣୀ କଳ୍ପଲତେୟଂ
ଜନନୀ ବତ୍ସଳ ତନୟ ଗଣୈସ୍ତତ୍ ସମ୍ୟକ-ଶର୍ମ୍ମବିଧେୟମ୍ । ଧ୍ରୁବଂ ।
x x x x
ଭାରତମେକାଗତିରସ୍ମାକଂ ନାପରାସ୍ତି ଭୁବିନାମ
ସର୍ବାଦୌ ପରିଷତ୍ କର୍ମଣି ତତ୍ ଭାରତମେବ ନମାମଃ ।

ଉର୍ଦ୍ଦୁ ସଂଗୀତକୁ ଓଡ଼ିଆ ଅକ୍ଷରରେ ଛାପିବାର ଅସୁବିଧା ହେତୁ ଏହାକୁ ପ୍ରକାଶ କରାଯାଇନଥିଲା ।

'ଉତ୍କଳ ସମ୍ମିଳନୀ'ର ତୃତୀୟ ଅଧିବେଶନ ୧୯୦୬ ମସିହା ଏପ୍ରିଲ ୧୩,୧୪ ତାରିଖରେ ବାଲେଶ୍ୱର ସହରର ପର୍ମିଟ୍ ପଡ଼ିଆ ସଭାମଣ୍ଡପରେ ଅନୁଷ୍ଠିତ ହୋଇଥିଲା । ବାଲେଶ୍ୱର ରାଜାବାହାଦୁର ବୈକୁଣ୍ଠନାଥ ଦେ ଅଭ୍ୟର୍ଥନା ସଭାର ସଭାପତି ଥିଲେ ଏବଂ ତାଳଚେ଼ରର ରାଜା କିଶୋରଚନ୍ଦ୍ର ବୀରବର ସଭାପତି ଆସନ ଅଳଙ୍କୃତ କରିଥିଲେ । ଏହାପରେ ହାରମୋନିୟମ୍ ବାଦ୍ୟଯନ୍ତ୍ର ସାହାଯ୍ୟରେ ସ୍ୱାଗତ ସଙ୍ଗୀତ ଗାନ କରାଯାଇଥିଲା । ପ୍ରଥମେ କବିବର ରାଧାନାଥଙ୍କ ରଚିତ 'ସର୍ବେଷାଂ ନୋ ଜନନୀ ଭାରତ' ଗାନ କରାଯାଇଥିଲା । ଏହାପରେ ୨୨ଧାଡ଼ି ବିଶିଷ୍ଟ ଏକ ଉର୍ଦ୍ଦୁ ସଂଗୀତ ଗାନ କରାଯାଇଥିଲା । ଯଥା -

ଲାଇଯ୍ୟୋ ଅଏ ଉତ୍କଳୀଯ୍ୟେ ! ଲାଇଯ୍ୟୋ ତଶ୍‌ରୀଫଂସ୍ୱାନ୍,
ଲାଇଯ୍ୟୋ ଅପ୍‌ନି ଭଲାଇ ହୋକେ ଏକ୍ ଦିଲ୍ ଏକ ଯାନ୍ ।

X X X X

ଆଓର୍ ମିଷ୍ଟର୍‌ଦାସ ଯୋକେ ବାନିଯ୍ୟେ କନ୍‌ଫ୍ରେନ
ଖୁଶ୍‌ରଖେ ଉନ୍‌କୁ ଖୋଦାଏ ମେହେର୍ ବାଁ ଦର୍‌ଦୋ ଜୀହାନ୍ ।

ଏହାପରେ ଏକ ସଂସ୍କୃତ ଶ୍ଳୋକ (୨୪ଧାଡ଼ି ବିଶିଷ୍ଟ) ପାଠ କରାଯାଇଥିଲା । ଏହା ଏପରି ଥିଲା -

ବିଜ୍ଞାନ-ବିଶ୍ୱସୁଖ-ଜୀବନକାରଣେଷୁ,
ସାହିତ୍ୟ-ଶିଳ୍ପ-କୃଷିକର୍ମସୁ ସତ୍‌ପ୍ରବୃତ୍ତିଃ ।
ସର୍ବୋତ୍କଳୀଯ୍ୟ-ହୃଦୟେ ସଦୟେ ସତିବେଳଂ,
ଜାଗର୍ତ୍ତୁ ଜାତୁ କୃଶତାମପି ନୈବଯାତୁ ।

ତତ୍‌ପରେ ସାତଧାଡ଼ି ବିଶିଷ୍ଟ ଓଡ଼ିଆ ଗୀତଟି ମଧ୍ୟ ଗାନ କରାଯାଇଥିଲା । ଏହାର ରାଗିଣୀ ଅହଂ (march) ତାଳ ଏକତାଳୀ ଥିଲା । ଉଦାହରଣ ସ୍ୱରୂପ -

ଜାଗରେ ଉତ୍କଳବାସୀ ଜାଗଜାଗ ଜାଗରେ,
ଜାଗରେ, ଜାଗରେ, ଜାଗରେ, ଜାଗରେ ।

X X X

ଉଠରେ ଉଠାଅରେ ଚେତରେ ଚେତାଅରେ,
ଜାଗରେ, ଜଗାଅରେ ଆଗରେ ଆଗରେ ।

ଉତ୍କଳ ସମ୍ମିଳନୀର ୯ମ ଅଧିବେଶନ ୧୯୧୩ ମସିହାରେ ଡିସେମ୍ବର ୨୯,୩୦ ତାରିଖରେ ପୁରୀ ନଗରୀର ଶ୍ରୀରାମଚଣ୍ଡୀ ଠାକୁରାଣୀଙ୍କ ସମ୍ମୁଖବର୍ତ୍ତୀ ବିସ୍ତୃତଭୂମିର ଜାତୀୟ ଯଜ୍ଞବେଦି (ମଣ୍ଡପ)ରେ ପାଳିତ ହୋଇଥିଲା । ଉତ୍କଳ ଗୌରବ ମାନ୍ୟବର ମଧୁସୂଦନ ଦାସ, ସି.ଆଇ.ଇ ମହୋଦୟ ସଭାପତି ଆସନ ଅଳଂକୃତ କରିଥିଲେ । ଏତିକିବେଳେ 'ଜୟ ଉତ୍କଳର ଜୟ' ଧ୍ୱନିରେ ସଭା ଚତୁର୍ଦ୍ଦିଗ ମୁଖରିତ ହୋଇଥିଲା । କବିବର ରାଧାନାଥଙ୍କ ବିରଚିତ 'ଭାରତ ଗୀତିକା' ହାରମୋନିୟମ୍ ସାହାଯ୍ୟରେ ଗାନ କରାଯାଇଥିଲା । ଏହାପରେ ଏକ ସୁନ୍ଦର ଓଡ଼ିଆ ସଙ୍ଗୀତଟି ମଧ୍ୟ ଗାନ କରାଯାଇଥିଲା । ଏହି ୧୬ଧାଡ଼ି ବିଶିଷ୍ଟ ସଂଗୀତର ନମୁନା ହେଉଛି -

ପୂତ ପ୍ରାଣେ ପ୍ରେମଧରମେ ଉଠ ହେ ଭାଇ ଆରବେ,
ମାତିଉଠୁ ଏ ଜନ୍ମଭୂମି ଜ୍ଞାନ କର୍ମ ଗୌରବେ ।

X X X

ଶୁଭୁ ହେ ଗାନ ଗ୍ରାମ ନଗର କାନନ ଗିରି କୁଞ୍ଜରେ
'ଦେଶ କରମେ ଆତ୍ମଦାନ' ଘୋର ମନ୍ତ୍ର ଭେରିରବେ ।

ସଭାପତିଙ୍କ ବକ୍ତୃତା ଶେଷରେ ସୁରଙ୍ଗୀ ରାଜାସାହେବଙ୍କ ଦ୍ୱାରା ରଚିତ ସଂଗୀତଟି ଯନ୍ତ୍ର ସାହାଯ୍ୟରେ ମଧ୍ୟ ଗାନ କରାଯାଇଥିଲା । ଏହା ୧୩ଧାଡ଼ି ବିଶିଷ୍ଟ ଏବଂ ବେହାଗ-ରୂପକ ତାଳରେ ରଚିତ ହୋଇଥିଲା । ନମୁନା ସ୍ୱରୂପ -

ଚିର ଦୁଃଖିନୀ ମା ଉତ୍କଳ ଜନନୀ
ଆହା କି ହେଲୁ କି ହୋଇଥିଲୁ
ଛିନ୍ନ ବିଚ୍ଛିନ୍ନ ତନୁ ଘେନି ।ଘୋଷା ।

ପ୍ରଥମ ଦିବସର କାର୍ଯ୍ୟ ସମାପ୍ତି ପୂର୍ବରୁ ଶ୍ରୀ ଲକ୍ଷ୍ମୀକାନ୍ତ ମହାପାତ୍ରଙ୍କ ରଚିତ 'ବନ୍ଦେ ଜନନୀ' ସଙ୍ଗୀତ (୬ପଦ ବିଶିଷ୍ଟ) ପାଠ ହୋଇଥିଲା । ଏହାର ପ୍ରକାଶିତ ରୂପଟି ଏହିଭଳି ଥିଲା -

ଜନନୀ
ଚାରୁହାସମୟୀ ଚାରୁଭାଷମୟୀ
ଜନନୀ ଜନନୀ ଜନନୀ । (କୋରସ)
ନୀଳପୟୋଧି ବିଧୌତ ଶରୀରା, ତାଳତମାଳ ସୁଶୋଭିତ ତୀରା
ପୂତ ତଟିନୀକୁଳ ଶୀକର ସମୀରା, ଜନନୀ ଜନନୀ, ଜନନୀ ।୧।

x x x x

କବିକୁଳମୌଳି ସୁନନ୍ଦନ ବନ୍ଦ୍ୟା, ବିଶ୍ୱବିଘୋଷିତ କୀର୍ତ୍ତିଅନିନ୍ଦ୍ୟା,
ଧନ୍ୟେ, ଗୁଣ୍ୟେ, ଚିରଶରଣ୍ୟେ, ଜନନୀ, ଜନନୀ, ଜନନୀ ।୨।

'ଉତ୍କଳ ସମ୍ମିଳନୀ'ର ୧୩ ଅଧିବେଶନ ୧୯୧୮ ମାର୍ଚ୍ଚ ମାସ ୩୦,୩୧ ତାରିଖ କଟକର ଉତ୍ତର ପଶ୍ଚିମାଂଶ 'ଇଦ୍‌ଗା' ପଡ଼ିଆରେ ନିର୍ମିତ ସଭାମଣ୍ଡପରେ ଅନୁଷ୍ଠିତ ହୋଇଥିଲା । ଜୀବନର ସାୟାହ୍ନରେ ବାର୍ଦ୍ଧକ୍ୟ ଓ ଜରାଗ୍ରସ୍ତ ବ୍ୟାସକବି ଫକୀରମୋହନ ସେନାପତି ସମ୍ମିଳନୀର ସଭାପତି ଆସନ ଅଳଂକୃତ କରି ଜୀବନରେ ପରମ ଆନନ୍ଦ ଓ ଶାନ୍ତିଲାଭ କରିଥିଲେ । ଅଭ୍ୟର୍ଥନା ସଭାର ସଭାପତି କନିକାର ମାନ୍ୟବର ରାଜା ଶ୍ରୀଯୁକ୍ତ ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓଙ୍କ ଆଦେଶ କ୍ରମେ କବିବରଙ୍କ ରଚିତ 'ଭାରତ ଗୀତିକା' ହାରମୋନିୟମ୍ ସାହାଯ୍ୟରେ ଗାନ କରାଯାଇଥିଲା । ଏହାପରେ ଉତ୍କଳମାତାଙ୍କର ଆବାହନ 'ବନ୍ଦଇ ଜନ୍ମଭୂମି' ୩ଥର ଧ୍ୱନିରେ ସଭାସ୍ଥଳ ମୁଖରିତ ହୋଇଥିଲା । ପରେ ପରେ ମଧୁସୂଦନ ଦାସଙ୍କ ରଚିତ ୧୧ପଦ ବିଶିଷ୍ଟ ସଂଗୀତଟି ଗାନ କରାଯାଇଥିଲା । ଯଥା -

'ମାଆ' 'ମାଆ' ବୋଲି କେତେ ମୁଁ ଖୋଜିଲି
ମାଆକୁ ପାଇଲି ନାହିଁ ।
'ଭାଇ' 'ଭାଇ' ବୋଲି କେତେ ମୁଁ ଡାକିଲି
ନ ଦେଲେ ଉତ୍ତର କେହି ।୧।

ସଭାପତିଙ୍କ ଅଭିଭାଷଣ ପରେ 'ମାତାର ଖେଦ' ଶୀର୍ଷକ (୧୮ଧାଡ଼ି ବା ୪ପଦ ବିଶିଷ୍ଟ) କବିତାଟି ବୋଲାଯାଇଥିଲା । ଯଥା -

ମାଆ, ମାଆ ବୋଲି ଡାକୁଚୁକି ମୋତେ ଆରେ ମୋ ଦୁଃଖ-ପାସୋରା,
କାହିଁ ପାଇଁ ଚେଇଁ ଶୋଇଥିଲ ବାପ ମୋ ମନ-ନୟନ-ତାରା ।
ଦିଏ ନରକ୍ଷୀର ରୂପେ ମୋ ରୁଧିର/ବିଦାରି ହୃଦୟ ଯୋଗାଏଁ ଆହାର/
ମୋ ସୁଖ ସମ୍ପଦ କରିଅଛି ଜୁର/ଭୁଲି ଯାଉଅଛୁ ପରା ।୧।

ପ୍ରଥମ ଦିବସର ସମ୍ମିଳନୀ କାର୍ଯ୍ୟସୂଚୀ ଶେଷହେବା ପୂର୍ବରୁ ଯନ୍ତ୍ର ସାହାଯ୍ୟରେ ନିମ୍ନ 'ଜାତୀୟ ସଂଗୀତ'ଟି ଗାନ କରାଯାଇଥିଲା । ଉକ୍ତ ସଙ୍ଗୀତଟି ୧୨ଧାଡ଼ି ବା ୫ପଦ ବିଶିଷ୍ଟ ଥିଲା । 'ଗଲାଣିତ ଗଲା କଥା' ବୃତ୍ତରେ ରଚିତ ହୋଇଥିଲା । ଯଥା -

ପୁଲକିତ ଚିତ୍ତ ଆଜ ହେ ସୋଦରେ ପୁଲକିତ ଚିତ୍ତ ଆଜ ।
ଏକ ମାତା କୋଳେ ସମାଗତ ଦେଖି ଉତ୍କଳସୁତ ସମାଜ ।ଘୋଷା ।

x x x x

ତେବେ ଆସ ମୋର ପ୍ରିୟ ସହୋଦର ସୁମରି ବିଶ୍ୱଜୀବନ
ଏକ ମନ ହୋଇ ଦେଶହିତ ପାଇଁ ସମର୍ପି ଦେବା ଜୀବନ ।୫।

ଦ୍ୱିତୀୟ ଦିବସର କାର୍ଯ୍ୟସୂଚୀ ଆରମ୍ଭରେ କବିବରଙ୍କ ରଚିତ 'ଭାରତ ଗୀତିକା' ଗାନ କରାଯାଇଥିଲା ।

# ବରିଷ୍ଠ ଅଧ୍ୟାପକ, ଓଡ଼ିଆ ଭାଷା ସାହିତ୍ୟ ବିଭାଗ, ସ୍ୱର୍ଣ୍ଣଚୂଡ଼ ମହାବିଦ୍ୟାଳୟ, ମିତ୍ରପୁର ।

# ବାଂଲାଦେଶୀ ଅନୁପ୍ରବେଶ : ଏକ ଜାତୀୟ ସମସ୍ୟା

ଶ୍ରୀ କାଳୀପଦ ପଣ୍ଡା

ସଂପ୍ରତି ଓଡ଼ିଶାରେ ବାଂଲାଦେଶୀ ଅନୁପ୍ରବେଶ ଏକ ମୁଖ୍ୟ ସମସ୍ୟା ରୂପେ ଦେଖାଯାଇଛି । ମୁଖ୍ୟତଃ ଓଡ଼ିଶାର ଉପକୂଳବର୍ତ୍ତୀ ଅଞ୍ଚଳରେ ଏହି ସମସ୍ୟା ଅଧିକ ଉତ୍କଟ ହେବାରେ ଲାଗିଛି । ଦୀଘା ଓ ତାଳସାରି ଠାରୁ ଗୋପାଳପୁର ବନ୍ଦର ପର୍ଯ୍ୟନ୍ତ ଓଡ଼ିଶାର ସୁଦୀର୍ଘ ୪୫୦ କି.ମି. ସମୁଦ୍ର ଉପକୂଳ ଅଞ୍ଚଳରେ ହିଁ ଅନୁପ୍ରବେଶକାରୀମାନେ ଧୀରେ ଧୀରେ ସେମାନଙ୍କର କାୟା ବିସ୍ତାର କରିବାରେ ଲାଗିଛନ୍ତି । ସେମାନେ ଆମ ପ୍ରଦେଶକୁ ମୁଖ୍ୟତଃ ଜଳପଥ ଯୋଗେ ଆସିଥାନ୍ତି । ସମୁଦ୍ରରେ ମାଛ ଧରିବା କାର୍ଯ୍ୟରେ ଆସି ଖୁବ୍ ଚତୁରତାର ସହିତ ବର୍ଡ଼ର ପାରି ହୋଇ ଆମ ଜଳପଥକୁ ପ୍ରବେଶ କରି ଥାଆନ୍ତି। ଏଥିପାଇଁ ବର୍ଡର ଅଞ୍ଚଳରେ କେତେକ ନିର୍ଦ୍ଦିଷ୍ଟ ଦଲାଲ ପାଞ୍ଚଶହରୁ ଏକହଜାର ଟଙ୍କା ପର୍ଯ୍ୟନ୍ତ ନେଇ ସେମାନଙ୍କୁ ସୀମା ପାରି କରିଦିଅନ୍ତି । ବହୁବର୍ଷ ପୂର୍ବରୁ ଆମ ଉପକୂଳ ଅଞ୍ଚଳରେ ସ୍ଥାୟୀ ଭାବେ ବାସବାରକରି ରହିଯାଇଥିବା ବାଂଲାଦେଶୀମାନେ ସେମାନଙ୍କର ବଂଶଧରମାନଙ୍କୁ ଏଠାରେ ସ୍ଥାୟୀ କରାଇ ଦିଅନ୍ତି । ଉପକୂଳର ସୁଦୀର୍ଘ ଝାଉଁ ଜଙ୍ଗଲକୁ ନଷ୍ଟ କରି ଏମାନେ ନିଜ ପାଇଁ କିଛି ଅଞ୍ଚଳ ଘେରି ବାସ ଗୃହ ନିର୍ମାଣ କରିଥାନ୍ତି । ସେଠାକାର ସ୍ଥାନୀୟ ବିଭିନ୍ନ ରାଜନୈତିକ ଦଳର ନେତୃବୃନ୍ଦ ତଥା ପ୍ରଶାସନିକ ଅଧିକାରୀମାନଙ୍କ ସହାୟତା ନେଇ ଧୀରେ ଧୀରେ ସେମାନେ ଉକ୍ତ ସ୍ଥାନକୁ ନିଜ ନାମରେ ପଟା କରାଇ ନେଇଥାନ୍ତି । ଭୋଟର ତାଲିକାରେ ନିଜ ନାମକୁ ଦରଜ କରାଇ ସ୍ଥାୟୀ ବାସିନ୍ଦା ହୋଇଯାନ୍ତି । ରାଜନୈତିକ ଦଳର ଲୋକଙ୍କର ପ୍ରୋତ୍ସାହନରୁ ଏମାନେ ସ୍ଥାୟୀ ବାସିନ୍ଦା ହେବାରେ ସମର୍ଥ ହୋଇଥାନ୍ତି ।

ଅବିଭକ୍ତ ବାଲେଶ୍ୱର ଜିଲ୍ଲାରେ ଏହି ବାଂଲାଦେଶୀ ଅନୁପ୍ରବେଶ ସମସ୍ୟା ଦିନକୁ ଦିନ ଉତ୍କଟ ରୂପ ଧାରଣ କରିବାରେ ଲାଗିଛି । ବାଲେଶ୍ୱର ଜିଲ୍ଲାରେ ଏ ଯାବତ୍ ୧୫୦ ଜଣ ବାଂଲାଦେଶୀ ରହିଥିବାର ଜିଲ୍ଲା ପ୍ରଶାସନ ପ୍ରକାଶ କରିଛି । ମାତ୍ର ଏକ ସର୍ବେକ୍ଷଣରୁ ଜଣାପଡ଼ିଛି ଯେ କେବଳ ବାଲେଶ୍ୱର ତହସିଲ ଅର୍ନ୍ତଗତ ଚାନ୍ଦିପୁର, ବଳରାମଗଡ଼ି, ବାହାବଳପୁର, ଛାନୁଆ, ସାର୍ଥା, ପରିଖି, କଷାଫଳ ଇତ୍ୟାଦି ପଞ୍ଚାୟତ ମାନଙ୍କରେ ୫୦୦୦ରୁ ଉର୍ଦ୍ଧ୍ୱ ବାଂଲାଦେଶୀ ଅଛନ୍ତି । ବାଲିଆପାଳ ବ୍ଲକର ହଂସକୁରା ମୁହାଁଣଠାରୁ ମହାବଳପୁର, କଷାଫଳ ଏବଂ ଚାନ୍ଦିପୁର ତଥା ବଳରାମଗଡ଼ି ଏବଂ ଭଦ୍ରକ ଜିଲ୍ଲାର ବାସୁଦେବପୁର ବ୍ଲକ, ଚାନ୍ଦବାଲି ବ୍ଲକ ଏବଂ ଧାମରା ଅଞ୍ଚଳରେ ପ୍ରାୟ ଦଶହଜାରରୁ ଉର୍ଦ୍ଧ୍ୱ ବାଂଲାଦେଶୀ ଆସି ସ୍ଥାୟୀ ଭାବେ ବସବାସ କରି ରହିଲେଣି । ଏମାନେ ଛୋଟ ଛୋଟ ବାଣିଜ୍ୟ ବ୍ୟବସାୟ କରି ଚଳିଥାନ୍ତି । ଏମାନଙ୍କ ସମସ୍ୟା ଦିନକୁ ଦିନ ବୃଦ୍ଧି ପାଇବାରେ ଲାଗିଛି । ଏଭଳିକି ବସ୍ତା, ଜଳେଶ୍ୱର, ରୂପସା, ଭଦ୍ରକ ଆଦି କେତେଗୁଡ଼ିଏ ରେଳଷ୍ଟେସନର ପ୍ଲାଟଫର୍ମ ମାନଙ୍କରେ କେତେକ ବାଂଲାଦେଶୀ ବହୁବର୍ଷ ଧରି ରହୁଥିବାର ଦେଖିବାକୁ ମିଳୁଛି । ଏମାନେ ବିଭିନ୍ନ ଚୋରାମାଦକ ଦ୍ରବ୍ୟ କାରବାର, ଚୋରୀ ଡକାୟତି ଏଭଳିକି ଦେହ ବ୍ୟବସାୟରେ ଲିପ୍ତ ରହୁଥିବାର ଅଭିଯୋଗ ହେଉଛି । ତେବେ ସବୁଠାରୁ ଗମ୍ଭୀର ବିଷୟଟି ହେଲା, ଆମ ଦେଶର ସୁରକ୍ଷା ପାଇଁ ବାଲେଶ୍ୱର ସହର ଉପକଣ୍ଠସ୍ଥ ଚାନ୍ଦିପୁର ଠାରେ ଥିବା ପ୍ରତିରକ୍ଷା କେନ୍ଦ୍ରର ସୁରକ୍ଷା । ଚାନ୍ଦିପୁର ଅଞ୍ଚଳରୁ ବିଭିନ୍ନ ସମୟରେ ବହୁବାର ସନ୍ଦେହଜନକ ଭାବରେ ବହୁ ବାଂଲାଦେଶୀଙ୍କୁ ଗିରଫ କରାଯାଇଛି । ସେମାନଙ୍କ ପାଖରୁ ବହୁ ତଥ୍ୟ ମଧ୍ୟ ଉଦ୍‌ଘାଟିତ ହୋଇଛି । ଏହା

ବାଲେଶ୍ୱର ପୋଲିସ ପ୍ରକାଶ କରିଛି । ଏମାନଙ୍କ ମଧ୍ଯରୁ କିଛି ଗୁପ୍ତଚର ସାଜି ଆମ ପ୍ରତିରକ୍ଷା କେନ୍ଦ୍ରର ନକ୍‌ସା ସହ ଆମର ପ୍ରତିରକ୍ଷା ବ୍ୟବସ୍ଥା ବିଦେଶକୁ ଜଣାଇ ଦେବା ପାଇଁ କାର୍ଯ୍ୟ କରୁଥିବା ସ୍ୱୀକାର କରିଛନ୍ତି ।

ଓଡ଼ିଶାର କେବଳ ଏହି ଅବିଭକ୍ତ ବାଲେଶ୍ୱର ଜିଲ୍ଲା ନୁହେଁ, ଯାଜପୁର , ଜଗତସିଂହପୁର, କେନ୍ଦ୍ରାପଡା, ପୁରୀ ଓ ଗଞ୍ଜାମ ପ୍ରଭୃତି ଉପକୂଳ ଜିଲ୍ଲାରେ ଏହି ଅନୁପ୍ରବେଶକାରୀ ସମସ୍ୟା ବଢ଼ିବାରେ ଲାଗିଛି, ଯାହା ଆମର ସୁରକ୍ଷା ଉପରେ ପ୍ରଶ୍ନବାଚୀ ସୃଷ୍ଟି କରୁଛି ଏଥିପାଇଁ କେବଳ ରାଜନୈତିକ ପୃଷ୍ଠପୋଷକତା ହିଁ ଦାୟୀ । ରାଜନୈତିକ ଲୋକମାନେ ସେମାନଙ୍କର ଭୋଟବ୍ୟାଙ୍କ ପାଇଁ ଏମାନଙ୍କୁ ସାହାଯ୍ୟ ଦେଉଛନ୍ତି । କିନ୍ତୁ ସେମାନେ ଜାଣିପାରୁନାହାନ୍ତି ଯେ ଏହା ରାଜ୍ୟ ଓ ଦେଶପାଇଁ କିଭଳି ରୂପ ଧାରଣ କରିବାକୁ ଯାଉଛି । ଏମାନଙ୍କୁ ଚିହ୍ନଟ କରିବା, ରାଜ୍ୟରୁ ବିତାଡିତ କରିବା କିମ୍ୱା ସ୍ଥାୟୀ ଭାବେ ରଖିବା ଏ ନେଇ ରାଜନୈତିକ ଦଳମାନଙ୍କ ମଧ୍ୟରେ ମହମତି ପ୍ରକାଶ ପାଉନାହିଁ । ପ୍ରତ୍ୟେକେ ଅନ୍ୟକୁ ଦୋଷାରୋପ କରିବାରେ ଲାଗିଛନ୍ତି । ସମୁଦ୍ରରେ ପ୍ରତ୍ୟେକ ଦେଶ ସେମାନଙ୍କର ସୀମା ଭିତରେ ମାଛ ଧରିବା ପାଇଁ ଆଇନ ଥିଲେ ମଧ୍ୟ, ସେ ସବୁକୁ ଉଲ୍ଲଂଘନ କରି ଆମ ଦେଶର ଜଳପଥକୁ ପ୍ରବେଶ କରି ଆସୁଥିବା ଧୀବର ମାନଙ୍କୁ ସ୍ଥାନୀୟ ଅଞ୍ଚଳରେ ନେତୃବୃନ୍ଦ ଓ ପ୍ରଶାସନିକ ଅଧିକାରୀଙ୍କ ସାହାରା ପାଇଁ କେତେକ ଦଲାଲ ସେମାନଙ୍କର ଅର୍ଥ ଉପାର୍ଜନର ଏହା ଏକ ମାଧ୍ୟମ କରିଛନ୍ତି । ଏହି ଅନୁପ୍ରବେଶକାରୀଙ୍କ ସଂଖ୍ୟା ଦିନକୁ ଦିନ ବୃଦ୍ଧି ପାଇବାରେ ଲାଗିଛି । ଆମର ଭାଷା, ସାହିତ୍ୟ ସଂସ୍କୃତି ପ୍ରତି ମଧ୍ୟ ଏମାନଙ୍କ ପାଇଁ ସମସ୍ୟା ଦେଖାଗଲାଣି । ଉପକୂଳ ଅଞ୍ଚଳରେ ଏମାନେ ସେମାନଙ୍କର ନିଜ ଭାଷା ସଦାବେଳେ କହିଥାନ୍ତି । ନିଜ ଜାତି ମଧ୍ୟରେ ବନ୍ଧୁତା ବାନ୍ଧୁଛନ୍ତି ଓ ସାଂସ୍କୃତିକ କାର୍ଯ୍ୟସବୁ କରୁଛନ୍ତି । ମୁଖ୍ୟତଃ ଉପକୂଳ ଅଞ୍ଚଳରେ ଏମାନେ ସେମାନଙ୍କର ଭାଷାର ପ୍ରଚାର ପ୍ରସାର ବଢ଼ାଇ ଚାଲିଛନ୍ତି ଯାହାକି ଓଡ଼ିଆଭାଷା ପ୍ରତି ଘୋର ବିପଦ ସୃଷ୍ଟି କରୁଛି । ଏମାନେ ଦଳବଦ୍ଧଭାବେ ଗୋଟାଏ ଗୋଟାଏ ପଡ଼ା କରି ରହିଲେଣି । ବିଭିନ୍ନ ଲୋକଙ୍କର ଚାଷଜମିକୁ ଭାଗଚାଷୀଭାବେ ଚାଷକରି ବିତ୍ତଶାଳୀ ମଧ୍ୟ ହେଉଛନ୍ତି । ସମୁଦ୍ର ଉପକୂଳରେ ମାଛବ୍ୟବସାୟ ବାଂଲାଦେଶୀଙ୍କ କବଳକୁ ଧୀରେ ଧୀରେ ଚାଲିଗଲାଣି । ଆମ ଓଡ଼ିଆଭାଷା, ସଂସ୍କୃତିପାଇଁ ଏମାନଙ୍କ ସଂଖ୍ୟାବୃଦ୍ଧି ପାଇବାରୁ ଘୋର ବିପଦ ଦେଖା ଦେଉଛି । ତେବେ ଏବେଠାରୁ ଯଦି ଓଡ଼ିଶାର ଚିନ୍ତାନାୟକମାନେ ସତର୍କ ହୋଇ ଏହାର ପ୍ରତିକାର ପାଇଁ କାର୍ଯ୍ୟ ନ କରିବେ ଓଡ଼ିଆ ଜାତି ପାଇଁ ଏହା ଏକ ବିରାଟ ଜାତୀୟ ସମସ୍ୟା ରୂପେ ଭବିଷ୍ୟତରେ ମୁଣ୍ଡ ଟେକିବ ।

# ସଂପାଦକ, ଓଡ଼ିଆମୁଖଶାଳା ସୁବର୍ଣ୍ଣଶ୍ରୀ,
ସୁନାରୁଇ, ବି. କଟିସାହି, ସିଂଲା, ବାଲେଶ୍ୱର

# ଆହ୍ୱାନ

## ନରେନ୍ ଚନ୍ଦ୍ର ଦାଶ

କଲିକତାରୁ ଫେରନ୍ତା ରେଳଗାଡ଼ିଟିରେ
ଶୁଣିଲେ ଶ୍ରୀ ଗୋପବଂଧୁ ବ୍ୟାସକବି ବ୍ୟାଧିଗ୍ରସ୍ତ ବାଲେଶ୍ୱର ମଲ୍ଲୀକାଶପୁରେ;
ବାଲେଶ୍ୱର ଷ୍ଟେସନ୍‌ରେ ଆସି ଯେବେ ପହଂଚିଲା ରେଳ
ଆଗକୁ ଯିବାକୁ ଆଉ ବଳିଲାନି ମନ
ଓହ୍ଲାଇଲେ ଗୋପବଂଧୁ ଭେଟିବାକୁ ଫକୀରମୋହନ ।

'ଓଡ଼ିଆ ସ୍ୱତନ୍ତ୍ର ଭାଷା ନୟେ' ଶୁଣି ଉଦ୍‌ବେଳିତ ହେଲା ଯାଙ୍କ ପ୍ରାଣ
ଲେଖନୀ ଚାଳନା କଲେ ରଖିବାକୁ ଓଡ଼ିଆଙ୍କ ମାନ
ବରିଥିଲେ ଆଗ୍ନେୟ ଶପଥ
ଝଡ଼ ଝଂଜା କାଟି ଯିଏ ଚଳାଇଲେ ଓଡ଼ିଆଙ୍କ ସ୍ୱାଭିମାନ ରଥ
ଆଜି ସେଇ ଫକୀରମୋହନ
ରୋଗଗ୍ରସ୍ତ-ଶଯ୍ୟାଶାୟୀ ଭୋଗୁଛନ୍ତି ରୋଗ 'ପୃଷ୍ଠବ୍ରଣ' ।

ଚାହୁଁଥାନ୍ତି ଗୋପବଂଧୁ, ଦୁଇଚକ୍ଷୁ ଭରିଛି ଅଶ୍ରୁରେ
ଦୁଃଖର ତରଙ୍ଗମାଳା ମଥାପିଟେ ହୃଦୟର ସାଗର ବେଳାରେ,
ଭଗିଆ, ଶାରିଆ, ରେବୀ, ସୁଲୋଚନା ରହିଲେଣି ଦୂରେ
ସ୍ରଷ୍ଟା ଆଜି ରୋଗକ୍ଳିଷ୍ଟ, ଶୋଇଛନ୍ତି ଜୀର୍ଣ୍ଣ ଶରୀରରେ;
ଯାହାଙ୍କ ପ୍ରତିଟି ଗଳ୍ପ ଛୁଇଁଥିଲା ଓଡ଼ିଆଙ୍କ ପ୍ରାଣ
କଅଣ ଦେଇଛେ ଆମେ ?  କି ଦେଇ ପାରିବା ଏଇ ସଂଗ୍ରାମୀଙ୍କୁ କିବା ପ୍ରତିଦାନ ?
ଆପଣଙ୍କ ପାଇଁ ଲୋଡ଼ା ଜଣେ ସେବାକାରୀ
ଏକୁଟିଆ ଅସହାୟ ଦେଖି ମନ ଦୁଃଖେ ଯାଏ ଭରି,
ଆରୋଗ୍ୟ ହୁଅନ୍ତୁ ଶୀଘ୍ର ପ୍ରଭୁପାଦେ କରୁଛି ଜଣାଣ
ଏତେ କହି ଫେରିଗଲେ ଗୋପବଂଧୁ ପୋଛି ଦୁଇ ଅଶ୍ରୁଳ ନୟନ ।

ସୁସ୍ଥହେଲେ ବ୍ୟାସକବି, ହେତୁ କଲେ ଯେତେକ ସମ୍ମାନ-
ଦେଇଅଛି, ତାଙ୍କୁ ଜାତି; ଏକ ସ୍ମୃତି ରହିଛି ଅମ୍ଳାନ ।

'ଉତ୍କଳ ସମ୍ମିଳନୀ'ରେ ସଭାପତି ପଦ ଅଳଂକୃତ
କରିଥିଲେ, କୃତଜ୍ଞ ସେ, ସେଇ ସ୍ମୃତି ଜାଗ୍ରତ ସତତ
ଓଡ଼ିଆଙ୍କ ରକ୍ତବିନ୍ଦୁ ମିଶାଇବା ପାଇଁ ଯିଏ କରିଲା ଆହ୍ୱାନ

ଉତ୍କଳ ସମ୍ମିଳନୀର ଉଦ୍ୟୋକ୍ତା ସେ-କୁଳବୃଦ୍ଧ ଶ୍ରୀ ମଧୁସୂଦନ;
ଗୌରବ କୈତ୍ରକେତନ ଉଡୁଥିଲା ଯେ ସମ୍ମିଳନୀରେ
ସେଇ ସମ୍ମିଳନୀ ଆଜି ଅନୁଷ୍ଠିତ -'ଭୋଗରାଇ'-ଉପାନ୍ତ ସହରେ ।

ପରୀକ୍ଷାର ସମ୍ମୁଖୀନ ପୁଣିଥରେ ଆମରି ଏ ଭାଷା
ଯେସନ ଆସୁଛି ଘୋଟି ପୁଣି ଏକ ଧ୍ୱାନ୍ତ ଅମାନିଶା,
ଭଂଜବୀର, କବିସୂର୍ଯ୍ୟ, ଦୀନକୃଷ୍ଣ ରହିଲେଣି କାହିଁ କେତେ ଦୂରେ
ମର୍କଟ ହେଲେଣି ସୃଷ୍ଟି -ବୁଝନ୍ତିନି ମୁକ୍ତାମୂଲ୍ୟ-
କେତେ ରତ୍ନ ଭରିଅଛି ଆମରି ଭାଷାରେ ।
କାହିଁଗଲ ରାଧାନାଥ, ଗଙ୍ଗାଧର, ହେ ମଧୁସୂଦନ !
ରକ୍ଷାକର ରକ୍ଷାକର -ଏ ଜାତିକୁ -ମାଡ଼ିଆସେ ସୁନାମୀ ପ୍ଲାବନ ।

ଏଇ ସମ୍ମିଳନୀ ଏଠି କରୁ ପ୍ରଜ୍ୱଳନ
ସ୍ୱାର୍ଥମେଧ ଯଜ୍ଞ ଏକ, ଯାର ଶିଖା ଅଗ୍ନି ଲେଲିହାନ ।
ସେଇ ହୁତାଶନ ଯାଉ ଖେଦି ସବୁ ନଗରେ ପଲ୍ଲୀରେ
ଭରି ଉଠୁ ପ୍ରତି ହୃଦ ମାତୃଭୂମି ଭାଷାର ପ୍ରୀତିରେ
ଅମାରାତି କରି ଆଲୋକିତ
ଫେରିବ ଲୁପ୍ତଗୌରବ-ନିଶିପ୍ରାନ୍ତେ ସୁନେଲି ପ୍ରଭାତ ।।

# ନେସ୍କୋ, ବାଲେଶ୍ୱର

ମୁଁ ଯାହା ଠାରୁ ଗୋଟିଏ କଥା ଶିଖିଅଛି, ତାକୁ ଗୁରୁଜ୍ଞାନ କରୁଛି । ପିଲାକାଳେ ଅବଧାନଙ୍କଠାରେ ୧୦/୧୨ଦିନ ପଢ଼ିଥିଲି । ସେଥିପାଇଁ ତାଙ୍କୁ ମୁଁ ୩୫ ବର୍ଷ ନିମନ୍ତେ ପେନ୍‌ସନ ଦେଇଥିଲି । ମୁଁ ଗୌରୀଶଙ୍କରଙ୍କଠାରେ ଛାତ୍ରରୂପରେ ଋଣୀ । ତାଙ୍କର ଯେଉଁ କର୍ତ୍ତବ୍ୟ-ଜ୍ଞାନ ଥିଲା, ତାହାବଳରେ ସେ ସର୍ବତ୍ର ନିର୍ଭୀକଭାବରେ କାର୍ଯ୍ୟ କରିଥିଲେ । ସେ ଯେତେବେଳେ ୩୦ ଟଙ୍କା ବେତନରେ ଥିଲେ, ସେତେବେଳେ କଲେକ୍ଟରଙ୍କୁ ମାନି ନ ଥିଲେ ।

**-ମଧୁବାବୁ**